# ଆତ୍ମଜୀବନୀ

ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩ ୦୦୨

୪ର୍ଥ ସଂସ୍କରଣ : ଶ୍ରୀରାମ ନବମୀ, ୨୦୧୪

ମୁଦ୍ରଣ :
ସାହୁ କମ୍ପ୍ୟୁଟର ୟୁନିଟ ଏବଂ
ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ.୧୫୦.୦୦ମାତ୍ର

# ATMA JEEBANEE

Pandit Neelakantha Dash

Publisher :
Sri N.P. Misra
Cuttack Students' Store
Balubazar, Cuttack - 753 002

Principal Adviser :
Sri R.P. Misra

Fourth Edition : April, 2014

Printer :
Sahoo Computer Unit &
Sangeeta Printers, Cuttack

Price : Rs.150.00 only

# ନବ ସଂସ୍କରଣ ପାଇଁ ପଦେ

ପଂଡିତଜୀଂକର ତୀରୋଧାନର ପ୍ରାୟ ବତିଶ ବର୍ଷ ପରେ ତାଂକର ଆତ୍ମଜୀବନୀଟି ନବ ପଞ୍ଚମ ସଂସ୍କରଣ ହେବାକୁ ଯାଉଛି । ଅବଶ୍ୟ ଦୁଇଥର ତାଂକ ଗ୍ରଂଥାବଳୀରେ ସନ୍ନିବେଶିତ ହୋଇଥିଲା । ପଂଡିତଜୀଂକ ଜୀବନକାଳ ଭିତରେ ଏ ବହିଟି ଆଦୃତ ହୋଇ କେଂଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ମଧ୍ୟ ପ୍ରାପ୍ତ ହୋଇଥିଲା । ଏ ମଧ୍ୟରେ ବହୁ ଗବେଷକ ଓ ଲେଖକ ଲେଖିକା ଏହାର ବିଷୟ ବସ୍ତୁକୁ ଆଧାର କରି ବହୁ ପ୍ରବଂଧ ନିବଂଧ ଲେଖିଚଂତି ଓ ଲେଖୁଛଂତି । ପଂଡିତଜୀଂକ କୃତି ଉପରେ କେତେ ଗବେଷକ ନାନା ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ଉପାଧି ମଧ୍ୟ ଲାଭ କଲେଣି ।

ପଂଡିତଜୀ ନିଜର ଆତ୍ମଜୀବନୀ ଲେଖିବାକୁ ଅନିଚ୍ଛୁକ ଥିବାର ଏ ବହିରେ ଦର୍ଶାଇଛଂତି । ଏ ପୁସ୍ତକର ପ୍ରକାଶନର ପ୍ରାୟ ତିରିଶ ବର୍ଷ ପୂର୍ବରୁ ତାଂକର ଗୁଣଗ୍ରାହୀ ଶିଷ୍ୟମାନେ ତାଂକ ଆତ୍ମଚରିତ ଲେଖାଇବାର ଉଦ୍ୟମ କରି ଆସିଚଂତି । ସେମାନଂକ ମନ ରକ୍ଷା କରିବାକୁ ପଂଡିତଜୀ ବହୁବାର ନିଜ ଜୀବନରୁ କିଛି କିଛି କହିବାର ଆରଂଭ କରିଛଂତି । ସେଥିରୁ କିଛି ଲେଖାଯିବା ପରେ ପଂଡିତଜୀଂକ କର୍ମବହୁଳ ଜୀବନ ଯୋଗୁ ସେସବୁ ଅଳ୍ପ ଲେଖାରେ ରହିଯାଇ ଥରକୁ ଥର କାଟଭକ୍ଷ ହୋଇଛଂତି ।

ଶେଷରେ ସ୍ୱର୍ଗତ ଅଧ୍ୟାପକ ଡକ୍ଟର କୁଂଜବିହାରୀ ଦାଶଙ୍କ ଆପ୍ରାଣ ଚେଷ୍ଟାରେ ଓ ସାହିତ୍ୟ ସେବୀ ପୂର୍ବତନ ପ୍ରକାଶକ ଶ୍ରୀ ଅନଂତ ମିଶ୍ରଂକ ଉଦ୍ୟମରେ ପଂଡିତଜୀଂକ ଶେଷ ଜୀବନରେ ତାଂକ ଆତ୍ମଜୀବନୀଟି ଲେଖା ହୋଇ ପ୍ରକାଶିତ ହୋଇପାରିଛି । ପଂଡିତଜୀ ତାଂକର ସ୍ମୃତିପେଡ଼ି ଖୋଲି ଯେତେବେଳେ ଯାହା ମନେ ପଡ଼ିଥିଲା ଆଗପଛ ନ ରଖି ଡାକି ଯାଇଛଂତି । ସେ ଡାକିବା ସଙ୍ଗେ ସଙ୍ଗେ ଲେଖାଗୁଡ଼ିକ ପ୍ରକାଶିତ ହେବାକୁ ଛାପାଖାନାକୁ ଚାଲି ଯାଉଥିଲା । ତେଣୁ ବିଷୟଗୁଡ଼ିକ ସଜାଇବା ପାଇଁ ତାଂକୁ ସମୟ ମିଳି ନ ଥିଲା ।

ତେଣୁ ପର ସଂସ୍କରଣରେ ବିଷୟଗୁଡ଼ିକ ଯଥା ସଂଭବ ସଜାଇଦେବା ପାଇଁ ମୁଁ ଉଦ୍ୟମ କରିଛି । ଲେଖକଂକର ଲେଖାକୁ ବଦଳା ବଦଳି କରିବା ସଂଭବ ନୁହେଁ କିଂବା ଜଣକ ଆତ୍ମଜୀବନୀ ବର୍ଣ୍ଣନାରେ ହାତ ଦେବାର କାହାର ଅଧିକାର ନାହିଁ । ପଂଡିତଜୀଂକ ଲେଖାରେ କେତେକ ପୁନୋରୁକ୍ତି ରହିଛି, କିନ୍ତୁ ସେଗୁଡ଼ିକ ସୁଖପାଠ୍ୟ ଓ ଉପାଦେୟ ତେଣୁ ସେଥିରୁ ମଧ୍ୟ କିଛି ବାଦ ନ ଦେଇ ସେଗୁଡ଼ିକ ଅବିକଳ ଭାବରେ ନୂତନ ପୁସ୍ତକରେ ରଖାଯାଇଛି ।

ସେ ଆତ୍ମଜୀବନୀ ଲେଖିଲାବେଳେ ଜୀବନର ବହୁ ବିଶିଷ୍ଟ ଘଟଣା ଛାଡ଼ି ଯାଇଛଂତି । ସେ ସଂବଂଧରେ କେତେକ ବିଷୟ ଏହାପୂର୍ବରୁ ମୁଁ ''ମୋ ନନାଂକ ଦେଶ'' ବହିରେ ସନ୍ନିବେଶିତ କରିଛି । ଆଉ ଅନେକ ବିଷୟ ଅପ୍ରକାଶିତ ଓ ଗବେଷଣାର ବସ୍ତୁ ହୋଇ ରହିଛି ।

ଥରକୁ ଥର ଲେଖା ଯାଇଥିବା ଅପ୍ରକାଶିତ ଆତ୍ମଜୀବନୀ ଲେଖା କେତେକ ଛିନ୍ନ ପତ୍ର ସଂଗ୍ରହ କରି ସେଥିରୁ ମିଳିଥିବା ଏକ ଉପାଦେୟ ଲେଖାର ''ମୋ ଜୀବନ ଦର୍ଶନ'' ବିଷୟଟି ମୁଁ ଏ ନୂତନ ସଂସ୍କରଣରେ ପରିଶିଷ୍ଟରେ ସଂଯୋଗ କରିଛି । ବହିଟି ଛପା ଯିବାବେଳେ

ଏପଟ ସେପଟ ହୋଇଥିବା ବା ଛାଡ଼ିଯାଇଥିବା ଲେଖା ଦେଇ କେତେକ ବିଷୟ ସଂପୂର୍ଣ୍ଣ କରିବାକୁ ଚେଷ୍ଟା କରିଛି । ଜୀବନୀଟି ପୂର୍ଣ୍ଣାଂଗ କରିବାକୁ ଆତ୍ମଜୀବନୀ ସହିତ ତାଂକ ଜୀବନୀ ପଂଜି, ଶ୍ରଦ୍ଧାଂଜଳି ଓ ଶତବାର୍ଷିକି ତିନିଗୋଟି ବିଷୟ ଉପସଂହାରରେ ସନ୍ନିବେସିତ ହୋଇଛି ।

ପଂଡ଼ିତଜୀ ଥିଲେ, ଯୁକ୍ତିବାଦୀ, ଆଜନ୍ମ ବିପ୍ଲବୀ ଓ ସଂସ୍କାରବାଦୀ ମହାମନୀଷୀ, ''ମୋ ଜୀବନ ଦର୍ଶନ'' ଲେଖାରେ ସେ ଲେଖିଛଂତି ''(ସ୍କୁଲ ଛାତ୍ରାବସ୍ଥାରେ)'' ସେତେବେଳେ ଭବିଷ୍ୟତରେ ଆଦର ଓ ବିଶ୍ୱାସ ତହିଁସଂଗେ ଭାରତ ଓ ସେହି ସୂତ୍ରରେ ମାନବ ସେବାର-ମାର୍ଗ ।'' ମାତ୍ର ନବମ ଶ୍ରେଣୀରେ ପାଠ ପଢ଼ିଲାବେଳେ ୧୯୦୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଦୁର୍ଗତିରେ ତାଂକର ହୃଦୟ ଏପରି ଆଂଦୋଳିତ ଥିଲା ଯେ ଗ୍ରୀଷ୍ମାବକାଶରେ ତାଂକର ଶ୍ରେଣୀ ସଂଗୀ ପ୍ରଚାରକ ଅନଂତ ଓ କଲେଜ ଛାତ୍ର ଆଚାର୍ଯ୍ୟ ହରିହର ଓ ଗୋପବଂଧୁଂକ ସଂଗେ ଉତ୍କଳର ସର୍ବାଂଗୀନ ଉନ୍ନତି ଉଦ୍ଦେଶ୍ୟରେ ପ୍ରାଣୋତ୍ସର୍ଗ କରିବା ପାଇଁ ଶପଥ ନେଇଥିଲେ । ୧୯୦୪ରେ ଉତ୍କଳ ଗୌରବ ମଧୁସୂଦନଂକ ସ୍ୱଦେଶୀ ବ୍ୟବହାର ପ୍ରତିଂଜ୍ଞା ପତ୍ରରେ ସ୍ୱାକ୍ଷର କରିଥିଲେ । ବଂଗଭଂଗ ବୈପ୍ଲବିକ ଆଂଦୋଳନରେ ସକ୍ରୀୟ ଅଂଶ ଗ୍ରହଣ କରିଥିଲେ । ନୀଳକଂଠଂକର ଜନସେବା, ସାହିତ୍ୟସେବା, ସମାଜ ସଂସ୍କାର, ଦେଶ ମିଶ୍ରଣ କାର୍ଯ୍ୟ, ଶିକ୍ଷକତା, ସାଂବାଦିକତା, ରାଜନୀତି, ଧର୍ମ ଧାରଣା ସବୁରି ମୂଳରେ ଥିଲା ଅଖଣ୍ଡ ଦେଶପ୍ରୀତି ଓ ଦେଶକୁ ଉନ୍ନତ କରିବାର, ମହାନ ନିସ୍ୱାର୍ଥପର ଆଦର୍ଶ ।

ସେହି ଆଦର୍ଶ ହିଁ ତାଂକୁ ପିଲାଦିନୁ ନିର୍ଲିପ୍ତ କର୍ମଯୋଗୀ କରି ଗଢ଼ିଥିଲା । ତାଂକୁ ଲକ୍ଷ୍ୟକରି ଦେଶପ୍ରାଣ ବ୍ୟାସକବି ଫକୀରମୋହନ ଲେଖିଥିଲେ, 'ସଦାଶିବ ନୀଳକଂଠ ସତତ ସନ୍ୟାସୀ । ଗୁରୁ ଗୋପବଂଧୁ ଓ ନିଜର ପିତା ଆନଂଦ ଦାସଂକ ବାଧବାଧକତାରେ ନୀଳକଂଠ ପିତାଂକ କୂଳ ରକ୍ଷା ପାଇଁ ୧୯୦୫ ମସିହାରେ ସ୍କୁଲ ଛାତ୍ର ଥିବା ଅବସ୍ଥାରେ ବିବାହ କରିଥିଲେ । କିଂତୁ ସେଥିପାଇଁ ତାଂକ କର୍ମ ବହୁଳ ଜୀବନକୁ ଶିଥିଳ କରି ନ ଥିଲେ କିଂବା ନିଜ ଆଦର୍ଶରୁ କଦାପି ପଦଚ୍ୟୁତ ହୋଇ ନ ଥିଲେ ।

୧୯୨୧-୨୩ ମସିହାର ସ୍ୱାଧୀନତା ସଂଗ୍ରାମ ଭିତରେ ତାଙ୍କର ଦୁଇଟି କନ୍ୟା ଉପଯୁକ୍ତ ଚିକିତ୍ସା ଅଭାବରୁ ବାଲ୍ୟାବସ୍ଥାରେ ମୃତ୍ୟୁମୁଖରେ ପଡ଼ିଥିଲେ । ସେ ସଂବଲପୁର କଂଗ୍ରେସ ସଭାରେ ଉଦ୍‌ବୋଧନ ଦେଉଥିବା ସମୟରେ ପ୍ରଥମ କନ୍ୟା 'ଭାରତୀ'ର ମୃତ୍ୟୁ ଖବର ଶୁଣିବାକୁ ପାଇ ମଧ ଅବିଚଳିତ ରହି ତାଂକର ଭାଷଣ ଚାଲୁ ରଖିଥିଲେ । ଜନତା ସେଥିରେ ଅଭିଭୂତ ହୋଇ, ଶତ ଶତ ଛାତ୍ର ଓ କର୍ମଚାରୀ ନିଜର ସ୍ୱାର୍ଥ ଭୁଲି ସ୍କୁଲ କଚେରୀ ଛାଡ଼ି ଅସହଯୋଗ ଆଂଦୋଳନ ପାଇଁ ଜୀବନ ଉତ୍ସର୍ଗ କରିଥିଲେ । ୧୯୨୩ରେ ପୂର୍ବଘଟଣାର ବର୍ଷଖଣ୍ଡେ ପରେ ସେ ବଂଦୀ ଅବସ୍ଥାରେ ପୁରୀ ଜେଲ୍‌ରୁ ରେଲଗାଡ଼ିରେ ହଜାରିବାଗ ଜେଲକୁ ନିଆ ହେଉଥିବା ବେଳେ ସତ୍ୟବାଦୀ ଷ୍ଟେସନରେ ଆଚାର୍ଯ୍ୟ ହରିହରଂକଠାରୁ ତାଂକ ଦ୍ୱିତୀୟ କନ୍ୟା 'ବାସଂତି'ର ମୃତ୍ୟୁ ଖବର ପାଇଥିଲେ । ସେଥିରେ ମଧ ତାଂକ ଦେଶ ଭାବନା କ୍ଷଣକ ପାଇଁ ହେଲେ ବଂଦ ହୋଇ ନ ଥିଲା । ''ଯିଏ ଯେତେଦିନୁ ଆସିଥାଏ ସିଏ ସେତିକି ଦିନ ରହି ଚାଲିଥାଏ, ହଁ ଆଉ କଅଣ କରଂତ'' କହି ହରିହରଂକୁ ବିଦାୟ ଦେଇଥିଲେ । ତାଂକର ଅବିଚଳିତ ଭାବ ଦେଖି ତାଂକୁ ପହରାଦେଇ ସାଂଗରେ ନେଉଥିବା ପୋଲିସ ଅଫିସର ଶ୍ରୀ ହାଥ ଏପରି ତନ୍ମୟ

ହୋଇ ଯାଇଥିଲେ ଯେ ସେ ତାଂକୁ ଜଣେ ବଂଦୀ ବୋଲି ଭାବିପାରି ନ ଥିଲେ । ନୀଳକଂଠ କଲିକତାରେ ଓହ୍ଲାଇ ହଜାରୀବାଗ ଗାଡ଼ି ଧରିବା ପର୍ଯ୍ୟଂତ ସକାଳୁ ସଂଧ୍ୟାଯାଏ ମୁକ୍ତ ବିହଂଗମ ପରି କଲିକତା ସହରରେ ବୁଲି ଦଳ ଦଳ ଲୋକଂକୁ ଭେଟି ତାଂକୁ ସଂଗ୍ରାମ ବାର୍ତ୍ତା ପ୍ରଚାର କରି ପାରିଥିଲେ । ପଂଡିତଜୀ ଏହି ଆତ୍ମଜୀବନୀରେ ଲେଖିଛନ୍ତି, ''ମୁଁ ଯେପରି ମୋର କନ୍ୟା ମୃତ୍ୟୁର ଦୁଃଖକୁ ପରିସ୍ଥିତିର ପରିହାସ ଭିତରେ ଭୁଲିଯିବା ପାଇଁ ଚେଷ୍ଟା କରୁଥିଲି ।'' କର୍ତ୍ତବ୍ୟ ସାମନାରେ ସେ ସମସ୍ତ ଭାବପ୍ରବଣତାକୁ ପଛରେ ପକାଇ ସଂସାର ଝଂଜାଳ ଭାବନାରୁ ନିଜକୁ ଉର୍ଦ୍ଧ୍ୱରେ ରଖି ଦେଶ କାର୍ଯ୍ୟ କରି ଯାଉଥିଲେ ।

ଏ ପୁସ୍ତକରେ ସେ ନିଜର ଘରସଂସାର ବା ସଂତାନ ସଂତତିଂକ ବିଷୟ କିଛି ଉଲ୍ଲେଖ କରି ନାହାଂତି, ନିଜର ଅନୁଗତ କର୍ମୀମାନଂକ ସଂବଂଧରେ ମଧ୍ୟ ବିଶେଷ କିଛି ଲେଖିପାରି ନାହାଂତି । ସେ ନିଜେ ଯେପରି କର୍ମରତ ଥିଲେ, କର୍ମୀ ଓ ନିଜ ବଂଶର ଲୋକଂକଠାରୁ ସେହିପରି ନିଃସ୍ୱାର୍ଥ କର୍ମପ୍ରବଣତା ହିଁ ଆଶା କରୁଥିଲେ ।

ମୋର ପରାମାରାଧ୍ୟା ବୋଉ ଶ୍ରୀମତୀ ରାଧାମଣୀ ଦେବୀ ଓ ଆମ ଦୁଇଭାଇଂକୁ ସେ କର୍ମୀ ଭାବରେ ହିଁ ଦେଖୁଥିଲେ । ତାଂକର ଅନୁଗତ ସେବକ ଅନ୍ୟ କର୍ମୀ ଓ ଆମ ଭିତରେ କୌଣସି ପ୍ରଭେଦ ବାରୁ ନ ଥିଲେ । ନିଜ ପିଲାପିଲିଂକଠାରେ ଆସକ୍ତି ନ ରଖି ''ଯେ ଯେଝା କଥା ବୁଝିବେ'' ବୋଲି ସ୍ଥିର କରି ସେ ନିଜର ଦେଶକାର୍ଯ୍ୟ କରି ଯାଉଥିଲେ ।

ମୋର ପୂଜ୍ୟ ଜ୍ୟେଷ୍ଠଭ୍ରାତା ଶ୍ରୀ ଅଶୋକ ଦାସଂକ ଜନ୍ମ ୧୯୧୨ ମସିହାରେ । ସେ ୧୯୮୬ ମସିହା ମେ ୧୧ ତାରିଖରେ ସ୍ୱର୍ଗାରୋହଣ କଲେ । ସେ ପିଲାଦିନୁ ସ୍ୱାଧୀନତା ସଂଗ୍ରାମ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଥିଲେ । ସେ ପାଠପଢ଼ା ଆରଂଭ କରିଥିଲେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ, ପରେ ପଂଡ଼ିତ ଗୋଦାବରୀଶ ମିଶ୍ର ତାଂକୁ ସଂଗରେ ନେଇ ସିଂହଭୂମି ଚକ୍ରଧରପୁର ଜାତୀୟ ବିଦ୍ୟାଳୟରେ ଶିକ୍ଷା ଦେବାର ବ୍ୟବସ୍ଥା କରିଥିଲେ । ସେଠାରୁ ସେ ଗ୍ରାମକୁ ଫେରି ଅପାଠୁଆ ହୋଇ ବୁଲୁଥିବାବେଳେ ଆମ ମଉସା (ସତ୍ୟବାଦୀ ସ୍କୁଲର ପୂର୍ବତନ ଛାତ୍ର) ଶ୍ରୀ ଚନ୍ଦ୍ରଶେଖର ମିଶ୍ର ତାଂକୁ କଟକ ଆଣି ପ୍ରାକ୍ଟିସିଂଗ ମାଇନର ସ୍କୁଲରେ ନାମ ଲେଖାଇ ଦେଇଥିଲେ । ସେଠାରୁ ପାଶ କରି କଲେଜିଏଟ ସ୍କୁଲରେ ଉପର କ୍ଲାସରେ ପଢ଼ିଲେ । ସେହି ସମୟରେ ତତ୍‌କାଳୀନ ଗୋରା ଡ଼ାଇରେକ୍ଟରଂକ ସାମନାରେ ଏକ ସ୍କାଉଟ ରାଲି ଚାଲିଥିଲାବେଳେ ଅଶୋକ ବାବୁ ସ୍କାଉଟ ଥାଇ **Down Down Union Jacck up up National Flag** କହିକି ଜ ପକେଟରୁ କାଢ଼ି ଜାତୀୟ ପତାକା ଉଡ଼ାଇବା ଫଳରେ ସେ ସ୍କୁଲ ଛାଡ଼ିଥିଲେ । ୧୯୩୨ ଆନ୍ଦୋଳନରେ କାରାବରଣ କରି ସେ ହଜାରୀବାଗ୍ ଜେଲକୁ ପଠାଯାଇ ପିତାଂକ ସଂଗେ କିଛିଦିନ କାରାଗାର ଭୋଗ କରିଥିଲେ । ପରବର୍ତ୍ତୀ ଜୀବନରେ ବିପ୍ଳବୀ ଅଶୋକଙ୍କୁ ବହୁବାର କାରାବରଣ କରିବାକୁ ପଡ଼ିଥିଲା । ନେତାଜୀ ସୁଭାଷ ବୋଷଙ୍କ ଜଣେ ଘନିଷ୍ଠ ସହକର୍ମୀ ଭାବରେ ନେତାଜୀ ଭାରତରୁ ଗୋପନରେ ଚାଲିଯିବା ପରେ ଅଶୋକଂକୁ ବଂଦୀ କରାଯାଇ କାରାଗାରରେ ସେଲ ବା ଏକ କ୍ଷୁଦ୍ର କୋଠରିରେ ରଖି ତାଂକୁ ଯୁଦ୍ଧବଂଦୀ ଭାବରେ ବିଚାର କରାଯିବା ପାଇଁ ମସୁଧା ଚାଲିଥିଲା । ସେ ସବୁ ସତ୍ତ୍ୱେ ମଧ୍ୟ ସୁବିଧା ପାଇଲେ ସେ ବିଦ୍ୟାଧ୍ୟୟନ କରୁଥିଲେ । ଶେଷରେ ଓକିଲାତି ପାଶ୍ କରି ଜଣେ ବିଖ୍ୟାତ, ସ୍ୱାଧୀନଚେତା ଆଇନଂଗ୍ୟ ଭାବରେ ନାମ ଅର୍ଜନ କରି ପାରିଥିଲେ ଓ ପରେ

ସ୍ୱାଧୀନତା ପରେ ଓଡ଼ିଶା ସରକାରଙ୍କର ଆଡ଼ଭୋକେଟ ଜେନେରାଲ ଭାବରେ ବହୁ ବୈପ୍ଳବାତ୍ମକ ପରିବର୍ତ୍ତନ ଆଣି ପାରିଥିଲେ ।

ମୋ ନିଜର ଅବସ୍ଥା ମଧ୍ୟ ତତୋଽଧିକ ଥିଲା । ମୋର ଜନ୍ମ ସ୍ୱାଧୀନତା ସଂଗ୍ରାମର ଅସହଯୋଗ ଆଂଦୋଳନରେ ଆରଂଭ ବେଳେ, ୧୯୨୧ ମସିହାରେ ମୋର ମନେ ଅଛି, ୧୯୩୧-୩୨ ଲୁଣମରା ଆଂଦୋଳନ ସମୟରେ ପିତା ନୀଳକଂଠ·ମାତା ରାଧାମଣୀ ଓ ବଡ଼ ଭାଇ ଅଶୋକ କାରାଗାରସ୍ଥେ ଥିଲାବେଳେ ମୁଁ ଅଜାଂକ ଘରେ ବୀରପୁରୁଷୋତ୍ତମପୁର ଗ୍ରାମରେ ରହୁଥିଲି ।

ସେ ଗ୍ରାମର ଶ୍ରୀ ନାରାୟଣ ମିଶ୍ର ଓ ଅନ୍ୟ କଂଗ୍ରେସ କର୍ମୀମାନେ ବିଭିନ୍ନ ସ୍ଥାନରେ କଂଗ୍ରେସ ସଭା କଲାବେଳେ ମୋତେ ଶଗଡ଼ରେ ବା କାନ୍ଧରେ ନେଇ ସଭା ମଝିରେ ଏକ ଟେବୁଲ ଉପରେ ଠିଆ କରାଇ ମୋ ହାତରେ ଅସ୍ତରଂଗଠାରେ ମରା ହେଉଥିବା ଲୁଣପୁଡ଼ିଆ ସବୁ ନିଲାମ କରାଉଥିଲେ । ସେଥିରୁ ଆଦାୟ ଅର୍ଥ ଲୁଣ ମାରୁଥିବା ସତ୍ୟାଗ୍ରହୀମାନଂକ ଖର୍ଚ୍ଚ ପାଇଁ ପଠା ଯାଉଥିଲା ।

ମୋଟ ଉପରେ ଆମ ଭଳି ତାଂକ ସଂତାନମାନଂକ ଜୀବନ ଗଡ୍ଡାଳିକା ପ୍ରବାହରେ ଗଡ଼ି ଚାଲିଥିଲା । ସେଥିପ୍ରତି ପୈତୃକ ପରିଚାଳନା ବା କଟକଣା କିଛିଁ ନ ଥିଲା । ଆମେ କେତେବେଳେ ସ୍କୁଲରେ ପଢୁଥିଲୁ, କେତେବେଳେ ବା ଜାତୀୟ ଆଂଦୋଳନ ବା ଛାତ୍ର ଆଂଦୋଳନରେ ଯୋଗଦେଇ ସ୍କୁଲ କଲେଜ ଛାଡ଼ି କାରାବରଣ କରୁଥିଲୁ ସେ ସବୁରେ ପଂଡିତଜୀ ଆଦୌ ବିଚଳିତ ହେଉ ନ ଥିଲେ । ସେ ବେଳେ ବେଳେ କେବଳ ଆମ କର୍ମ ଚେତନାକୁ ଚେତାଇ ଦେଇ ଆମର ଜୀବନ ପ୍ରବାହକୁ ସ୍ୱାଭାବିକ ଗତିରେ ପ୍ରବାହିତ ହେବାକୁ ଛାଡ଼ି ଦେଉଥିଲେ ।

ଦୃଷ୍ଟାନ୍ତ ସ୍ୱରୂପ—ମୁଁ କଟକ କଲିଜିଏଟ ସ୍କୁଲ ଛାତ୍ରାବାସରେ ରହି ୯ମ ୧୦ମ ଶ୍ରେଣୀରେ ପାଠ ପଢୁଥିବାବେଳେ ତାଂକର କେତେକ ରାଜନୈତିକ କାର୍ଯ୍ୟ କରିଦେବା ପାଇଁ ଦିଲ୍ଲୀରୁ ନିର୍ଦ୍ଦେଶ ଦେଇ ସେ ମୋତେ ଖଂଡିଏ ପତ୍ର ଲେଖିଥିଲେ । ନିକଟରେ ମୋର ପରୀକ୍ଷା ଥିବା କଥା ଦର୍ଶାଇ ମୁଁ ତାଂକ ନିର୍ଦ୍ଦେଶକୁ ଆଡ଼େଇ ଦେଇଥିବାରୁ ସେ ମୋତେ ତା.୨୭-୧୧-୧୯୩୮ରେ ଦିଲ୍ଲୀରୁ ଲେଖିଥିଲେ—

ବାପା ବିକ୍ରମ,

ପରୀକ୍ଷା କେବେ ହେବ ଲେଖିବୁ, ପରୀକ୍ଷାରେ କିପରି କଲୁ ବୋଲି ତୋର ଧାରଣା ? କିଂତୁ ହେଲା ନ ହେଲାରେ ବିଶେଷ ଚିଂତିତ ହେବୁ ନାହିଁ । ମନୁଷ୍ୟ କର୍ମ କରିବ, ମାତ୍ର କର୍ମର ଫଳ ମନୁଷ୍ୟ ହାତରେ ନାହିଁ । ଏଇ ଭାବରେ ସବୁ କାର୍ଯ୍ୟରେ ଲାଗିବା ହିଁ ମନୁଷ୍ୟତା, ତା' ନ ହେଲେ ଚିତ୍ତ ଚଂଚଳ ହୋଇ ମନୁଷ୍ୟତା ଭ୍ରଷ୍ଟ ହୁଏ । ପୂର୍ବେ ଯୋଗୀମାନେ ଏଇ ସାଧନା କରୁଥିଲେ । ପ୍ରତ୍ୟେକ ମନୁଷ୍ୟ କର୍ମଜଂଜାଳ ଭିତରେ ସର୍ବଦା କର୍ମ ତତ୍ପର ହୋଇ ଏଇପରି ଯୋଗୀ ହେବା ଉଚିତ ।

ଶୁଭାକାଂକ୍ଷୀ ନୀଳକଂଠ ଦାସ

ସ୍କୁଲରେ ପଢୁଥିବା ପିଲା ପୁଅଟି ପାଖକୁ ଏପରି ନିରୁତା ଚିଠିଟିଏ ଲେଖିବା କେବଳ ଜଣେ ନିର୍ଲିପ୍ତ ଯୋଗୀ ପକ୍ଷରେ ହିଁ ସମ୍ଭବ । ଏଥିରେ କଅଁଳେଇ କରି କୁଶଳ ସମାଚାର ପଚାରି ବୁଝିବା କି ଆଶୀର୍ବାଦ ଦେଇ ପଦେ ଲେଖିବାର ଅବଧାରଣା ମଧ୍ୟ ନାହିଁ । 'ନନା' ସ୍ଥାନରେ ମଧ୍ୟ ପୂର୍ଣ୍ଣ ଦସ୍ତଖତଟିଏ ରହିଛି ।

ମେଡ଼ିକାଲ କଲେଜରୁ ପାଶ୍ କରି, ମୋର ଆସନ୍ନ ପ୍ରସବା ସହଧର୍ମିଣୀଂକୁ ବୋଉ ପାଖରେ ଛାଡ଼ି ଉଚ୍ଚଶିକ୍ଷା ପାଇଁ ମୁଁ ଆମେରିକା ଯାଇଥିଲି । ସେଠାରୁ ନନାଂକ ସହିତ ପତ୍ରାଳାପ ଭିତରେ ମୋ ସ୍ତ୍ରୀ ଓ ପିଲାଙ୍କ ଖବର ଜାଣିବାକୁ ପଦେ ଅଧେ ଲେଖି ଦେଇଥିଲି । ତାର ଉତ୍ତରରେ ସେ ଆମେରିକାରୁ ମୋ ନିକଟକୁ ଯେଉଁ ପତ୍ର ଲେଖିଥିଲେ ତାର କେତେକ ଅଂଶ ଉଦ୍ଧାର କରୁଛି—

ଜଗନ୍ନାଥେ ଭଲ କରଂତୁ — ନବଭାରତ ଅଫିସ
କଟକ-୨ ତା.୩-୧-୧୯୫୩

ବାପା ବିକ୍ରମ,

..... ପିଲା କଥା କି ବୋହୂ କଥା, ରୋଗ କଥା କି ଟୀକା କଥା ମୁଁ କିଛି ଜାଣେ ନାଇ । ଡିସେଂବର ୧୦ କି ୧୧ ସରିକି ମୁଁ ଏଇଠି ପିଲାକୁ ଦେଖିଥିଲି । .....

ପିଲାଟାକୁ ଦେଖିଲେ ଟିକିଏ କିମିତି ଲାଗୁଚି । ଏଇଟା ଜୀବି ଭାବ । 'ଅଶୋକ' ଜନ୍ମ ହେଲାପରେ, ତାକୁ ଦେଖି ମୋର ଏଇପରି ଗୋଟାଏ ମମତାର ଅଯଥା ଆକର୍ଷଣ ମୁଁ ଅନୁଭବ କରିଥିଲି ଓ ବିସ୍ମିତ ପୁଣି କ୍ଷୁଭିତ ହୋଇ ଦାସ ଆପଣଙ୍କୁ (ଗୋପବଂଧୁଂକୁ) କହିଥିଲି । ମୋର ଏପରି ଭାବ କାହିଁକି ହେଉଛି, ଏଇଟା ତ ଆଶକ୍ତି । ମୋର ତ ଏଥିରେ କର୍ତ୍ତବ୍ୟ ଗ୍ୟାନ ଶିଥିଳ ହୋଇଯିବ ନାଇଁ । ସେ ଟିକିଏ ହସିଦେଇ କହିଥିଲେ ସେଉଟା ସ୍ୱାଭାବିକ ଏତେ ଭୟ କରିବାର କିଛି କାରଣ ନାଇଁ ।

ଠିକ୍ ଲେଖୁଚୁ, ଯେଝା କଥା ସିଏ ବୁଝିବେ । ତୋଭଳି ଯୁବକର ହୁଏତ ଖୁସି ହେବା ପାଇଁ ସମସ୍ତେ ଭଲଅଛଂତି ବୋଲି ଜାଣିବା ଦରକାର । କିଂତୁ ଅତଂଦ୍ରିତ ଭାବରେ ଆଦର୍ଶ ଲାଭ ପାଇଁ ଚାହିଁ ବସିଥିବା ଆମଭଳି ବୃଦ୍ଧ ପକ୍ଷରେ ସେଇଟା ବାସନା ନୁହେଁ କି ?

ଆଉ ଏ ଦର୍ଶନ ଏ ତୋ ପାଇଁ ନୁହେଁ ଏ ମୋର ଅତର୍କିତ ଆତ୍ମପ୍ରକାଶ x x

ଶୁଭାକାଂକ୍ଷୀ
ନୀଳକଂଠ ଦାସ

ନିଜ ପିଲାଂକୁ ସ୍ନେହ କରିବା ବା ତାକଂର ଭଲମଂଦ ବୁଝିବାକୁ ସିଏ ମମତାର ଅଯଥା ଆକର୍ଷଣ ବୋଲି ଉପେକ୍ଷା କରୁଥିଲେ, ତେଣୁ ପଂଡ଼ିଜୀ ଜଣେ ସାଧାରଣ ପିତା, ଗୃହସ୍ଥ ବା ନେତା ନ ଥିଲେ । ତାଂକ ଜୀବନର ପ୍ରତ୍ୟେକ ଘଟଣା ଦେଶ ଗଠନର ଇତିହାସ ସହିତ ଓତଃପ୍ରୋତ ଭାବେ ଜଡ଼ିତ ।

ଏ ଆତ୍ମଜୀବନୀରେ ତାଂକ ବିରାଟ ଜୀବନର ସବୁ ଘଟଣା ପ୍ରକାଶିତ ହୋଇଥିବା ଆଶା କରିବା ଉଚିତ ନୁହେଁ । ତାଂକ ଜୀବନର ଗୁଡ଼ତ୍ୱ ଓ ବଳିଷ୍ଠ ଆଦର୍ଶ ଏ ପୁସ୍ତକରେ ଛତ୍ରେ ଛତ୍ରେ ଜୀବଂତ ହୋଇ ରହିଛି । ଏ ଜାତି ପାଇଁ ଏହା ତାଂକର ଆଉ ଗୋଟିଏ ଗୀତାର ଭାଷ୍ୟ । ସରଳ ସୁନ୍ଦର ଭାଷାର ଚାତୁରୀରେ ଏହା କେବଳ ପାଠକଂକର ମନମୁଗ୍ଧ କରି କାର୍ଯ୍ୟ ସମ୍ପନ୍ନ କରୁନାହିଁ, ସେଥିକୁ ଛତ୍ରେ ଛତ୍ରେ ଦେଶ ସଂସ୍କୃତି ଓ ଜାତୀୟତାବୋଧର ସ୍ୱଚ୍ଛ ସଲୀଳ ଝରୁଛି ।

ଦେଶର ଏ ଘଡ଼ିସଂଧିବେଳେ ଯେତେବେଳେ ସ୍ୱାର୍ଥ ଓ ବିଳାଶର ଦୃଢ଼ ଆକ୍ରମଣରେ ଭାରତର ସଂସ୍କୃତି କ୍ଷତ ବିକ୍ଷତ ହେବାକୁ ବସିଛି ସେତେବେଳେ ଏହିଭଳି ଦେଶପ୍ରେମୀ ମହାପୁରୁଷମାନଂକର ଜୀବନୀ ଆଲୋଚନା ନିଶ୍ଚୟ ଏ ଜାତିକୁ ଦିଗ୍‌ଦର୍ଶନ ଦେବ । ଏ ପୁସ୍ତକ ନିଜ କଥା କହି ନିଜର ମୂଲ୍ୟ ଜଣାଇ ଆସିଛି ଓ ଆଦୃତ ହୋଇଛି । ଏହା ଉପରେ ଅଧିକା କହିବାର ପ୍ରୟୋଜନ ନାହିଁ ।

ଡ଼ାକ୍ତର ବିକ୍ରମ ଦାସ
ସଂକଳକ

# ମର୍ତ୍ତ୍ୟ ଦେବତା

ପଣ୍ଡିତ ନୀଳକଂଠଙ୍କ ଜୀବନୀ ଉପରେ 'ଦୈନିକ ସମାଜ'ର ୧.୨.୨୦୦୩ ସଂଖ୍ୟାର 'ଦିନ ଥିଲା' ସ୍ତମ୍ଭରେ ମନ୍ତବ୍ୟ ।

## ମଣିଷ ନା ଦେବତା

ସରକାରୀ ଚାକିରି ନ କରି ଦେଶ ପାଇଁ କିଛି କରିବା ଏବଂ ଜନ୍ମବେଳେ ଦେଖିଥିବା ଦେଶକୁ ଆହୁରି ଭଲ ଦେଖି ମରିବାକୁ ସେ ସ୍କୁଲ ଜୀବନରୁ ଗୋପବନ୍ଧୁ ଓ ହରିହରଙ୍କ ସହିତ ଶପଥ କରିଥିଲେ । ପିଲାଦିନୁ ହଇଜା ରୋଗୀଙ୍କର ସେବା କଲେ । ଶବଦାହ ଦଳ ଗଢ଼ିଲେ । ବଢ଼ି, ମରୁଡ଼ି ବେଳେ ନିରାଶ୍ରୟଙ୍କ ପାଖରେ ପହଞ୍ଚିଲେ ।

ମଧୁବାବୁ ଆଖି ମୁଦିବା ପୂର୍ବରୁ କହିଗଲେ—'ସେ ଓଡ଼ିଶାର ସବୁ ବୁଝିବ ।' ୧୯୨୦ ମସିହା, ସେ ଲାଟ ସାହେବଙ୍କୁ ସଙ୍ଗରେ ନେଇ ପୁରୀ ଜିଲ୍ଲା ଦୁର୍ଭିକ୍ଷ ଅଞ୍ଚଳ ଦେଖାଇଦେଲେ । ଲୋକଙ୍କ ପାଇଁ ଯାହା କରିବା କଥା ତାହା କରାଯାଇ ନାହିଁ ବୋଲି ଇଂରେଜ ସରକାରଙ୍କ ହୃଦ୍‌ବୋଧ ହେଲା । ଗୋପବନ୍ଧୁଙ୍କ ପରିକଳ୍ପିତ ସତ୍ୟବାଦୀ ବନ୍ୟ ବିଦ୍ୟାଳୟକୁ ସେ ହିଁ ରୂପ ଦେଇଥିଲେ । ପିଲାଙ୍କ ଭିତରୁ ଜାତିଭେଦ ଉଠାଇ ଦେବାରୁ ଶାସନୀ ବ୍ରାହ୍ମଣମାନେ ତାଙ୍କୁ ଏକ ଘରିକିଆ କଲେ । ସେ ନିଜେ ନିଶ ରଖିଥିବାରୁ ସେମାନେ ତାର ବିରୋଧ କଲେ ।

ସେମାନେ ଭାବିଲେ ସେହି ପାଠଶାଳା ହିଁ ସବୁ ଅନର୍ଥର ମୂଳ । ସେଥିରେ ନିଆଁ ଲଗାଇ ଦେଲେ । ସେ କିନ୍ତୁ ସେଥିରେ ଦବିଲେ ନାହିଁ । ପିଲାଙ୍କୁ ନିଜ ଗୋଡ଼ରେ ଛିଡ଼ା କରାଇ ଭଲ ମଣିଷ ଗଢ଼ିବାରେ ସେ ଲାଗିଥିଲେ । ଖୁବ୍ କମ୍‌ରେ ଯେତିକିରେ ଚଳି ହେବ ସେତିକି ନେଇ ତାଙ୍କ ସମେତ ଶିକ୍ଷକମାନେ ଦାୟିତ୍ୱ ତୁଲାଉଥିଲେ । ଗୁରୁ ଛାତ୍ରମାନଙ୍କ ଭିତରେ ସମ୍ପର୍କ ଥିଲା ନିବିଡ଼ ।

ସେ ଗୋପବନ୍ଧୁଙ୍କ ସାଙ୍ଗରେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ସମ୍ବଲପୁରଠାରେ ଜାତୀୟ ପାଠଶାଳା ବସାଇଲେ । ୧୯୨୩ ମସିହାରେ ପୁଲିସ ତାଙ୍କୁ ହଜାରିବାଗ ଜେଲକୁ ନେଉଥାଏ । ସତ୍ୟବାଦୀ ଷ୍ଟେସନ୍‌ରେ ତାଙ୍କୁ ହରିହର କହିଲେ, 'ତୋ ଝିଅ ମରିଗଲା' । ସେ ପଚାରିଲେ, 'ଔଷଧପତ୍ର...' । ହରିହର କହିଲେ—'ହଁ, ଯାହା ସୁବିଧା ଥିଲା ।' 'ହଉ ଆଉ କ'ଣ କରନ୍ତ ?'

ଏତିକି କହି ପୁଲିସମାନଙ୍କ ସହିତ କଥାବାର୍ତ୍ତା କଲେ । ପୁଲିସବାବୁ ତାଙ୍କ ମୁହଁକୁ ଜଳ ଜଳ କରି ଚାହିଁ କହିଲେ—''ତୁମେ ମଣିଷ ନା ଦେବତା । ଦେଶ ପାଇଁ ଛାତିକୁ ପଥର କରିଦେଇଛ ।''

ରାଜନୀତି କହିଲେ ସେ ବୁଝୁଥିଲେ, ଲୋକଙ୍କ ସେବା । ଶଗଡ଼ରେ ବସି ଦୂରଦୂରାନ୍ତରକୁ ଯାଇ ଲୋକଙ୍କୁ ଭେଟୁଥିଲେ । ଦଳର ଦଳାଦଳି ଭିତରେ ସେ ପଶିଲେ

ନାହିଁ । ଜଗନ୍ନାଥଙ୍କୁ ନେଇ ବ୍ୟବସାୟ ଓ ସାକ୍ଷୀଗୋପାଳଙ୍କ ଉପରେ ପ୍ରଚଳିତ କାହାଣୀର ସେ ବିରୋଧ କରିଥିଲେ ।

ଗୋଦାବରୀଶ ଓ ତାଙ୍କ ଚେଷ୍ଟାରେ ୧୯୪୩ ରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା ।

ଠାକୁରଙ୍କ ପାଇଁ ଥିବା କଦଳୀ ଖାଇ ମା'ଙ୍କୁ ବୁଝାଇଦେଉଥିଲେ—''ତୋ ପାଇଁ ଥିବା କଦଳୀ ଖାଉଥିଲେ ତୁ କ'ଣ ରାଗିଥାନ୍ତୁ ? ଠାକୁରାଣୀ ତ ଆମ ମା' ।''

କିଏ ରାତିରେ ଆସି ତାଙ୍କୁ ନ ପାଇବ, ତେଣୁ ସେ ପିଣ୍ଡାରେ ଶୋଉଥିଲେ । ସେ ହାଁଜୀ କରିବା ଲୋକ ନ ଥିଲେ । ଅନେକ କାବ୍ୟ କବିତା ଲେଖୁଥିଲେ । ଗୀତା, ଭାଗବତ, ଉପନିଷଦ ପଢୁଥିଲେ । ପଦ୍ମଭୂଷଣ ଓ D.Litt ଉପାଧି ପାଇଥିଲେ । ଇଂରେଜ ସରକାରଙ୍କ ନାଇଟ ଉପାଧିକୁ ସେ ପ୍ରତ୍ୟାଖ୍ୟାନ କରିଥିଲେ । ବଡ଼ଲାଟ ଲର୍ଡ଼ ଇରଉଇନ୍‌ଙ୍କୁ ସେ ସାକ୍ଷାତ ଦେଇ ନ ଥିଲେ ।

ବୟାଅଶୀ ବର୍ଷ ବୟସରେ ସେ ଆଖି ବୁଜିଦେଲେ । ପାଖରେ ଥିବା ତାଙ୍କ ହରି ଭାଇନା କାନ୍ଦୁ କାନ୍ଦୁ କହିଲେ—''ମୋ ପାଇଁ ତୋ ପାଖରେ ଖଣ୍ଡେ ଜାଗା ରଖିଥିବୁରେ କଣ୍ଢ ।''

ସେହି ମଣିଷ ପରି ମଣିଷ ଥିଲେ ପଣ୍ଡିତ ନୀଳକଂଠ ଦାସ । ମର୍ତ୍ତ୍ୟ ଦେବତା ।



# ସୂଚୀ

## ପରିଶିଷ୍ଟ (ସ୍ମୃତି ଚାରଣ)

## ଉପସଂହାର





# ଆତ୍ମଜୀବନୀ

## ୧। ନିଜକଥା

ମତେ ନିଜ ଜୀବନକଥା କହିବାକୁ ଅନୁରୋଧ କରାଯାଉଚି; କିନ୍ତୁ ଧାରାବାହିକ ଭାବେ ସେ କଥା କହିପାରିବା ଭଳି ମୋ ପାଖରେ କିଛି ସାମଗ୍ରୀ ନାଇ । ଯେତିକି କଥା ମନେପଡ଼ିବ ତା'ଭିତରୁ କିଛି କହିବି; କିଂତୁ ଦୁଃଖର କଥା ଘଟଣାଗୁଡ଼ିକ ସେତେ ମୋର ମନେ ରହେ ନାଇ । ଭୁଲିଯିବା ମୋର କେବଳ ସ୍ୱଭାବ ନୁହେଁ—ବରଂ ତା' ମୋର ଗୋଟିଏ ସାଧନା । ଘଟଣା ଭୁଲି ନ ଗଲେ ସ୍ମୃତିରେ ପରିସ୍ଥିତି ବେଳେ ବେଳେ ଅସହ୍ୟ ହୁଏ । ଏ କଥା ଜାଣି ମୁଁ ଭୁଲିବାକୁ ଚେଷ୍ଟା କରେ । ସେଥିରେ ମୁଁ କୃତକାର୍ଯ୍ୟ ହୋଇଚି; ଲାଭ ବି ପାଇଚି । ବେଳେ ବେଳେ ଅନ୍ୟମାନେ ବିଗତ ଘଟଣାସବୁ ମୋର ମନେପକାଇ ଦିଅଂତି । ମୁଁ ବିସ୍ମିତ ହୁଏ । ବେଳେ ବେଳେ ବି ବୁଝିପାରେ ସେପରି ଭୁଲି ଯାଇଥିବାରୁ ମୋର କିଛି ହୋଇନାଇ—ବରଂ ମଂଗଳ ହୋଇଚି । ବୋଧହୁଏ, ଏଇକଥା ବୁଝିପାରି ଆମର ପୂର୍ବ-ସୂରୀମାନେ ସ୍ମୃତିରକ୍ଷାର ବିରୋଧୀ ଥିଲେ । ଇତିହାସର ସ୍ୱାଭାବିକ ଓ ଚିରଂତନ ବିକାଶକୁ ସେମାନେ ପସଂଦ କରୁଥିଲେ । ଏ ଦେଶରେ କେତେ କୀର୍ତ୍ତି ଅଛି । କାହିଁରେ କାହାରି ସ୍ମୃତି ଫଳକ ନାଇ । କିଂତୁ ସଭ୍ୟତା ଓ ସାହିତ୍ୟ ବିକାଶରେ ସମସ୍ତେ ସାହାଯ୍ୟ କରିଚଂତି । ସଭ୍ୟତାର ଏଇପରି ବିକାଶ ଭାରତର ରୀତି—ଏହା ଭାରତୀୟ ।

ତଥାପି ଯାହା ଯେତେବେଳେ ମନେ ପଡୁଚି କହିବି । ଭଲମଂଦର ବିଚାର ନକରି କହିବି । ଶୃଂଖଳିତ ଭାବରେ କିଛି କହିପାରିବି ନାଇ । ତଥାପି ଚେଷ୍ଟା କରିବି ।

## ୨। ମୋର ଜନ୍ମକଥା

ପୁତ୍ରକାମୀ ହୋଇ ପୁଅ ପାଇବା ଭାରତର ଗୋଟିଏ ବିଶେଷ ସାଧନା । ମୋର ପିତାଂକର ଜନ୍ମ ୧୮୩୯ ଖ୍ରୀ. ଅ.ରେ । ମାତାଂକର ଜନ୍ମ ୧୮୪୮ । ମୋର ଜନ୍ମ ୧୮୮୪ ଅଗଷ୍ଟ ୫ତାରିଖ (ଭାଦ୍ରବ ଶୁକ୍ଳ ଚତୁର୍ଦ୍ଦଶୀ ଗହ୍ମାପୂର୍ଣ୍ଣମୀ ପୂର୍ବଦିନ) । ମୋର ଜନ୍ମ ହେଉଚି ଅଷ୍ଟମଗର୍ଭ । ଏକପ୍ରକାର ପିତାମାତାଂକର ପରିଣତ ବୟସରେ । ମୁଁ ତାଂକର ଏକମାତ୍ର ପୁତ୍ର । ସେମାନେ ପୁଅ ପାଇବା ପାଇଁ କଠିନ ସାଧନା ଓ ଦେବୋପାସନା କରିଥିଲେ । ସେ ଦେବତାଂକ ନାମ ନୀଳକଂଠ । ସେଥିପାଇଁ ମୋର ନାମ ନୀଳକଂଠ ରଖିଥିଲେ । ନନା ମୋର ପିଲାଦିନୁ କଡ଼ା । ପିତାଂକର ଏକାଂତ ଇଚ୍ଛା ମୁଁ କିପରି ଭଲ ମନୁଷ୍ୟ ହେବି । ପାଠପଢ଼ି ପଂଡିତ ହେବି । ଆମ ଘର ପୂର୍ବରୁ ଥିଲା ବଡ଼ ପଂଡିତ ଘର । ମୁକୁଂଦ ଦାସେ ବୋଲି ପୂର୍ବେ ବଂଶରେ ଜଣେ ବଡ଼ ରକମର ପୌରାଣିକ ପଂଡିତ ଥିଲେ ।

ନନା ପିଲାଦିନୁ ପିତୃହୀନ । ସେ କହଂତି ୧୧କ କଡ଼ାଗଂଡ଼ା ପର୍ଯ୍ୟନ୍ତ ସେ ପାଠ ପଢ଼ିଥିଲେ । ସେତିକିବେଳେ ବାପାଂକ(ପିତାମହ) କରଜରେ ଜମିବାଡ଼ି ସବୁ ନିଲାମ ହୋଇ

ଯାଇଥିଲା । ପିତାମହ ଥିଲେ ପ୍ରଥମ ଇଂରେଜ ଅମଳରେ ତହସିଲ୍‌ଦାର । ସେତେବେଳେ ରାଜକର୍ମଚାରୀମାନେ ବୁଲି ବୁଲି ମଫସଲରେ ଲୋକ ବାଛି ତହସିଲଦାର କରିଦେଇ ଆସୁଥିଲେ । ମରହଟ୍ଟା ଅମଳରେ ଲୋକେ ନିୟମିତ ସମୟରେ ଖଜଣା ଦେବା କଥା ଜାଣି ନ ଥିଲେ । ସେଥିପାଇଁ ଆମ ବାପା (ପିତାମହ) ଆଗରୁ କରଜ କରି ଖଜଣାଟଂକା ଦାଖଲ କରି ଦେଉଥିଲେ ପରେ ଆଦାୟ କରି କରଜ ଭରିଣାକୁ ମହାଜନକୁ ଦେଉଥିଲେ । ହଠାତ୍ ୧୮୪୮ରେ ୨୮ ବର୍ଷ ବୟସରେ ହଇଜାରେ ତାଂକର କାଳ ହୋଇଗଲା । ସେ ବର୍ଷର କରଜ ସୁଝା ହୋଇ ନ ଥିଲା । ନନା, ଜକେଇ ଦୁହେଁ ଅତି ପିଲା ହୋଇଥିଲେ । ମା'(ଜେଜେମା) ସେତେବେଳକୁ ପିଲାବୋହୂ । ଦୁଇ ଚାରିବର୍ଷ ଭିତରେ ସବୁ ସଂପତ୍ତି ନିଲାମ ହୋଇଗଲା । ନିଃସ୍ୱ ପରିବାରକୁ ମା' କିପରି ସଂଭାଳିଥିଲେ ତା' କେବଳ ଅନୁମାନ କରାଯାଇ ପାରେ । ୧୯୦୬ ପର୍ଯ୍ୟନ୍ତ ମା' ବଂଚିଥିଲେ । ସେତେବେଳକୁ ଅବସ୍ଥା ସେତେ ଖରାପ ନ ଥାଏ; ତଥାପି ଅଭ୍ୟାସ ହେତୁରୁ ରାତିଦିନ ମା' ସବୁବେଳେ ସୂତା କାଟୁଥିବାର ମୁଁ ଦେଖିଚି । ସେତିକି ନୁହେଁ ଆମ ମା' ବରାବର ପେଜ ଖାଆଂତି । ଅନ୍ତତଃ ସକାଳୁ ଥରେ ଖାଆଂତି । ଯେତେ ମନାକଲେ ଶୁଣଂତି ନାଇ । ବୋଧହୁଏ, ଅଭ୍ୟାସ ଛାଡ଼ି ପାରି ନ ଥିଲେ ।

ନନା ପାରିଗଲାରୁ ଧନୀଘରେ ବିଭା ହେଲେ । ସେତେବେଳେ ହିସାବରେ ଜାତି ବିକିଲେ । ସେଥିପାଇଁ ଗ୍ୟାତି ଭାଇମାନେ ବଡ଼ ଘୃଣା କରୁଥିଲେ ଓ ନନାଂକ ସଂଗେ ବହୁଦିନ ଖାଇବା ପିଇବା ଆଦି ସାମାଜିକ ସଂପର୍କ ବଂଦ କରି ଦେଇଥିଲେ । ତଥାପି ବଂଶ ସ୍ମୃତିରେ ଜାଗ୍ରତ ରହି ନନା ଅତି ଦାରିଦ୍ର୍ୟର ପ୍ରତିକାର କରିବା ପାଇଁ ସବୁବେଳେ ବ୍ୟସ୍ତ ଥାଂତି । ସେତେବେଳେ ଆମ ଶାସନମାନଂକରେ ବ୍ରାହ୍ମଣେ ନିଜେ ଚାଷ କାର୍ଯ୍ୟ କରୁ ନ ଥିଲେ କିଂବା ସାକ୍ଷାତ ଭାବରେ କରାଉ ନ ଥିଲେ । ପୂର୍ବେ ରାଜାମାନେ ଶାସନ ବସାଇଲା ବେଳେ ଭୂମିଦାନ ଦେଇ ସେହି ଭୂମି ଚାଷ କରି ବ୍ରାହ୍ମଣମାନଂକୁ ଭାଗ ଦେବାପାଇଁ ବିଲ ମଧରେ ସ୍ଥାନେ ସ୍ଥାନେ ଚଷାଂକ ଗାଁମାନ ବସାଇ ଦେଇଥିଲେ । ଏଇପରି ପ୍ରତ୍ୟେକ ଦାନଭାଗ ଥିଲା ପ୍ରାୟ ୨୦ ଏକର । ପ୍ରାୟ ୧୭ ଏକର ଧାନ ଜମି ଓ ୩ ଏକର ବଗିଚା । ଏଇପରି ଆମ ଗାଁ ଶ୍ରୀରାମଚଂଦ୍ରପୁର ୧୦୮ ଭାଗରେ ଦାନ ଦିଆଯାଇଥିଲା । ପ୍ରତ୍ୟେକ ଲୋକଂକୁ ଘରତୋଳି 'ବିପୁଳ ଭାଗ' ଦିଆଯାଇଥିଲା । ସେଥିପାଇଁ ୧୨ ପଡ଼ା ବା ୧୨ଟି ଚଷା ଗାଁ ରଖା ହୋଇଥିଲା ।

ମାତ୍ର ଆମ ନନା ନିଜେ ଲୋକବାକ ସଂଗ୍ରହ କରି ସାକ୍ଷାତ ଭାବରେ ଚାଷ ଆରଂଭ କଲେ । ପାଖରେ ନିଜର ଜମି ନ ଥିଲା—ଚାଷକୁ ଜମି ବି ମିଳିବାର ନ ଥିଲା । ସେଥିପାଇଁ ସେ ପୁରୀପାଖ ସରହ୍ରଦରେ ଖରାଦିନେ ଥରେ ଦାଲୁଅ ପକାଇବାକୁ ଯାଉଥିଲେ । ଦାଲୁଅ ଚାଷରେ ଆଗ ପାଣି ବୁହାଇ ଶୁଖାଇବାକୁ ହୁଏ । ସେଥିପାଇଁ ଦିନେ ଗାଁ ଦାଂଡ଼ରେ ଆଗେ ଆଗେ ମୂଲିଆଂକ ହାତରେ ଗୋଟିଏ ଜଂନ୍ତ ଧରାଇ ନନା ଦାଲୁଅ ପାଟକୁ ଯାଉଚଂତି, ଗ୍ରାମର ଜଣେ ସମ୍ମାନିତ ବୃଦ୍ଧ ଟିକିଏ ରହସ୍ୟ କରି ଡାକିକରି କହିଲେ, "କି ହେ, ଏ କ'ଣ ମୁକୁଂଦ ଦାସଂକ ପୁରାଣପୋଥି ବାହାରିଲା ପରା ?" ନନା କହୁଥିଲେ, ସେଦିନ ସେ ସଂଗେ ସଂଗେ ସେଇଠାରୁ ଫେରିଆସିଲେ । ରାତିରେ ବହୁତ କାଂଦିଲେ । ନିଜେ ପାଠ ପଢ଼ିବାକୁ ଆଉ କାଳ ନ ଥିଲା । ମହାପ୍ରଭୁଂକୁ ଡାକି କହିଲେ, "ମହାପ୍ରଭୁ ! ମୋତେ ଏପରି ଗୋଟିଏ ପୁଅ

ଦିଅ, ଯେ କି ପାଠପଢ଼ି ବଂଶର ମର୍ଯ୍ୟାଦା ରଖିବ ।'' ସେଇ ଦିନଠାରୁ ଥରକୁଥର ଝିଅ ଜନ୍ମ ହେଲେ ମଧ୍ୟ ସେ ପୁତ୍ରକାମୀ ହୋଇ ବରାବର ଦେବତାଂକୁ ଭଜୁଥାଂତି ।

ମୋତେ ସେତେବେଳେ ମାତ୍ର ପାଂଚବର୍ଷ ପୂରିଯାଇଚି । ସେ କାଳର ରୀତି ଅନୁସାରେ ନନା ପ୍ରତିଦିନ ସନ୍ଧ୍ୟାପୂର୍ବରୁ ଟିକିଏ ଭାଂଗ ଘୋଟି ପିଉଥିଲେ । ଦିନେ ମୁଁ ଯାଇ ପାଖରେ ବସି କହିଲି, ''ନନା ମୁଁ ପିଇବି ।'' ସେ ଆପେ ପିଇସାରି ଖାଲି କୁଂଡ଼ିଟା ଧୋଇ ମୋତେ ଟିକିଏ ପିଇବାକୁ ଦେଲେ । ରାଗ ରାଗ ଲାଗିଲା, ମୁଁ ପିଇଦେଇ ଭାରି ଖୁସିହେଲି । ତହିଁ ଆରଦିନ ଠିକ୍‌ବେଳେକୁ ପୁଣି ଯାଇ ବସିଲି । କହିଲି, ''ନନା ମୁଁ ଖାଇବି ।'' ଆଜି ମଧ୍ୟ ମୋର ସେ ଚିତ୍ର ମନେ ପଡ଼ୁଚି । ନନା ଟିକିଏ ଚିଂତିତ ହୋଇ ବସିଗଲେ । ତଳସହାଲା ଘରୁ ବୋଉକୁ ଡାକିଲେ । ବୋଉ ଆସିଲାରୁ କୁଂଡ଼ି ବାଡ଼ି ଗଂଜେଇ ମସଲାଥିବା ବଟୁଆ ସବୁ ତାକୁ ଦେଇ କହିଲେ, ''ତୁ ଯାକୁ ନେ, ଫିଂଗିଦେ, ନଇଲେ ଯାହା କର, ମୁଁ ଆଉ ଭାଂଗ ଖାଇଲେ ପୁଅ ପାଇବି ନାଇ । ଏ ଭାଂଗଡ଼ି ହୋଇଯିବ ।'' ଏ ପ୍ରାୟ ନନାଙ୍କ ତେପନ ବରଷ ବେଳର କଥା । ସେ ଅଣାନବେ ବରଷରେ ୧୯୨୮ରେ ମଲେ; ମାତ୍ର ସେଇଦିନଠାରୁ ସେ ଭାଂଗ ଆଉ କେବେ ସ୍ପର୍ଶ କରିନାହାନ୍ତି ।

ତାଂକ ଉଭର ବୟସର ଆଉ ଗୋଟିଏ କଥା ମଧ୍ୟ ଏଠାରେ କହେଁ । ବାଅାସ୍ତରି ବର୍ଷରେ ତାଂକର ଭୀଷଣ କଫକାଶ ଓ ଜ୍ୱର ହେଲା । ମୁଁ କଲିକତାରେ ଏମ୍. ଏ. ପଢୁଥାଏ । ମୋ ପାଖକୁ ଖବର ଗଲା । ମୁଁ ଚ୍ୟବନପ୍ରାସ, ମକରଧ୍ୱଜ ପ୍ରଭୃତି ଔଷଧ ଘେନି ଆସି ଘରେ ପହଂଚିଲି । ଦେଖିଲି ନନାଙ୍କ ଅବସ୍ଥା ଅତି ଖରାପ, ଜ୍ୱର ବରାବର ଅଛି । ସେ କାଶି କାଶି ରାତିରେ ଆଦୌ ଶୋଇ ପାରୁ ନାହାଂତି । ମୋ ମନେହେଲା ସେ ନିଶ୍ଚୟ ମରିଯିବେ । ମୁଁ ଔଷଧ ସବୁ ଆଣି ତାଂକ ଆଗେ ଅନୁପାନ ଓ ଔଷଧ ଖାଇବାର ବ୍ୟବସ୍ଥା କରି ବସିଲି । ସେତିକିବେଳେ ସେ ବହୁ କଷ୍ଟରେ କହିଲେ, ''ସେସବୁ ଔଷଧ କଥା ଥାଉ । ଗୋଟିଏ କଥା ଶୁଣ୍ଣୁ, ତତେ କହିବି ବୋଲି ଚାହିଁ ବସିଥିଲି ।'' ଏହା କହି ଗୋଟିଏ ଶୁଖିଲା ପତ୍ରରେ ମୋଡ଼ା ହୋଇ ରହିଥିବା ଅଫିମ ଟିକିଏ କାଢ଼ି ମୋ ଆଗେ ଥୋଇଲେ । କହିଲେ, ''ଆର୍ତ (ପଂଡିତ ଆର୍ତତ୍ରାଣ ଦାସ—ତାଂକର ବୟସ୍କ ପୁତୁରା) କଂଠ ମିଶ୍ରେ (ଆମ ପଡ଼ିଶା ଘର—ତାଂକର ଜଣେ ଯୌବନର ସାଂଗ—ସେ ଥିଲେ ନିଜେ ଅଫିମା) ଦିହେଁ ମୋତେ ବହୁତ ବଳାଇଲେ । କହିଲେ ଅଫିମ ଖାଅ । କାଶ ବଂଦ ହୋଇଯିବ, ନିଦ ଲାଗିବ । ଚାରି ପଇସାର ଅଫିମ ଆଣିଦେଲେ । ସେଦିନ ରାତିରେ ଟିକିଏ ଖାଇ ନିଶା ଥିବାତକ କାଶ ଟିକିଏ ବଂଦ ହେଲା । ନିଦ ଲାଗିଲା । ନିଶା ଛାଡ଼ିଲାରୁ ପୁଣି ଯେଉଁ କଥାକୁ ସେଇ କଥା । ବିଚାରିଲି ବରାବର ଖାଇଲେ ହୁଏତ ଟିକିଏ ଉଶ୍ୱାସ ଲାଗିବ । ପୁଣି ବିଚାରିଲି ପୁଅ ପାରିଗଲାଣି । ମୋତେ ୭୨ ବର୍ଷ ହେଲାଣି । ମନୁଷ୍ୟ ଆଉ କେତେକାଳ ବା ବଂଚେ । ମଲାବେଳେକୁ ବିଷଗୁଡ଼ାକ ଖାଇ କଳଂକ ରଖିଯିବି । ତୋ ପାଇଁ ଯାକୁ ରଖିଚି । ତୁ ଯାକୁ ନେଇ ଆଗ ଫିଂଗିଦେ । ତା'ପରେ ଔଷଧ କଥା ବୁଝିବୁ ।'' ମୋର ସେତେବେଳେ ମନରେ ଯାହା ହେଲା କହିବା ଦରକାର ନାଇ । ମୁଁ ଆଗ ଅଫିମ ନେଇ ଫିଂଗିଦେଲି, ତା'ପରେ ଔଷଧ ବ୍ୟବସ୍ଥା କଲି । ସେଥିରେ ତାଂକର ଆରୋଗ୍ୟ ହୋଇଗଲା ।

## ୩। ମୋ ପିଲାଦିନର କେତୋଟି ଘଟଣା

ସେକାଳେ ପିଲାଦିନେ ମରିଯିବା ହିଁ ଥିଲା ପ୍ରାୟ ସାଧାରଣ କଥା । ଚିକିତ୍ସାର ବିଶେଷ ବ୍ୟବସ୍ଥା ନ ଥିଲା । ପିଲାଏ ପ୍ରାୟ କୃମି ରୋଗରେ ବେଶି ମରୁଥିଲେ । ଗାଁ'କୁ ଗାଁ ବଇଦ ଥାଂତି; କିଂତୁ ସମସ୍ତେ ବଇଦ ଡାକଂତି ନାଇ । ଜାଣିବା ବଇଦ ବି କ୍ରମେ ସରି ଆସୁଥିଲେ; କିଂତୁ ଆମ ଘରକୁ ନନା ତାଂକୁ ବରାବର ଡାକଂତି । ସେ ବି ପାଠ ଜାଣୁଥିଲେ । ରୋଗ ଭଲ କରୁଥିଲେ । ତାଂକ ନାଁ ଭଗୀ କରେ । ଶିଶୁ ରୋଗୀମାନଂକ ପ୍ରତି ତାଂକ ପରି ଆଦର କରିବା ଲୋକ ମୁଁ ଅଳ୍ପ ଦେଖିଚି । ସେ ଅନୁପାନରେ ବ୍ୟବସ୍ଥା ଦିଅଂତି । ବଟିକା ଦିଅଂତି । ମୋ ବୋଉ ଭାରି ସାବଧାନ । ସବୁବେଳେ ବୁଝେ ବହୁତ କରି ଅନୁପାନ ଦେଲେ ରୋଗ ଛାଡ଼ି ପଳାଇବ । ଏଠାରେ ଛ'ମାଣ ଆଠଗୁଂଠରୁ ରାମଚଂଦ୍ର ମଂଗରାଜଂକ ଶେଷ ଚିକିତ୍ସାରେ ଫକୀରମୋହନ ଲେଖିଥିବା କଥାଟି ଏବେ ମୋ ମନେ ପଡ଼ିଯାଉଚି । ''ଅନୁପାନ ବିଶେଷେଣ କରୋତି ବିବିଧାନ୍ ଗୁଣାନ୍''; ରାମଚଂଦ୍ର ମଂଗରାଜଂକ ବଇଦ ମୁହଁରେ କବି ଏହାର ଅର୍ଥ କରାଇଚଂତି, ଅନୁପାନ ବିଶେଷ କରିଦେଲେ ବିଧା ମାଇଲାପରି ଗୁଣ ହୁଏ । ମୋ ମନେହୁଏ ମୋରି ବୋଉଭଳି ଲୋକଙ୍କର ମତ କବି ଫକୀରମୋହନ ଜାଣି ଏପରି ଅର୍ଥ କରିଥିଲେ ।

ଥରେ ମନେ ଅଛି ମୋର ଭାରି କଫ ହୋଇଥାଏ । ଭଗୀ କରେ ବଟିକାଟିଏ ଦେଇ ଅନୁପାନର ବ୍ୟବସ୍ଥା କଲେ, ''ଅସରପା ସିଝାଇ ସେଇ ପାଣିରୁ ଟିକକରେ ଏ ବଟିକାଟି ଦେବ ।'' ଅବଶ୍ୟ ଏଇ ଅସରପାରୁ ଏବେ ବାହାରିଚି Blata Orientalis । ବିଶେଷତଃ ହୋମିଓପାଥିରେ ଏହା କଫ ଓ ଗୋଟିଏ ପ୍ରକାର ଶ୍ୱାସର ଅବ୍ୟର୍ଥ ଔଷଧ ବୋଲି ଶୁଣାଯାଏ । ଏଲୋପାଥିରେ ହୁଏତ ସେଇଆ ହୋଇଥିବ; ତେଣୁ ଭଗୀ କରଂକ ଏ ବ୍ୟବସ୍ଥାଟାର ଅର୍ଥ ମୁଁ ଏବେ ବୁଝିପାରୁଚି, କିଂତୁ ବୋଉ ଯାହା କଲା ସେ ବଡ଼ ବିଚିତ୍ର । ମୁଁ ଛୋଟ ତିନି ଚାରିବର୍ଷର ପିଲାଟିଏ, ବୋଉ ପାଖେ ପାଖେ ଥାଏ । ସବୁ ଦେଖିଚି । ବୋଉ ଭଗୀ କରଂକ କଥା ଶୁଣି ଚାଲିଗଲା ହାଂଡ଼ିଶାଳ 'ତେଂଗଡ଼ା' ପାଖକୁ । ଶହ ଶହ କାହିଁକି, ହଜାର ହଜାର ଅସରପାଙ୍କ ସେନା ସେଠାରେ ସଜାଡ଼ି ହୋଇ ଥାଆଂତି ବୋଲି କହିଲେ ଚଳେ । ସେହିଠାରୁ ଉଘାଡ୍ (ସଂଘା) ପର୍ଯ୍ୟନ୍ତ ସେହି ସେନାଂକ ସଜ୍ଜିତ ଶ୍ରେଣୀ ଭିତରେ ବୋଉ ଛିଡ଼ା ହୋଇଗଲା— 'ତେଂଗଡ଼ା'ରୁ ଆଉ ଘରକୁ ହାଂଡ଼ି କାଢ଼ିଦେଇ ଗୋଟାଏ ଛାଂଚୁଣିରେ ଥରକେ ପ୍ରାୟ ଦଶଗଂଡ଼ା ହେବ ଅନାୟାସରେ ହତ୍ୟା କଲା । ତାକୁ ଗୋଟାଏ ବାଉଁଶିଆରେ ଆଣି ଆଟିକାରେ ବସାଇ ସିଝାଇ ଦେଲା । ତା' ଉତ୍ତାରୁ ଗୋଟିଏ ବଡ଼ ଥାଳିଆରେ ତାକୁ କାଢ଼ି ଚକଟିକରି ଛାଣିଦେଲା । ଚକଟିକରି ଛାଣିବା ପୂର୍ବରୁ ବହୁ ଚେଷ୍ଟା କରି ବହୁତ କଥଁଳେଇ ସଥଁଳେଇ ମୋତେ ପଡ଼ିଶାଘରେ ଛାଡ଼ିଦେଇ ଅଇଲା । ତା'ପରେ ସେଇ ପାଣିରୁ ପ୍ରାୟ ଅଧ ଗିନାଏ ହେବ ବାହାର କରି ବଟିକାକୁ ଘୋରି ସେଥିରେ ପକାଇ ମହୁ ପିପ୍‌ପଳି ପରୀକ୍ଷ କରିଦେଲା । ତା'ପରେ ମୋତେ ଆଣି ପିଇବାକୁ ଦେଲା । ମୁଁ ନାଇ କରିବାରୁ ସେ ବୋଧହୁଏ ବିଶ୍ୱାସ ଜନ୍ମାଇ ଦେଇଥିଲା, ଏ ପାଣି ସେ ଅସରପା ପାଣି ନୁହେଁ । ପରେ ମୁଁ ବୁଝିପାରିଲି ସେଇ ଅସରପା ପାଣିରେ ମୋତେ ଔଷଧ ଦିଆ ହୋଇଥିଲା । ଏଇପରି କେତେଦିନ ଚାଲିଥିବ ମୋ ମନେ ନାଇ ।

ଆଉ ଥରେ ସେଇ ଭଗୀ କରଂକ କଥାରେ ଛିଆନାଡ଼ ସିଝାଇ ବୋଉ ମୋତେ ସେଇପରି ଔଷଧ ଦେବାର ମୋର ମନେ ଅଛି । ସେଥର ବୋଧହୁଏ କୁରୁମୀ ରୋଗ ।

କୌଣସି ମତେ ରୋଗ ଭଲ ନ ହେବାର ଦେଖି ଭଗୀ ଜରେ ଆସି ନନାଂକୁ କହିଲେ, "ଗଗନବାବୁ ଏବେ ପୁରୀକି ଡାକ୍ତର ହୋଇ ଆସିଚଂତି । ଦୋକାନ କରିଚଂତି (ପରେ ଜାଣିଲି ସେ ସେକାଳେ କଟକ ଡାକ୍ତରୀ ସ୍କୁଲରୁ ପଢ଼ିକରି ଯାଇଥିଲେ, ପାଶ୍ କରିଥିଲେ କି ନାଇ କହି ପାରୁନାଇ) । ସେ ପୁଡ଼ାକୁ ଟଂକା ଲେଖାଏଁ ନେଇ କ'ଣ ଗୋଟାଏ ଡାକ୍ତରୀ ଧଳାଚୂନା ଦେଉଚଂତି । ସେଥିରେ ସବୁ କାଚୂଟୀ (Roundworms) ପଡ଼ିଯାଉଚି । ନନା ଏହା ଶୁଣି କୁଆଡୁ ଟଂକାଟାଏ ସଂଗ୍ରହ କରି ଦୌଡ଼ିଲେ ପୁରୀ । ସେତେବେଳକୁ ମୋତେ ଛଅବର୍ଷ ଚାଲିଥାଏ । ମନେଅଛି, ସେଇଦିନ ସନ୍ଧ୍ୟାବେଳକୁ ନନା ଚାରିପାନ ଔଷଧ ଘେନି ଫେରି ଆସିଲେ । ତହିଁ ଆରଦିନ ସକାଳୁ ପାନେ ଖାଇଦେବା ପରେ ପେଟରୁ ପ୍ରାୟ କୋଡ଼ିଏଟା କାଚୂଟୀ ପଡ଼ିଗଲେ । ମୋର ଜର ଛାଡ଼ିଗଲା । ମୁଁ ଭଲ ହୋଇଗଲି । ବହୁପରେ ଜାଣିଲି ସେ ନୂଆ ଔଷଧଟି ହେଉଚି କାଲୋମେଲ (Chalomel) ମିଶା ସାଂଟୋନାଇନ (Santonine) ।

## ୪। କିରୋସିନି

ପିଲାଦିନ କଥା କହୁଥିଲି । ଆମେ ସବୁ ଚାହାଳିରେ ରାତି ପଢ଼ା କରୁଥିଲୁ । ୩/୪ ଜଣ ଏକାଠି ବସି ପଢୁ । ହପ୍ତାକେ ତେଲ ପାଇଁ ପଇସାଟିଏ ଲେଖାଏଁ ଦେଉ । ଶୁଣାଗଲା କିରୋସିନି ବୋଲି ଗୋଟାଏ ଜିନିଷ କ'ଣ ଆସିଚି । ସେ ଭାରି ଦୁର୍ଗଂଧ ହେଲେ କଣ ହେବ, ବଡ଼ ଶସ୍ତା । ପଇସାକର କିଣିଲେ ସାତଦିନ ଚଳିଯିବ । ନାହାକେ (ଅବଧାନେ) କହିଲେ ଆମେ କିରୋସିନି ଆଣିବା ।

ଆମର ତ କିଛି ଦିଅଂକ ଘର ନାଇ । ଗୃହସ୍ଥର ଦିଅଂକ ଘରେ ଏବେ ବି ଡିବିରେ କିରୋସିନି ଜଳେ ନାଇ (ଲଂଠନ ସେତେବେଳେ ଦେଖା ନ ଥିଲା) । ମନେଅଛି, ଦିନେ ନାହାକେ ଗୋଟିଏ କଳାବୋତଲରେ କିରୋସିନି ଆଣି ଥୋଇଦେଲେ । ସେ ବୋତଲର ଠିପି ହୋଇଥାଏ ଗୋଟିଏ ପତ୍ର କାହାଳି । ନାହାକେ ନଥିଲାବେଳେ ଆମେ ଯାଇ ପତ୍ର କାଢ଼ି ସମସ୍ତେ କିରୋସିନି ଶୁଂଘିଲୁ । କିଏ ଶୁଂଘିଦେଇ ପାଟି କରି ପଳାଇଲା । କାହାକୁ ବାଂତି ମାଡ଼ିଲା । ମୋର କିଂତୁ କିଛି ହୋଇ ନ ଥିଲା ।

## ୫। ଚାହାଳି

ଚାହାଳିରେ ପଢ଼ିବା ଏବେ ଆଉ ନାଇ, କିଂତୁ ସେ ଗୋଟିଏ ସ୍ୱତନ୍ତ୍ର ପଢ଼ିବା ଓ ପଢ଼ାଇବା ରୀତି । ବଡ଼ି ସକାଳୁ ରାତି ନ ପାଉଣୁ ପିଲାଏ ଉଠି ସଂଗେ ସଂଗେ ଯାଇ ଚାହାଳିରେ ପହଂଚିବେ । ବାଦଉଦିଆ ଲାଗିଥାଏ, କିଏ ଶୂନ ହେବ ଆଉ କିଏ ଆଗରୁ ପହଂଚିବ । ଚାହାଳି ସକାଳଓଳି ଛୁଟୀ ହେବା ବେଳକୁ ସମସ୍ତେ ଛିଡ଼ା ହୁଅଂତି, ଆଗ ପଛ ଆସିବା ଅନୁସାରେ ଧାଡ଼ିକରି, ନାହାକେ ଯେ ସ୍ୱଭା ଆଗ ଆସିଥାଏ, ତା'ହାତେ ବେତକୁ ଟିକିଏ ଗେଂଜିଲା ପରି ଛୁଆଁଇ ଦିଅନ୍ତି । ସେ ହେଲା ଶୂନ । ତା'ପରେ ଏକକୁ ବାଡ଼ିଏ, ଦୁଇକୁ ଦି'ବାଡ଼ି ଏଇକ୍ରମରେ କ୍ରମେ ସଂଖ୍ୟା ଯେପରି ବଢୁଥାଏ, ବାଡ଼େଇବାର ତୀବ୍ରତା ମଧ ସେଇପରି ବଢ଼ି ଚାଲିଥାଏ ।

ପିଲାଏ ଦୁଇହାତର ପାପୁଲି ଯୋଡ଼ିକରି ଦେଖାଇଥା'ନ୍ତି । କ୍ରମେ ଶେଷଆଡ଼କୁ ପିଲାଙ୍କର ଅବସ୍ଥା କହିଲେ ନ'ସରେ । ଉପରଓଳି ପିଲାଏ ଖାଇପିଇ ସାରି ପୁଣି ଆସନ୍ତି, ସନ୍ଧ୍ୟାକୁ ପୁଣି ସେହିପରି ଶୂନ ଏକ ଦିଆହୁଏ । ଏଇ ହେଲା ଉପସ୍ଥାନର ନିୟମ । ସେଥିରେ ସମୟାନୁବର୍ତ୍ତିତା ଜଣାଯାଏ ।

ସକାଳ ଓଳିଯାକ ପିଲାଏ ଖଡ଼ିଧରି ପଢ଼ନ୍ତି ଅ-ଆ, ପ୍ରଭୃତି ଅକ୍ଷର ଆବୃତି କରିବାଠାରୁ ପର୍ବତିଆ ହରିଗୁଣ ଓ ପର୍ବତିଆ 'ହରଣ ଗୁଣାଣ ଓ ଶୋଧ୍ ଓଡ଼ାଂକ ପର୍ଯ୍ୟନ୍ତ । ସମସ୍ତେ ମୂଳରୁ ଥରେ ଆବୃତ୍ତି କରି ଯାଆନ୍ତି । ଆବୃତ୍ତି କଲାବେଳେ ଲେଖୁଥା'ନ୍ତି ଓ ପାଟି କରୁଥା'ନ୍ତି । ମନେଅଛି ସକାଳୁ ନାହାକେ ପିଲାଏ ପାଠ ଆବୃତ୍ତି ଆରମ୍ଭ କରିବାରେ ନିଜର ନିତ୍ୟକର୍ମ କରିବା ପାଇଁ ବଡ଼ପୋଖରୀ ଆଡ଼କୁ ଚାଲିଯାଆନ୍ତି । ପିଲାଏ ଆପଣା ଭିତରେ ବିଚାର କରି ବଡ଼ ଚାଟକୁ ନାହାକେ ଆସିବା ବାଟକୁ ଚାହିଁ ରହିବା ପାଇଁ ଜଗାଇ ଦେଇ ନିଶ୍ଚିନ୍ତରେ ଖେଳ କୌତୁକ ଲଗାଇ ଦିଅନ୍ତି । ବଡ଼ଚାଟେ ନାହାକେ ଆସୁଛନ୍ତି ବୋଲି ଜଣାଇଦେଲେ ସମସ୍ତେ ନିଜ ନିଜ ଖଂଦା ବା ଖଡ଼ିଗାରରେ ଚିହ୍ନିତ ନିଜ ନିଜ ପଢ଼ାସ୍ଥାନରେ ଯାଇ ପାଠ ଆବୃତ୍ତି କରି ବସନ୍ତି । ନାହାକଙ୍କର କିନ୍ତୁ କାମ ହେଉଚି, ସେ ଆସି ପହଂଚି ଗଲାମାତ୍ରେ, କିରେ କ'ଣ ପାଟି ଶୁଭୁନାହିଁକି, ବୋଲି ଆଗ କିଛି ବାଛବିଚାର ନକରି ସମସ୍ତଂକ ପିଚାରେ କସିକରି ବାଡ଼ିଏ ଲେଖାଏଁ ପିଟିଦେଇ ଯାଆନ୍ତି । ପିଲାମାନେ ଉଚ୍ଚ କାଂଦରୋଳ ସଂଗେ ନିଜର ଆବୃତ୍ତିକୁ ମିଶାଇ ଯେ କାଂଡ଼ କରନ୍ତି, ତାହା ବର୍ଣ୍ଣନାରେ କହି ହେବ ନାଇ, ଖାଲି ବଡ଼ଚାଟେ ସେ ବାଡ଼ିକ ପାଆନ୍ତି ନାଇ । ବଡ଼ଚାଟ ହେଉଚି ସେହି ଜଣକ ଯାହାର ପଢ଼ା ସବୁଠାରୁ ବେଶି, ଆଉ ଯେ ନାହାକେ ଅନୁପସ୍ଥିତ ଥିଲାବେଳେ, ବା ଅନୁପସ୍ଥିତ ଥିଲାଦିନ, କାମ ଚଳାଇନିଏ— ପିଲାଂକ ନୂଆପାଠ 'ସଂଥ' ଦିଏ ଓ ପିଲାଂକଠାରୁ ପୁରୁଣା ପାଠ ଆଦାୟ କରେ ।

ଚାହାଳିର ସାଧାରଣ ନିୟମ ହେଉଛି, କୌଣସି ନୂଆ ବିଷୟ ଆରମ୍ଭ ହେଲାବେଳେ ଅର୍ଥାତ୍ ଅକ୍ଷର ପରିଚୟ, ସତର ଫଳା, ବନା, ପଣକିଆ, କଡ଼ାଗଂଡ଼ା, ପାହି ପଣକିଆ, ଗୁଂଠ, ବିସ୍ୱା, ଫେଡ଼ାମିଶା, ହରିଗୁଣ, ଶୋଧ୍, ଓଡ଼ାଂକ ପ୍ରଭୃତି ଆରଂଭ ହେଲାବେଳେ ନାହାକେ ନିଜେ ପିଲାକୁ ଯେତେବେଳେ ସଂଥ ଦିଅନ୍ତି, ସେତେବେଳେ ପିଲାଟି ନିଜଘରୁ ଚାଉଳ ସଂଗେ ଦୁବ, ବରକୋଳି ପତ୍ର, ହଳଦୀଗୁଂଡ଼ା, ପ୍ରଭୃତି ପୂଜା ସାମଗ୍ରୀ ଘେନିକରି ଆସେ । ନାହାକେ ସରସ୍ୱତୀଂକୁ ପୂଜା କରନ୍ତି ଓ ଚାଉଳତକ ରଖନ୍ତି । ଥିଲାବାଲା ଘର ପିଲାହେଲେ ଚାଉଳ ସଂଗେ ପଇସା ଗୋଟାଏ ଦିଇଟା କେବେ କେବେ ଥାଏ । ଆଉ ସବୁବେଳେ ଆଗରୁ ପଢ଼ିଥିବା ପିଲାଏ ନୂଆପାଠ ଦେବା କାମ ଚଳାଇ ନିଅନ୍ତି । ଏହିପରି ଚାହାଳିରେ ନାହାକେ ଜଣେ ହେଲେ ମଧ୍ୟ ଡଲକୁଚଲ ପିଲାମାନେ ନିଜେ ଶିକ୍ଷକ ଓ ଛାତ୍ରର କାମ କରୁଥାନ୍ତି ।

ସେତେବେଳେ ପିଲାଏ ବଡ଼ କମ ଲୁଗା ପିନ୍ଧୁଥିଲେ । ପ୍ରାୟ ସମସ୍ତେ 'କୌପୁନୀ' (କୌପିନ) ମାରିଥାନ୍ତି । ଅବଶ୍ୟ ଏହା ପିଚାରେ ସୁବିଧାରେ ବେତମାଡ଼ ବାଜିବା ପାଇଁ ନା ଲୁଗାର ଅଭାବ ହେତୁରୁ, ତା ମୁଁ ଏବେ କହିପାରୁ ନାଇ । ଆମ ନାହାକେ ଦରମା ପାଉଥିଲେ ପିଲା ଗୋଟିକେ ମାସକୁ ଚାରିଅଣା । ତା'ଛଡ଼ା ପିଲାମାନଙ୍କ ଘରେ ସେ ପାଳି କରି ଖାଉଥିଲେ । ଆମର ବ୍ରାହ୍ମଣ ଗାଁ ନାହାକେ କରଣ ଥିବାରୁ ସେ ସମସ୍ତଙ୍କ ଘରେ ଭାତ

ଖାଉଥିଲେ ଓ ନିଜର ବାସନ ମଧ୍ୟ ମାଜୁଥିଲେ । ତାଙ୍କପାଇଁ ଆମଘରେ ଅଲଗା ବାସନ ଥାଏ ଓ ପିଲାର କାମ ହେଉଚି ସେ ନାହାକଂକୁ ତେଲ ଦବାଠୁ ଗାଧୋଇବାଠାରୁ ନାହାକେ ଖାଇସାରି ଯିବାପର୍ଯ୍ୟନ୍ତ ବରାବର ଭକ୍ତପରି ଛିଡ଼ା ହୋଇଥିବ ଓ ତାକଂର ସବୁ ବୋଲ ଶୁଣିବ । ଏଇ ତାଲିମ ରୀତିରେ ମୋତେ ଛଅବର୍ଷ ପୂରିବାଠାରୁ ବ୭/୬ ମାସ ହେବା ଯାଏ ଥିଲି । ଅନ୍ୟ ପିଲାଏ ଖୁବ୍ ବେଶି ସମୟ ଏଇ ତାଲିମରେ ରହୁଥିଲେ ।

ମୋ ମନେଅଛି ମୁଁ ହାଇସ୍କୁଲର ତୃତୀୟ ଶ୍ରେଣୀ (ଏବର ନବମ ଶ୍ରେଣୀ)ରେ ପଢୁଥିବା ବେଳେ ମୋର ମଧ୍ୟ ଜଣେ ଚାହାଳି ସହପାଠୀ ସେହି ଚାହାଳିରେ ପଢ଼ା ଶେଷ କରି ନ ଥିଲେ । ସେତେବେଳକୁ ତାଳପତ୍ରରେ ଲେଖିଥିବା ଧରଣୀଧରଂକ ଅଂକପୁସ୍ତକ ଶେଷ କରି ଲୀଳାବତୀ ଧରିଥିଲେ, ଖୁବ୍ ଚଂଚଳ ସୁନ୍ଦର ତାଳପତ୍ର ଅକ୍ଷର ଲେଖି ପାରୁଥିଲେ । ମୁଁ ତାଳପତ୍ର ଲେଖା ଚାହାଳିରେ ଆରଂଭ କରିଥିଲି ମାତ୍ର । ସେଇ ବଂଧୁଟି ବାହାଦୁରି କରି ମୋତେ ଆସି କେତେ ଅଂକ ପଚାରିଥିଲେ ଓ ବହୁତ ତାଳପତ୍ର ଲେଖାର ମାହାତ୍ମ୍ୟ ମୋ ଆଗରେ ଗାନ କରିଥିଲେ, କହୁଥିଲେ କାଗଜ ପାଣି ଲାଗିଲେ ଗଲା । ତାଳପତ୍ର ଚିରସ୍ଥାୟୀ । ତାଳପତ୍ରରେ ସରସ୍ୱତୀ ରହନ୍ତି । ଖଂଡେ ଖାଲି ତାଳପତ୍ର ଓଜନକର । ସେଥିରେ ଲେଖନରେ ଅକ୍ଷର ଲେଖିସାରି ଓଜନ କର, ଦେଖିବ ଓଜନ ବଢ଼ିଯାଇଚି । ଲେଖାରେ ପତ୍ର ଖୋଳା ହେଲା, ଓଜନ ବଢ଼ିଲା କିପରି ? ଓଜନ ବଢ଼ିବାର କାରଣ ହେଉଚି, ସେଥିରେ ସରସ୍ୱତୀ ବସିଗଲେ । ମୁଁ ଅବଶ୍ୟ ନିଜେ ଏହା ପରୀକ୍ଷା କରିନାଇ । ହୁଏତ ସରସ୍ୱତୀଂକୁ ତାଳପତ୍ରରେ ବସାଇ ବିଶା-ଚକଡ଼ିରେ ଥୋଇବା ମୋ ପରି ଭକ୍ତ ପସଂଦ କରି ନ ଥିଲା । ସେଇପରି ତାଂକ ପଚାରିବା ଅଂକକୁ ମୁଁ ଯେତେବେଳେ ଭଗ୍ନାଂଶ ଲଗାଇ କଷିଥିଲି, ସେତେବେଳେ ସେ ଆଦୌ ବୁଝି ନ ପାରିବାରୁ ତାକୁ ପସଂଦ ମଧ୍ୟ କରି ନ ଥିଲେ । କହୁଥିଲେ କଡ଼ା, କ୍ରାଂତି, ଦାଢ଼, ବିଦାଢ଼ ଏସବୁ ଥାଉ ଥାଉ ଗୋଟିଏ ଅଂକ ମୁଣ୍ଡ ଉପରେ ଆଉ ଗୋଟିଏ ଅଂକ ଲେଖିବ କିଆଁ ? ସରସ୍ୱତୀଂକର ଏ ଅପମାନ ମଧ୍ୟ ତାଂକୁ ସୁଖ ଲାଗୁ ନ ଥିଲା ।

## ୬. ମଧ୍ୟ ଓଡ଼ିଆ ସ୍କୁଲ

ସେ କଥା ଯା ହେଉ ମୁଁ ଚାହାଳିରେ ତାଲିମ ହେବା ପରେ ଗ୍ରାମର ମଧ-ଓଡ଼ିଆ ସ୍କୁଲରେ ଭର୍ତ୍ତିହେଲି—ଅବଶ୍ୟ ଚାହାଳିରେ ସେ କାଳର 'ଖ' ପରୀକ୍ଷା 'କ' ପରୀକ୍ଷା ଓ ଦ୍ୱିତୀୟ ପରୀକ୍ଷା (ଏବର ନିମ୍ନ ପ୍ରାଇମେରୀ ପରୀକ୍ଷା)ରେ ପାସ୍ କରିଥିଲି । ସେତେବେଳେ ଅବଧାନମାନେ ପିଲା ପାଶ୍ କଲେ ପୁରସ୍କାର ପାଉଥିଲେ । ମନେ ହେଉଛି ଆମ ଅବଧାନେ ମୋ ପାଇଁ ମୁଁ 'ଖ' ପରୀକ୍ଷା ପାଶ୍ କଲାବେଳେ ୨ଟଂକା, 'କ' ପରୀକ୍ଷା ପାଶ୍ କଲାବେଳେ ୩ଟଂକା ଓ ଦ୍ୱିତୀୟ ବା ନିମ୍ନ ପ୍ରାଇମେରୀ ପରୀକ୍ଷା ପାଶ୍ କଲାବେଳେ ୫ଟଂକା ସରକାରରୁ ପାଇଥିଲେ । ସରକାର ଦରମା ଦେଇ ସେ କାଳେ ପ୍ରାଇମେରୀ ସ୍କୁଲ ବସାଉ ନ ଥିଲେ, କିଂତୁ ଦ୍ୱିତୀୟ ପରୀକ୍ଷାରେ ମାସକୁ ୨ଟଂକା ଲେଖାଏଁ ଦୁଇବର୍ଷ ପର୍ଯ୍ୟଂତ ସରକାରୀ ବୃତ୍ତି ମିଳୁଥିଲା । ମୁଁ ସେ ବୃତ୍ତି ପାଇ ନ ଥିଲି । ଉପଯୋଗିତା ପାଇଁ ବୃତ୍ତି ଛଡ଼ା ସେତେବେଳେ ଗୋଟିଏ ଜିଲାକେ କେତୋଟି ଅନୁଗ୍ରହୀ ବୃତ୍ତି ମଧ୍ୟ ମିଳୁଥିଲା । ବ୍ରାହ୍ମଣ, କରଣ ପ୍ରଭୃତିଂକୁ

ପ୍ରାୟ ତାହା ମାନୁ ନ ଥିଲା । ମନେ ହେଉଚି, ଏବର ହରିଜନ ସେବାର ମଂଜି ଇଂରେଜମାନେ ସେଇକାଳୁ ପୋତିଥିଲେ ।

ଆଉରି ଗୋଟିଏ କଥା ମନେଅଛି । ଜଣଂକ ପୁଅ ଅନୁଗ୍ରହୀ ବୃତ୍ତି ପାଇବାର ଡେପୁଟି ଇନିସପେକ୍ଟରଂକ ଅଫିସରୁ ଶୁଣାଗଲା । ଡେପୁଟି ଇନ୍‌ସପେକ୍ଟର ଆମ ଗାଁକୁ ମଧ ଓଡ଼ିଆ ସ୍କୁଲ ଦେଖିବାକୁ ଆସିଥିଲେ । ପିଲାର ବାପଟି ଆସି ଦେଖାକରି ଅତି ବିନୀତ ଭାବରେ ବାବୁଂକୁ ଜଣାଇଲା, ''ବାବୁ, ମୋ ପୁଅ ବୃତ୍ତିଖଂଡ଼ି ମୋ ଘରପାଖେ ଦବ ।'' କାହିଁକି ନା ତା' ଘର ଆମ ଗାଁଠାରୁ ପ୍ରାୟ ଦୁଇକୋଶ ଦୂରରେ । ସେ ଶୁଣିଥିଲା ପୁଅ ଆମ ଗାଁ ମଧ-ଓଡ଼ିଆ ସ୍କୁଲକୁ ଆସିଲେ ବୃତ୍ତି ପାଇବ ।

ତା'ପରେ ଗ୍ରାମର ମଧ-ଓଡ଼ିଆ ସ୍କୁଲରେ ମୋର ଶିକ୍ଷା ଚାଲିଲା । ଏଇ ମଧ-ଓଡ଼ିଆ ସ୍କୁଲର ଗୋଟିଏ ସ୍ମରଣୀୟ ଇତିହାସ ଅଛି । ଆମ ଗ୍ୟାଂତି କକେଇ ହେଉଚଂତି ପୁରୀର ବିଖ୍ୟାତ ପଂଡ଼ିତ ହରିହର ଦାସ । ସେ ନବ୍ୟନ୍ୟାୟ ଓ ଦର୍ଶନାଦିରେ ବିଚକ୍ଷଣ ପଂଡିତ ଥିଲେ । ମାତୃଭାଷା ପରି ସଂସ୍କୃତ ଓ ହିନ୍ଦି କହି ପାରୁଥିଲେ, ସେକାଳେ ଆମ ଆଡ଼େ ନୈଷ୍ଠିକମାନେ ଜାତିଯିବା ଭୟରେ କାଗଜ ଛୁଇଁଲେ ଗାଧଉଥିଲେ । ସେଇ ସମାଜରେ ଜନ୍ମି ବଢ଼ି ମଧ ହରିହରଂକର ମନସ୍ୱିତା ଓ ଦୂରଦର୍ଶିତା ବଡ଼ ବିସ୍ମୟକର ଥିଲା । ସେ ସେକାଳର ଜିଲା କଲେକ୍‌ଟର ବିମ୍‌ସ ପ୍ରଭୃତି ସାହେବମାନଂକୁ ଓଡ଼ିଆ ଓ ସଂସ୍କୃତ ପଢ଼ାଇ ତାଂକଠାରୁ ଇଂରେଜୀ ଓ ଗ୍ରୀକ୍ ପଢୁଥିଲେ । ସେକାଳେ ସଂସ୍କୃତକୁ ଘେନି ଆର୍ଯ୍ୟଭାଷା, ବିଗ୍ୟାନ, ଇଉରୋପୀୟ ପଂଡିତମାନଂକ ଭିତରେ ଖୁବ୍ ଚର୍ଚ୍ଚା ହେଉଥିଲା; କିଂତୁ ହରିହରଂକର ବିଶେଷତ୍ୱ ଥିଲା ସମାଜର ସଂସ୍କାର ଓ ସମାଜରେ ଶିକ୍ଷାର ପ୍ରଚାର । ଏବେ ପୁରୀର ଯେଉଁ ସଂସ୍କୃତ କଲେଜ ଓଡ଼ିଶା ସଂସ୍କୃତ ଆସୋସିଏସନର ମୂଳଭିତ୍ତି, ସେଇଟି ସେ ପ୍ରତିଷ୍ଠା କରିଥିଲେ ଓ ତାକୁ ଗୋଟିଏ ସର୍ବ ବିଦ୍ୟାପୀଠ ବିଶ୍ୱବିଦ୍ୟାଳୟ କରିବାର କଳ୍ପନା ମଧ କରିଥିଲେ । ମାତ୍ରକ ୩୧ ବର୍ଷ ୬ମାସରେ ତାଙ୍କର ପରଲୋକ ହୋଇଥିଲା । କିଂତୁ ଏ ମଧରେ ସେ କଲେକ୍‌ଟର ଓ ସେକାଳ ବଂଗଦେଶ ଶିକ୍ଷା ବିଭାଗ ଇନ୍‌ସପେକ୍ଟର ବିମଲି ସାହେବଂକୁ ଧରି ଗ୍ରାମମାନଂକରେ ମଧ-ଓଡ଼ିଆ ସ୍କୁଲମାନ ବସାଇଥିଲେ । ସେ ମଧରେ ଆମ ଗ୍ରାମର ସ୍କୁଲ ହେଉଚି ପ୍ରଥମ । କାରଣ, ଆମ ଗାଁ ତାଂକ ନିଜ ଗାଁ । ଲୋକଂକ କୁସଂସ୍କାର ଛଡ଼ାଇବାରେ ସେ ଯାହା କରିଥିଲେ ତାହା ଏବେ ଶୁଣିଲେ କାହାଣୀ ପରି ଲାଗେ । ସେତେବେଳେ ପୁଣି ଶିକ୍ଷକଂକୁ ତାଲିମ କରିବାର ବା ଶିକ୍ଷକ ବାଛିବାର କୌଣସି ଉପାୟ ନ ଥିଲା ।

ମଫସଲରେ ସେକାଳେ ବହୁତ ସଂସ୍କୃତ ପଂଡ଼ିତ ଥିଲେ । ଏଇ ପଂଡ଼ିତମାନଂକ ଭିତରୁ ବାଛି ସେ ମଧ-ଓଡ଼ିଆ ସ୍କୁଲମାନଂକରେ ଶିକ୍ଷକ ରଖୁଥିଲେ । ମୁଁ ଭର୍ତ୍ତି ହେଲାବେଳକୁ ସେଇ ହରିହର ଦାସ ରଖାଇଥିବାର, ବୃଦ୍ଧ ପଂଡ଼ିତ ଲୋକନାଥ ଦାସ ଆମ ଗାଁ ମଧ-ଓଡ଼ିଆ ସ୍କୁଲର ଶିକ୍ଷକ ଥିଲେ । ସେ ସେତେବେଳକୁ ବୁଢ଼ା ହୋଇଯାଇଥିଲେ । ତାଂକର ଗୋଟିଏ ବୋଲି ଦାଂତ ନ ଥିଲା । ସେକାଳ ପଂଡ଼ିତମାନଂକ ପରି ସେ ଭାରି ନାଶ ଶୁଂଘୁଥିଲେ । ସେ ଖାଇପିଇ ଚୌକିରେ ବସି ଆଗରେ ଟେବୁଲ ଉପରେ ଗୋଡ଼ରଖି ଆଗ ଘଂଟାଏ ଦୁଇ ଘଂଟା ଶୋଇ ପଡ଼ଂତି । ଏ ମଧରେ କୌଣସି ଛାତ୍ରର୍ ଦରକାର ହେଲେ ସେ ତାଂକୁ ଉଠାଏ । ତା' ନହେଲେ ପ୍ରାୟ ଦୁଇଟା ବେଳକୁ ସେ ନିଜେ ଉଠଂତି । ଅଂକ, ଜ୍ୟାମିତି ବା କ୍ଷେତ୍ରତତ୍ତ୍ୱ

ସେ କେବେ ପଢ଼ି ନ ଥିଲେ; କିଂତୁ ମୋତେ ସେ ଅଂକ ଓ କ୍ଷେତ୍ରତତ୍ତ୍ୱର ପ୍ରତିଗଂଆସବୁ ବୁଝାଇ ଦେବାର ଏବେ ମୋ ମନେ ଅଛି । ସେ ଯେପରି ସୁଂଦର ସରଳ ଓ ହୃଦୟଗ୍ରାହୀ କରି ତା'ସବୁ ବୁଝାଉଥିଲେ ତା' ଏବେ ମନେ ପଡ଼ିଲେ ବିସ୍ମୟ ଲାଗେ । ବିଶେଷରେ ତାଂକର ସୁଂଦର ହାତଲେଖା ଅକ୍ଷର ଓ ବୃତ୍ତ ରେଖାସବୁ ଏବେ ମଧ୍ୟ ମୋ ମନେ ପଡ଼ିଯାଉଚି । ସେ ଏବେ ମଧ୍ୟ ତା' ମୋ ସିଲେଟରେ ଲେଖି ଦେଲାପରି ଲାଗୁଚି ।

ମନେଅଛି, ମୁଁ ଥିଲି ସହପାଠୀଙ୍କ ଭିତରେ ସଭାସାନ । ବଡ଼ମାନେ ମୋତେ ବେଳେ ବେଳେ 'ଏକୁଟିଆ' କରଂତି । ପଚାରିଲେ ପାଠ କହି ଦିଅଂତି ନାଇ । ମୋ ପାଖରେ ସବୁ ବହି ନ ଥାଏ । ସେମାନଂକ ପାଖରେ ବହି ଥିଲେ ସେମାନେ ଦିଅଂତି ନାଇ । ମୁଁ ଯାଇ ତାଂକୁ ନିଦରୁ ଉଠାଇ ତାଂକ ପାଖରେ କାଂଦି କାଂଦି ଆପତ୍ତି କଲି । ସେ ଉଠି ମୋତେ ଟିକିଏ ଚାହିଁଲେ, ତା'ପରେ ବଡ଼ମାନଂକ ଆଡ଼କୁ ଚାହିଁ କହିଲେ, 'ଆରେ ଆଜି ତମେ ତାକୁ ଏକୁଟିଆ କରୁଚ, ପାଣିପଣା ପ୍ରାଂତରେ ବୁଝିବ । ତମେ ସବୁ ତା ଗାମୁଛା ବୋହିଲେ ତ ଦିନସରିବ ନାଇ ।' କାହିଁକି କ'ଣ ଦେଖି କ'ଣ ବୁଝି ସେ ଏପରି କହିଥିଲେ ତା' ମୁଁ କହିପାରିବି ନାଇ । କିଂତୁ ଗ୍ରାମର ଲୋକେ ସେ ଏଇପରି କେତେ ଆଉ ଆଉ କଥା କହିବାର ମନେ ରଖିଚନ୍ତି, ସେ ସବୁ ଭବିଷ୍ୟତ ବାଣୀ ପରି ସେସବୁ କଥାର ଫଳ ଫଳିଚି । ଜଗତର ଅନୁଭବରୁ ଏପରି ଶିକ୍ଷା ପାଇବା ଓ ସେଥିରେ ବିଚକ୍ଷଣ ହେବା ସେକାଳେ ସେ ଲୋକଂକର ହୁଏତ ଥିଲା । ହୁଏତ ବଂଧାଗତ ଶିକ୍ଷାରେ ଏସବୁ ବିଚକ୍ଷଣତା ଆସେ ନାଇ ।

## ୭। କାକୁଡ଼ି ଚୋରି

ଆହୁରି ମଧ୍ୟ ମନେଅଛି, ଛାତ୍ରମାନଂକ ପ୍ରତି ତାଂକର ବ୍ୟବହାର ଓ ଆଂତରିକ ହୃଦ୍ୟତା । ଦିନକର ଗୋଟିଏ ଘଟଣା କହୁଚି । ଆମ ସ୍କୁଲପାଖେ ଗୋଟିଏ ବୁଢ଼ୀ ବ୍ରାହ୍ମଣୀର ଉପର ସାହାଲା ଘରଟି ମେଲା ଡିହ ଥାଏ । ସେହି ମେଲା ଡିହରେ ବୁଢ଼ୀଟି ବହୁତ ଯତ୍ନକରି ଜହ୍ନି କାକୁଡ଼ି ଲଗାଇଥାଏ । ବହୁତ କଷି କାକୁଡ଼ି ଫଳିଥାଏ । ବୁଢ଼ୀଟି ଭାରି କଳିକତୁରୀ । ପିଲାଏ ପଂଡିତେ ଶୋଇଥିବା ବେଳେ ଯାଇ ସେ ବାଡ଼ିରୁ କାକୁଡ଼ି ତୋଳିଲେ । ବୁଢ଼ୀ ଭାରି ଗାଳିଦେଲା । ଆସି ପଂଡିତଙ୍କୁ ଉଠାଇ ତାଂକ ଆଗେ ଗୁହାରି କଲା । ପିଲାମାନେ ଟିକିଏ ଡରିଯାଇ କାକୁଡ଼ିଯାକ ଲୁଚାଇ ଦେଇଥିଲେ । ପଂଡିତେ ସବୁକଥା ଶୁଣି ବୁଢ଼ୀକୁ ଅଧିକ ଗାଳିଦେଇ କହିଲେ, ''ତୋର ତ ପିଲା ନାହାଂତି । ପିଲାଂକର ମନ ହେଲା, କାକୁଡ଼ି ଦି'ଟା ତୋଳି କରି ଖାଇଲେ, ଏଇଥିପାଇଁ ତାଂକୁ ଗାଳି ଦେଉଛୁ ।'' ତା'ପରେ ପିଲାଂକୁ ଚାହିଁ କହିଲେ, ''କାହିଁରେ ପିଲେ କାକୁଡ଼ି କାହିଁ ? ଆଣ ଖାଇବା ।'' ଅବଶ୍ୟ କାକୁଡ଼ି ଖାଇବାକୁ ତାଂକର ଦାଂତ ନ ଥିଲା । ପିଲାଏ କାକୁଡ଼ିଯାକ ଆଣି ଥୋଇଲେ । ପଂଡିତେ କହିଲେ, ''ଯାରେ ଯାକୁ କାଟିକରି ଲୁଣମଡ଼େଇ ଖାଇବ ।'' ବୁଢ଼ୀକୁ କହିଲେ, ''ଆଲୋ ପନିଖି ଆଣ, ଲୁଣ ଆଣ ।'' ଏଡ଼େ କଳିକତୁରୀ ହୋଇ ମଧ୍ୟ ବୁଢ଼ୀ କିଛି ନ କହି ଘରକୁ ଯାଇ ଲୁଣ ଓ ପନିଖି ଘେନି ଆସିଲା । ନିଜେ କାଟିକରି ପିଲାଂକୁ କାକୁଡ଼ି ଦେଲା । କାକୁଡ଼ିଖିଆ ସରିଲା ପରେ ପଢ଼ାପଢ଼ି ଆରଂଭ ହେଲା । ଏ କି' ବ୍ୟକ୍ତିତ୍ୱ, କି ହୃଦୟବତ୍ତା ତା' କିଏ କହିବ ?

## ୮। ପଂଡିତଙ୍କ ନାସଦାନି

ଆଉଦିନେ ପଂଡିତେ ଶୋଇଥିଲା ବେଳେ ପିଲାଏ ତାଂକ ଦାନିରୁ ନାସ ଚୋରିକରି ଶୁଂଘିଲେ । ପଂଡିତଙ୍କ ହଠାତ୍ ନିଦ ଭାଜିଗଲା । ପଂଡ଼ିତେ ଜାଣିପାରି ହଠାତ୍ କହିଲେ, ''ନିଅ ନିଅ, ନାଶ ଶୁଂଘିବ, ନାକ ସଫା ହୋଇଯିବ ।'' ସେଦିନ ଯେତେ ପିଲା ଥିଲେ ସମସ୍ତଂକୁ ପଂଡିତେ ନାସ ଦେଲେ । କିଂତୁ ଆଶ୍ଚର୍ଯ୍ୟ କଥା, ପିଲାଏ ତା'ପରେ ଆଉ ତାଂକ ଦାନିରେ ହାତ ଦେଇ ନାହାଂତି କି ନାସ ଶୁଂଘି ନାହାଂତି ।

## ୯। ସ୍କୁଲ ଓ ସରକାରୀ ସାହାଯ୍ୟ

ସେକାଳେ ଗ୍ରାମର ମଧ-ଓଡ଼ିଆ ସ୍କୁଲଗୁଡ଼ିକ ଥାଏ ନାମକୁ ସରକାରଂକ ସାହାଯ୍ୟ ପ୍ରାପ୍ତ ସ୍କୁଲ । ଶିକ୍ଷକ ଥାଂତି ଦି'ଜଣ । ସରକାରରୁ ମିଳେ ମାସକୁ ପଂଦରଟଂକା । ଗ୍ରାମ-କମିଟିର ସେକ୍ରେଟେରୀ ଆଉ ପଂଦରଟଂକା ଦେବେବୋଲି ଧରା ଯାଇଥାଏ । ସେଥିରେ ପ୍ରଥମ ଶିକ୍ଷକ (ହେଡ୍ ପଂଡ଼ିତ) ପାଇବେ ମାସକୁ ପଂଦରଟଂକା, ସେକେଂଡ୍ ପଂଡ଼ିତ ପାଇବେ ଦଶ ଟଂକା; ବାକି ପାଂଚଟଂକା ଭିତରୁ ଗୋଟିଏ ଦପ୍ତରୀ ରହିବ ଓ ସ୍କୁଲର କାଗଜ, କାଳି, କଲମ, ପ୍ରଭୃତି କିଣାହେବ; କିଂତୁ ଯଥାର୍ଥରେ ପଂଦରଟଂକା ମିଳେ । ତାକୁ ଦୁଇ ଶିକ୍ଷକ ଦଶ ଓ ପାଂଚଟଂକା କରି ବାଂଟି ନିଅଂତି । ଗାଁରେ ଆଉ କେହି ଚାଂଦା ଦିଅଂତି ନାଇ କି ଦପ୍ତରୀ ନ ଥାଏ ।

## ୧୦। ପୁରୀରେ ମୋର ପାଠପଢ଼ା

ଏ ମଧରେ ସେ ପଂଡିତେ ଗଲେ । ଅନ୍ୟ ନର୍ମାଲ ଟ୍ରେନିଂ (Normal Training) ପାଶ୍ କରିବା ପଂଡିତ ଆସିଗଲେ । ମୋତେ ଦଶବର୍ଷ ପଶିଲା ବେଳକୁ ମୁଁ ଯାଇ ପ୍ରଥମ ଶ୍ରେଣୀ (ଏବର ମାଇନର କ୍ଲାସ—କେବଳ ଇଂରେଜୀ ଛଡ଼ା)ରେ ପହଂଚିଲି । ପଂଡିତେ ବୃତ୍ତି ପାଇବା ଭଳି ଫଳ ଦେଖାଇବା ପାଇଁ ଭଲ ପଢୁଥିବା ପିଲାଂକ ଭିତରୁ ରଖି ରଖି ଗୋଟିଏ ଗୋଟିଏ ପଠାଉଥାଂତି । ବୃତ୍ତି ନ ପାଇଲେ ପୁରୀରେ ରଖାଇ ପଢ଼ାଇବା ପାଇଁ ଆମ ନନାଂକର ବି ଅବସ୍ଥା ନ ଥାଏ । ମୁଁ କିପରି ବୃତ୍ତି ପାଇବି ସେ ମଧ ପଂଡିତଙ୍କ କଥାରେ ମତ ଦେଉଥାଂତି । ମୁଁ କେତେ ଝିଅରେ ଗୋଟିଏ ପୁଅ । ବୋଉ ମଧ ପିଲାଟାକୁ ପାଖରୁ ଛାଡ଼ିବାକୁ ନାରାଜ; ଅତଏବ ବର୍ଷ ପରେ ବର୍ଷ ମୋତେ ନ ପଠାଇ ରଖାଗଲା । ମୁଁ ଚାରିବର୍ଷ ପରେ ପରୀକ୍ଷା ଦେଲି, ବୃତ୍ତି ପାଇଲି ।

ଅବଶ୍ୟ ବୃତ୍ତି ପାଇବି ବୋଲି ମୁଁ ଜାଣି ନ ଥିଲି । ଅନ୍ୟ କେହି ବା କିପରି ଜାଣିବେ । ମୁଁ ଦିନେ ଲୁଚିକରି ଚାଲି ଚାଲି ପୁରୀରେ ଯାଇ ପହଂଚିଲି । ପରୀକ୍ଷା ଦେବାକୁ ଗଲାବେଳେ ପୁରୀ ଜିଲା ସ୍କୁଲ ଛାତ୍ରାବାସରେ ମୁଁ ସବୁ ଦେଖା ଦେଖି କରିଥିଲି । ସେଠା ଲୋକଂକ ସଂଗେ ମୋର ପରିଚୟ ହୋଇଥିଲା । ସେତେବେଳେ ଏବର ସଂସ୍କୃତ କଲେଜଟି ସଂସ୍କୃତ ସ୍କୁଲ ଥିଲା । ସଂସ୍କୃତ ସ୍କୁଲର ଛାତ୍ରମାନେ ପୁରୀ ଜିଲାସ୍କୁଲ ବୋଡ଼ିଂରେ ମଧ ରହୁଥିଲେ । ସେଇ

ଛାତ୍ରଂକ ଭିତରେ ସେତେବେଳେ ଥିଲେ, ପରେ ମହାମହୋପାଧ୍ୟାୟ ହୋଇଥିବା ପଂଡିତ ଜଗନ୍ନାଥ ମିଶ୍ର । ସେ ନବ୍ୟ-ନ୍ୟାୟରେ ଉପାଧି ପାଇବା ପାଇଁ ପଢୁଥାଂତି । ସେ ଥିଲେ ମୋ ଜେଜେଇଂକ ଜ୍ୱାଇଁ—ମୋର ଭଗ୍ନୀପତି । ମୁଁ ଚାଲି ଚାଲି ପୁରୀ ଯାଇ ସେଇ ବୋଡ଼ିଂରେ ପହଂଚିଲି । ଜଗନ୍ନାଥ ମିଶ୍ରଂକ ଠାରୁ ପଇସାଟିଏ ଉଧାର କରି ଖଂଡ଼ିଏ ପୋଷ୍ଟକାର୍ଡ଼ କିଣି ନନାଂକୁ ଚିଠି ଲେଖିଦେଲି । ମୁଁ ବୃତ୍ତି ପାଏଁ ନ ପାଏଁ ମୁଁ ଏଠି ରହି ପଢ଼ିବି—ମୋତେ ଚାଉଳ ଓ ଟଂକା ପଠାଅ !

ନନାଂକର ଚିଂତା ପଡ଼ିଗଲା ଏତେ ଟଂକା ଖର୍ଚ୍ଚ କରିବେ କୁଆଡୁ । ଏ ୧୮୯୯ ଖ୍ରୀ:ଅ:ର କଥା । ଖର୍ଚ୍ଚ ସେତେବେଳେ କ'ଣ ପଡୁଥିଲା, ସେକଥା ଏଠି ଟିକିଏ କହେଁ । ଅବଶ୍ୟ ଆଗରୁ କହିଦିଏଁ । ପରେ ମୋ ବୃତ୍ତି ପାଇବାର ଖବର ମଧ୍ୟ ଉତ୍କଳ-ଦୀପିକାରେ ବାହାରି ଗଲା । ପାଶ୍ କରିଥିବା ଲୋକଂକ ଭିତରେ ସବା ଉପରେ ମୋ ନାମଟି ଛପା ହେବାର ଦେଖି ମୋ ମନରେ ସେଦିନ କି ଆନଂଦ ହୋଇଥିଲା, ତା' ଆଜି କହିହେବ ନାଇ । ତା' ସଂଗେ ପୁଣି ଆନଂଦ, ମାସକୁ ଚାରିଟଂକା ଲେଖାଏଁ ବୃତ୍ତି ପାଇବି । ଆଉ ଚିଂତା ନାଇ ।

ତେବେ ଖର୍ଚ୍ଚର କଥା କହୁଥିଲି । ଆଂଭେମାନେ ନିଜେ ପାଳିକରି ମାସକୁ ମାସ ଜଣେ ଜଣେ ମେସ୍ କଥା ବୁଝୁଥିଲୁ । ପ୍ରାୟ ଗୋଟିଏ ପୂଝାରୀ ଥାଏ । ନହେଲେ କେବେ ହାତରେ ପାଳିକରି ରାଂଧୁ । ଖର୍ଚ୍ଚ ପଡ଼େ ଚାଉଳ ସହିତ ମାସକୁ ଦେଢ଼ଟଙ୍କା । ଚାଉଳ ଥାଏ ଟଂକାରେ କଟକି ୧୬ ସେରଠାରୁ ୧୮ ସେର । ମାଛ ବଜାରରେ ବଡ଼ ବଡ଼ ବିଛାବାଳିଆ, ଚିଲିକା ବା ସମୁଦ୍ରର ଚିଂଗୁଡ଼ି ସାଧାରଣତଃ ପଇସାକୁ ଦଶଟା କି ପଂଦରଟା । ଦଶଟାରେ ପ୍ରାୟ ଅଧ ସେରରୁ ବେଶି ହେବ । ବାଇଗଣ ଓଜନ ହୋଇ ବିକ୍ରି ହେଉ ନ ଥିଲା । ବଜାରରେ ସଡ଼କ ପାଖେ ବାଡ଼ିବାଲାମାନେ ଭାଗ ବସାଇଥାଂତି । ପଇସାକୁ ଭାଗେ । ସେ ପ୍ରାୟ ଅଧସେର ହେବ । ଆମେ ଖାଉ ଖାଲି ଭାତ ଓ ଡାଲି । ଡାଲିରେ କେବେ କେବେ ବାଇଗଣ ପଡ଼ିଥାଏ । ଯେଉଁଦିନ ମାଛ ଆସେ ସେଦିନ ଆଉ ଡାଲି କି ବାଇଗଣ ଦରକାର ହୁଏ ନାଇ । ମନେଅଛି, ଥରେ ହିସାବରେ ମାସକୁ ଜଣକେ ଟଂକାଏ ନ'ଅଣା ପଡ଼ିଯିବାରୁ ଆମ ଭିତରେ ଗୋଟିଏ ବଡ଼ ଆଂଦୋଳନ ପଡ଼ି ଯାଇଥିଲା ଓ ଆମ ସେ ମାସ ମେନେଜର ବଡ଼ ନିଂଦିତ ଓ ଲଜ୍ଜିତ ହୋଇଥିଲେ ।

## ୧୧। ୧୮୯୯ର ସମାଜ

ଆଉ ଗୋଟିଏ କୌତୁକ କଥା କହେଁ । ସେତେବେଳେ ସମାଜ ବଡ଼ ରକ୍ଷଣଶୀଳ ଥିଲା । ସବୁ ବ୍ରାହ୍ମଣେ ସବୁ ବ୍ରାହ୍ମଣଂକ ହାତେ ଖାଉ ନ ଥିଲେ । ଫେର ସମାନସ୍କଂଧ ବ୍ରାହ୍ମଣ ଖୋଜି ପୂଝାରୀ ରଖିବା କାଠିକର ପାଠ । ଆମ ହଷ୍ଟେଲର ସେତେବେଳେ ସୁପରିନ୍‌ଟେଂଡେ଼ଂଟ୍ ଥିଲେ ପୁରୀ ଜିଲ୍ଲାସ୍କୁଲର ସେକେଂଡ଼ ପଂଡ଼ିତ ବୀରହରେକୃଷ୍ଣପୁରର ଗୁଆଡିରିଆ ସାଆଂତ ପଂଡିତ ଶ୍ରୀ ଲୋକନାଥ ମହାପାତ୍ର । ତାଂକ ପିତା ଅଭାବରେ ପଡ଼ି ଟିକିଏ କମ୍ ଜାତିରେ ବିଭା ହୋଇଥିଲେ । ସେଥିପାଇଁ ପୁଣି ସେ ନିଜ ଜାତିକୁ ନିର୍ମଳ ରଖିବାରେ ଭାରି ସାବଧାନ । ସେ ସାମଂତ ଭଟ୍ଟମିଶ୍ର ବ୍ରାହ୍ମଣ ଛଡ଼ା ଆଉ କାହାକୁ ନିଜ ମେସ୍‌ରେ ରଖୁ ନ ଥିଲେ କିଂବା

ପୂଝାରୀ କରି ବି ରଖୁ ନ ଥିଲେ । କାରଣ ସେ ଆଉ କାହାରି ସଂଗେ ଏକ ପଂକ୍ତିରେ ଖାଇବେ ନାଇ, କାହାରି ହାତରେ ଖାଇବା ତ ଦୂରର କଥା । ଅବଶ୍ୟ ମନେଅଛି, କେତେଦିନ ପରେ ଆମ ଘରୁ ଘରକୁଟା ଚାଉଳ ଆସିବାର ଦେଖି ମୋତେ ନିଜ ମେସ୍‌ରେ ରହିବାକୁ ପଂଡିତେ ଅନୁମତି ଦେଇଥିଲେ । କାରଣ ସେତେବେଳେ ପୁରୀଜିଲ୍ଲା ସ୍କୁଲ ବୋର୍ଡିଂରେ ସବୁ ଗରିବ ବୃତ୍ତିଭୋଗୀ ପିଲା ଥାଂତି । ସେମାନେ କିଣା ଚାଉଳ ଖାଉଥିଲେ । ପଂଡିତଂକର ବି ଦରମା ସେତେବେଳେ ମାସକୁ କୋଡ଼ିଏ ଟଂକା । ସେଥିରେ ସେ ମେସ୍ ଖର୍ଚ୍ଚାଦି ଦେବେ ଓ ଗାଁରେ କୁଟୁଂବ ସଂଭାଳିବେ, ତେଣୁ ତାଂକ ମେସ୍‌ରେ ଖାଇବା ମୋ ପକ୍ଷରେ ବଡ଼ କଷ୍ଟକର ହେଲା । ମୁଁ ପୁଣି ବୈଦିକ ବ୍ରାହ୍ମଣଂକ ମେସ୍‌କୁ ଚାଲି ଆସିଲି, ତଥାପି ସେ ମେସ୍‌ରେ ମଧ ଛୋଟ ବ୍ରାହ୍ମଣ ବା ଅବ୍ରାହ୍ମଣ ନ ଥିଲେ । କ୍ରମେ ଅବଶ୍ୟ ପରେ ପୂଝାରୀ ଖୋଜିବାରେ ଏ ରୀତି ଟିକିଏ ଶିଥିଳ ହୋଇ ଯାଇଥିଲା । ମାସେ ଦି'ମାସରେ ଜଣେ ପୂଝାରୀ ଚାଲିଯାଆନ୍ତି, ଆଉ ଜଣେ ଆସନ୍ତି । ପୂଝାରୀଂକୁ ଚାକର ଭଳି ବ୍ୟବହାର କରିବା ଏକପ୍ରକାର ନିଷିଦ୍ଧ ଥିଲା । ଅବଶ୍ୟ ସେତେବେଳେ ଆମର ଚାକର କେହି ନ ଥିଲେ । ବହୁତ ଖୋଜି ଖୋଜି ଜଣେ ପୂଝରୀ ଆଣିଥିଲୁ—ସେ ହେଉଚନ୍ତି ଭାକରସା ଗ୍ରାମର ସ୍ୱର୍ଗତ ଡେପୁଟି ମାଧବ ମିଶ୍ରଂକ ଲେଖାରେ କକେଇ । ସେ କହୁଥିଲେ ମାଧବ ମିଶ୍ର ଛାତ୍ର ଥିଲାବେଳେ ସେ ତାଂକ ପାଖରେ ବହୁଦିନ ପୂଝାରୀ ଓ ଅଭିଭାବକ ହୋଇଥିଲେ । ସେ ପୂଝରୀ ହୋଇ ମଧ ଆମକୁ ଅଭିଭାବକ ଭଳି କଠୋର ଶାସନ କରୁଥିଲେ । ଆମେ ନ ପଢ଼ି ସଅଳ ଶୋଇ ପଡ଼ିଲେ କିଂବା ଦିଅଁ ଦେଖିବାକୁ, ଝୁଲଣ ଦେଖିବାକୁ କିଂବା ବଜାରକୁ ଗଲେ ତାଂକର ଭାରି କଡ଼ା ନଜର ଥାଏ । ସବୁବେଳେ କହୁଥାଂତି ଆମ ମାଧବ ଏହିପରି ଚଳୁଥିଲା, ଏଇପରି ପଢୁଥିଲା । ସେ ଆଜି ପାଶ୍ କରିଚି । କେଡ଼େ ବଡ଼ ଚାକିରି କରିଚି (ସେତେବେଳେ ମାଧବ ମିଶ୍ରେ ପୁରୀରେ ସଦର କାନଗୋଇ ଥାଂତି) । ତମେଗୁଡ଼ାକ କିଛି ହେବନାଇ । ଭଲକରି ମନଦେଇ ପଢ଼, ମଣିଷ ହେବ ।

ଏସବୁ କଲେ ମଧ ତାଂକର ବରାବର ଅଭ୍ୟାସ ଥିଲା ଡାଲି ବା ମାଛତିଅଣ ସନ୍ଧ୍ୟାବେଳକୁ ରାଂଧିସାରି ଭାତ ହାଂଡ଼ିରେ ଚାଉଳ ପକାଇଦେଇ ସେ ଚୁଲିମୁଂଡ଼େ ଶୋଇ ପଡ଼ଂତି । ଆମେ ପ୍ରାୟ ରାତି ୧୧ଟା ବେଳକୁ ଯାଇ ଡାକୁ । ସେ ଧଡ଼୍‌ପଡ଼୍ ହୋଇ ଉଠି ଭାତହାଂଡ଼ି ମୁହଁରେ ଥାଳିଟାଏ ଦେଇ ପେଜ ଗାଳିଦେଇ ତା'ପରେ ଥାଳି କାଢ଼ି ଅଣକରେ ଆମ ଥାଳିରେ ସବୁଭାତ ବାଢ଼ି ଦିଅଂତି । ଅବଶ୍ୟ ଆମ ଥାଳି ଗିନାସବୁ ଧାଡ଼ିକରି ସଜାଡ଼ି ପକାଇ ରଖିଥାଂତି । ଦିନେ ରାତି ପ୍ରାୟ ୧୧ଟା ବେଳେ ଆମେ ସମସ୍ତେ ରୋଷେଇ ଘରେ ଯାଇ ପହଂଚି ତାଂକୁ ଉଠାଇଲୁ । ସେ ନିଦ ମଳ ମଳ ହୋଇ ଉଠି ଯଥାରୀତିରେ ଭାତହାଂଡ଼ି ମୁହଁରେ ଥାଳିଦେଇ ଆଉ ଗୋଟିଏ ଆଟିକାକୁ ଗାଳିଦେଲେ । ତା'ପରେ ଅଣକଟି ନେଇ ଭାତ ବାଢ଼ିବାପାଇଁ ହାଂଡ଼ି ଭିତରେ ଠକ ଠକ କରି ଚାହିଁ ଛିଡ଼ା ହୋଇଗଲେ । ଆମେ ବିସ୍ମିତ ହୋଇ ପଚାରିବାରେ ଅତି କରୁଣ ସ୍ୱରରେ କହିଲେ, "ଚାଉଳ ପକାଇବାକୁ ମନେ ନାଇ ।" ଆମେ କରୁ କ'ଣ ? ନିରାଶ ହୋଇ ଚୁଡ଼ା ଭଜାଖାଇ ସେ ରାତି କଟାଇ ଦେଲୁ । ପୂଝାରୀ ମିଶ୍ରଂକର ସେ କରୁଣ ଦୃଶ୍ୟ ଓ ଆମର ସେ ନିରାଶ ଅବସ୍ଥା କାଲିପରି ଏବେ ମନେ ପଡ଼ିଯାଉଚି । ସେ ଭୁଲିବାର ଜିନିଷ ନୁହେଁ ।

## ୧୨। ନିଦ୍ରା ପ୍ରତିରୋଧ

ଲଂଠନ ସେତେବେଳେ ଦେଖା ନ ଥିଲା । ସମସ୍ତେ ଡିବି ଜାଳି ପଢୁଥିଲୁ । ପରୀକ୍ଷାବେଳ, ରାତିରେ ନିଦ ଲାଗି ଯାଉଚି । ପଢ଼ାସାଂଗ ବଳଭଦ୍ରପୁର ଜଗନ୍ନାଥ ମହାପାତ୍ରେ (ସେ ହେଡ଼ମାଷ୍ଟର ପଦରୁ ପେନସନ ପ୍ରାପ୍ତ ଏବେ ମୃତ) ଦିନେ ମତାଇ ଦେଲେ ଟିକିଏ ଅଫିମ ଆଣି ତାକୁ ଜାରିକରି ଖାଇଦେଲେ ରାତିରେ ଆଉ ନିଦ ଲାଗିବ ନାଇ, ପଢ଼ିବାରେ ଭାରି ମନ ଲାଗିବ । ସେ ସେଇଆ କରୁଥିଲେ । ମୋର ମଧ ମନ ହୋଇଗଲା । ଅଧଲାକର ଅଫିମ ଆଣି ସେଥିରୁ ଟିକିଏ ଖଂଡ଼େ ଦିଆସିଲି କାଠିର ପଛପଟେ ଲଗାଇ ତାକୁ ଡିବିଶିଖାରେ ଦେଖାଇ ଜାରିଦେଲି । ପାଖରେ ବସି ସେ ବତଉ ଥାଂତି । ଅଫିମଟିକ ଭଡ଼ ଭଡ଼ ହୋଇ ଫୁଟିଗଲା । ଡିବିଶିଖାର କଳା ତା'ଉପରେ ବୋଳି ହୋଇଗଲା । ତାକୁ ସେଇ ଦିଆସିଲି କାଠିରୁ ପାଟିରେ ପୂରାଇ ଦିଆସିଲି କାଠିଟି କାଢ଼ି ଆଣି ଚୋବାଇଲି । ମୁସ୍‌ମୁସ୍ ଲାଗିଲା; କିଂତୁ ସେ ପିତା ଓ କିରୋସିନି କଳାର ଗଂଧ ଆଜି ମଧ ମନେପଡୁଚି । ଅଧଲାକର ଚୁଡ଼ାଭଜା ଆଗରୁ ଆଣିଥିଲି । ପିତା ଛଡ଼ାଇବା ପାଇଁ ତାକୁ ଚୋବାଇ ଦେଲି । କି ଦୁର୍ଗତି; ପଢ଼ା ତ ସେ ରାତି ହେଲା ନାଇ । ଏବେ ଯେ ଡାକ୍ତର ଡାକିବାର ରୀତି ଥିଲେ ଓ ଡାକ୍ତର ମିଳୁଥିଲେ ସେ ରାତି ଡାକ୍ତର ଡକା ହୋଇଥାନ୍ତା ।

## ୧୩। ପୁରୀ ଜିଲ୍ଲାସ୍କୁଲ

ମୁଁ ମଧ-ଓଡ଼ିଆ ପାଶ୍ କରି ପୁରୀ ଜିଲ୍ଲାସ୍କୁଲରେ ଯାଇ ସବାତଳ ଶ୍ରେଣୀରେ ଭର୍ତ୍ତି ହେଲି କେବଳ ଇଂରାଜୀ ପଢ଼ିବାପାଇଁ । ଡବଲ ପ୍ରମୋଶନ ପାଇ ଦ୍ୱିତୀୟ ବର୍ଷ ଶେଷକୁ ଯାଇ ପହଂଚିଲି ଫୋର୍ଥକ୍ଳାସ (ଆଜିକାଲିର 8th class)ରେ । ତା' ତଳେକ୍ଲାସରୁ ଯେଉଁମାନେ ଉଠି ମୋ ସଂଗେ ପଢ଼ିଲେ, ସେମାନେ ସେଇ ତଳ କ୍ଲାସରୁ ସଂସ୍କୃତ ପଢ଼ା ଆରଂଭ କରି ସାରିଥିଲେ । ଉପକ୍ରମଣିକା (ଈଶ୍ୱରଚଂଦ୍ର ବିଦ୍ୟାସାଗରଂକ ଉପକ୍ରମଣିକା ପୁସ୍ତକର ଓଡ଼ିଆ ଅନୁବାଦ) ବୋଲି ସେ କାଳର ଖଂଡ଼ିଏ ସଂସ୍କୃତ ବ୍ୟାକରଣ ସେମାନେ ପଢ଼ି ସାରିଥିଲେ । ତା'ଛଡ଼ା କଲେଜିଏଟ ସ୍କୁଲର ଭୂତପୂର୍ବ ସଂସ୍କୃତ ପଂଡ଼ିତ ବିଶ୍ୱନାଥ ରଥ କାବ୍ୟତୀର୍ଥ ସେଇ ତଳକ୍ଲାସରୁ ଆସି ଆମ ସଂଗେ ପଢୁଥିଲେ । ମନେଅଛି, ମୁଁ ଟିକିଏ ଭୀତ ଓ ଚିଂତିତ ହୋଇପଡ଼ିଲି, ସଂସ୍କୃତରେ ଓଡ଼ିଆ ଅକ୍ଷରରେ ସଂସ୍କୃତ ପଢ଼ିବା ଭଳି ପୁସ୍ତକ କିଛି ନଥିଲା । ଦେବନାଗରୀ ଅକ୍ଷର ସଂଗେ ମୋର ପରିଚୟ ନଥିଲା । ପିଲାଦିନେ ବଂଗଳା ମାନେବହି ପଢ଼ିବାରେ ବଂଗାକ୍ଷର ସଂଗେ କେତେକ ପରିଚୟ ଥିଲା । ତା' ମଧ ମୁଁ ଲେଖି ଜାଣି ନଥିଲି; ଏବେ ବି ଜାଣେ ନାଇ । ସେଇ ବଂଗାକ୍ଷରରେ ପ୍ରାୟ ସବୁ ଦରକାରୀ ସଂସ୍କୃତ ବହି, ବିଶେଷରେ ବିଦ୍ୟାସାଗରଂକ ବ୍ୟାକରଣ କୌମୁଦୀ ମିଳୁଥିଲା । ମୁଁ ବଂଗାକ୍ଷର ଭଲକରି ଚିହ୍ନିବା ପାଇଁ ଆଗ ବଂଗଳା ସାହିତ୍ୟ ପଢ଼ିବା ଆରଂଭ କଲି ।

ସେତେବେଳେ କଲିକତା ବସୁମତୀ ଖବର କାଗଜର ଉପହାର ରୂପେ ଭଲ ଭଲ ବଂଗଳା ବହି ସଂଗେ ସଂସ୍କୃତ ପୁସ୍ତକ ସବୁ ମିଳୁଥିଲା । ମୁଁ ସେଇ ସବୁରୁ କେତେକ ସଂଗ୍ରହ କଲି । ଆଗ ପଢ଼ିଥିଲି ମନେଅଛି; ମାଇକେଲ ମଧୁସୂଦନ ଗ୍ରଂଥାବଳୀ ଓ ବଂକିମ

ଚଟୋପାଧ୍ୟାୟଂକ କେତେକ ଉପନ୍ୟାସ । ବୋଧହୁଏ ବସୁମତୀ ପ୍ରେସରୁ ମାସିକ ଉପନ୍ୟାସ ସବୁ ବାହାରୁଥିଲା । ମୋ ମନେଅଛି, ସେଇସବୁ ଉପନ୍ୟାସରୁ ଅନ୍ତତଃ ଖଂଡ଼େ ପଢ଼ିବାର । ସେଇ ଉପନ୍ୟାସ ଖଂଡ଼ିକର ନାମ ହେଉଚି ''ମହୀମମୟୀ'' । ପରେ ଜାଣିଲି ଏହା ହେଗାଡ଼ (Haggard) ସାହେବଙ୍କର 'ସି' (She) ବୋଲି ଖଂଡ଼ିଏ ଇଂରେଜ ଉପନ୍ୟାସର ଅନୁବାଦ ।

ପ୍ରାୟ ମାସକ ଭିତରେ ବ୍ୟାକରଣ କୌମୁଦୀ ଏକପ୍ରକାର ପଢ଼ି ଚଳନ୍ତିମାଫିକ ଶବ୍ଦରୂପ, ଧାତୁରୂପ ଆୟତ କଲି । ସନ୍ଧି, ତଦ୍ଧିତ, କୃଦନ୍ତ ପ୍ରଭୃତି ଆୟତ୍ତ କରିବାକୁ ମତେ ସେତେ କଷ୍ଟ ପଡ଼ି ନଥିଲା । ଏ ସଂପର୍କରେ ଆଜିମଧ୍ୟ ମୋର ଗ୍ରାମବାସୀ ମଧ-ଓଡ଼ିଆ ସ୍କୁଲର ପଂଡ଼ିତ ସ୍ୱର୍ଗତ ମଧୁସୂଦନ ମିଶ୍ରେ ସ୍ମରଣୀୟ । ଲୋକେ ଜାଣିପାରିବା ପାଇଁ କହି ଦେଉଚି ସେ ହେଉଚନ୍ତି ସ୍ୱନାମପ୍ରସିଦ୍ଧ ପ୍ରଚାରକ ଅନଂତ ମିଶ୍ରଂକର ପାଂଚଭାଇଂକ ଭିତରେ ସବା ବଡ଼ଭାଇ । ସେତେବେଳେ ମଧ-ଓଡ଼ିଆ ସ୍କୁଲରେ ସାହିତ୍ୟ ରୂପେ ମଧୁବାବୁଂକ ପ୍ରବନ୍ଧମାଳା ଓ ରାଧାନାଥ ବାବୁଂକ କବିତାକଳାପ ସଂଗେ ନିମାଇ ବଲ୍ଲଭ ବିଦ୍ୟାସାଗରଂକ ସର୍ବସାର ବ୍ୟାକରଣ ପୁସ୍ତକଟି ସଂସ୍କୃତରୁ ବିଶେଷତ ସଂସ୍କୃତ ସାରସ୍ୱତ ସିଧାଂତ ଚଂଦ୍ରକାରୁ ଓଡ଼ିଆ କରାହୋଇଥିଲା କହିଲେ ଚଳେ । ଏ ହିସାବରେ ଏହାପରେ ପ୍ରକାଶ ପାଇଥିବା ରାଧାନାଥ ବାବୁଂକ ବ୍ୟାକରଣ ପ୍ରବେଶଠାରୁ ଆହୁରି ବେଶି ସଂସ୍କୃତର ନିକଟବର୍ତ୍ତୀ ଥିଲା । ଆମ ପଂଡ଼ିତେ ମଧୁସୂଦନ ମିଶ୍ରେ ମୋର ଚାରି ବରଷ ମଧ-ଓଡ଼ିଆ ଶ୍ରେଣୀରେ ରହିବା ସମୟରେ ମୋତେ ଏହି ବ୍ୟାକରଣର ସୂକ୍ଷ୍ମାତିସୂକ୍ଷ୍ମ ସୂତ୍ର ପ୍ରୟୋଗାଦି ଧରି ଅଂକ ଓ ଓଡ଼ିଆ ସାହିତ୍ୟଟି ଭଲକରି ପଢ଼ାଇଥିଲେ । ପ୍ରସଂଗତଃ କହିଦିଏ ସେ ମୋତେ ଯାହା ପାଟୀଗଣିତ ପଢ଼ାଇଥିଲେ ସେଥିରେ ମତେ ଏଫ୍:ଏ ପାସ୍ କରିବା ପର୍ଯ୍ୟଂତ ବା ଆଉ କେବେ ପାଟୀଗଣିତ (Arithmetic) ଛୁଇଁବାକୁ ପଡ଼ି ନାଇ ।

ଅତଏବ ସଂସ୍କୃତ ବ୍ୟାକରଣରେ ତଦ୍ଧିତ, କୃଦଂତ ପଢ଼ିବାରେ ମୋତେ କେବଳ ଶବ୍ଦର ଲିଂଗ ନିର୍ଣ୍ଣୟ କରିବା ଛଡ଼ା ଆଉ କିଛି ବିଶେଷ କରିବାକୁ ହୋଇ ନଥିଲା । ମାସେ ବ୍ୟାକରଣ ପଢ଼ିବା ପରେ ସେଇ ବସୁମତୀର ଉପହାର ଗ୍ରଂଥ ମଧ୍ୟରେ ଥିବା କାଳିଦାସ ଗ୍ରଂଥାବଳୀରୁ ବତ୍ରିଶ ସିଂହାସନ ବା 'ଦ୍ୱାତ୍ରିଂଶ ପୁତ୍ତଳିକା' ପୁସ୍ତକଟି ଅଳ୍ପଦିନ ଭିତରେ ପଢ଼ିଦେଲି । ତା'ପରେ ପଢ଼ିଲି 'କୁମାର ସମ୍ଭବ' । ସେଥିପାଇଁ ପାଖ ସଂସ୍କୃତ ସ୍କୁଲ ଲାଇବ୍ରେରୀରୁ ଜୀବାନଂଦ ବିଦ୍ୟାସାଗରଂକ ପ୍ରକାଶିତ ସଟୀକ ନାଗରାକ୍ଷରରେ ମୁଦ୍ରିତ ପୁସ୍ତକଟି ମାଗି ଆଣିଥିଲି । ଏଣେ ସ୍କୁଲରେ ହିତୋପଦେଶ ପଢ଼ା ଚାଲିଥାଏ । ସେଥିରେ ମୋତେ ବିଶେଷ ମନ ଦେବାକୁ ହୋଇ ନଥିଲା । ଆମ ପଂଡ଼ିତ ମହାଶୟ ସ୍ୱର୍ଗତ ମହାମହୋପାଧ୍ୟାୟ ସଦାଶିବ ମିଶ୍ର ମୋର ଏ ଚେଷ୍ଟା ସବୁ ଲକ୍ଷ୍ୟ କରି ହିତୋପଦେଶ ପଢ଼ିଲେ ନ ପଢ଼ିଲେ ମୋତେ କିଛି କହୁ ନଥିଲେ । ସେ ମୋତେ ଭାରି ସୁଖ ପାଉଥିଲେ ଓ ଆଦର ବି କରୁଥିଲେ । ଦୁଇତିନି ମାସ ପରେ ମୁଁ ସଂସ୍କୃତରେ ଶ୍ଳୋକ ଲେଖା ଆରଂଭ କରିଦେଲି । ପଂଡ଼ିତ ମହାଶୟ କ୍ଲାସରେ ସଂସ୍କୃତ ପଢ଼ାଇଲାବେଳେ ମୁଁ କେବେ କେବେ ବସି ଶ୍ଳୋକ ଲେଖୁଥାଏଁ ।

କାଲିପରି ମନେ ଅଛି, ଦିନେ ପଂଡ଼ିତ ମହାଶୟ ବୁଲି ବୁଲି ପଢ଼ାଉ ପଢ଼ାଉ ମୋ ଖାତାରେ ତାଙ୍କ ଦୃଷ୍ଟି ପଡ଼ିଗଲା । ''ଯେ କ'ଣ ହେଉଚି'' ବୋଲି ଖାତାଟା ମୋ ପାଖରୁ ଛଡ଼ାଇ ନେଇ ଚୌକିରେ ବସି ପଢ଼ିଲେ; ଦେଖିଲେ ଗୋଟିଏ ଶ୍ଳୋକ ଲେଖା ହେଉଚି । ମୋତେ

ଡାକିଲେ । ପଢ଼ି ବୁଝାଇବାକୁ କହିଲେ । ମୁଁ ମହାଦେବଙ୍କୁ ବର୍ଣ୍ଣନା କରି ଗୋଟିଏ ଶ୍ଳୋକ ଲେଖିଥିଲି । ତହିଁରୁ ଗୋଟିଏ ଧାଡ଼ି ମନେ ଅଛି । କାହିଁକି ନା ପଂଡ଼ିତ ମହାଶୟ ସେଇ ଧାଡ଼ିଟିରେ ମୋର ଦୋଷ ଦେଖାଇଥିଲେ । ସେ ଆଉ ଭୁଲିବାର ନୁହେଁ । ସେ ଧାଡ଼ିଟି ହେଉଚି,

''ଅବଟାବସିତୈର୍ଭୁଜଂଗମୈଃ
ସ୍ୱତନୋଃ ସୁଂଦରତା ପ୍ରବର୍ଦ୍ଧିତା ।''

ପଂଡ଼ିତ ମହାଶୟ ମୋତେ ଅର୍ଥ କରିବାକୁ କହିଲେ । ମୁଁ ଅର୍ଥ କରିଦେଲି, 'ଅବଟୌ କି ଅବଟୁ ଅର୍ଥାତ୍ ବେକରେ, ଅସିତ ବୋଇଲେ କଳା ଭୁଜଂଗମ କି ସର୍ପଥିବା ହେତୁରୁ (ଯାହାଙ୍କର) ସ୍ୱତନୋଃ କି ନିଜ ଶରୀରର ସୁଂଦରତା ପ୍ରବର୍ଦ୍ଧିତା କି ବିଶେଷରେ ବଢ଼ିଚି ।' ପଂଡ଼ିତ ମହାଶୟ କହିଲେ, 'ଅବଟୁ ବୋଇଲେ ବେକ, ଏ ଅର୍ଥ ଡିକ୍‌ସନାରିରେ ଅଛି ସତ କିଂତୁ ଏପରି ଅପ୍ରଚଳିତ ଶବ୍ଦ ଲେଖାରେ ପ୍ରୟୋଗ କରିବା ଗୋଟାଏ ଦୋଷ । ଏହାକୁ ଆଳଂକାରିକମାନେ ଅପ୍ରଯୁକ୍ତତା ଦୋଷ ବୋଲି କହଂତି ।'

ତୃତୀୟ ଶ୍ରେଣୀ (ଏବର 9th class)କୁ ଉଠିବା ସଂଗେ ସଂଗେ ମୋର ହେଲା ଭୀଷଣ ମେଲେରିଆ । ସେତେବେଳେ ପୁରୀରେ ମେଲେରିଆ ନୂଆ । ବଂଗ ଦେଶରୁ ମେଲେରିଆ ରୋଗୀମାନେ ରେଳ ନଥିବାରୁ ପୂର୍ବେ ପୁରୀକୁ ଆସିପାରୁ ନଥିଲେ । କଲିକତାକୁ ପୂରାପୂରି ରେଳ ଲାଗିଲା ୧୯୦୦ ବା ୧୯୦୧ରେ । ୧୮୯୯ରେ କେବଳ ମହାନଦୀ, କାଠଯୋଡ଼ି ବଂଧ ଛଡ଼ା କଲିକତାକୁ ରାସ୍ତା ହୋଇ ଯାଇଥିଲା ଓ ମହାନଦୀ କାଠଯୋଡ଼ି ପାରି କରିଦେବା ପାଇଁ ରେଳ କଂପାନୀ ବ୍ୟବସ୍ଥା କରି ଦେଇଥିଲେ । ଲକ୍ଷ ଲକ୍ଷ ଯାତ୍ରୀ ସେ ବର୍ଷ ରଥଯାତ୍ରାରେ ବଂଗଳାରୁ ଆସିଗଲେ; କିଂତୁ ପୁରୀରେ ତାଂକୁ ରଥଯାତ୍ରା ପରେ ହଠାତ୍ ଫେରାଇ ନେବାର ଉପାୟ ନଥିଲା । ପୁରୀରେ ମଧ୍ୟ ମ୍ୟୁନିସିପାଲିଟି ବୋଲି ଯାହା ଥିଲା ସେ କିଛି ନୁହେଁ କହିଲେ ଚଳେ । ସେ ଏଥିପାଇଁ ଆଦୌ ପ୍ରସ୍ତୁତ ନଥିଲେ ।

ସରକାରଂକର ସେକାଳ ଗୋରା କଲେକ୍ଟରମାନେ ରାଜ୍ୟ ଶାସନରେ ଖୁବ୍ ନିପୁଣ ଥିଲେ । ଦୁର୍ଭିକ୍ଷ ବା ମଡ଼କ ପଡ଼ିଗଲେ ବା ବଢ଼ି ମରୁଡ଼ି ହେଲେ ତାଂକ ଜିଲାଲୋକେ କେବେ ଅନାହାରରେ ବା ବୁଡ଼ିକରି ମରୁ ନଥିଲେ । ସେ ତଳ ଡେପୁଟି ପ୍ରଭୃତିଂକ ଦ୍ୱାରା ସୁଂଦର ରିପୋର୍ଟ କରାଇ ପାରୁଥିଲେ ଯେ, ''ବଢ଼ିରେ ଲୋକଂକ ଘର ବାଡ଼ି ଧୋଇ ହୋଇ ସଫା ହୋଇଯାଇଛି । ସାପ ମୂଷାଦିଂକ ସଂଗେ ରୋଗର ବୀଜସବୁ ସଫା ହୋଇଯାଇଚି । ବିଲରେ ପଟୁ ପଡ଼ି ଲୋକଂକର ବଡ଼ ଉପକାର କରିଚି । ଧାନ ନହେଲେ ବା ମରୁଡ଼ି ହେଲେ ମଧ୍ୟ ଧୋଇ ବିଲରେ ଧାନ ବା ମରିଯାଇଥିବା ବିଲରେ ରବିଫସଲ ଦଶଗୁଣ ହୁଏ । ଧୋଇରେ ମଧ୍ୟ ବିଲରେ ଗୋଟାଏ ଗୋଟାଏ ଧାନ ରହି ଯାଇଥିଲେ ସେ ଫସଲ କାଟେ କିଏ ? ଏ ଦେଶ ଲୋକେ କହଂତି, 'ଧୋଇଗଲେ ବିଲ କୋଣକ ମାଣେ ।' ମଡ଼କ ପଡ଼ିଛି ବୋଲି କହିଲେ ଡେପୁଟି ବଦଳି ହୋଇ ଯାଆଂତି । ଚୌକିଦାର ଥିଲେ ବରଖାସ୍ତ ହୁଏ । ସତ ନକହିବା ପାଇଁ ଭଲ ଭଲ ଲୋକଂକୁ ଅଣାଯାଏ ଓ ନିଯୁକ୍ତି କରାଯାଏ । ଧୋଇ ମରୁଡ଼ି ମଡ଼କ ପରି କୌଣସି ଦୁର୍ଘଟଣା ଦେଖି ବା କଳନା କରି ସେକାଳ ସରକାର ବ୍ୟବସ୍ଥା କରିବାର ମୋର କେବେ ମନେ ହେଉନାଇ ।

## ୧୪। ରଥଯାତ୍ରା ଓ ହଇଜା—୧୮୯୯

ସେ ବର୍ଷ ରଥଯାତ୍ରାରେ ପୁରୀରେ ଯେପରି ହଇଜା ହୋଇଥିଲା ତା' ଏବେ କେହି କଳ୍ପନା କରିପାରିବେ ନାଇ । ପୁରୀ ବଡ଼ଦାଂଡ଼ରେ ଶତ ଶତ ସଂଖ୍ୟାରେ ମଡ଼ା ପଡ଼ିଥାଂତି । ଲୋକେ ବ୍ୟାକୁଳ ହୋଇ ପାଣି ମାଗୁ ମାଗୁ ତାଂକୁ ମ୍ୟୁନିସିପାଲିଟିରେ ନିଯୁକ୍ତ ଥିବା ହାଡ଼ି ଡୋଲାରେ ଭର୍ତ୍ତିକରି ସମୁଦ୍ରକୂଳ ବାଲିଆଡ଼କୁ ବୋହି ନିଅଂତି । ସମୁଦ୍ରକୂଳ ବାଲିରେ ଗୋଟାଏ ବଡ଼ ଟୋପ ଖୋଲା ହୋଇଥାଏ । ସେଥିରେ ବାଡ଼ି ମୁର୍ଦାର ବୋଲି ହାଡ଼ିମାନେ ମୁମୂର୍ଷ ସହିତ ମୁର୍ଦାରଂକୁ ଫିଂଗି ଦିଅଂତି । ମୁଁ ଜାଣେ ଦେଖିଥିବା ଲୋକେ ଏବେ ବଂଚିଥିଲେ ବି କହିବେ ସେଇ ବାଲିଟୋପ ଭିତରୁ ପରେ ଲୋକେ ବଂଚିକରି ଉଠି ଆସୁଥିଲେ । ସହରର ଘରେ ଘରେ ବାଡ଼ି ମୁର୍ଦାର ଶୋଇଲେ । ମଫସଲରେ ଗାଁକୁ ଗାଁ ରୋଗ ବ୍ୟାପିଗଲା । ଜଗନ୍ନାଥ ସଡ଼କରେ ଶଗଡ଼ ଚଳାଇବା କଷ୍ଟ ହେଲା । ଆମ ସ୍କୁଲ ସେଥିପାଇଁ ପଂଦର ଦିନ ଛୁଟି ହୋଇଗଲା । ମୁଁ ପିଲା । ମୋର ଜଣେ ସଂପର୍କୀୟ ଭାଇ ଥାଂତି ବୋଡ଼ିଂରେ ଆମର ରାଂଧୁଣିଆ । ସ୍କୁଲ ଛୁଟି ହୋଇଯିବାରୁ ସେ ମୋତେ ସାଂଗରେ ଘେନି ଜଗନ୍ନାଥ ସଡ଼କ ବାଟେ ଗାଁକୁ ଆସିଲେ, ଝିପିଝିପି ବର୍ଷା ବରାବର ହେଉଥାଏ । ସେ ତାଂକ ମୁଂଡ଼ ଛତାଟି ମୋ ମୁଂଡ଼ ଉପରେ ଦେଇ ମୋତେ ପାଖେ ପାଖେ ରଖି ଚାଲୁଥାଂତି । ମୁର୍ଦାର ଦେଖିଲେ ଛତାଟି ଆଡୁଆଳ କରି ଦିଅଂତି । କିଂତୁ ସଡ଼କର ଶଗଡ଼ସରି ମଝିରେ ଓ ଶଗଡ଼ ସରିକୁ ଲାଗି ମୁର୍ଦାର ପଡ଼ିଚଂତି । ଛତା ଆଡୁଆଳରେ ମୋ ଦୃଷ୍ଟିରୁ ସେ ବର୍ଞ୍ଚୁଚଂତି କେତେକେ । ମୁଁ ଯେଉଁ ମୁର୍ଦାରଂକୁ ଦେଖେ ତାକୁ ଗଣି ଗଣି ବାଟ ଚାଲୁଥାଏ । ହାଟ ଦାମୋଦରପୁରଠାରୁ ଆମେ ବିଲକୁ ଗଡ଼ିଲୁ । ଏଇ ଛଅ ମାଇଲ ଭିତରେ ମୁଁ ଗଣିଥିଲି ୩୯ଟି ମୁର୍ଦାର । ସେମାନେ ସମସ୍ତେ ଶଗଡ଼ ସରି ଭିତରେ ବା ପାଖରେ ପଡ଼ିଥିଲେ । ସଡ଼କ ନୟନଯୋଡ଼ିରେ ଆଉ କେତେ ପଡ଼ିଥିଲେ ମୁଁ ଜାଣେନାଇ । ଭୀଷଣ ଗଂଧ ହେଉଥାଏ । ଠାଏ ଦେଖିଚି ବିଲୁଆମାନେ ଗୋଟିଏ ମୁର୍ଦାର ମାଂସକୁ ଭିଡ଼ି ଖାଉଥାଂତି ଓ କଳି କରୁଥାଂତି । ରକ୍ତହୀନ ସେ ଧଳାମାଂସ ଭିଡ଼ିବା ବିକଟ ଓ ବିଭତ୍ସ ଦୃଶ୍ୟ ଆଜି ମୋ ମନେ ପଡ଼ିଯାଉଚି ।

ଏଇ କାରଣରୁ ବଂଗାଳୀମାନେ ବର୍ଷେ ଖଂଡ଼େ ହୁଏତ ସେତେ ପୁରୀ ଆସୁ ନଥିଲେ । ତାପରେ ମେଲେରିଆ ଓ ଯକ୍ଷ୍ମାରୋଗୀମାନେ ପୁରୀକୁ ସ୍ୱାସ୍ଥ୍ୟନିବାସର ସ୍ଥାନ କଲେ । ସେଇ ମେଲେରିଆ ମୋତେ ଧରିଥିଲା । ନବମ ଶ୍ରେଣୀର ବର୍ଷକଯାକ ମୁଁ କିଛି ପଢ଼ିନାଇ । ଖାଲି ସେକାଳର ବିଜୟାବଟିକା ଓ ଡି. ଗୁପ୍ତ (D. Gupta) ଖାଇବା ମୋର ଥିଲା କାମ । ପେଟରେ ବଡ଼ ପ୍ଲିହା, ଚାଲିଲାବେଳେ ଶରୀର ବୋଇଲେ ଖାଲି ପେଟଟା ଦିଶୁଥାଏ । ଷାଣ୍ମାଷିକ ପରୀକ୍ଷା ହେବାବେଳକୁ ଛଟପଟ ହୋଇ ଘରୁ ଯାଇ ବହି କିଣି ମାତ୍ରକ ୧୬ଦିନ ରହି ପରୀକ୍ଷାଟା ଦେଇ ପକାଇଥିଲି । ପରୀକ୍ଷା ଦେଲାବେଳେ ଆଗରୁ ବେଂଚ ଉପରେ ବିଜୟାବଟିକା ଓ D. Gupta ରଖି ଖାଉଥିବାର ମୋ ମନେ ଅଛି । ସେ ବର୍ଷ ବାର୍ଷିକ ପରୀକ୍ଷା ଦେଇନାଇ; କିଂତୁ ପ୍ରମୋଶନ ପାଇଲି । ସ୍ୱାସ୍ଥ୍ୟ ସୁଧାରିବା ପାଇଁ କଟକ ଆସି କଲେଜିଏଟ୍ ସ୍କୁଲରେ ଭର୍ତ୍ତି ହେଲି ।

## ୧୫। କେତେଜଣ ପରିଚିତ ବ୍ୟକ୍ତି

ପୁରୀ ଜିଲା ସ୍କୁଲରେ ପଢ଼ିଲା ବେଳେ ଥରେ ଅଧେ ବୋଡ଼ିଂରେ ଗୋପବଂଧୁ ଦାସଂକୁ

ଦେଖିଥିଲି ମୁଁ ଯେଉଁବର୍ଷ ପୁରୀଜିଲା ସ୍କୁଲରେ ଭର୍ତ୍ତି ହେଲି ସେଇ ବର୍ଷ ସେ ସେଇ ସ୍କୁଲରୁ ପାଶ୍ କରି କଟକ କଲେଜକୁ ଆସିଥିଲେ । ସେ ପୁରୀଜିଲା ସ୍କୁଲରେ ପଢ଼ିବାବେଳେ ତାଂକର ଭାରି ନାଁ ଥିଲା । ତାଂକର ସହପାଠୀ ଥିଲେ ମୋର ଗ୍ୟାଂତି ବଡ଼ଭାଇ ସ୍ୱର୍ଗତ ଗୋପୀନାଥ ଦାସ ଓ ପେନ୍‌ସନ ପ୍ରାପ୍ତ ରାୟ ବାହାଦୁର ସ୍ୱର୍ଗତ ବୈଦନାଥ ମିଶ୍ର । ଏମାନେ ଉଦୀୟମାନ ଭଲଛାତ୍ର ଥିଲେ ବୋଲି ଏମାନଂକର ନାମ ଥିଲା । ପୁଣି ସେ ଅଂଚଳର ଲୋକଂକ ଭିତରେ ଏନ୍‌ଟ୍ରାନ୍‌ସ ପାଶ୍ କରିବା ଗୋଟାଏ ବଡ଼ କଥା ଥିଲା । ବଂଗାଳୀ ଡେପୁଟୀ ଓକିଲଂକ ପିଲା ଛଡ଼ା ଅନ୍ୟମାନେ ପ୍ରାୟ ବେଶି ଏନ୍‌ଟ୍ରାନ୍‌ସ ପାଶ୍ କରୁ ନଥିଲେ କି ଏନ୍‌ଟ୍ରାନ୍‌ସ ପାଶ୍ ଯାଏ ଯାଉ ନଥିଲେ ।

ହେଡ୍‌ମାଷ୍ଟର ଓ ଅନ୍ୟାନ୍ୟ ଶିକ୍ଷକମାନଂକ ମଧ୍ୟରୁ ଅନେକ ହେଉଥିଲେ ବଂଗାଳୀ । ମୋ ମନେ ଅଛି, ୧୯୦୪ରେ ପୁରୀର ମୁକ୍ତାର ଦେଶପ୍ରାଣ ସ୍ୱର୍ଗତଃ ରାମଚଂଦ୍ର ଦାସ ସମସ୍ତ ଓଡ଼ିଆବାସୀ ଅଂଚଳରୁ ଗଣି ଗଣି ଓଡ଼ିଆ ବି.ଏ.ମାନଂକର ନାମ ସେକାଳ 'ଉତ୍କଳ ଦୀପିକା'ରେ ଛପାଇଥିଲେ । ସଂଖ୍ୟାଟି ମୋର ମନେ ନାଇ; କିଂତୁ ଶହ ପୂରି ନଥିଲା । ମଧୁବାବୁ ଓକିଲ ଓ ସ୍ୱର୍ଗତଃ ଅଭିରାମ ଭଂଜଂକୁ ମିଶାଇ ସେତେବେଳେ ଓଡ଼ିଆ ଏମ୍.ଏ. ଥିଲେ ବୋଧହୁଏ ପାଂଚଜଣ । ଠିକ୍ ମନେ ହେଉନାଇ, ହୁଏତ ଅନ୍ୟ ତିନିଜଣ ହେଉଚଂତି, ସଂବଲପୁରର ରାମନାରାୟଣ ମିଶ୍ର ଓ ଖରସୁଆଁର ଯୁଗଳ କିଶୋର ତ୍ରିପାଠି ଏବଂ ସଂଭବତଃ ମଧୁବାବୁଂକ ଭାଇ ଶ୍ରୀ ଗୋପାଳ ବଲ୍ଲଭ ଦାସ ।

## ୧୬। ସାହିତ୍ୟ ଯୁଦ୍ଧ

ଗୋପବଂଧୁ ଦାସ ଲେଖକ ହିସାବରେ ମଧ୍ୟ ପରିଚିତ ହୋଇ ଉଠୁଥିଲେ । ସେତେବେଳେ ଓଡ଼ିଶାରେ ଗୋଟିଏ ସାହିତ୍ୟ ଯୁଦ୍ଧ ଲାଗିଥାଏ । ରାଧାନାଥ ରାୟ ଆଗେ ବଂଗଳାରେ ମାଇକେଲ ମଧୁସୂଦନଂକୁ ଅନୁକରଣ କରି କବିତାମାନ ଲେଖୁଥିଲେ । ପରେ ଓଡ଼ିଆରେ ଲେଖା ଆରଂଭ କଲେ । ନୂଆ ଛଂଦ ଓ ନୂଆ ଶୈଳୀ ସବୁ ବଂଗଳାରୁ ଅନୁକରଣ କରି ଓଡ଼ିଆରେ ଭର୍ତ୍ତି କଲେ । ସେତେବେଳେ ସେ ଥିଲେ ସ୍କୁଲ ଇନିସ୍‌ପେକ୍ଟର । ସେଇ ସୂତ୍ରରେ ସେ ନିଜ କବିତା ସାହିତ୍ୟ ପ୍ରଚାର ବି କରିବାରେ ଲାଗିଲେ, କେବଳ ପାଠ୍ୟ ପୁସ୍ତକ ରୂପେ ନୁହେଁ; ଅନ୍ୟଥା ମଧ୍ୟ । ମୋ ମନେଅଛି, ଥରେ ରାଧାନାଥ ବାବୁ ଇନିସ୍‌ପେକ୍ଟର ପରିଦର୍ଶନରେ ସତ୍ୟବାଦୀ ଯାଇଥିଲେ । ପଂଡ଼ିତେ ଆମକୁ ସବୁ ସାଂଗେ ଧରି ସତ୍ୟବାଦୀ ଡାକବଂଗଳାକୁ ଆସିଲେ । ସେଇ ମୋର ରାଧାନାଥବାବୁଂକୁ ପ୍ରଥମ ଦେଖା । ଆମର ପରୀକ୍ଷା ସରିଲା ପରେ ରାଧାନାଥବାବୁଂକ ସାଂଗରେ ଆସିଥିବା ଜଣେ ଇନିସ୍‌ପେକ୍ଟିଂ ପଂଡ଼ିତ ସାଂଗେ ସାଂଗେ କିଛିଦୂର ଆସି ତାଂକୁ କହିଲେ, "କିଓ ତମେ ରାଧାନାଥବାବୁଂକ 'ମହାଯାତ୍ରା' କାବ୍ୟଟା ପଢ଼ିଚ ? ଏବେ ଛପା ହୋଇଚି । ବାବୁ ଲେଖିଚଂତି । ଭାରି ଭଲ ନୂଆ ଲେଖା । କିଣି କରି ପଢ଼ିବ । ଆଉ ସମସ୍ତଂକୁ ପଢ଼ିବାକୁ କହିବ । ତାଂକ ବହି ଯେ ପଢ଼େ ତାକୁ ବାବୁ ଭାରି ସୁଖ ପାଂତି ।"

ଅନ୍ୟାନ୍ୟ କାରଣ ମଧ୍ୟରେ, ଏଇସବୁ କାରଣରୁ କଟକରେ ଦଳେ ପ୍ରତିଷ୍ଠିତ ସାହିତ୍ୟିକ ବଡ଼ କ୍ରୁଦ୍ଧ ହୋଇ ଉଠିଲେ । ତେଣେ ରାଧାନାଥବାବୁଂକ ପଟେ ରହିଲେ ବାମଂଡ଼ାର ସେକାଳର

ସାହିତ୍ୟିକ ରାଜା ଶ୍ରୀ ବାସୁଦେବ ସୁଦ୍ଧଳଦେବ ।' ଯୋଡ଼ିଏ କାଗଜ ବାହାରିଲା । ଗୋଟିଏ କଟକରୁ 'ଇଂଦ୍ରଧନୁ' । ଆଉଟି ତା'ର ପ୍ରତିବାଦୀ ବାମଂଡ଼ା ରାଜଧାନୀ ଦେବଗଡ଼ରୁ 'ବିଜୁଳି' । ମୁଁ ପିଲାଦିନେ କେବେ କାହାଘରେ ପଡ଼ିଥିବା ଖଂଡ଼େ 'ଇଂଦ୍ରଧନୁ' ବା 'ବିଜୁଳି' ଦେଖିଚି । ଇଂଦ୍ରଧନୁର ପ୍ରଧାନ ଶରବ୍ୟ ଥିଲା ଭାଷା ଓ ସାହିତ୍ୟରେ ବଂଗଳାର ଆକ୍ରମଣ । ସ୍ୱର୍ଗତ ଗୋପାଳ ବଲ୍ଲଭ ଦାସ, ଗୌରୀଶଂକର ରାୟ, ରାମଶଂକର ରାୟ, ବନମାଳୀ ସିଂହ ପ୍ରଭୃତି ଇଂଦ୍ରଧନୁ ପକ୍ଷରେ ମୁଖ୍ୟ ଥିଲେ । ଇଂଦ୍ରଧନୁରେ ଚଟଣି ବୋଲି ବଡ଼ ସୁଂଦର ଥଟ୍ଟା ସବୁ ବାହାରୁଥିଲା । ସେଇଥିରୁ ଗୋଟିଏ ମନେଅଛି । ସେଥିରୁ ଜଣାପଡ଼ିବ ବିଜୁଳିପକ୍ଷୀୟ ଆଘାତଟା କେଉଁଠାରେ ବାଜୁଥିଲା । ସେ ଚଟଣିଟି ହେଉଛି ଏଇ—ଜଣେ ବଂଗାଳୀ ଦାରୋଗା ଜଣେ ଓଡ଼ିଆ ଚୌକିଦାରକୁ ପଚାରିଲେ, ''ତୋମାର ବାଡ଼ି କୋଥାଏ ।'' ଚୌକିଦାର କାଖତଳୁ ଠେଂଗାଟି କାଢ଼ି, ହାତରେ ଟେକି ଦେଖାଇଦେଲା । ଦାରୋଗା ଆଉ କିଛି ନକହି ଏକାବେଳକେ ଦୌଡ଼ି ଚଂପଟ । ଦାରୋଗା ସେଇଦିନଠାରୁ ଠିକ୍ କରିନେଲେ—ଓଡ଼ିଆଂକୁ ବାସସ୍ଥାନ ପଚାରିଲେ ସେମାନେ ମାରିବାକୁ ଉଂଚାଂତି ।

## ୧୭। ଗୋପବଂଧୁ ଦାସ ଓ ଇଂଦ୍ରଧନୁ

ଗୋପବଂଧୁ ଦାସ ପୁରୀ ଜିଲ୍ଲା ସ୍କୁଲରେ ତଳ କ୍ଲାସରେ ପଢ଼ିବାଦିନୁ 'ଇଂଦ୍ରଧନୁ'ର ପକ୍ଷ । ଫୋର୍ଥକ୍ଲାସ (୫th)ରେ ଥିଲାବେଳେ ସେ 'ଇଂଦ୍ରଧନୁ'ରେ ଗୋଟିଏ କବିତା ଲେଖିଥିଲେ । ସେଥିରୁ ଗୋଟିଏ ଧାଡ଼ି ମାତ୍ର ମୋର ମନେ ପଡୁଚି । ରାଧାନାଥବାବୁ ଦେଖିବାକୁ ବଡ଼ ଧଡ଼ିଆ ଥିଲେ । ଗୋପବଂଧୁଙ୍କ କବିତାରେ ଥିଲା;

''ଧଡ଼ିଆ ପଂଡ଼ିତଂ-ମନ୍ୟ,
ବାଉରିସାହିରେ ଶୃଗାଳକେଶରୀ ପରି ହେଉଥାଂତି ଗଣ୍ୟ ।''

ରାଧାନାଥବାବୁ ଥିଲେ ଇନିସ୍‌ପେକ୍ଟର । ସେ ଜାଣିପାରିଲେ ଏ ଲେଖକଟି ପୁରୀ ଜିଲ୍ଲା ସ୍କୁଲର ଗୋଟିଏ ପିଲା । ସଂଗେ ସଂଗେ ଇନ୍‌କ୍ୱାରୀ ଚାଲିଲା । ରାଧାନାଥବାବୁ ଯାଇ ପହଂଚିଲେ । ଗୋପବଂଧୁ ଦାସଂକର ସ୍କୁଲରୁ ବହିଷ୍କାର ଦଂଡ଼ ଠିକ୍ ହୋଇଗଲା । ସ୍କୁଲର ହେଡ଼ମାଷ୍ଟରଂକ ସହିତ ଅନ୍ୟାନ୍ୟ କେତେକ ଭଦ୍ରଲୋକ ବ୍ୟସ୍ତ ଓ ଚିଂତିତ ହୋଇପଡ଼ିଲେ । ପୁରୀର ସ୍ୱର୍ଗତ ଦିବ୍ୟସିଂହ ମିଶ୍ର, ବି.ଏ. ସେତେବେଳେ ନୂଆ ହୋଇ ପୁରୀ ଜିଲ୍ଲାସ୍କୁଲରେ ମାଷ୍ଟରୀ କରୁଥାଂତି । ସେ ଉଦ୍ୟମ କରି ବହୁ ଭଦ୍ରଲୋକଂକୁ ଆଣି ରାଧାନାଥ ବାବୁଂକ ପାଖରେ ପହଂଚାଇଲେ । ଶୁଣିଚି ଶିକ୍ଷା ବିଭାଗର ଅଧିନାୟକ ରୂପେ ରାଧାନାଥବାବୁ ମତ ଦେଇଥିଲେ, ''ସେ ମୋ ବିରୁଦ୍ଧରେ ଲେଖିଲା, କି ଆଉ କାହା ବିରୁଦ୍ଧରେ ଲେଖିଲା ପଡ଼ିନାଇ; କିଂତୁ ଯେ ଆଜିଠୁ ଏପରି ଲେଖିପାରେ ସେ ଭବିଷ୍ୟତରେ ହେବ କ'ଣ ? ତାକୁ ଆଉ ବେଶି ଶିକ୍ଷାଦେଲେ ସେ ସମାଜର କି ଅନିଷ୍ଟ ନ' କରିପାରେ ? ଶେଷକୁ ସମସ୍ତେ ପ୍ରମାଣ କରିବାକୁ ଚାହିଁଲେ ପିଲାଟା ହୁଏତ ନିଜେ ଲେଖିନାଇ, ଆଉ କିଏ ଲେଖି ଦେଇଚି କିଂବା ସେ ହୁଏତ ଅନ୍ୟ କାହା ପ୍ରେରଣାରେ ଲେଖିଚି । ତାକୁ ଦଂଡ଼ ନଦେଇ ଏଥର ପଢ଼ିବାର ସୁବିଧା ଦିଅଂତୁ । ଆଉ ତା'ର ଚରିତ୍ର ଏପରି ଦେଖାଗଲେ ପରେ ଯାହାହେବ କରାଯିବ ।

ବହୁକଷ୍ଟରେ ଶେଷକୁ ଦଶଟଙ୍କା ଜୋରିମାନା ଦେଇ ସେ ବର୍ଷର ପ୍ରାଇଜ୍ ହରାଇ ଗୋପବନ୍ଧୁ ଦାସେ ସେ ଘାଟି ଖସିଗଲେ । ଏଇଟା ଖୁବ୍ ସଂଭବ ୧୮୯୫ ବା ୧୮୯୬ ଖ୍ରୀ:ଅ:ର କଥା । ସେତେବେଳକୁ ଗୋପବନ୍ଧୁ ସେକାଳର 6th class ବା ଡବଲ ପ୍ରମୋଶନ ପାଇ 4th classରେ ଥାଂତି ।

ଯାହାହେଉ, ଏଇ ଶିକ୍ଷା ଫଳରେ ସେ ପରେ ସମାଜର ଅମଂଗଳ କରିବା କାର୍ଯ୍ୟରୁ କ୍ଷାଂତ ହୋଇଥିଲେ କି ନା' ସେକଥା କିଏ କହିବ । କିଂତୁ ସେଇଦିନଠାରୁ ଛାତ୍ରମହଲରେ ଗୋପବନ୍ଧୁ ଦାସଂକର ଖୁବ୍ ନାମ ହୋଇଯାଇଥିଲା ଓ ପ୍ରଥମଥର ପୁରୀଜିଲ୍ଲା ସ୍କୁଲ ବୋର୍ଡ଼ିଂରେ ଗୋପବନ୍ଧୁଂକୁ ଦେଖିବାର ମୋ ମନେଅଛି । ଟିକିଏ ଟିକିଏ ଦାଢ଼ି ଉଠିଥାଏ । ତା' ସେତେବେଳେ ବି କାଟୁ ନ'ଥାଂତି । ସେଦିନ ହୋଇଥାଏ ଏକାଦଶୀ । ସେ ବୋର୍ଡ଼ିଂରେ ଗୋଟିଏ ଘରେ ଗାଧୋଇ ସାରି ଓଦା ଗାମୁଛାଟିଏ ପିଂଧି ତଳେ ଟେକି ହୋଇ ବସି ଗୋଟିଏ ଥାଳିରେ ଧୁଆ ଚୁଡ଼ା ସଂଗେ ଗୁଡ଼ ମିଶାଇ ଏକାଦଶୀ କରୁଥାଂତି । ଆମେ ସବୁ ପିଲାଯାକ ଗୋପବନ୍ଧୁ ଦାସ ଆସିଚଂତି ବୋଲି ଶୁଣି ଦୂର ଆଢୁଆଳରୁ ଲୁଚି ଲୁଚି ଦେଖୁଥାଉ । କଲେଜରେ ସେତେବେଳେ ସେ ପ୍ରଥମ ବର୍ଷୀୟ ଶ୍ରେଣୀରେ ପଢୁଥାଂତି ।

## ୧୮। ହରିଭାଇନା

କହୁଥିଲି ଗୋପବନ୍ଧୁ ଦାସଂକ କଥା । ବି.ଏ. ପଢୁଥାଂତି କିଂବା ବି.ଏ. ପାସ୍‌କରି ଓକିଲାତି ପଢୁଥାଂତି ଠିକ୍ ମନେପଡୁ ନାଇ, କିଂତୁ ବୋର୍ଡ଼ିଂରେ ଥାଂତି । ତାଂକ ସଂଗେ ଥାଂତି ଆମର ହିରଭାଇନା—(ଏବର ଆଚାର୍ଯ୍ୟ ହରିହର ଦାସ) । ହରିହର ଦାସ ହେଉଚଂତି ଆମ ଗ୍ରାମର ମୋର ଗ୍ୟାଂତି ବଡ଼ଭାଇ, ମୋରି ଏକା ସେ ଥିଲେ ହରିଭାଇନା । ପରେ ସମସ୍ତେ ତାଂକୁ ହରିଭାଇନା ବୋଲି ଡାକିଲେ । ସେ ଏଫ୍.ଏ. ପଢୁଥାଂତି । ଏଥିପୂର୍ବରୁ ହରିଭାଇନା କଟକ ଆସିବା ପରେ ଗୋପବନ୍ଧୁ ଦାସଂକ ସଂଗେ ତାଂକର ଖୁବ୍ ପରିଚୟ ଓ ଘନିଷ୍ଠତା ହୋଇଥିଲା । ହରିଭାଇନା ତାଂକ କଥା ଆମ ଆଗେ ଖୁବ୍ କହୁଥିଲେ । ଗୋପବନ୍ଧୁ ଦାସଂକ ଘର 'ସୁଆଂଡ଼' ଆମ ଗ୍ରାମକୁ ପ୍ରାୟ ପାଂଚ ମାଇଲ ଦୂରରେ ଭାର୍ଗବୀ ଉପରେ— ବଳପୁର ଆରପାଖେ । ଥରେ ଆମକୁ ଘେନି ସେ ଗୋପବନ୍ଧୁ ଦାସେ ଛୁଟିରେ ଗ୍ରାମରେ ଥିବାବେଳେ ତାଂକ ଗ୍ରାମକୁ ଯାଇଥିଲେ । ସଂଗରେ ଥିଲେ ଅନଂତ ମିଶ୍ରେ । ସେ ସେତେବେଳେ ପୁରୀ ଜିଲ୍ଲାସ୍କୁଲର ଛାତ୍ର । ଅନଂତ ମିଶ୍ରେ (ପ୍ରଚାରକ ଅନଂତ ମିଶ୍ରେ) ସେ ମଧ ଆମରି ଗାଁର ହରିଭାଇନାଂକ ସାନଶଳା । ସେଇଦିନ ଗୋପବନ୍ଧୁ 'ଦାସଂକ' (ପରେ ତାଂକୁ ଆମେ ଡାକୁଥିଲୁ ଦାସେ ଆପଣେ) ସଂଗେ ଭଲ ପରିଚୟ । ସେ ଘଟଣା ମୋ ପକ୍ଷରେ ସ୍ମରଣୀୟ ।

## ୧୯। ନୈଷ୍ଠିକ ପରିବାର

ଦେଖିଲୁ ଛୁଟିରେ ସେ ଘରେ ନାହାଂତି । ସେ ସେତେବେଳେ ସପତ୍ନିକ । ଗୋଟିଏ ପୁଅ ଆଉ ଗୋଟିଏ ଝିଅ ବୋଧହୁଏ ହୋଇଥାଏ, କିଂତୁ ସେ ନିଜ ଘରେ ରହୁ ନଥାଂତି ।

ପରବର୍ତ୍ତୀ ଘଟଣା ଯଥା ସ୍ଥାନରେ କହିବି । ଏବେ କହିଦିଏଁ; ଦାସ ଆପଣଂକ ପରି ହିଂଦୁ ଗୃହସ୍ଥର ଦାଂପତ୍ୟନିଷ୍ଠା ଓ ତହିଁ ସଂଗେ ଅତି ସୁସଂଯତ ଓ ସମୀଚୀନ ଯୌନନିଷ୍ଠା ମୁଁ ଆଉ ଦେଖିଚି ବୋଲି ମନେ ହେଉ ନାଇ । ସକାଳୁ ପ୍ରାୟ ଦିନ ପହରକ ସରିକି ତାଂକ ଘରଠାରେ ପହଂଚିଲୁ । ଶୁଣିଲୁ ସେ ଗାଁମୁଂଡ଼ ଠାକୁରାଣୀ ଜାଗେଶ୍ୱରୀଂକ ପାଖେ 'ସପ୍ତା' ବା 'ସପ୍ତାଂଗ'ରେ ବସିଚଂତି । ସପ୍ତା ଅନୁଷ୍ଠାନଟି ହେଉଚି ସାତଦିନ ହବିଷ କରି ବାହାରେ ରହି ସମସ୍ତ ଜଗନ୍ନାଥ ଦାସଂକ ବାରସ୍କଂଦଯାକ ଭାଗବତଟି ଥରେ ଆବୃତ୍ତି କରିବା । ଯାଇ ଦେଖିଲୁ, ସୌମ୍ୟ ବପୁ, ଉଜ୍ଜ୍ୱଳ ଚକ୍ଷୁ, ଗୋପବଂଧୁ ପ୍ରାତଃସ୍ନାନ ସାରି ମଠାପିଂଧି ପୀଢ଼ାରେ ବସି ଆଗରେ ପୋଥି ଆସନରେ ତାଳପତ୍ର ଭାଗବତ ପୋଥିଟି ଥୋଇ ସେଥିରୁ ଖେଦାଟିଏ କାଢ଼ି ହାତରେ ଧରି ଦେବୀଂକ ଆଗେ 'ଋଜୁ ପୃଷ୍ଠକଟିଗ୍ରୀବ' ହୋଇ ସୁଂଦର ସ୍ୱରଝଂକାରରେ ଭାଗବତ ପଢୁଚଂତି । ପାଖରେ ଦୁଇଚାରି ଜଣ ଶ୍ରୋତା ଅଛଂତି ଓ ସେବକଟି ବି ସ୍ନାନପ୍ରକାର ସାରି ଚିତାଚୈତନ କରି ବସିଚି । ଚୂଡ଼ାଘଷା ବାଳଭୋଗ ହୋଇଥିଲା; ସେଥିରୁ ବାକି ଥିଲା । ଆମେ ସ୍ନାନନିତ୍ୟକର୍ମାଦି ସାରି ସେଇଥିରୁ ପ୍ରସାଦ ପାଇଲୁ ।

ପ୍ରାୟ ବେଳ ଦୁଇଘଡ଼ି ଥାଇ ଭାଗବତ ପଢ଼ାସରିଲା । ଉଆଭାତ ସେବକ ରାଂଧି ବେତାରେ ବାଢ଼ିଥିଲା । ପାତ୍ରମାନଂକରେ ବି ଡାଲି ଓ ତରକାରି ଥିଲା । ସବୁ ସେଇ ଭାଗବତଂକୁ ଭୋଗ ଦିଆଗଲା । ଦାସେ ଆପଣେ କଦଳୀପତ୍ର ଖଂଡ଼ିଏ ପକାଇ ହବିଷରେ ବସିଲେ । ଆମେ ଓ ଆଉ ଯେ ଥିଲେ ସମସ୍ତେ ଖଂଡ଼ିଏ ଖଂଡ଼ିଏ କଦଳୀପତ୍ର ପକାଇ ସାଂଗରେ ବସିଲୁ । ସେଦିନର ଅନୁଭୂତି ମୋର ନୂଆ । ଆମେ ଶାସନୀ ବ୍ରାହ୍ମଣ । ଗୋପବଂଧୁ ବାବୁ ଶାସନୀ ନଥିଲେ । ସେ କାଳର ରୀତି ଅନୁସାରେ ସେ ଆମଠାରୁ ଛୋଟ ବ୍ରାହ୍ମଣ, ଆମର ତାଂକ ଘରେ ଖାଇବାର ନୁହେ । ପୁଣି ସେବକରଂଧା ଭାତ, ତା'ପୁଣି ବେତାରୁ ଆଂଜୁଳାରେ ପରଷା ହେବ, ସେବକ ପରଷିବ । ବିନା ଚଳୁରେ ଖାଇବାକୁ ହେବ । ଏଥିରେ ମୁଁ ଓ ହୁଏତ ମୋର ସଂଗୀ ଦୁହେଁ ଏକାବେଳକେ ଅନଭ୍ୟସ୍ତ । ପୁଣି ଓଡ଼ିଆ ଜଗନ୍ନାଥ ଦାସଂକ ଭାଗବତକୁ ଭୋଗ ଦିଆହେଉଚି । ସେ ତ ଆମର ଅସ୍ପୃଶ୍ୟ । ଜଗନ୍ନାଥ ଦାସ ଶାସନୀ ଥିଲେ । ଓଡ଼ିଆରେ ଭାଗବତ ଲେଖିଥିଲେ ବୋଲି ସେ କପିଳେଶ୍ୱରପୁର ଶାସନଟି ପୁରୀଶାସନ ଭିତରେ ଅସ୍ପୃଶ୍ୟ ଓ ଅପାଂକ୍ତେୟ ହୋଇଥିଲା । ଶାସନମାନଂକରେ ଓଡ଼ିଆ ଭାଗବତ କେହି ପଢୁ ନଥିଲେ । ଏବେ ବି ହୁଏତ ସାଧାରଣ ସ୍ଥାନରେ ସଂସ୍କୃତ ପୁରାଣପାଠ ହେଲାପରି ଜଗନ୍ନାଥ ଦାସଂକ ଭାଗବତ ପାଠ ଶାସନରେ ହୋଇ ନାଇ । ସେଦିନ ଆମେ ଚଳୁ ନକରି ସମସ୍ତେ ସେ ଭାତ ତିଅଣ ଖାଇଲୁ କିଂତୁ ମୋର ମନେଅଛି, ଅଧାଖିଆ ପର୍ଯ୍ୟଂତ ମୋ ପେଟକୁ ଭାତ ଯାଉ ନଥାଏ ।

## ୨୦। ଭାର୍ଗବୀ ନଦୀକୂଳରେ ଆମର ପ୍ରତିଜ୍ଞା

ଦେବୀମଂଦିରକୁ ଲାଗିଚି ଭାର୍ଗବୀ ନଦୀର ବଂଧ । ବଂଧ ତଳକୁ ପାଣି । ପାଣିପରେ ନଈଭିତର ବାଲି । ସେଇ ବାଲି ଭିତରେ ଖରାଦିନେ ହୁଏ ବଳପୁର ମୌଜାର ଶ୍ମଶାନ । ସେଦିନ ସନ୍ଧ୍ୟାବେଳକୁ ଜହ୍ନ ପଡ଼ିଗଲା । ଆକାଶ ପରିଷ୍କାର । କଳାଭ୍ରମର ପରି ପାଣିଧାରଟି

ପରେ ରୂପାଗୁଂଡ଼ ବିଛା ବୁଣା ହେଲାପରି ବାଲି ଦାଉ ଦାଉ ଦିଶୁଚି । ସେତେବେଳେ ସେ ଅଂଚଳରେ ଭାରି ବାଡ଼ି (ହଇଜା) ପଡ଼ିଥାଏ । ବଳପୁରରେ ବେଶି ଲାଗିଥାଏ । ଲୋକେ ମୁର୍ଦାର ପୋଡ଼ିପାରୁ ନଥାଂତି । କେହି କେହି ଶ୍ମଶାନରେ ଦରପୋଡ଼ା କରି ଛାଡ଼ିଯାଂତି । ଅତି ଗରିବ ଲୋକେ ହୁଏତ ମୁର୍ଦାର ମୁହଁରେ ନିଆଁ ଦେଇ ଘରକୁ ଚାଲିଯାଂତି । ଦୁର୍ଭିକ୍ଷ ବା ମଡ଼କ ପଡ଼ିଲେ ଅନେକ ଗ୍ରାମରେ ଏଇପରି ହୁଏ । ସେଦିନ ନଈବଂଧ ଉପର ବରଗଛମୂଳ ତିଳତଂଡୁଳିତ ଛାଇରେ ଗୋପବଂଧୁ ଦାସଂକୁ ଘେନି ଆମେ ଚାରିଜଣଯାକ ଖଂଡ଼ିଏ ଦୋପଟା ଚାଂଚ ପକାଇ ସଂଧ୍ୟାପରେ ସେଇ ବରଗଛମୂଳେ ବସିଲୁ । ଆରପାଖେ ବିଲୁଆ ସବୁ କଳିକରି ଦରପୋଡ଼ା ମଡ଼ା ଓଟାରୁଥାଂତି । ମୁର୍ଦାରଂକ କୋକେଇ (Coffin)ର କନାକତରା ସବୁ ପଡ଼ିବାର ଦିଶୁଥାଏ । ଆମର ଗପ ଚାଲିଲା । ଗୋପବଂଧୁ ଦାସଂକ ପରି ଗଳ୍ପକରି ଭୁଲାଇବା ଲୋକ ବଡ଼ କମ୍ ଅଛଂତି । ବିଶେଷରେ ଆମେ ପିଲା । ସେ ରାତି ଗଳ୍ପର ଚିତ୍ରସବୁ ପ୍ରାଣରେ ଆଂକି ହୋଇଗଲା । ଚଂଦ୍ର ବୁଡ଼ିଗଲେ । ରାତି ବି ସକାଳ ହୋଇ ଆସିଲା । ଆମେ ତନ୍ମୟ । ଶେଷକୁ ଠିକ୍ ହେଲା, ‘‘ଆମେ ପାଠପଢ଼ି ସରକାରୀ ଚାକିରି କରିବା ନାଇ । ଦେଶ ପାଇଁ କିଛି କରିବା । ଜନ୍ମବେଳେ ଦେଶକୁ ଯାହା ଦେଖିଥାଇଁ ତା'ଠାରୁ ଉନ୍ନତ ଦେଖି ମରିବା ।’’

## ୨୧। ପୁରୀ ସମୁଦ୍ରକୂଳ

ମୁଁ ପୁରୀଜିଲ୍ଲା ସ୍କୁଲରେ ୧୮୯୯ରେ ପଶିଲି । ସେଇବର୍ଷ କଲିକତାରୁ ପୁରୀକୁ ରେଳ ଆସିଲା । ତା'ପରେ ବଂଗାଳୀ ଆସିଲେ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ । ଏଠାରେ ସମୁଦ୍ରକୂଳେ ଘରଭଡ଼ା କରି ସେମାନେ ରହିଲେ ଓ କେହି କେହି ବି ଘର ତିଆରି କଲେ, ସମୁଦ୍ରକୂଳ ବାଲିରେ । ମୋର ମନେଅଛି, ଏବେ ପୋଷ୍ଟଅଫିସ୍ ଆଗରେ ଥିବା ସେକାଳ ଓକିଲ, ରାୟ ହରିବଲ୍ଲଭ ବୋଷ ବାହାଦୂରଂକର ‘ଶଶୀ ନିକେତନ’ ନାମକ ଘରଟି ମାତ୍ରକ ଥିଲା । ଏବର ସଂସ୍କୃତ କଲେଜଟି ଥିଲା ପୁରୀଜିଲ୍ଲା ସ୍କୁଲ । ସେଇ ପୁରୀ ଜିଲ୍ଲା ସ୍କୁଲର ବାରଂଡ଼ାରେ ଛିଡ଼ା ହୋଇ ଆଂଭେମାନେ ଖେଳଛୁଟିବେଳେ ଓ ଅନ୍ୟାନ୍ୟ ଖାଲିସମୟରେ ପୂରା ସମୁଦ୍ରର ଦୃଶ୍ୟଟି ଦେଖୁ । ବାଟରେ କେତେଗୁଡ଼ିଏ ଛୋଟ ଛୋଟ ଝାଉଁଗଛ ଲଗା ହୋଇଥାଏ । ଆଉ ଘର ନଥାଏ; ତେଣେ ଥାଏ ଦିଗବାରଣ ଖଂବ । ତା' ପାଖରେ ବାୟୁବେଗ କଷିବାର ଯନ୍ତ୍ରଟି ଥାଏ ଗୋଟିଏ ଘର । କେତେଦିନ ପରେ ସେଇ ବାଟର ଡାହାଣ ପାଖକୁ ତିନିଟି ଦୋ'ମହଲା କୋଠା ହୋଇଥିଲା । ସେ ଘର ତିନିଟି ଏବେ ଅନ୍ୟଘର ଧାଡ଼ିରେ ରହିଯାଇଚି କିଂବା ଲୋପପାଇଚି ବା ନୂତନ ହୋଇଚି ମୁଁ କହିପାରିବି ନାଇ । ସେତେବେଳେ ପାଲଜାହାଜ ସବୁ ଭାସି ଭାସି ଟିକିଏ ଦୂର ସମୁଦ୍ରରେ ଯିବାର ମୁଁ କେତେଥର ଦେଖିଚି । ଗଂଗାସାଗର ମେଳାରେ ଏବେ ଯାତ୍ରୀ ଘେନି ଜାହାଜ ଆସେ । ସେତେବେଳେ ବି ସେହି ସମୟରେ ଗୋଟିଏ ଜଳଜାହାଜ ଆସୁଥିଲା ।

## ୨୨। ନୋଳିଆର ଜାହାଜ ପୋଡୁଅ

ମୋ ମନେଅଛି, ଆମେ ସବୁ ପୁରୀ ଜିଲ୍ଲାସ୍କୁଲରେ ପଢୁଥିବା ଚଳଶ୍ରେଣୀ ପିଲାମାନେ ନୋଳିଆଂକ ପୋଡୁଅରେ ଥରେ ସେଇ ଜାହାଜକୁ ଯାଇ ବୁଲିକରି ଦେଖିବୁ । ଆଃ ! ସେ

ପୋଡୁଅଯାତ୍ରା ମୁଁ ବର୍ଣ୍ଣନା କରିପାରିବି ନାହିଁ । ଏବେ ବୋଧହୁଏ, ଛାତ୍ର ଓ ଯୁବକମାନେ ପୋଡୁଅରେ ବୁଲଂତି ଓ ପୋଡୁଅମାନଂକରୁ ଜାହାଜରେ ଉଠଂତି; କିଂତୁ ଏ ଯୁଗରେ କଳ ଓ ସହାୟକ ଯାନର ସଂଖ୍ୟା ବହୁତ ବଢ଼ିଗଲାଣି । ଆମବେଳେ ଲହରୀ ଉପରେ ଯେତେବେଳେ ପୋଡୁଅ ଉଠୁଥାଏ ପଡୁଥାଏ ଓ ତହିଁରେ ପୁଣି ପାଣି ପଶୁଥାଏ ଏବଂ ନୋଳିଆମାନେ ତାହା ଉଝାଳୁଥାଂତି, ସେଥିରେ ଶିଶୁ ଓ ବାଳକମାନଂକର ଯେ ଜୀବନ ସଂଶୟ ଓ ତହିଁସଂଗେ ହାସ୍ୟରୋଳ ଉଠୁଥାଏ, ତାହା ବର୍ଣ୍ଣନା କରି କହିପାରିବି ନାହିଁ । ଯେଉଁଦିନ ସେହିପରି ଗୋଟିଏ ପୋଡୁଅରୁ ଜାହାଜ ଉପରୁ ପଡ଼ିଥିବା ଦଉଡ଼ି ନିଶୁଣି ଧରି ଜାହାଜ ଉପରକୁ ଉଠିଥିଲି, ସେ ଜୀବନ-ମରଣ ସଂଧିସ୍ଥଳରେ ଭୟ, ଉନ୍ମାଦନା, ଆନଂଦର ବର୍ଣ୍ଣନା ମୁଁ କିପରି ଦେବି ଜାଣିପାରୁ ନାହିଁ ।

## ୨୩। ଜଳବାୟୁ ପରିବର୍ତ୍ତନ

ଯାହାହେଉ କଲିକତା ଆଡୁ ଯାତ୍ରୀ ଓ ବାୟୁ ପରିବର୍ତ୍ତକମାନଂକ ସଂଗେ ପରେ ଆସିଥିଲା ଯକ୍ଷ୍ମା; କିଂତୁ ସେତେବେଳେ ଯକ୍ଷ୍ମା ଆସିବାର ଜଣା ନଥିଲା, ଆସିଥିଲା ଘୋର ମ୍ୟାଲେରିଆ । ମୁଁ ଭୀଷଣ ମ୍ୟାଲେରିଆରେ ପଡ଼ିଥିଲି—ଏହା କହିଚି । ସେଥିପାଇଁ ମୁଁ ଯେଉଁଦିନ କଟକ ଗଲି, ସେ ବିଷୟର ସ୍ମୃତିଟି ଆଜି ମଧ ଜୀବଂତ । ମୋ ସଂଗେ ପଢୁଥିଲେ କାବ୍ୟତୀର୍ଥ ପଂଡ଼ିତ ବିଶ୍ୱନାଥ ରଥ । ସଂସ୍କୃତରେ ମୁଁ ମନେ ମନେ ତାଂକ ସଂଗେ ପ୍ରତିଯୋଗିତା କରୁଥିଲି । ମନେଅଛି, ଅକୃତକାର୍ଯ୍ୟ ମଧ ହୋଇ ନଥିଲି । ମୁଁ କଟକ ଦେଖି ନଥିଲି । ସମସ୍ତେ କହିଲେ, ବାୟୁ ପରିବର୍ତ୍ତନ କରିବାକୁ ମୁଁ ଅଂତତଃ ବର୍ଷେ କଟକ ଯିବି । ସଂଗୀ ମୋର ହେଲେ ବିଶ୍ୱନାଥ ରଥ । ତାଂକର ସେଇଦିନ କଟକ ଯିବାର ଥିଲା । ରାତ୍ରିରେ କଟକ ଷ୍ଟେସନରେ ପହଂଚି ଆମେ ଯେଉଁ ବସାକୁ ଯାଇଥିଲୁ, ସେ ବସାଟି ହେଉଚି ଚାଂଦନୀଚୌକ ଏବର 'ଦାସଲେନ'ର ଉତ୍ତର ମୁଂଡ଼ରେ ଥିବା ନିମାପଡ଼ା ମଧୁସୂଦନ ଦାସଂକ ଚାଳଘର ବସାଟି । ମଧୁସୂଦନ ଦାସ ସେତେବେଳକୁ କଟକରେ ଚାକିରି କରୁଥାଂତି କ'ଣ ଚାକିରି ଠିକ୍ ମନେ ହେଉ ନାହିଁ ।

## ୨୪। କୋବି

ତହିଁଆରଦିନ ସକାଳେ ତାଂକ ଘରେ ଖାଇବାକୁ ହେଲା । ଗୋଟିଏ ତରକାରି ଦେଖି ମୁଁ ଖାଇବାକୁ ଟିକିଏ ଶଂକା କରୁଥିଲି । ବିଶ୍ୱନାଥ ରଥ କହିଲେ, ''ଖା, ସେ କୋବି ତରକାରି ।'' ମତେ ଆକାଶରୁ ଖସିପଡ଼ିଲା ପରି ଲାଗିଲା । ପୁରୀରେ କୋବି କେବେ ମୁଁ ଦେଖି ନଥିଲି । ମୋତେ ଛଅବର୍ଷ ହେବାବେଳେ ଥରେ ଅତ୍ୟଂତ କୃମିଜ୍ୱରରେ ମୁଁ ଆକ୍ରାଂତ ଥିଲି । ସେତିକିବେଳେ ଭିଂଗାରପୁରର ଜମିଦାର କୁଳମଣି ଦାସ ଏଇ ସତ୍ୟବାଦୀ ପାଖରେ ଥିବା ତାଂକର ନିଜ ସଦାନଂଦପୁର ଜମିଦାରୀକୁ ଆସିଥିଲେ । ଆମ ନନା ତାଂକର ଅତି ଆଦରଣୀୟ ବଂଧୁ ଥିଲେ । ସେ ଖଂଡ଼େ ଛୋଟ କାତି କତୁରୀ ସଂଗେ କଟକରୁ ବା କୁଆଡୁ ଆଣିଥିବା ଗୋଟିଏ କୋବି ନନାଂକ ପାଇଁ ପଠାଇ ଦେଇଥିଲେ । ଏହା ଫୁଲକୋବି । ମୁଁ ସେଇ ରଗ୍ଣ ଅବସ୍ଥାରେ, ନନା ଆସି ବୋଉକୁ କୁଳମଣି ଦାସେ କୋବି ପଠାଇଥିବା କଥା କହିବାର ଶୁଣିଲି । ଜାଣେ ନାହିଁ କେବଳ ଅହ୍ୟାମାଇପେ ତାହା ଖାଉଥିଲେ କି ଅନ୍ୟମାନେ

ତାହା ଖାଉଥିଲେ । ଆଜି କଟକରେ ମଧୁସୂଦନ ଦାସଂକ ବସାରେ କୋବି ଖାଇଲି । ଜାଣିଲି ଭଲଲୋକ କୋବି ଖାଆଂତି, ତେବେ ବ୍ରାହ୍ମଣ ଖାଆଂତି କି ନା ? କାହିଁକି ନା ବ୍ରାହ୍ମଣଂକ ରକ୍ଷଣଶୀଳତା ବିଦ୍ୟା ଓ ଚିଂତାହୀନତା ସଂଗେ ମିଶି ଅତି ଅଦ୍ଭୁତ ଭାବରେ ବିକାଶ ପାଇଥିଲା । କୋବିଟା ଯଥାର୍ଥରେ କି ଜିନିଷ, ବିଲାତିଆଳୁଟା ବା କ'ଣ ଏହା ଆମ ଗ୍ରାମରେ ଅନେକ ଲୋକ ଅନେକ ଦିନଯାଏ ଶୁଣିବାକୁ ମଧ ପାଇ ନଥିଲେ । ଏବେ ମଧ ଆମର ପିତୃଶ୍ରାଦ୍ଧାଦି ନିମିତ୍ତ ଭୋଜିରେ କୋବି ଓ ପିଆଜ ଦିଆଯାଏ ନାଇ । ଅନେକ ବୃଦ୍ଧ ଆଳୁ ଓ କୋବି ନଖାଇ ମରିଚଂତି । ଏବେ ମଧ ବିଧବାମାନଂକ ମଧରେ ଆଳୁ ଖାଇଲେ ମଧ ଅନେକ କୋବି ନଖାଇବା ଲୋକ ଅଛଂତି । ସେମାନେ ପିଆଜ ତ ଛୁଅଂତି ନାଇ ।

## ୨୫। ରେଭେନ୍‌ସା କଲେଜ ଓ କଲେଜିଏଟ୍

ସେତେବେଳେ କଟକ ରେଭେନ୍‌ସା କଲେଜ ଓ କଲେଜିଏଟ୍ ହଷ୍ଟେଲ ପାଇଁ ଗୋଟିଏ ବୋଡ଼ିଂଘର ଥିଲା, ତାହା ଏବର କଲେଜିଏଟ୍ ସ୍କୁଲ ବୋଡ଼ିଂ । ସେଇ ବୋଡ଼ିଂରେ କଟକ ସର୍ଭେସ୍କୁଲ ପିଲାମାନେ ବି ରହୁଥିଲେ । ସେଇ ହଷ୍ଟେଲର ପଶ୍ଚିମ ପଟକୁ ସର୍ଭେସ୍କୁଲଟି ଥାଏ । ମୁଁ ଆସି କଲେଜିଏଟ୍ ସ୍କୁଲରେ ନାଁ ଲେଖାଇ ସେଇ ହଷ୍ଟେଲରେ ରହିଲି । ସେତେବେଳେ ହଷ୍ଟେଲରେ ଓଡ଼ିଆ ପିଲା ବେଶି ନଥାଂତି । ଖାଲି ବଂଗାଳୀ ଥାଂତି; କଲେଜର ପ୍ରିନ୍‌ସିପାଲ ବଂଗାଳୀ । ପ୍ରଫେସରମାନେ ପ୍ରାୟ ବଂଗାଳୀ । କଲେଜିଏଟ୍ ସ୍କୁଲରେ ବି ସେଇଆ । ସର୍ଭେସ୍କୁଲରେ ମଧ ସେଇଆ । ବୋଡ଼ିଂର ଅଧକ୍ଷ ଥାଂତି ପ୍ରିନ୍‌ସିପାଲ ବି: ଭି: ଗୁପ୍ତା ବୋଡ଼ିଂର ସୁପରିନ୍‌ଟେଂଡେ଼ଂଟ ଥିଲେ କଲେଜିଏଟ୍ ସ୍କୁଲର ଆସିଷ୍ଟାଂଟ ହେ: ମା: ସୁରେଶଚଂଦ୍ର ଗୁପ୍ତା ମାଷ୍ଟରମାନେ କିଂତୁ ଓଡ଼ିଆ ପିଲାଂକ ପ୍ରତି କୌଣସି ଦୁର୍ବ୍ୟବହାର ବା ତାରତମ୍ୟ ବ୍ୟବହାର କରିବା ମୁଁ ଜାଣି ନାଇ, କିଂତୁ ବଂଗାଳୀ ଛାତ୍ରମାନଂକ ଅହଂକାର ଓ ଓଡ଼ିଆ ଛାତ୍ରଂକ ପ୍ରତି ତାଚ୍ଛଲ୍ୟ ମୁଁ ମର୍ମେ ମର୍ମେ ଅନୁଭବ କରିଚି । ଏଇ ଛାତ୍ରମାନଂକ ସଂଗେ ଶିକ୍ଷକ ଓ ପ୍ରଫେସର-ମାନଂକର ବ୍ୟବହାର ଓ ଚାଲିଚଳନରେ ସଂପର୍କ ବେଶି ଥିବାର କଥା, ତଥାପି ଶିକ୍ଷକମାନଂକର ସଦାଚାର ଓ ହୃଦ୍ୟତା ମୁଁ ଖୁବ୍ ଅନୁଭବ କରିଚି ।

ଏଇ ଶିକ୍ଷକମାନଂକ ଭିତରେ ଜଣେ ସେତେବେଳେ ଥିଲେ ଅରବିଂଦ ପ୍ରକାଶ ଘୋଷ । ତାଂକ ନାମ ବଂଗଳାର ଅନେକ ଜାଣଂତି । ସେ ଅତ୍ୟଂତ ଚରିତ୍ରବାନ୍, ନିଷ୍ଠାପର ଓ ସ୍ୱଦେଶପ୍ରାଣ ଥିଲେ । ଅଳ୍ପଦିନ ପରେ ବଂଗବିଭାଗ ବେଳେ କଲିକତାରେ ଯେତେବେଳେ ଜାତୀୟ ଶିକ୍ଷାର ପ୍ରଥମ ପ୍ରତିଷ୍ଠାନ ବସିଲା, ସେତେବେଳେ ଚାକିରି ଛାଡ଼ିଦେଇ ନିଜର ଓ ନିଜ ଦୁସ୍ଥ ପରିବାର ଭରଣ ପୋଷଣ ପ୍ରତି ଭ୍ରୂକ୍ଷେପ ନକରି ସେଇ ଅନୁଷ୍ଠାନରେ ଶିକ୍ଷକରୂପେ ଯୋଗଦେଇଥିଲେ ସେ ଭଲ ଏମ୍.ଏ. ପାସ୍ କରିଥିଲେ । ବଡ଼ ସୁଯୋଗ୍ୟ ଓ ସୁପଂଡ଼ିତ ଲୋକ ଥିଲେ । ଛାତ୍ରମାନଂକ ପ୍ରତି ତାଂକର ପୁତ୍ରତୁଲ୍ୟ ସମାନ ବ୍ୟବହାର ମୁଁ ଭୁଲିପାରି ନାଇ । ପରୀକ୍ଷାବେଳେ ସମସ୍ତେ ନଂବର ବୁଝିବାକୁ ଯାଆଂତି । ମୁଁ ଟିକିଏ ସେ ସବୁ ବିଷୟରେ ଲାଜକୁଳା ଥିଲି । ଦିନେ ସେ ମୋତେ ଡାକି କହିଥିଲେ, ''ବାପା, ତମେ କାହିଁକି ନଂବର ବୁଝିବାକୁ ଆସୁ ନାହଁ ?'' ସେ କଥାଟା ଏପରି କହିଥିଲେ, ମୁଁ ସେତିକିରେ ଯେପରିକି କିଣା ହୋଇଯାଇଥିଲି । ତା'ପରେ ବେଳେ ବେଳେ ମୁଁ ତାଂକ ପାଖକୁ ଯାଏ । ମନୁଷ୍ୟର ଚରିତ୍ର ଗଠନ କରିବାରେ ଏପରି ସୁଦକ୍ଷ ଶିକ୍ଷକ ମୁଁ ବଡ଼ କମ୍ ଦେଖିଚି ।

ଦିନେ ଗୋଟିଏ କୌତୁକ ଘଟଣା ଘଟିଥିଲା । ମୁଁ କହେଁ । ମୋହିନୀମୋହନ ଚୌଧୁରୀ ବୋଲି ଜଣେ ଆମର ସେତେବେଳେ ଥିଲେ ହେଡ୍‌ମାଷ୍ଟର । ସେ ଅତି ଉଦାରଚେତା, ହୃଦୟବାନ୍ ବ୍ୟକ୍ତି । ସେ ଆମକୁ ଗଣିତ ପଢ଼ାଉଥିଲେ । ଜ୍ୟାମିତିର ବୃତ୍ତଚିତ୍ର ଆଂକିବାରେ ଏପରି କମ୍ ଲୋକ ଦେଖିଚି । ସେ ଅରବିଂଦ ବାବୁଂକ ଘରକୁ ବରାବର ଯାଆଂତି । ଅରବିଂଦ ବାବୁ ପରିବା କିଣିଆଣି ଥୋଇଦେଲେ । ବଂଗାଳୀ ଶିକ୍ଷକ ଓ ପ୍ରଫେସରମାନେ ଦୈନିକ ବଜାର କରିବାଟା ପ୍ରାୟ ନିଜେ କରଂତି । ଅରବିଂଦ ବାବୁ କହିଲେ, ‘‘ଏ ବାଇଗଣଗୁଡ଼ାକ ମୁଁ କିଣିଜାଣୁ ନାଇ । ଖାଲି ମଂଜିଆ ପଡୁଚି । ଖାଇ ହେଉ ନାଇ ।’’ ବୃଦ୍ଧ ମୋହିନୀବାବୁ ସାଧାରଣ କଥାବାର୍ତ୍ତାରେ ମଧ୍ୟ କିପରି ରସିକତା କରି ଜାଣୁଥିଲେ କହିଦିଏଁ । ‘‘ଆପଣ ଏଇ ନୀଳକଂଠ ବସିଚି, ପଚାରୁ ନାହାଂତି । ଓଡ଼ିଶା ଯେ ଭଗବାନଂକ ଭୂମି, ଏଠି କ’ଣ ବଜାରରେ ବାଇଗଣ ବିକ୍ରି ହୁଏ । ମଣିଷ ଖାଇବା ପାଇଁ । ଏ ଖାଲି ଭଗବାନଂକ ମହିମା କୀର୍ତ୍ତନ କରିବା ପାଇଁ ବଜାରକୁ ଆସେ । ଭଗବାନ ଗୋଟିଏ ଛୋଟ ବାଇଗଣ ଭିତରେ କେତେ ବୃକ୍ଷବୀଜ ରଖିପାରଂତି, ଏହାଇ ଦେଖିବାର କଥା । ଆପଣଂକର ବାଛିବାରେ ଭୁଲ ନାଇ ।’’

## ୨୬। ଅରବିଂଦ ବାବୁ

ପରେ ଜାତୀୟ ବିଦ୍ୟାଳୟ କଲିକତାରୁ ଭାଂଗିଗଲା ଅରବିଂଦ ବାବୁ ଏକ ପ୍ରକାର ଅନାହାରରେ ରହି ମରିବାଦିନ ପର୍ଯ୍ୟଂତ ନିଜେ ବିଦ୍ୟାଳୟ ଧରି କଲିକତାର ବିଦ୍ୟାସାଗର ଲେନ୍‌ରେ ଆଉ କେତେକ ସହଯୋଗୀଂକ ସଂଗେ, ବସିଥିବାର ମୁଁ ଦେଖିଚି । ତାଂକ ଅନାହାର କ୍ଲିଷ୍ଟ ରୁକ୍ଷ, ତେଜସ୍ୱୀ ବପୁ ମୋର ଏବେ ମନେପଡୁଚି । ତାଂକର ସହଯୋଗୀଂକ ମଧ୍ୟରେ ଜଣେ ହେଉଚନ୍ତି ସ୍ୱର୍ଗତ ଶ୍ୟାମସୁଂଦର ଚକ୍ରବର୍ତ୍ତୀ । ସେ ସୁବକ୍ତା ଓ ସୁଲେଖକ ଥିଲେ । ଜାଣିବା ଲୋକେ ମନେ ରଖିଥିଲେ କଲିକତାରେ 'The Servant' ନାମକ ଇଂରେଜୀ ଦୈନିକର ସେ ଥିଲେ ସଂପାଦକ । ସେତେବେଳକୁ ଅରବିଂଦ ବାବୁ ନଥିଲେ । ଅରବିଂଦ ବାବୁଂକର ଜୀବନରେ ନୀତିମରା କଥା ଘେନି ଗୋଟିଏ ଘଟଣା କହେଁ । ଦିନେ ଗୋଟିଏ ଦେବାଳୟରେ ସେ ଦର୍ଶନ କରିବାକୁ ଗଲେ । ସେଦିନ ଦେବତାମାନଂକର ଗୋଟିଏ ପର୍ବଦିନ । ସେବାୟତମାନେ ନିୟମ କରିଥିଲେ ଗୋଟିଏ ପଇସା ଦେଲେ ଯାତ୍ରୀ ଦର୍ଶନ କରିବାକୁ ଯିବେ । ଅରବିଂଦ କହିଲେ, ‘‘ଦେବାଳୟରେ ଏ କି ବିଧି । ଆଚ୍ଛା ଯଦି କାହାପାଖେ ପଇସା ନଥାଏ, ଅଥଚ ସେ ଦର୍ଶନ କରିବାକୁ ଆସେ, କ’ଣ ହେବ ?’’ ସେବାୟତମାନେ କହିଲେ, ‘‘ସେପରି ଲୋକଂକୁ ଆମେ ଛାଡ଼ିଦେବୁ ।’’

ଦରିଦ୍ର ଅରବିଂଦ ସେତେବେଳେ ନିଜ ଜାତୀୟ ବିଦ୍ୟାଳୟରେ କାମ କରୁଥାଂତି । ବହୁ କଷ୍ଟରେ ଫେରିବାର ରେଲଖର୍ଚ୍ଚଟି ତାଂକ ପାଖେ ଥାଏ । ସେ ଟଂକାକରୁ ବେଶି ନୁହେଁ । ସଂଗେ ସଂଗେ ଫେରଗଂଠିରୁ (ସେ କୁରୁତା ପିନ୍ଧୁ ନଥିଲେ) ସେତକ ପଇସା କାଢ଼ି ସେଇଠାରେ ଦରିଦ୍ରମାନଂକୁ ବାଂଟିଦେଲେ । ସେବାୟତ ବିସ୍ମିତ ହୋଇଗଲେ । ତା’ପରେ ପଇସା ନଦେଇ ସେ ମଂଦିରକୁ ଗଲେ ଓ ସମସ୍ତ ରାସ୍ତା ଚାଲି ଚାଲି ଫେରିଲେ । ଏଇପରି ବହୁ ଲୋକଂକ ଚରିତ୍ରର ଦୃଢ଼ତା ଓ ନିଷ୍ଠା ଉପରେ ସେକାଳେ ବଂଗଦେଶର ଜାତୀୟତା ପ୍ରତିଷ୍ଠିତ ହୋଇଥିଲା ।

## ୨୭। ସ୍କୁଲ ବୋର୍ଡ଼ିଂ

ସେଇ ଦାସ ଆପଣଂକ ସଂଗେ ଏବେ ବୋର୍ଡ଼ିଂରେ ରହିବାର ସୁବିଧା ମିଳିଲା । ସେତେବେଳକୁ ସଂବଲପୁରର ତ୍ରିବିକ୍ରମ ପୂଝାରୀ ଓ ତାଂକ ଭାଇ ସ୍ୱର୍ଗତ ଡାକ୍ତର ସନାତନ ପୁଝାରୀ ଦୁହେଁ କଲେଜରେ ବି.ଏ. ଓ ଏଫ୍.ଏ. ପଢୁଥାଂତି । ଗୋପବଂଧୁ ଦାସଂକ ସଂଗେ ସଂବଲପୁରର ଶ୍ରୀ ବାଲୁଂକେଶ୍ୱର ମିଶ୍ର ଓକିଲାତି ପଢୁଥାଂତି । ଦାସେ ଆପଣଂକ ସଂଗେ ସେମାନଂକର ବିଶେଷ ସୌହାର୍ଦ୍ଦ ଥାଏ । ସମସ୍ତେ ପ୍ରତିଦିନ ବସି ଆଳାପ କରୁ । ଗୀତାପଢ଼ା ଖୁବ୍ ଚାଲେ । ମୁଁ ସେତେବେଳେ ବଡ଼ ନୈଷ୍ଠିକ ଥିଲି । ଅତି ପ୍ରତ୍ୟୁଷରୁ କାଠଯୋଡ଼ିରେ ସ୍ନାନ ସାରି ମଠା ପିଂଧି ତନ୍ମୟ ହୋଇ ଗୀତା ପଢ଼େ । କେତେଦିନ ମଧ୍ୟରେ ଗୀତା ଶେଷକରି ଉପନିଷଦ ଆରଂଭ କରିଦେଲି । ସେତେବେଳେ ସୀତାନାଥ ତତ୍ତ୍ୱଭୂଷଣଂକ ସଂସ୍କୃତଟୀକା ଓ ଇଂରେଜୀ ଅର୍ଥ ଥିବା ଉପନିଷଦ ତିନିଖଂଡ଼ି କିଣିଥିଲି ଓ ପଢୁଥିଲି ।

ମନ୍ମଥ ବାବୁ ବୋଲି କଲେଜିଏଟ୍ ସ୍କୁଲରେ ଆମର ଡ୍ରଇଁ ମାଷ୍ଟର ଥାଂତି । ତାଂକ ହାତ ଡ୍ରଇଁ ବଡ଼ ସୁଂଦର । ଅବଶ୍ୟ ମଡ଼େଲ ଡ୍ରଇଁ ନୁହେଁ—ଫ୍ରିହ୍ୟାଂଡ଼ ଡ୍ରଇଁ । ଆମର ପାଠ୍ୟ ଥାଏ ଡ୍ରଇଁରେ ପାସ୍‌କଲେ ନାମ ପାଖରେ ଗୋଟାଏ ତାରାଚିହ୍ନ ମିଳୁଥାଏ । ମୋର ସହପାଠୀ ଥିଲେ ରମେଶଚଂଦ୍ର ମଜୁମଦାର (ଏବେ ବଂଗଳାରେ ପ୍ରସିଦ୍ଧ Dr. R. C. Mazumdar), ସୁଶୀଳ କୁମାର ଦେ (ଢାକା ବିଶ୍ୱବିଦ୍ୟାଳୟର ପେନ୍‌ସନ୍‌ପ୍ରାପ୍ତ ଐତିହାସିକ Dr. S. K. De) ଓ ହିଂଦୋଳର ସ୍ୱର୍ଗତ ଯମେଶ୍ୱର ମିଶ୍ର (ପେନସନପ୍ରାପ୍ତ ସ୍କୁଲ ସବ୍‌ଇନିସପେକ୍ଟର, ଗଣେଶ୍ୱର ମିଶ୍ରଂକ ସାନଭାଇ ଏବେ ସେ ମରିଗଲେଣି) । ଏମାନେ ଥିଲେ ବଡ଼ ଭଲ ଛାତ୍ର । ଡ୍ରଇଁ ମଧ ବଡ଼ ଭଲ କରିପାରୁଥିଲେ । ମୋର କିଂତୁ ଡ୍ରଇଁରେ ଆଗରୁ ହାତ ଭଲ ନଥିଲା । ଥରେ ମନେ ଅଛି, ପୁରୀ ଜିଲ୍ଲାସ୍କୁଲର ଡ୍ରଇଁ ପଂଡ଼ିତ ସ୍ୱର୍ଗତ ପରମାନଂଦ ମିଶ୍ର ଆମକୁ ସବୁ ଗୋଟିଏ ଘୋଡ଼ା ଆଂକିବାକୁ ଦେଇଥିଲେ । ମୋ ଚିତ୍ରଟି ଦେଖି ସେ କହିଲେ, ''ଏ କ'ଣ ବିଲୁଆ ପିଲା ? ତଳେ ଘୋଡ଼ା ବୋଲି ଲେଖିଦେଲୁ ନାଇ । କିଏ ଚିହ୍ନିବ ?'' ତଥାପି ପିଲାଦିନ ପଢ଼ାରେ ମୁଁ ବଡ଼ ଜିଦିଖୋର ଥିଲି ।

ପ୍ରଥମେ ମୁଁ ଇତିହାସରେ ବଡ଼ ଅପଟୁ ଥିଲି । ବର୍ଷ ତାରିଖ ସବୁ ମୋର ଆଦୌ ମନେ ରହୁ ନଥିଲା । କୌଣସି ମାଷ୍ଟର ନାଁ ମୋ ମନେ ହେଉ ନାଇ । ମୋତେ କହିଥିଲେ, ''ତୋ ହାତେ ଇତିହାସ ହେବ ନାଇ । ତେବେ କ'ଣ ତୋ ପାଇଁ ଇତିହାସ ଆଉ କିଏ ପଢ଼ିବ ?'' ସେ କଥାଟି ମୋ ମନକୁ ଭାରି ଲାଗିଥିଲା । କ୍ରମେ ଗୀତାରୁ ଶିଖିଲି, 'କର୍ତ୍ତବ୍ୟ' । ମୋର କର୍ତ୍ତବ୍ୟ ମୋତେ କରିବାକୁ ହେବ । ପଢ଼ା ଭିତରେ ଇତିହାସ ଅଛି । ମୋ ହାତେ ହବ ନାଇ କହିଲେ କ'ଣ ହେବ । ମୋତେ ପଢ଼ିବାକୁ ହେବ, ମନେ ରଖିବାକୁ ହେବ । ଏହା ମୋର କର୍ତ୍ତବ୍ୟ । ସେଇଦିନଠାରୁ ମନେ ଅଛି, ଆମର ପଢ଼ାହେଉଥିବା ଅଧରଚଂଦ୍ର ମୁଖରଜୀଂକ ଭାରତ ଇତିହାସ (History of India)ର ପ୍ରତ୍ୟେକ ଘଟଣା ସନ ତାରିଖ ସହିତ ମୁଁ ବାରଂବାର ପଢ଼ି ମନେ ରଖିଥିଲି । ତା' ମୋର ଏପରି ଅଭ୍ୟାସ ଅଛି ଯେ, ଏବେ ମଧ ଇତିହାସର ଘଟଣା ଓ ସନ ତାରିଖ ମୋର ଖୁବ୍ ମନେ ରହେ । ଏବେ ସେଇ ନିଷ୍ଠାରେ ଡ୍ରଇଁରେ ଲାଗିଗଲି । ପ୍ରତି ଶନିବାର ଦେଢ଼ଟାରେ ସ୍କୁଲଛୁଟି ହେଲା ପରେ ମୁଁ ସନ୍ଧ୍ୟା ଛଅଟାରେ

ଡ୍ରଇଁ କରେ । ଶେଷରେ ପରୀକ୍ଷାରେ ଡ୍ରଇଁ ପାଇଁ ମୁଁ ତାରାଚିହ୍ନ ପାଇଥିଲି । ସେ ଯାହାହେଉ, ମୁଁ ଡ୍ରଇଁରେ କ'ଣ କରିଥିଲି, ସେ କଥା ପାଇଁ ଏହା କହୁ ନାଇ । ଗୋଟିଏ ଶନିବାରରେ ସକାଳୁ ମୋର ଖାଇବାରେ ରୁଚି ହେଲା ନାଇ । ଦି'ଗୁଂଡ଼ା ଖାଇଚି ଦାସେ ଆପଣଂକୁ କହିବାରେ ସେ କହିଲେ, ''ଆଉ ଖାଅ ନାଇ ।'' ମୁଁ ଦେଢ଼ଟା-ବେଳେ ସ୍କୁଲରୁ ଆସିଲି । ଖୁବ୍ ଗୋଟାଏ ବଡ଼ ଝାଡ଼ା ହୋଇଗଲା । ଦାସେ ଆପଣେ, ହରିଭାଇନା, ବାଲୁଂକେଶ୍ୱର, ସନାତନଂକ ସହିତ ନଈକୂଳକୁ ବୁଲିଯିବାକୁ ମୋତେ ଡାକିବାକୁ ଆସିଲେ । ମୁଁ ଡ୍ରଇଁ କରୁଥିଲି । ଗୋଟାଏ ବଡ଼ ଝାଡ଼ା ହୋଇଗଲା, ମୋତେ ଦୁର୍ବଳ ଲାଗୁଚି କହିବାରୁ ଦାସେ ଆପଣେ ଉତ୍ସାହ ଦେଇ କହିଲେ, ''ସକାଳେ ଖାଇବାକୁ ମନ ହେଉ ନଥିଲା, ଏବେ ପେଟଟା ଟଂବାତାର ପରି ସଫା ହୋଇଗଲା । ଆଉ କିଛି ଭାବ ନାଇ । ତମେ ତେବେ ବୁଲିବାକୁ ନଆସ ।''

ସେମାନେ ଚାଲିଗଲେ । ମୁଁ ଡ୍ରଇଁରେ ମନଦେଲି । ଏ ମଧ୍ୟରେ ଥରକୁ ଥର ଘନ ଘନ ପ୍ରାୟ ଚାରି ପାଂଚ ଥର ଝାଡ଼ା ହୋଇଗଲା । ମୁଁ କିଂତୁ ଡ୍ରଇଁ କରୁଥାଏ । ସଂଧ୍ୟାକୁ ଦାସେ ଆପଣେ, ହରିଭାଇନା ଦୁହେଁ ଫେରିଆସି ମୋ ପାଖରେ ପହଂଚିଲେ । ହରିଭାଇନା ହଠାତ୍ କହିଲେ, ''କିରେ ତୁ ଏମିତି କଳାକାଠ ପରି କିଆଁ ଦିଶୁଛୁ ?'' ଜଣାପଡ଼ିଲା ମୋର ହଇଜା ହେଉଚି । ଡାକ୍ତର ଥା'ତି ଆନଂଦଲାଲ ମିତ୍ର । ତାଂକଠାକୁ ଖବର ଦିଆଗଲା । ବୋଡ଼ିଂରେ ଚହଲ ପଡ଼ିଗଲା । କ୍ରମେ ମୁଁ ଆଉ ଉଠିପାରିଲି ନାଇ । ଆଜି ସେ କଥା କହି ହେଉ ନାଇ । ଦାସେ ଆପଣେ ମୁଂଡ଼ ଉପରେ ବସି କାଂଦୁଥାଂତି । ହରିଭାଇନା ନିଜ କୋଡ଼ରେ ଗୋଡ଼ଦିଓଟି ଧରି ଆଉଁସୁଥାଂତି । ଟେକିକରି ନେଇ ବାହାରେ ଝାଡ଼ା କରାଉଥାଂତି, ପରିଷ୍କାର କରାଉଥାଂତି, କ୍ରମେ ଅବସ୍ଥା ଖରାପ ହେଲା । ସ୍ୱର ବସିଗଲା । ବହୁ କଷ୍ଟରେ ଦାସେ ଆପଣଂକୁ କହିଲି, ''ଗୀତା ପଢ଼ଂତୁ ।'' ସେ ଦ୍ୱିତୀୟ ଅଧ୍ୟାୟରୁ ''ଅଶୋଚ୍ୟାନନ୍ୱ ଶୋଚସ୍ତ୍ୱଂ'' ବୋଲି ଆରଂଭ କଲେ; କିଂତୁ କାଂଦରେ ଗଦ୍ ଗଦ୍ ହୋଇ ଆଉ ପଢ଼ିପାରିଲେ ନାଇ । ସେ ରାତି ସେ ଦୁହେଁ ଖାଇ ନଥାଂତି କି ଶୋଇ ନଥାଂତି । ସକାଳ ହୋଇଗଲା । ତ୍ରିବିକ୍ରମ ବାବୁ ଓ ବାଲୁଂକେଶ୍ୱର ଦୁହେଁ ଦେଖିବାକୁ ଆସିଲେ । ତ୍ରିବିକ୍ରମ ବାବୁ ପଚାରିଲେ, ''ମୁଁ କିଏ ଚିହ୍ନିପାରୁଚ ?'' ମୋ ମନେ ପଡୁଚି ତାଂକ ମୁହଁଟା ଜାଲୁଜାଲୁଆ ହୋଇ ମୋତେ ଗୋଟାଏ ବେତାପରି ଦିଶୁଥାଏ । ମୁଁ ଚିହ୍ନିପାରିଲି ନାଇ । ଦେହରେ ପ୍ରଚୁର ଝାଳ ବୋହୁଚି । ହାତଗୋଡ଼ ରହିଆସିଲାଣି । ଦାସେ ଆପଣେ ଆଉ ସଂଭାଳିପାରିଲେ ନାଇ । ଭୋ ଭୋ ପିଲାଂକ ପରି କାଂଦିଲେ । ହରିଭାଇନା ମଧ୍ୟ ସଂଭାଳି ନପାରି ସେଥିରେ ଯୋଗଦେଲେ । ମୋର କିଂତୁ ଜ୍ଞ୍ୟାନ ନ ଥାଏ । ମୁଁ ମରିବାକୁ ପ୍ରସ୍ତୁତ ହୋଇ ଗୀତାର ''ବାସାଂଶି ଜୀର୍ଣାନି' ଶ୍ଲୋକଟି ମନେ ମନେ ସ୍ମରଣ କରୁଥାଏ । ଏତିକିବେଳେ ଆନଂଦ ବାବୁ ଆସି ପହଂଚିଗଲେ । ଜାଣିବାମାତ୍ରେ ମୋ ଦେହରୁ ଝାଳ ଶୁଖିଗଲା । ମୋତେ ପରିଷ୍କାର ଦିଶିଲା । ପରେ ଜାଣିଲି ସବୁ ରୋଗରେ ଏଇପରି ଜୀବନ ସଂଶୟର ସମୟ ଆସିଲାବେଳେ ହଠାତ୍ ସ୍ୟାଡ଼ିକି ବା ଯାଡ଼ିକି ହୋଇଯାଏ । ହରିଭାଇନା ଛାତିରେ ମୋତେ ଧରି ଗୋଟିଏ ଅନ୍ୟ ଏକୁଟିଆ ଘରକୁ ଘେନିଗଲେ । ମୁଁ କ୍ରମେ ଆରୋଗ୍ୟ ଆଡ଼କୁ ଗଲି । ସାତଦିନ ପରେ ଭାତ ଖାଇଥିଲି । ଏ ୧୯୦୩ ଖ୍ରୀ:ଅ:ର କଥା ।

## ୨୮। ମଧୁବାବୁ

ସେଇବର୍ଷ ହେଉଚି ଉତ୍କଳ ସମ୍ମିଳନୀର ଆରଂଭ; କଟକରେ ଇଦ୍‌ଗା ପଡ଼ିଆରେ ପ୍ରଥମ ଅଧିବେଶନ । ଏ ଉତ୍କଳ ସମ୍ମିଳନୀ କାହିଁକି କିପରି ଆରଂଭ ହେଲା ସେ ବିଷୟରେ ଯାହା ଜାଣିଥିଲି ତହିଁରୁ ଯାହା ମନେଅଛି ତାକୁଇ ଧରି କହିଦିଏ । ଗଂଜାମ ଥିଲା ମାଂଦ୍ରାଜରେ । ସଂବଲପୁର ଥିଲା ମଧ୍ୟପ୍ରଦେଶରେ ଓ ମେଦିନୀପୁର, ସିଂହଭୂମି ପ୍ରଭୃତି ଓଡ଼ିଶା ପରି ବଂଗପ୍ରଦେଶରେ ଥିଲେ ମଧ ଓଡ଼ିଶା ଯେ ଗୋଟିଏ ସ୍ୱତନ୍ତ୍ର କମିଶନରଂକ ବିଭାଗ (Orissa Division) ହୋଇଥିଲା, ସେଥିରେ ନଥିଲା । ତେଣୁ ମେଦିନୀପୁର, ସିଂହଭୂମିର ଓଡ଼ିଆମାନେ ଓଡ଼ିଶାକୁ ଆସିବାକୁ ସେତେ ବ୍ୟାକୁଳ ହୋଇ ନଥାଂତେ; କିଂତୁ ମେଦିନୀପୁର ଓ ଧଲଭୂମରେ ଭାଷାଟା ବଂଗଳା ଓ ଛୋଟନାଗପୁର ସଂଗେ ସିଂହଭୂମି ଭାଷା ହିଂଦୀ ହୋଇଯିବାରୁ ସେ ଅଂଚଳରେ ଯାହା କିଛି ଚାଂଚଲ୍ୟ ଉପୁଜିଥାଏ; ମାତ୍ର ଗଂଜାମ, ସଂବଲପୁର କଥା ଅଲଗା । ବିଶେଷରେ ଇଂରେଜମାନଂକ ଅଧିକାର ଠିକ୍ ପୂର୍ବରୁ ଓ ଠିକ୍ ପରେ ଓଡ଼ିଆ ସାହିତ୍ୟର ଯଥାର୍ଥ ସ୍ଥାନ ଥିଲା ଗଂଜାମ । ସେମାନେ ଓଡ଼ିଶାକୁ ଆସିବାକୁ ଭାରି ଛଟପଟ ହେଉଥିଲେ । ବିଶେଷରେ ତେଲେଂଗା ଭାଷାର ଓଡ଼ିଆ ଭାଷା ସଂଗେ କୌଣସି ସଂପର୍କ ନଥିବାରୁ ଓ ମାଂଦ୍ରାଜ ସରକାର ଅଧୀନରେ ସବୁ କର୍ମଚାରୀ ତେଲେଂଗା ତାମିଲ ହେଉଥିବାରୁ, ପୁଣି ସ୍କୁଲ କଚେରିରେ ଓଡ଼ିଆଭାଷୀ ନଚଳି ତେଲେଂଗା ଭାଷା ଚଳୁଥିବାରୁ ସେଠାଲୋକେ ଭାରି ବ୍ୟସ୍ତ ହେଉଥିଲେ । ଜୟପୁରର ମଧ କେହି କେହି ସେଥିରେ ଯୋଗ ଦେଉଥିଲେ । ୧୯୦୨ ସମସ୍ତ ଓଡ଼ିଆଭାଷୀ ଅଂଚଳରୁ ଲୋକଂକୁ ନିମଂତ୍ରଣ କରି ସେମାନେ ଗୋଟାଏ ସମ୍ମିଳନୀ ସଭା ଡାକିଲେ । ଗୋପବଂଧୁ ଦାସେ ସେ ସଭାକୁ ଯାଇଥିଲେ ।

ସେତିକିବେଳକୁ ସେଇ ସଂପର୍କରେ ଆଉ ଗୋଟାଏ ବଡ଼ ଘଟଣା ଘଟିଲା । ସେ ବର୍ଷ ଭାରତ ଜାତୀୟ କଂଗ୍ରେସର ବଂଗପ୍ରାଦେଶିକ ଅଧିବେଶନ ଯେତେଦୂର ମନେହେଉଚି ବର୍ଦ୍ଧମାନ ସହରରେ ବସିବାର ଥିଲା । ମଧୁବାବୁ (ସ୍ୱର୍ଗତ ସୁନାମଧନ୍ୟ ମଧୁସୂଦନ ଦାସେ) ସେତେବେଳକୁ କଲିକତା ହାଇକୋର୍ଟ ଛାଡ଼ି କଟକରେ ଆସି ଓକିଲାତି ଆରଂଭ କରିସାରିଥାଂତି । ସେ କଂଗ୍ରେସରେ ଥିଲେ, ସେତେବେଳେ ଏକମାତ୍ର ଓଡ଼ିଆ । ଓଡ଼ିଶା ସେତେବେଳେ ବଂଗପ୍ରଦେଶରେ ଥିବାରୁ କଂଗ୍ରେସର ପ୍ରାଦେଶିକ ସମ୍ମିଳନୀରେ ତାଂକର ବିଶିଷ୍ଟ ସ୍ଥାନ ଥିଲା । ସେ ବିଚାରିଥିଲେ ଓଡ଼ିଆ ଦେଶମିଶ୍ରଣ କାର୍ଯ୍ୟ କଂଗ୍ରେସଦ୍ୱାରା କରାଇନେବେ । ସେ ଜାଣି ନଥିଲେ ବଂଗାଳୀ ମୁଖ୍ୟମାନଂକ ପ୍ରାଦେଶିକତାର ପ୍ରଭାବ । ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ, ଏହା ବୋଲି ସେମାନେ ପୂର୍ବେ ଗୋଟାଏ ଆଂଦୋଳନ ଆରଂଭ କରିଥିଲେ, ମାତ୍ର ସେକାଳ ବଂଗସରକାର ତାହା କରାଇଦେଇ ନଥିଲେ । କିଂତୁ ବଂଗାଳୀ ମୁଖ୍ୟମାନଂକର ସେ ଚେଷ୍ଟା ବଂଦ ହୋଇ ନଥାଏ । ଏପରିକି ସେତେବେଳେ ଦେଶୀଭାଷା ଶିକ୍ଷାବିଭାଗ ବା କଲେଜରେ ପଢ଼ାଯାଉ ନଥିଲେ ମଧ ବି.ଏ. ପରୀକ୍ଷାରେ ବଂଗଳାରେ ଗୋଟାଏ ଦିନ ପରୀକ୍ଷା ହେଉଥିଲା । ସେଥିରେ ପାସ୍‌କଲେ ଛାତ୍ରକୁ ଗେଜେଟରେ ଗୋଟାଏ ତାରାଚିହ୍ନ ପୁରସ୍କାର ମିଳୁଥିଲା । କିଂତୁ ଏ ପରୀକ୍ଷାରେ ଓଡ଼ିଆରେ ପ୍ରଶ୍ନ ହେଉ ବୋଲି ଯେତେ ଚେଷ୍ଟା ହେଲେ ମଧ ବିଶ୍ୱବିଦ୍ୟାଳୟରେ ଥିବା ବଂଗାଳୀ ମୁଖ୍ୟମାନେ ବରାବର ଅଗ୍ରାହ୍ୟ କରୁଥାଂତି । ୧୮୯୯ ମସିହାରେ ଗୋପବଂଧୁ ଦାସେ କଲେଜକୁ ଆସି 'କର୍ତ୍ତବ୍ୟବୋଧିନୀ' ବୋଲି ଗୋଟିଏ ସଭା

କରି ଏଇ ଚେଷ୍ଟା ଭୀଷଣ ଭାବରେ ଚଳାଇଥିଲେ । ଶେଷକୁ ବଂଗର ଗୋରାଲାଟ୍ ବିଶ୍ୱବିଦ୍ୟାଳୟର ରେକ୍‌ଟର ଭାବରେ ୧୯୦୨ରେ ବଂଗାଳୀ ମୁଖ୍ୟଂକ କଥା ନଶୁଣି ଏହା କରାଇ ଦେଇଥାଂତି । ତା'ରି ଅଳ୍ପଦିନ ପରେ ବର୍ଦ୍ଧମାନରେ ପ୍ରାଦେଶିକ ସମ୍ମିଳନୀ । ମଧୁବାବୁ ସେଥିରେ ସବୁ ଓଡ଼ିଆଭାଷୀ ଦେଶକୁ ଏକାଠି କରାଯାଉ ବୋଲି ପ୍ରସ୍ତାବ ଦେଲେ । ବୋଧହୁଏ ବିଚାରିଥିଲେ ଏଡ଼େ ଯୁକ୍ତିଯୁକ୍ତ କଥାଟାରେ କାହାରି ଆପତ୍ତି ହେବ ନାଇ ଓ ସୁରେଂଦ୍ରନାଥ ବେନରଜୀ ବରଂ ସମବେଦନା ପ୍ରକାଶ କରିବେ, କିଂତୁ ଫଳରେ ଦେଖିଲେ ବରାବର ବିପରୀତ । ମଧୁ ବାବୁଂକର ଏଇ ପ୍ରସ୍ତାବ ଘେନି ସୁରେଂଦ୍ରନାଥ ବେନରଜୀ ପ୍ରଭୃତି ବଂଗାଳୀ ମୁଖ୍ୟମାନେ ବଡ଼ ଚାଂଚଲ୍ୟ ପ୍ରକାଶ କଲେ । ମଧୁବାବୁ ଦେଖିଲେ ଏ ପ୍ରସ୍ତାବ ପକାଇ ନ'ଦେବା ପାଇଁ ସେମାନେ କୃତପ୍ରତିଜ୍ଞ । ଶେଷକୁ ମଧୁବାବୁଂକୁ ବିଷୟ ନିର୍ବାଚନ ସଭା ଛାଡ଼ି ଆସିବାକୁ ହେଲା । ତହିଁ ପରବର୍ଷ କଟକକୁ ସେଇ ସମ୍ମିଳନୀ ଡାକିବା ପାଇଁ ମଧୁବାବୁ, ସୁରେଂଦ୍ରନାଥ ବେନରଜୀ ପ୍ରଭୃତିଂକ ସଂଗେ ବିଚାର କରି ଠିକ୍ କରିଥିଲେ । ଏବେ ମଧୁବାବୁ ଜଣାଇଦେଲେ ସେ ଆଉ କଟକକୁ ଡାକିବେ ନାଇ କି କଂଗ୍ରେସରେ ଯୋଗଦେବେ ନାଇ । ସେଇଦିନଠାରୁ ମଧୁବାବୁ ଆଉ କଂଗ୍ରେସକୁ ମୁହାଁଇ ନାହାଂତି ।

## ୨୯। ପ୍ରଥମ ଉତ୍କଳ ସମ୍ମିଳନୀ

ହୁଏତ ସେତିକିବେଳକୁ ମଧୁବାବୁ ନିଜେ କାର୍ଯ୍ୟ କରିବା ପାଇଁ ପ୍ରେରଣା ପାଇଲେ ଗଂଜାମରୁ । ସେ ଯାହାହେଉ ୧୯୦୩ ଡିସେଂବର ମାସରେ ମଧୁବାବୁ ନିଜେ ସମସ୍ତ କଳ୍ପନା ଯୋଜନା କରି ବୋଧହୁଏ ସମସ୍ତ ଖର୍ଚ୍ଚାଦିର ଭାର ନିଜେ ନେଇ କଟକକୁ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଡାକିଲେ । ଅନ୍ୟାନ୍ୟ ଦେଶୋନ୍ନତିର ଯୋଜନା ସଂଗେ ଏଇ ଅନୁଷ୍ଠାନର ମୁଖ୍ୟ କର୍ତ୍ତବ୍ୟ ହେଲା ଓଡ଼ିଆ ଦେଶମିଶ୍ରଣ । ସେକାଳେ ଯେକୌଣସି ରାଜନୈତିକ ଅନୁଷ୍ଠାନରେ ସରକାରଂକୁ ଆବେଦନ ନିବେଦନ ଛଡ଼ା ଆଉ କିଛି ବେଶି କରାଯାଉ ନଥିଲା । ସେପରି ରାଜନୀତି ପାଇଁ ମଧ ସରକାର ବିଶେଷ ଆପତ୍ତି କରୁ ନଥିଲେ । ବିଶେଷରେ ପୁଣି ମଧୁବାବୁ ବୁଝିପାରିଥିଲେ ବଂଗାଳୀନେତାମାନେ ଓଡ଼ିଆ ଦେଶମିଶ୍ରଣ କରାଇ ଦେବାରେ ଯଥାସାଧ ବାଧା ଦେବେ । ମାଂଦ୍ରାଜ, ମଧ୍ୟପ୍ରଦେଶ ପ୍ରଭୃତିଂକର ସେଇପରି ସ୍ୱାର୍ଥ ଥିବାରୁ ସେମାନେ ଉଣା ଅଧିକେ ବଂଗାଳୀଂକ ସଂଗେ ଯୋଗଦେବେ । ଏ ପରିସ୍ଥିତିରେ ଉଦ୍ଦେଶ୍ୟ ହେଲା ସରକାରଂକୁ ଧରି ଓଡ଼ିଆଦେଶ ମିଶ୍ରଣ କରାଇନେବା । ମୋ ମନେଅଛି, ବର୍ଷକୁ ବର୍ଷ ବହୁକାଳଯାଏଁ ସମ୍ମିଳନୀରେ ପ୍ରଥମରୁ ପ୍ରବଳ ପ୍ରତାପ ସପ୍ତମ ଏଡ଼ୱାର୍ଡ଼ ଓ ପଞ୍ଚମଜର୍ଜଂକ ଠାରୁ ସବ୍‌ଡ଼ିଭିଜନାଲ ମାଜିଷ୍ଟ୍ରେଟଂକ ପର୍ଯ୍ୟଂତ ସମସ୍ତଂକୁ ଜଣ ଜଣ କରି ଅଭିବାଦନ ଓ ଆନୁଗତ୍ୟ ଜଣାଇ ପ୍ରସ୍ତାବମାନ କରିବାକୁ ହୁଏ । ତା'ପରେ ଓଡ଼ିଆଦେଶ ମିଶ୍ରଣ ଓ ଓଡ଼ିଆ ଦେଶର ଅନ୍ୟାନ୍ୟ କଲ୍ୟାଣସବୁ କଳ୍ପନା ଯୋଜନା କରି ପ୍ରସ୍ତାବମାନ ହୁଏ । ଗଡ଼ଜାତର ଲୋକେ ଓ ରାଜାମାନେ ସମ୍ମିଳନୀରେ ଖୁବ୍ ଯୋଗ ଦେଉଥାଂତି । ପ୍ରଥମ ସମ୍ମିଳନୀରେ ସଭାପତି ହୋଇଥିଲେ ମୟୂରଭଂଜର ସୁନାମଧନ୍ୟ ମହାରାଜା ରାମଚଂଦ୍ର ଭଂଜ । ମୁଁ ଥିଲି ସେ ସମ୍ମିଳନୀରେ ମାତ୍ରକ ଜଣେ ଦର୍ଶକ । ମହାରାଜା ସଭାପତି ରୂପେ ନିଜର ଭାଷଣ ପଢ଼ିବା ମୋର ଏବେ ମନେ ପଡ଼ିଯାଉଚି । ସମସ୍ତେ ମଧୁବାବୁଂକ କଳ୍ପିତ ଗୋଲାପୀ କନା ଓଡ଼ିଆ

ପଗଡ଼ି ମୁଂଡ଼ରେ ଦେଇ ବସିଥାଂତି । ମଂଚ ଉପରେ ସଂବଲପୁରର ରାମନାରାୟଣ ମିଶ୍ର, ଏମ୍.ଏ.ବି.ଏଲ୍. ସିଂହଭୂମିର ଯୁଗଳକିଶୋର ତ୍ରିପାଠୀ, ଏମ୍.ଏ. ବାଲେଶ୍ୱରର ଫକୀରମୋହନ ସେନାପତି, କଟକର ଗୌରୀଶଂକର ରାୟ, କନିକାରାଜା ରାଜେଂଦ୍ରନାରାୟଣ ଭଂଜଦେବ, ଗଂଜାମର କେତେକ ଜମିଦାରଂକ ସଂଗେ ସ୍ୱର୍ଗତ ହରିହର ପଂଡ଼ା ପ୍ରଭୃତିଂକୁ ଦେଖିବାର ଚିତ୍ର ଆଜି ମଧ ଆଖି ଆଗରେ ନାଚିଯାଉଚି । ତା'ରି ଭିତରେ ମଧୁବାବୁଂକର ଚଂଚଳ ଗମନା ଗମନ ଓ ଟେବୁଲ ପାଖେ ରାମଚଂଦ୍ର ଭଂଜଂକ ସୌମ୍ୟବପୁ ଓ ମାର୍ଜିତ ସୁଗଂଭୀର ଓ ସୁଲଳିତ କଂଠଧ୍ୱନି, ସେ କିଶୋର ବୟସରେ ମୋତେ କିପରି ଭାବାନ୍ୱିତ କରିଥିଲା ତା' କହିପାରିବି ନାଂଇ । ଅନୁଭବର ସେ ସ୍ମୃତିକୁ ଆଜି କାହାରି ଅନୁମାନରେ ଜାଗ୍ରତ କରିବା ମୋ ପକ୍ଷରେ ସଂଭବ ନୁହେଁ । ଏଣେ ଘର ଭିତରେ ବାଲୁଂକେଶ୍ୱର ମିଶ୍ରଂକୁ ସଂଗେ ଧରି ନବଯୁବକ ଗୋପବଂଧୁଂକର ଉତ୍ସାହଦୀପ୍ତ ନବଶ୍ମଶ୍ରୁ ବିମଂଡ଼ିତ ସେ ସାଧୁ ସୁରମ୍ୟ ପ୍ରଭାବକ ମୁଖମଂଡ଼ଳ ମଧ ମୋର ଆଜି ଜୀବଂତ ସ୍ମୃତି ପରି ଆଗରେ ଭାସିଯାଉଚି । ସେତେବେଳେ କଟକରେ କି ଉତ୍ସାହ, କି ଚଂଚଳତା ? ଜାତୀୟ ଜୀବନର ସେ ନବଶ୍ଳେଷ ଆଜି ମୋର ମନରେ ପ୍ରାଚୀନ ହେଲେ ମଧ ଜୀର୍ଣ୍ଣ ହୋଇ ନାଇ । ଜୀବନରେ ତାହାହିଁ ଯେପରି କି ମୋର ଏଇ ପ୍ରଥମ ଦୀକ୍ଷା ।

## ୩୦। କଲେଜିଏଟ୍ ବୋଡ଼ିଂ ଓ ଗୋପବଂଧୁ ବାବୁ

ବଡ଼ ସଂଘର୍ଷଣରେ ମୋ ବ୍ରାହ୍ମଣତ୍ୱରେ କେତେ ବାଧାପଡ଼ିଲା, ବ୍ରାହ୍ମଣତ୍ୱ ଥାଉ ରହିଲା କି ନାଇ ଏସବୁ ବିଷୟରେ ନାନା ସଂଦେହ ବିଚାର ମଧରେ ସେଇଦିନ କଲେଜିଏଟ୍ ବୋଡ଼ିଂରେ ମୁଁ ପହଂଚି ଗୋପବଂଧୁ ଦାସଂକ ପାଖେ ରହିଲି । ଗୋପବଂଧୁ ଦାସଂକ ପାଖେ ରହି ବିଦ୍ୟା ସଂଗେ ସଂଗେ ସ୍ୱଷ୍ଟଭାବରେ ରାଜନୀତିର ଅଭ୍ୟାସ କ୍ରମେ ବିକାଶ ପାଇଲା । ଗୋପବଂଧୁ ଦାସଂକ ସାହଚର୍ଯ୍ୟରେ ଏହା ଯେ ହେବାର କଥା ସେ କଥା ବୁଝାଇବା ଦରକାର ନାଇ । ବିଶେଷରେ ସେତେବେଳେ ହରିଭାଇନା (ଏବର ଆଚାର୍ଯ୍ୟ ହରିହର ଦାସ) ମଧ ସେ ବୋଡ଼ିଂରେ ଥାଂତି । ସବୁ କାର୍ଯ୍ୟରେ ତାଂକର ଅତି ନୈଷ୍ଠିକ ଆଚରଣ ଓ ସାଧୁତାରେ ମୁଁ ପୂର୍ବରୁ ଅଭ୍ୟସ୍ତ ନଥିଲି ନୁହେଁ; କିଂତୁ ଏଠାରେ ଆମ ଚଳଣିରେ ସେସବୁ ସୁଂଦର ଭାବରେ କ୍ରମେ ଫୁଟିଉଠିଥିଲା ।

## ୩୧। ବଂଗାଳୀ ସଂସ୍କୃତି

ସେତେବେଳେ ଓଡ଼ିଶାରେ ପ୍ରଧାନ ରାଜନୀତି ଥିଲା, ଉପାଂତ ଓଡ଼ିଆଭୂମି ସବୁ କିପରି ଓଡ଼ିଶାରେ ମିଶିବ । ଏହା ୧୯୧୧ ଜନଗଣନାର ପୂର୍ବର କଥା; ତଥାପି ୧୯୦୧ ସାଲରୁ ମେଦିନୀପୁରର ଓଡ଼ିଆ କୈବର୍ତ୍ତମାନେ ନିଜକୁ ମାହିଷ୍ୟ ବୋଲି କହି ବଂଗାଳୀ ହୋଇଥିଲେ । ଓଡ଼ିଶାର ରାଜାମାନେ ମଧ ତାଂକ ପିଛା ଧରିଥିଲେ । ଏମାନେ ମୃତକ ଶୁଦ୍ଧିକ୍ରିୟାରେ ଓଡ଼ିଆ ସ୍ମୃତି ଅନୁସାରେ ନିଜର ୧୨ଦିନ ମାତ୍ର ଅଶୌଚ ଓ କ୍ରିୟା ଛାଡ଼ି ବଂଗଳାସ୍ମୃତି ଅନୁସାରେ ମୃତକ ଶୁଦ୍ଧକ୍ରିୟାକୁ ଏକମାସ କରିଥିଲେ । ୧୯୦୧ ଖ୍ରୀଷ୍ଟାବ୍ଦର ସେନସସ୍ ବେଳେ କୈବର୍ତ୍ତମାନେ ନିଜକୁ ମାହିଷ୍ୟ କହି ଏଇ ୩୦ଦିନକୁ ୧୫ଦିନ କରିବା ପାଇଁ ଲଢ଼ିଥିଲେ । ମୋଟକଥା ଓଡ଼ିଆ ସଂସ୍କୃତି ଛାଡ଼ି ନିଜର ସଂସ୍କୃତିକୁ ବଂଗାଳୀ କରିବା ପାଇଁ ଏମାନଂକର

ଘୋର ଚେଷ୍ଟା କ୍ରମେ ପ୍ରକାଶ ପାଇଲା । ପୂର୍ବରୁ ଏକଥାରେ ବଂଗାଳୀମାନଂକର ଜିପରି ପ୍ରଯତ୍ନ ଓ ପ୍ରଚେଷ୍ଟା ପ୍ରକାଶ ପାଇଥିଲା, ତାହାର ସ୍ପଷ୍ଟ ଆଭାସ ସ୍ୱର୍ଗତ ଫକୀରମୋହନ ସେନାପତିଂକ ଜୀବନୀରୁ ମିଳିବ । ବଂଗାଳୀ ସବଇନ୍‌ସିପେକ୍ଟର ପର୍ଯ୍ୟଂତ ଶିକ୍ଷାବିଭାଗରେ ସେତେବେଳେ 'ଖ' ପରୀକ୍ଷା, 'କ' ପରୀକ୍ଷା ଓ ୨ୟ ପରୀକ୍ଷା (ଯଥାକ୍ରମେ ଏବର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ପରୀକ୍ଷା)ମାନଂକ ପାଇଁ ପିଲାମାନଂକୁ ଘରୋଇ ଭାବରେ ତିଆରି କରୁଥିବା ଓ ସରକାରରୁ ସେଥିପାଇଁ ପୁରସ୍କାର ପାଉଥିବା ଶିକ୍ଷକମାନଂକୁ ଯେପରି ଓଡ଼ିଆ ପାଠ ପଢ଼ାଇଲେ, ସରକାର ଧରି ଜେଲ ଦେବ ବୋଲି ଧମକାଇ, ପ୍ରଚାରକରି ଦକ୍ଷିଣୀ ବା ଓଡ଼ିଆ ଅବଧାନମାନଂକୁ ବହୁସଂଖ୍ୟାରେ ତଡ଼ି ଦେଇଥିଲେ, ସେକଥା ଫକୀରମୋହନ ବାବୁ କହିଚଂତି । ଏଇ ଫଳରେ ୧୯୦୧ ସାଲର ଓଡ଼ିଆ ଗଣତିରେ ଅନାଶଂକିତ ଭାବରେ ମେଦିନୀପୁରର ଓଡ଼ିଆ ଅଂଚଳରେ ଓଡ଼ିଆର ସଂଖ୍ୟା ଯେପରି ଶତକଡ଼ା ୮୦/୯୦ ପରିମାଣରେ କମି ଯାଇଥିଲା, ତାହା ଗୋପବଂଧୁ ବାବୁଂକୁ ବଡ଼ ବାଧିଥିଲା ।

## ୩୨। ବଂଗାଳୀଂକ ବୈରଭାବ

ପୁଣି ଆଉ ଗୋଟିଏ କଥା, କଲିକତାର ବଂଗାଳୀମାନେ ବିଶେଷରେ ଇଂରେଜ ଶାସକମାନଂକ ପାଖେ ପ୍ରତିପତ୍ତି ପାଇଥିବା ବଂଗାଳୀ ପଂଡ଼ିତମାନେ ଓଡ଼ିଶାର ଚିହ୍ନବର୍ଣ୍ଣ ଲୋପ କରିବା ପାଇଁ ମୂଳରୁ ବରାବର ଉଦ୍ୟମ କରି ଆସୁଥିଲେ । ବଂଗ ନବାବଂକ ଓଡ଼ିଶା ଥିଲା ରୂପନାରାୟଣ ନଦୀଠାରୁ ସବୁର୍ଣ୍ଣରେଖା ନଦୀ ପର୍ଯ୍ୟଂତ । କ୍ଲାଇବ ସାହେବ ସମ୍ରାଟ ସାହାଆଲାମଂକଠାରୁ ଯେଉଁ ବଂଗ-ବିହାର-ଓଡ଼ିଶାର ଦେୱାନୀ ନେଇଥିଲେ, ସେଥିମଧରେ ଏଇଖଂଡ଼ିକ ଥିଲା ନବାବଂକ ଓଡ଼ିଶା । ଏହା ୧୭୬୫ ଖ୍ରୀ:ଅ:ର କଥା । ସେତେବେଳକୁ ଓଡ଼ିଶାର ଦକ୍ଷିଣଖଂଡ଼କ ବଂଗ ନବାବ ନାଗପୁରର ମରହଟ୍ଟା ଭୋଁସଲଂକୁ ୧୭୫୧ ଖ୍ରୀ. ଅ.ରୁ ଦେଇ ସାରିଥିଲେ । ପୁରୀ, କଟକ, ବାଲେଶ୍ୱର ଏ ଦକ୍ଷିଣଖଂଡ଼କ ୧୮୦୩ ସାଲ ପର୍ଯ୍ୟଂତ ନାଗପୁର ଭୋଁସାଳଂକ ହାତରେ ଥିଲା ଓ ସେଇ ବରଷ ମରହଟ୍ଟାମାନେ ଏହାକୁ ଇଂରେଜଂକ ହାତରେ ଛାଡ଼ି ଦେଇଥିଲେ । ସେଇଦିନଠାରୁ ମଧ ମେଦିନୀପୁର ସଂଗେ ପୁରୀ, କଟକ ଓ ବାଲେଶ୍ୱରକୁ ବଂଗଦେଶରେ ସାକ୍ଷାତ ଅଂଶ କରିବାରେ ବଂଗାଳୀମାନେ ଲାଗି ଯାଇଥିଲେ । ୧୮୭୦ବେଳକୁ ଏ ଉଦ୍ୟମ ସ୍ପଷ୍ଟ ଆକାର ଧାରଣ କରିଥିଲା ଓ ବାଲେଶ୍ୱରର ଜିଲ୍ଲାସ୍କୁଲ ହେଡ଼ ପଂଡ଼ିତ ''ଓଡ଼ିଆ ସ୍ୱତନ୍ତ୍ର ଭାଷା ନୟେ'' ବୋଲି ଖଂଡ଼ିଏ ପୁସ୍ତିକା ଛପାଇ ପ୍ରଚାର କରିଥିଲେ । କଲିକତାର ପ୍ରତ୍ନତତ୍ତ୍ୱବିତ ପଂଡ଼ିତବର ରାଜା ରାଜେଂଦ୍ରଲାଲ ମିତ୍ରଂକ ପର୍ଯ୍ୟଂତ ଲୋକେ ମଧ ଏଇ ମତ ସ୍ପଷ୍ଟ ସମର୍ଥନ କରିଥିଲେ ।

ଏ ମତର ଖଂଡ଼ନ ମଂଡ଼ନ କରିବା ପାଇଁ ଓଡ଼ିଶାର ଏତେ ଶକ୍ତି ନଥିଲା । ତାର ପ୍ରଧାନ କାରଣ ହେଉଚି, ବଂଗଳାର ପ୍ରତାପରୁଦ୍ରଙ୍କ ଠାରୁ, ବିଶେଷତଃ ପରାଧୀନ ଓଡ଼ିଶାରେ ଗୌଡ଼ୀୟ ବୈଷ୍ଣବ ଧର୍ମ ଅର୍ଥାତ୍ ସେଇ ଧର୍ମର ଅତି ମଧୁର ଯୌନରସର ଆସ୍ୱାଦନ ସଂଗେ ଓଡ଼ିଶାର ଅନେକ ଶିଷ୍ଟଂକ ମଧରେ ଧର୍ମଭାଷା ନାମରେ କୃଷ୍ଣଦାସ କବିରାଜଂକ ଚୈତନ୍ୟ ଚରିତାମୃତ ପ୍ରଭୃତି ବଂଗଭାଷାର ପରିପ୍ରଚାର । କେବଳ ସେତିକି ନୁହେଁ, ସେଇ ସୂତ୍ରରେ ଓଡ଼ିଆଂକ ଭିତରେ ପ୍ରାୟ ଗଲା ୩୦୦ବର୍ଷ ଧରି ଏଇ ଧର୍ମର କୀର୍ତ୍ତି ଓ ବିଭୂତି ପ୍ରଚାର କରି

ଦୀନକୃଷ୍ଣ ଦାସଂକ 'ରସକଲ୍ଲୋଳ' ଠାରୁ ଅଭିମନ୍ୟୁ ସାମଂତ ସିଂହାରଂକ 'ବିଦ୍‌ଗଧ ଚିଂତାମଣି' ଓ ଅନ୍ୟାନ୍ୟ କାବ୍ୟ ପର୍ଯ୍ୟଂତ ଲେଖା ହୋଇ ଯାଇଥିଲା ।

କୌଣସିମତେ କେତେକ ସ୍ଥାନୀୟ ଇଂରେଜଙ୍କ ପ୍ରଭାବରେ, ମନେହୁଏ ବିଶେଷରେ ସେତେବେଳର ଜନ୍ ବିମ୍‌ସ୍‌ଂକ ପରି ଜିଲାମାଜିଷ୍ଟ୍ରେଟ ଓ ବିଭାଗୀୟ କମିଶନରଂକ ବ୍ୟକ୍ତିତ୍ୱ ବଳରେ ଓଡ଼ିଆ ସ୍ୱତନ୍ତ୍ର ଭାଷାରୂପେ ପ୍ରାଇମେରୀ ସ୍କୁଲମାନଂକରେ ସ୍ଥାନ ପାଇ ଯାଇଥିଲେ ମଧ୍ୟ ହାଇସ୍କୁଲମାନଂକରେ ଓ କଲେଜରେ ତାହାର ଆଦୌ ଆଦର ନଥିଲା । ଏକେ, ହାଇସ୍କୁଲ, କଲେଜମାନଂକରେ ଓଡ଼ିଆ ଭାଷାର ଆଦୌ ସ୍ଥାନ ନଥିଲା । କେତେକାଳ ପରେ; ଅର୍ଥାତ୍ ୧୯୦୦ ଖ୍ରୀ:ଅ: ବେଳକୁ କେବଳ ଏନଟ୍ରାନ୍‌ସ (ଏ କାଳର ମାଟ୍ରିକ୍ୟୁଲେସନ) ପରୀକ୍ଷାରେ ଗୋଟିଏ ଓଡ଼ିଆ ପାରାଗ୍ରାଫ୍ ଇଂରେଜରେ ଅନୁବାଦ କରିବାପାଇଁ ପ୍ରଶ୍ନରେ ଦିଆଯାଉଥିଲା । ତାହା ପୁଣି ବଂଗଳାର ଅନୁକରଣରେ । ପ୍ରଥମେ ପ୍ରଥମେ ଏଇ ଓଡ଼ିଆ ଭାଷା ଥିଲା ବଂଗଳାର ଅନୁବାଦ ।

## ୩୩। ତାରାଚିହ୍ନ

ତେଣେ କଲିକତା ବିଶ୍ୱବିଦ୍ୟାଳୟ ଯଥାସାଧ୍ୟ ବଂଗଳାକୁ ଉପରକୁ ଉପରକୁ ଶ୍ରେଣୀମାନଂକରେ ଭର୍ତ୍ତି କରିବାରେ ଲାଗିଥିଲେ । ଏଇ ଶତାବ୍ଦୀର ପ୍ରଥମରେ କିଂବା ହୋଇପାରେ ୧୮୯୮/୯୯ଖ୍ରୀ.ଅ.ରେ, କଥାହେଲା ବି.ଏ. ପରୀକ୍ଷାର ପ୍ରଶ୍ନରେ ବଂଗଳା ସାଧାରଣ ଜ୍ଞାନ ଘେନି ଗୋଟିଏ ପ୍ରବଂଧ ଲେଖିବାର ପ୍ରଶ୍ନ ପଡ଼ିବ । ସେଥିରେ ପାସ୍ କଲେ ଗେଜେଟରେ ପାସ୍ କରିଥିବା ଛାତ୍ରର ନାମ ପାଖରେ ଗୋଟିଏ ତାରାଚିହ୍ନ ଦିଆଯିବ ।

କିଂତୁ ଏ ତାରାଚିହ୍ନର ପ୍ରଶ୍ନଟି ଓଡ଼ିଆରେ ହେବବୋଲି ବ୍ୟବସ୍ଥା ନଥିଲା । ଓଡ଼ିଶାର ସେତେବେଳର ଏକମାତ୍ର କଲେଜ କଟକର ରେଭେନସା କଲେଜ । ସେଥିରେ ଓଡ଼ିଆଛାତ୍ର ପ୍ରାୟ ନଥାଂତି କହିଲେ ଚଳେ । ହଷ୍ଟେଲ ବା ବୋର୍ଡ଼ିଂ ହାଉସରେ ପ୍ରାୟ ସମସ୍ତେ ବଂଗାଳୀଛାତ୍ର ଥାଂତି । ଏଇ ବଂଗାଳୀ ଛାତ୍ରମାନେ ଅନେକ ସମୟରେ ଦୂରଦୂରାଂତରେ ଥିବା ବଂଗଳାର ଅନ୍ୟାନ୍ୟ କଲେଜମାନଂକରୁ କିଏ ଖର୍ଚ୍ଚର ଅଳ୍ପତା ପାଇଁ, କିଏ ସ୍ୱାସ୍ଥ୍ୟ ପରିବର୍ତ୍ତନ ପାଇଁ ଓ ଅଧିକାଂଶ କଟକରେ ଥିବା ବଂଗାଳୀ ଶିକ୍ଷକ ଓ ଅଧ୍ୟାପକମାନଂକ ଭାଇ, ବଂଧୁ, କୁଟୁଂବ ପରିଚୟର ଆତ୍ମୀୟତା ପ୍ରଭୃତି ହିସାବରେ କଟକକୁ ଆସୁଥାଂତି । ସେତିକିବେଳକୁ ପ୍ରାୟ ୧୯୦୦ ଖ୍ରୀ.ଅ.ରେ ଗୋପବଂଧୁ ଦାସ କଟକ ବୋର୍ଡ଼ିଂରେ ଆସି ସ୍ଥାନ ପାଇଲେ । ସେତେବେଳେ ପୁଣି ଯେଉଁ ପ୍ରିନ୍‌ସପାଲ୍‌ମାନେ ଥାଂତି, ସେମାନେ କଲିକତାରୁ ଆସଂତି । ତାଂକର ଓଡ଼ିଆଂକ ସଂଗେ ମିଶିବାର ବିଶେଷ କୌଣସି ଘଟଣା ଘଟେ ନାଇ । ଗୋଟିଏ ଉଦାହରଣ କଥା ଏଠାରେ କହୁଚି । ହଲୱାର୍ଡ଼ ସାହେବ ସେତେବେଳେ ପ୍ରିନ୍‌ସପାଲ ଥିଲେ । ଓଡ଼ିଶାରେ ତାଂକ ସାହେବୀ କାଇଦା ଖୁବ୍ ବଢ଼ି ଯାଇଥିଲା । ସେ ଇଂରେଜୀ ଭାଷାରେ ବଡ଼ ପ୍ରବୀଣ ଥିଲେ ବୋଲି ତାଂକର ଏବେ ମଧ୍ୟ ନାମ ଅଛି । ମୋ ଜାଣିବାରେ କଟକର ହାରାଧନ ଘୋଷ ଓ ବୈଦନାଥ ଘୋଷାଲ ଏଇ ଦୁଇଜଣ ଗ୍ରାଜୁଏଟ୍ ହଲୱାର୍ଡ଼ ସାହେବଂକ ସାକ୍ଷାତ ଛାତ୍ର ଓ ସେଇ ହେତୁରୁ ଇଂରେଜୀରେ ଅତ୍ୟଂତ ଜାଣିବାର ବୋଲି କଟକରେ ସେକାଳେ ପ୍ରସିଦ୍ଧ ଥିଲେ ।

## ୩୪। ହଲଓ୍ୱାର୍ଡ଼ ସାହେବ

ଇଂରେଜ ରାଜନୀତି ଓ ପରିଧାନ ବେଶ ପ୍ରଭୃତି ପ୍ରତି ହଲଓ୍ୱାର୍ଡ଼ ସାହେବଂକ ଅତ୍ୟଂତ ଦୃଷ୍ଟି ଥାଏ । ଓଡ଼ିଆଂକ ପରିଚ୍ଛଦ ତାଂକର ବଡ଼ ଚକ୍ଷୁଶୂଳ ଥିଲା । ଧୋତି ଚଦରକୁ ସେ ଅତି ଅସଭ୍ୟ ପରିଧାନ ବୋଲି ମନେ କରୁଥିଲେ । ତାଂକ ସମୟରେ ପୁରୀ, ବାଲେଶ୍ୱର, କଟକର ମଧ୍ୟ ଏନଟ୍ରାନସ ପରୀକ୍ଷା ହେଉଥିଲା ରେଭେନ୍‌ସା କଲେଜରେ । ଦୂରଦୂରାଂତର ପିଲାମାନେ ମଧ୍ୟ ଏନଟ୍ରାନ୍‌ସ ପରୀକ୍ଷା ଦେବାକୁ ଆସିଲେ, ଅନେକ କଟକରେ ସେଇଦିନ ଜୀବନରେ ପ୍ରଥମେ କୁରୁତା ତିଆରି କରାଉଥିଲେ ଓ ଯୋତା କିଣି ମାଡୁଥିଲେ । ଅବଶ୍ୟ ସେ ଯୋତା ସେତେବେଳର ଟଂକିକିଆ ଯୋତା । ତାକୁ ପିଂଧି ତା ଦାଉରେ ହୋଇଥିବା ଗୋଇଠି ଆଂଗୁଠିର ଫୋଟକା ଉପରେ ତାକୁ ପୁଣି ମାଡ଼ି ପରୀକ୍ଷା ଘର ଭିତରକୁ ଯିବା ଆସିବା ଅନେକଂକ ପକ୍ଷରେ ବଡ଼ ଦୁସାଧ ଥିବାର ମୋ ମନେଅଛି । ସେପରି ଯୋତା, କୁରୁତା ନଥିଲେ, ହଲଓ୍ୱାର୍ଡ଼ ସାହେବ କାହାରିକୁ ପରୀକ୍ଷା ହଲଭିତରକୁ ପଶିବାକୁ ଦେଉ ନଥିଲେ । ଏପରି ଜଣେ ଛାତ୍ର ପରୀକ୍ଷା ନ'ଦେଇ ରହିଯାଇଥିବାର ମୁଁ ଜାଣେ ତାଂକ ନାମଟି ଏବେ ମନେ ହେଉନାଇ ।

## ୩୫। ଓଡ଼ିଆଂକ ଦୁର୍ଗତି

ଏହି ସାହେବଂକ ପରେ ଜଣେ ଜଣେ ବଂଗାଳୀ ମଧ୍ୟ ରେଭେନ୍‌ସା କଲେଜକୁ ପ୍ରିନ୍‌ସପାଲ ହୋଇ ଆସୁଥିଲେ ଓ ଅନ୍ୟାନ୍ୟ ବଂଗାଳୀ ପ୍ରଫେସର ଓ ମାଷ୍ଟରମାନେ ମଧ୍ୟ କଟକ କଲେଜ ଓ ସ୍କୁଲକୁ ଆସୁଥିଲେ । ଓଡ଼ିଆ ଜୀବନ ଓ ଚଳଣି ସଂଗେ ତାଂକର ମଧ୍ୟ କିପରି ସଂପର୍କ ଥିଲା, ତା'ର ମଧ୍ୟ ଗୋଟିଏ ଉଦାହରଣ ଦେଉଚି । ଏତେବେଳର ପ୍ରିନ୍‌ସପାଲ ହେଉଥିଲେ ବୋଧହୁଏ ସ୍ୱର୍ଗତ ନୀଳକଂଠ ମଜୁମଦାର ।

ସେତେବେଳକୁ ଗୋପବଂଧୁ ଦାସ ହଷ୍ଟେଲରେ ଥାଂତି ଓ ବାହାରରୁ ପିଲାଏ ପରୀକ୍ଷା ଦେବାକୁ ଆସିଲେ, ସେମାନେ ଆତ୍ମୀୟସ୍ୱଜନ ଦେଖି ତାଂକ ପାଖେ କଲେଜ ବା କଲିଜିଏଟ ବୋଡ଼ିଂରେ ରହଂତି । ଥରେ ଏଇପରି ପୁରୀ ଜିଲ୍ଲାସ୍କୁଲରୁ ଦୁଇଜଣ ଛାତ୍ର ଆସି ଗୋପବଂଧୁ ବାବୁଂକ ପାଖରେ ରହିବାକୁ ଲୋଡ଼ିଲେ । ତାଂକ ମଧ୍ୟରୁ ଜଣଂକ ନାମ କୃଷ୍ଣଚଂଦ୍ର ମିଶ୍ର । ସେ ହେଉଚଂତି ବ୍ରାହ୍ମଣ ଓ ଗୋପବଂଧୁ ଦାସ ମଧ୍ୟ ବ୍ରାହ୍ମଣ । ଅନ୍ୟ ଜଣଂକର ନାମ ଥିଲା କାଳୀଚରଣ ଦାସ । ସେ ହେଉଚଂତି କରଣ । ଗୋପବଂଧୁ ଦାସ ଦୁହେଁ ରହିବା ପାଇଁ ପ୍ରିନ୍‌ସପାଲଂକ ପାଖରେ ଦରଖାସ୍ତ କରିଦେଲେ । ପ୍ରିନ୍‌ସାପାଲ ସାହେବ ଲେଖିଦେଲେ, କାଳୀଚରଣ ଦାସ ଗୋପବଂଧୁ ଦାସଂକ ଆତ୍ମୀୟ ବୋଲି ମନେ ହେଉଚି; କିଂତୁ କୃଷ୍ଣଚଂଦ୍ର ମିଶ୍ର କିପରି ହେବେ ? ଏ ତ ମିଶ୍ର । ଗୋପବଂଧୁ ଦାସ ହେଲେ ଦାସ । ଅତଏବ ସେ ରହିପାରିବେ ନାଇ; କେବଳ କାଳୀଚରଣ ଦାସ ଗୋପବଂଧୁ ଦାସଂକ ପାଖରେ ରହିବେ । ଓଡ଼ିଆମାନେ ଏଇପରି ଦୁର୍ଗତିରେ ଥିଲେ ।

ବହୁକାଳରୁ ଓଡ଼ିଆର ପ୍ରଦେଶ ବୋଲି କିଛି ନ'ଥିଲା । ରାଜଧାନୀ ବୋଲି ମଧ୍ୟ କିଛି ନଥିଲା । ସେଇ ଅନୁସାରେ ଭାଷାର ଏ ଦୁର୍ଗତି ।

## ୩୬। ବ୍ରହ୍ମପୁର ଓ ନିରାମିଷାଶୀ ଓଡ଼ିଆ

ଏ ସଂବଂଧରେ ଆଉ ଗୋଟିଏ ଦକ୍ଷିଣୀ କଥା କହେ । ମୁଁ ଏମ୍. ଏ. ପାସ୍ କରି ସତ୍ୟବାଦୀ ସ୍କୁଲ କରି ତହିଁରେ ହେଡ୍‌ମାଷ୍ଟର ହେବା ପର୍ଯ୍ୟଂତ ଗଂଜାମରେ ଏତେ ଓଡ଼ିଆ ଅଛଂତି ବୋଲି ଜାଣି ନ'ଥିଲି । ୧୯୧୧ ମସିହାରେ ବ୍ରହ୍ମପୁରରେ 'ଉତ୍କଳ ସମ୍ମିଳନୀ'ର ଅଧିବେଶନ ହୋଇଥିଲା । ସେତିକିବେଳେ ସେଠାରେ ବହୁସଂଖ୍ୟାରେ ଓଡ଼ିଆ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ପୁଣି ଓଡ଼ିଆ ଶିଷ୍ଟ ଲୋକମାନେ ପ୍ରାୟ ସମସ୍ତେ କହଂତି ସେମାନେ ନିରାମିଷାଶୀ । ଏ କଥାର ଅର୍ଥ ମୁଁ ସେତେବେଳେ ବୁଝି ନ'ଥିଲି । ପରେ ଜାଣିଲି ନିରାମିଷାଶୀ ନ'କହିଲେ ଓଡ଼ିଆଂକୁ ବ୍ରହ୍ମପୁର ସହରରେ ଭଡ଼ାଘର ପର୍ଯ୍ୟଂତ ମିଳୁ ନଥିଲା । ତେଲେଂଗାଂକ ଭିତରେ କର୍ମଚାରୀ ଓ ଶିକ୍ଷକମାନେ ପ୍ରାୟ ବ୍ରାହ୍ମଣ, ସେମାନେ ପରଂପରାରେ ନିରାମିଷାଶୀ । ଓଡ଼ିଆମାନେ ଆମିଷ ଖାଆଂତି ବୋଲି... ଜାଣିଲେ, ତାଂକର ଅତ୍ୟଂତ ଘୃଣା ଓ ଅନାସ୍ଥା ହେଉଥିଲା; ତେଣୁ ଓଡ଼ିଆମାନେ ଅନେକ ମଫସଲରେ, ଘରେ ଆମିଷ ଖାଇଲେ ମଧ ବ୍ରହ୍ମପୁର ପରି ସହରରେ ନିଜେ ପୂରା ନିରାମିଷାଶୀ ବୋଲି କହୁଥିଲେ ଓ ବେଳେ ବେଳେ ଦେଖାଇ ହେଉଥିଲେ ।

## ୩୭। କର୍ତ୍ତବ୍ୟବୋଧିନୀ

ଏଇ ପରିସ୍ଥିତିରେ ଯେତେବେଳେ ବି.ଏ. ପରୀକ୍ଷାରେ ବଂଗଳା ପ୍ରବଂଧବିଷୟକ ସ୍ୱତନ୍ତ୍ର ପ୍ରଶ୍ନଟି ଦିଆଯିବାର ବିଶ୍ୱବିଦ୍ୟାଳୟ ସ୍ଥିର କଲେ, ସେତିକିବେଳେ ପ୍ରଥମେ ଏକପ୍ରକାର ସେଇ ଉଦ୍ଦେଶ୍ୟରେ କଟକରେ 'କର୍ତ୍ତବ୍ୟବୋଧିନୀ' ବୋଲି ଗୋଟିଏ ସଭା ବା ସମାଜ ଗୋପବଂଧୁ ଦାସ ପ୍ରତିଷ୍ଠା କରିଥିଲେ । ଏଥିରେ ମେଂବର ଥିଲେ କଲେଜ ପଢୁଆ ତିନିଜଣ । ଜଣେ ତ... ଗୋପବଂଧୁ ଦାସ । ଆଉଜଣେ ହେଉଛନ୍ତି ରିଟାୟାର୍ଡ୍ ସ୍କୁଲ ଡ଼ିଷ୍ଟ୍ରିକ୍ଟ ଇନିସ୍‌ପେକ୍ଟର ସ୍ୱର୍ଗତ ଶ୍ରୀ ଲୋକନାଥ ପଟ୍ଟନାୟକ । ଆଉ ଜଣେ ସ୍ୱର୍ଗତ ବ୍ରଜସୁଂଦର ଦାସ । ବ୍ରଜସୁଂଦର ଦାସ ବାହାରେ କଟକରେ ନିଜ ଘରେ ଥାଂତି । ଲୋକନାଥ ପଟ୍ଟନାୟକ ଥାଂତି ସହରରେ । ବୋର୍ଡ଼ିଂରେ ଥାଆଂତି ଏକା ଗୋପବଂଧୁ ଦାସ । କଟକ ସହରରେ ଏଇ ସମାଜ ଲୋକଂକ ଭିତରେ ବିଶେଷ ବ୍ୟାପ୍ତ ହୋଇଥିଲା । ଏଇ ସମାଜ ସମସ୍ତ ଓଡ଼ିଆଂକ ନାମରେ ବିଶ୍ୱବିଦ୍ୟାଳୟରେ ଆବେଦନ କରିଥିଲେ; କିଂତୁ ସେତେବେଳର ବିଶ୍ୱବିଦ୍ୟାଳୟ ବଂଗାଳୀ କର୍ତ୍ତା ଓ ମୁଖ୍ୟମାନେ ଏ କଥାରେ କର୍ଣ୍ଣପାତ କରି ନ'ଥିଲେ; ବରଂ ମତ ଦେଇଥିଲେ ଓଡ଼ିଆରେ ପ୍ରବଂଧ ପ୍ରଶ୍ନ ହେବନାଇ । ଏ ମଧରେ କି ଘଟଣା ଘଟିଥିଲା, ମୋର ମନେନାଇ; କିଂତୁ କଥାଟି ମନେଅଛି, ସେତେବେଳେ ସାର ଜନ୍ ଉଡ୍‌ବର୍ଣ୍ଣ ସାହେବ ଥିଲେ ବଂଗଦେଶର ଛୋଟଲାଟ । ଛୋଟଲାଟ ଥିଲେ ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟର ରେକ୍ଟର । ସେଇ ରେକ୍ଟର ଏ କଥା ସାକ୍ଷାତ ଭାବରେ ହାତକୁ ନେଇ ଓଡ଼ିଆରେ ବି.ଏ. ପରୀକ୍ଷାରେ ସ୍ୱତଂତ୍ର ପ୍ରଶ୍ନ ହେବା କଥାଟି ବିଶ୍ୱବିଦ୍ୟାଳୟର ସିଦ୍ଧାଂତରେ ପରିଣତ କରିଥିଲେ ।

## ୩୮। ଓଡ଼ିଆ ସାହିତ୍ୟରଥୀଂକ ଓଡ଼ିଆ ପ୍ରୀତି

ଏ ସଂବଂଧରେ ଓଡ଼ିଆ ପଂଡ଼ିତ ବୋଲାଉଥିବା ସୁଧୀମାନଂକ କଥା ଟିକିଏ କହିଦିଏ । ଅନେକ ଜାଣିଥିବେ ରାଧାନାଥ ରାୟ ଓ ମଧୁସୂଦନ ରାଓ ଦୁହେଁ କଲିକତା ବିଶ୍ୱବିଦ୍ୟାଳୟର

ଓଡ଼ିଆରେ ପ୍ରାଶ୍ନିକ ଥିଲେ । ଏଇମାନେ ମଧ ଖାତା ଦେଖି ନଂବର ଦେଉଥିଲେ । ଏ ଦୁହେଁଯାକ ସେତେବେଳେ ଏଫ୍. ଏ. (ଏବର ଆଇ. ଏ.) ପାସ୍ କରିଥିଲେ । ଏଥିପାଇଁ ଯେ କେହି କଲିକତା ବିଶ୍ୱବିଦ୍ୟାଳୟର କ୍ୟାଲେଂଡ଼ର ଦେଖିପାରଂତି; କିଂତୁ ଏ ଦୁହେଁ ଅନ୍ୟଭାବରେ ହେଉ ନ ହେଉ ପ୍ରାଶ୍ନିକ ଭାବରେ ବିଶ୍ୱବିଦ୍ୟାଳୟରେ ନିଜକୁ ଏମ୍. ଏ. ବୋଲି ପରିଚୟ ଦେଉଥିଲେ; ତେଣୁ ଏଇ ଯେଉଁ ନୂତନ ଓଡ଼ିଆ ପରୀକ୍ଷାଟି ବି.ଏ.ରେ ଦେବାର ହେଲା, ସେଥିରେ ସେକାଳର ମଧୁସୂଦନ ରାଓ ପ୍ରାଶ୍ନିକ ଓ ପରୀକ୍ଷକ ହେଲେ । ଶ୍ରୀ ବ୍ରଜସୁଂଦର ଦାସ କଲିକତାରେ ପ୍ରେସିଡ଼ନସି କଲେଜରୁ ସେଇବର୍ଷ ବି.ଏ. ପାସ୍ କରିଥିଲେ । ସେଇବର୍ଷ ଓଡ଼ିଶାରେ ଲୋକନାଥ ବାବୁ ଓ ଗୋପବଂଧୁ ବାବୁ ବି.ଏ. ପରୀକ୍ଷା ଦେଉଥିଲେ । (ବୋଧହୁଏ ଏ ବର୍ଷ ୧୯୦୨ କିଂବା ୧୯୦୩ ଖ୍ରୀଷ୍ଟାବ୍ଦ ହେବ ।) ଏଇ ସମୟରେ ପରୀକ୍ଷା ଆସିଲା । ଏ ପରୀକ୍ଷା ଓଡ଼ିଶାରେ ପ୍ରଥମ । ଦୁହେଁ ଏ ପରୀକ୍ଷା ଦେଲେ । ପରେ ଜଣାପଡ଼ିଲା ଏ ଦୁହେଁଯାକ ସେଥିରେ ଅକୃତକାର୍ଯ୍ୟ ହୋଇଥିଲେ । ଗୋପବଂଧୁ ବାବୁ ଓ ଲୋକନାଥ ବାବୁ ସେତେବେଳକୁ ଓଡ଼ିଶାରେ ବିଶେଷତଃ କଟକରେ ସୁପରିଚିତ ଓଡ଼ିଆ ସାହିତ୍ୟିକ ଥିଲେ । ବିଶେଷରେ ଗୋପବଂଧୁ ବାବୁ 'କର୍ତ୍ତବ୍ୟବୋଧିନୀ' ସଭାକରି ସେଥିରେ ଓଡ଼ିଆ ସାହିତ୍ୟ ଚର୍ଚ୍ଚାର ଖୁବ୍ ବିଦ୍ୟା ଫୁଟାଇ ଥିଲେ । କେହି ଆଶଂକା କରି ନଥିଲେ ବି.ଏ.ର ଏଇ ନୂଆ ପରୀକ୍ଷାଟିରେ ଗୋପବଂଧୁ ବାବୁ ତଥା ଲୋକନାଥ ବାବୁ ଫେଲ-ହୋଇଯିବେ । ନିଜେ ତଥା ଲୋକନାଥ ବାବୁ ଏଥିରେ ପାସ୍ କରି ବିଶ୍ୱବିଦ୍ୟାଳୟରେ ଉଚ୍ଚ ଓଡ଼ିଆ ସାହିତ୍ୟିକ ବୋଲି ପରିଚିତ ହେବାର ଆଶା ପୋଷଣ କରିଥିଲେ । ଏମାନେ ଫେଲ ହେବାରେ ଲୋକେ ବିସ୍ମିତ ହୋଇଗଲେ ।

ତେଣୁ ଏ ସଂପର୍କରେ କେତେଜଣ ବିଶିଷ୍ଟ ବ୍ୟକ୍ତି ମଧୁବାବୁଙ୍କୁ ଯାଇ ପଚାରିଥିଲେ, "ଆପଣ ଓଡ଼ିଆଂକର ଏ କି ଅନ୍ୟାୟ କଲେ ? ବଂଗାଳୀ ଯାହା ଓଡ଼ିଆଗୁଡ଼ାକ ଅସଭ୍ୟ ଅପଦାର୍ଥ ବୋଲି କହୁଥିଲେ, ସେକଥା ତେବେ ସତ୍ୟ ? ଏହା ପୁଣି ଆପଣ ନିଜ କାର୍ଯ୍ୟରେ ପ୍ରମାଣ କଲେ ?" ମଧୁରାଓ କହିଥିଲେ, "ଲୋକନାଥ ପଟ୍ଟନାୟକଂକ ଖାତାରେ ଅତି ଅଶ୍ଳୀଳ କଥା ଲେଖାଅଛି ।" ବୋଧହୁଏ ସେ ଖାତାଟି କାଢ଼ି ଦେଖାଇ ଦେଇଥିଲେ । ସେଥିରେ ଝଂଟା ଖାଂଟି ଓଡ଼ିଆର ଉଦାହରଣ ଭିତରେ ଲୋକନାଥବାବୁ କୃଷ୍ଣସିଂହଂକ ମହାଭାରତ ଭିତରୁ ଉଦ୍ଧାର କରିଥିଲେ ।

"ସଭାରେ ବସି ଅଛଂତି କର୍ପୂରମାଳିଆ,
ଗାଂଡ଼ିଟା ମାନ ତାଂକର ଯେସନେ ଓଳିଆ ।"

ସେତିକିରେ ତ ତାଂକର ଦଫା ରଫା । ତା'ପରେ ଗୋପବଂଧୁ ବାବୁଂକ ପ୍ରଶ୍ନ ଉଠିଲା । ସେ ଖାତା ବି ହୁଏତ ବାହାରିଲା । ସେଥିରେ ମଧୁବାବୁଂକଠାରୁ ଉତ୍ତର ମିଳିଥିଲା, "ଏ ପ୍ରଶ୍ନରେ ଶତକଡ଼ା ପଚାଶରେ ପାସ୍ ବୋଲି ମୁଁ ଜାଣି ନଥିଲି । ମୁଁ ଜାଣିଥିଲି ଶତକଡ଼ା ୩୬ । ସେଥିପାଇଁ ମୁଁ ୩୬ ନମ୍ବର ଦେଇଥିଲି ।" ମୋଟକଥା ଲୋକେ ବୁଝିଲେ ବଂଗାଳୀଭାଷା ଓ ସାହିତ୍ୟକୁ ଅନୁକରଣ କରି ବଂଗାଳୀ ସାହିତ୍ୟିକଂକ ସଂଗେ ନିଜକୁ ସମକକ୍ଷ ବୋଲି ଦେଖାଇବାର ଯେ ପ୍ରବୃତ୍ତି ଏ ପରୀକ୍ଷକମାନଂକର ଥିଲା, ଏପରି ନଂବରଦେବା ତାହାରି ଫଳ । ଓଡ଼ିଆ ସ୍ୱତଂତ୍ର ଭାଷାରୂପେ ଏତେଶୀଘ୍ର ପରିଚିତ ହେଉ ଏହା ଏମାନଂକର ଇଚ୍ଛା ନ'ଥିଲା ବୋଲି ସେତେବେଳର ଅନେକ ବୁଝିଥିବା କଥା ମୋ ମନେ ଅଛି ।

## ୩୯। ମୁକୁର

ଗୋପବଂଧୁ ବାବୁଂକର ସେଇଦିନଠାରୁ ଏ ଦଳର ଓଡ଼ିଆଭାଷା ଓ ଓଡ଼ିଆ ଲେଖକମାନଂକ ପ୍ରତି ଅତ୍ୟଂତ ଅଶ୍ରଦ୍ଧା ଥିଲା । ମୋର ମନେଅଛି, ଏଇ ସୂତ୍ରରେ ବ୍ରଜସୁଂଦରବାବୁଂକ ସଂପାଦକତ୍ୱରେ 'ମୁକୁର' ନାମକ ମାସିକପତ୍ର ପରେ ପ୍ରକାଶିତ ହୋଇଥିଲା । ଏଇ ଘଟଣା ସଂଗେ ଆଉ ଅନେକ କଥା ମୋ ମନେଅଛି । ଏଇ ୧୯୦୩ ଖ୍ରୀ:ଅ:ରେ ଓ ତାପରେ ମୁଁ ଗୋପବଂଧୁବାବୁଂକ ସାହଚର୍ଯ୍ୟରେ ଥିବାକାଳରେ ଓଡ଼ିଶାରେ ତତ୍କାଳୀନ ସାହିତ୍ୟ ଓ ସାହିତ୍ୟରଥୀମାନଂକ ସଂବଂଧରେ ବହୁତ କଥା ଶୁଣିଚି ଓ ଜାଣିଚି । ସେକଥାରୁ କିଛି କିଛି ନକହିଲେ ପ୍ରଦେଶମାନଂକରେ ଖଂଡ଼ ବିଖଂଡ଼ିତ ଓ ବିଶେଷରେ ସେଇ କାରଣରୁ ଅନୁକରଣ ଓ ପରମୁଖାପେକ୍ଷିତାରେ ଜର୍ଜରିତ ସେକାଳରେ ନିର୍ଧନ ଓ ଆଶ୍ରୟହୀନ ଓଡ଼ିଶାର ଅନେକ କଥା ଅଜଣା ରହିଯିବ; କିଂତୁ ଏଠି କହିବା ବୋଧହୁଏ ସମସ୍ତେ ଠିକ୍ ମନେ କରିବେ ନାଇ ।

## ୪୦। ମଧୁବାରିଷ୍ଟର

ସ୍ୱର୍ଗତ ମଧୁସୂଦନ ଦାସ ଥିଲେ ଓଡ଼ିଶାର ମୁଖ୍ୟତମବ୍ୟକ୍ତି । ତାଂକ ସଂବଂଧରେ କଥା ଅଛି, ସେ ଓଡ଼ିଶାରୁ ଗୋବିଂଦ ଦାସ ନାମରେ ଏନଟ୍ରାନ୍ସ ପାସ୍ କରି ଗୋଟିଏ କିରାଣୀ ଚାକିରି କରୁଥିଲେ । ସେଠାରୁ କୌଣସିପ୍ରକାରେ ଯାଇ କଲିକତାରେ ଖ୍ରୀଷ୍ଟିୟାନ ମିଶନାରୀମାନଂକ ପ୍ରଭାବରେ ପଡ଼ି ସେ ନିଜ ନାମକୁ ମଧୁସୂଦନ ଦାସ ନାମରେ ପରିଣତ କରି ସେଠାରୁ ଆଉ ଥରେ ଏନଟ୍ରାନ୍ସ ପରୀକ୍ଷାଦେଇ କ୍ରମେ ଏମ୍.ଏ. ଓ ବି.ଏଲ. ପର୍ଯ୍ୟଂତ ପାସ୍ କରିଥିଲେ । ସେ ପ୍ରଥମେ କଲିକତାରେ ଓକିଲାତି କରି ସେଠାରୁ ବହୁତ ଟଂକା ରୋଜଗାର କରି କଟକରେ ଓକିଲାତି କରିବା ପାଇଁ ଆସି ସେଠାରେ ବସତି ସ୍ଥାପନ କରିଥିଲେ । ସେ ଅତ୍ୟଂତ ମତିମାନ୍ ଓ ବୁଦ୍ଧିମାନ୍ ବ୍ୟକ୍ତିଥିଲେ । ଓକିଲାତିରେ ତାଂକର ଅସାଧାରଣ ଦକ୍ଷତା କଥା ଓଡ଼ିଶାରେ ପ୍ରାୟ ଘରେ ଘରେ ଜାଣଂତି । ଓଡ଼ିଶାରେ ତାଂକୁ କହୁଥିଲେ 'ମଧୁବାରିଷ୍ଟର' । ଏଇ ହିସାବରେ ସେ ଭାରତ ଜାତୀୟ କଂଗ୍ରେସରେ ଥିଲେ ଜଣେ ବଡ଼ପଂଡ଼ା । ସେତେବେଳେ କଂଗ୍ରେସ ନେତାମାନେ ଭିନ୍ନ ଜିଲା ପ୍ରାଂତରୁ ଏଭଳି ଲୋକଂକୁ ବାଛି କଂଗ୍ରେସକୁ ପୁଷ୍ଟ କରୁଥିଲେ । ଏଇ ମଧୁବାବୁଂକର ମଧ୍ୟ ଓଡ଼ିଶା ସଂଗେ ଓଡ଼ିଆଭାଷୀ ସ୍ଥାନମାନଂକୁ ଏକ କରି ଓଡ଼ିଶା ନାମରେ ବଂଗଳାରେ ରଖିବା ପାଇଁ ଖୁବ୍ ପ୍ରଯତ୍ନ ଆଉରି ଆଗରୁ ପ୍ରକାଶ ପାଇଥିଲା । ଗୋପବଂଧୁ ଦାସ ଏ କ୍ଷେତ୍ରରେ ମଧୁବାବୁଂକର ଏଇ ନୀତିରେ ବହୁ ପରିମାଣରେ ପ୍ରଭାବିତ ହୋଇଥିଲେ ବୋଲି ମନେହୁଏ । ଯଥାର୍ଥରେ ମଧୁବାବୁ ହେଉଚଂତି, ପୁଣି ଏଇ ଓଡ଼ିଆ ଆଂଦୋଳନର ମୁଖ୍ୟକର୍ତ୍ତା ।

୧୯୦୨ ଖ୍ରୀ:ଅ:ରେ ହେବ, ବଂଗଦେଶରେ ହେଉଥାଏ ପ୍ରାଦେଶିକ ସମ୍ମିଳନୀ । (ବୋଧହୁଏ ଏହା ହେଉଥିଲା ବର୍ଧମାନରେ କିଂବା ମୁର୍ଶିଦାବାଦରେ) ସ୍ଥାନଟି ଠିକ୍ ମନେ ହେଉ ନାଇ । ମଧୁବାବୁ ବଡ଼ ଉତ୍ସାହରେ ଲାଗିଲେ ଓଡ଼ିଆଭାଷୀମାନେ ସ୍ୱତନ୍ତ୍ର ଓ ଓଡ଼ିଆଭାଷୀ ଏକ । ଏଇଭାବରେ ଗୋଟିଏ ପ୍ରସ୍ତାବ ଏଇ ବଂଗୀୟ କଂଗ୍ରେସ ସମ୍ମିଳନୀରେ ଧାର୍ଯ୍ୟ କରାଇନେବେ । ବହୁ ଉତ୍ସାହରେ ସେ ଏ ପ୍ରସ୍ତାବଟି ବିଷୟ ନିର୍ବାଚନ କମିଟିରେ ଦେଲେ ।

ସେଇଠାରେ ବଂଗାଳୀମାନଂକ ଭିତରେ ଘୋର ଅନିଚ୍ଛା ପ୍ରକଟିତ ହେଲା । ସ୍ୱର୍ଗତ ସାର ସୁରେଂଦ୍ର ନାଥ ବାନାର୍ଜୀଂକ ପର୍ଯ୍ୟଂତ ଏଥିରେ ମଧୁବାବୁଂକ ବିରୋଧରେ ହେଲେ ବଡ଼ପଂଡ଼ା । ଏ ପ୍ରସ୍ତାବଟି ଗୃହୀତ ହୋଇପାରିଲା ନାଇ । ମଧୁବାବୁ ସଂଗେ ସଂଗେ ସେ କଂଗ୍ରେସରୁ ବିଦାୟ ନେଲେ । ସେଇଦିନ ଠାରୁ କଂଗ୍ରେସ ଅନୁଷ୍ଠାନ ପ୍ରତି ମଧୁବାବୁ ମରିବାଯାଏ ଆଉ ମୁହଁ ଫେରାଇ ନାହାଂତି । ଏହା ପୂର୍ବରୁ ପ୍ରସଂଗତରରେ କୁହାଯାଇଛି, ମଧୁବାବୁଂକର ସେଇଦିନଠାରୁ ହେଲା 'ଉତ୍କଳ ସମ୍ମିଳନୀ' । ବହୁ ଅତଂଦ୍ରିତ ଯତ୍ନ ପରେ ମରିବା ପୂର୍ବରୁ ସେ ଜାଣିଥିଲେ ବଂବେର ସିଂଧୁ ପ୍ରଦେଶ ପରି ବିହାର ଓଡ଼ିଶା ଗୋଟିଏ ସ୍ୱତଂତ୍ର ପ୍ରଦେଶ ହେବାକୁ ଯାଉଚି । କୋରାପୁଟ ଓ ପାରଳାଖେମଣ୍ଡି ଓଡ଼ିଶାକୁ ଆସିବା କଥା ସେ ଜାଣି ନ'ଥିଲେ; ମାତ୍ର ମୃତ୍ୟୁଶଯ୍ୟାରେ ମତେ କହିଥିଲେ, ''ଏ ଦୁଇଟିଯାକ ମଧ ଆସୁଚି, ସେଥିରେ କୌଣସି ସଂଦେହ ନାଇ ।''

## ୪୧। ଗୋପବଂଧୁଂକ ରାଜନୀତି

ଏଇ ପରିସ୍ଥିତିମାନଂକ ଭିତରେ ବିକାଶ ପାଉଥିଲା ଗୋପବଂଧୁ ବାବୁଂକ ରାଜନୀତି । ଓଡ଼ିଆଭାଷୀଂକ ଦେଶ ଓ ଉପାଂତ ଓଡ଼ିଆଭୂମିର ଓଡ଼ିଶା ସଂଗେ ମିଶ୍ରଣ ପ୍ରଭୃତି ଏଇ ରାଜନୀତିର ପୁଣ୍ୟପୀଠରୂପେ ଗୋପବଂଧୁ ବାବୁଂକଠାରେ ପ୍ରକାଶ ପାଇଥିଲା । ଏତିକିବେଳକୁ ଘଟିଲା ଆଉ ଏକ ଘଟଣା ।

ମଧୁବାବୁ ଆସି ବ୍ରହ୍ମପୁରରେ ଗଂଜାମିମାନଂକୁ ମୁଖ୍ୟଭାବରେ ଧରି ଗୋଟିଏ ଉତ୍କଳ ସମ୍ମିଳନୀ ଆରଂଭ କଲେ । ଏହା ସେଇ ୧୯୦୨ ଖ୍ରୀ:ଅ: କିଂବା ୧୯୦୩ ଖ୍ରୀ:ଅ: ପ୍ରାରଂଭରେ ହେବ । ଏଇଠାରେ ଖଂଡ଼ ବିଖଂଡ଼ିତ ଓଡ଼ିଆପ୍ରାଣ ପ୍ରଥମେ ସମ୍ମିଳିତ ଭାବରେ ପୂର୍ଣ୍ଣତା ପାଇବାକୁ ପ୍ରଚେଷ୍ଟା ସ୍ପଷ୍ଟ ଭାବରେ ଆରଂଭ କଲା । ଗୋପବଂଧୁବାବୁ ମଧ ପୂର୍ଣ୍ଣପ୍ରାଣରେ ଏଥିରେ ଯୋଗ ଦେଲେ । ମଧୁବାବୁ ଥିଲେ ନେତା । ସେ ଥିଲେ ବୟସରେ ବଡ଼ ଓ ପ୍ରବୀଣ । ଯେତେହେଲେ ଲୋକେ ତାଂକୁ ଟିକିଏ ଦୂରରୁ ଦେଖିଥିଲେ, ବିଶେଷରେ ଯୁବକ ଲୋକେ । ଗଂଜାମର ସେତେବେଳେ ଏ ଉଦ୍‌ବୋଧନ ଭିତରେ କେହି ବୃଦ୍ଧ ବା ପ୍ରବୀଣ ସେପରି ଜଣାଶୁଣା ନଥିଲେ । ବୟସ୍କ ଓ ପ୍ରବୀଣଂକ ଭିତରେ ସେତେବେଳେ ଥିଲେ ସ୍ୱର୍ଗତ ନରସିଂହ ଦାସ । ତାଂକ ତଳକୁ ଆସ୍କାର ଓକିଲ ହରିହର ପଂଡ଼ା । ଏ ଦୁହେଁ ଯୁବକ ଦଳରେ ଗଣା ହେଲାଭଳି ଲୋକ, ତେଣୁ ଯୁବକ ଗୋପବଂଧୁଂକ ପ୍ରଭାବ ଗଂଜାମର ବହୁତ କୃତୀଂକ ଭିତରେ ସାକ୍ଷାତଭାବରେ ଖୁବ୍ ପଡ଼ିଥିଲା । ଗୋପବଂଧୁବାବୁ ମଧ ଅତ୍ୟଂତ ସଦାଳାପୀ ଓ ସୁବକ୍ତା ଥିଲେ । ମଧୁବାବୁ ମଧ ସୁବକ୍ତା ଥିଲେ; କିଂତୁ ତାଂକ ବକ୍ତୃତାରେ ଭୂୟୋଦର୍ଶନର ବିଶାଳତା ଥିଲେ ମଧ ତାହା ଯୁବକମାନଂକ ପ୍ରତି ପ୍ରଚ୍ଛନ୍ନ ବା ସାକ୍ଷାତ ଉପଦେଶ ପରି । .ସେ ହିସାବରେ ଗୋପବଂଧୁବାବୁଂକ କଥା ସ୍ୱାଦ୍ୟ ମଧୁର ଓ ବିଶେଷ ହୃଦୟଗ୍ରାହୀ । ପୁଣି ଗୋପବଂଧୁବାବୁଂକ ଆଳାପ ଓ ଚଳଣିରେ ତଥା ବକ୍ତୃତାରେ ସରସତା (Humour) ପୂରି ରହିଥିଲା । ତାଂକର ଏଇ ହୃଦ୍ୟଚଳଣି ହେତୁ ସେ ଅତ୍ୟଂତ ଲୋକପ୍ରିୟ ହୋଇ ଉଠିଲେ ଓ ଗଂଜାମରେ ତାଂକର ସ୍ଥାନ ଏକପ୍ରକାର ଅତି ଅଭେଦ୍ୟ ଭାବରେ ପ୍ରତିଷ୍ଠିତ ହେବାର ଆରଂଭ ହେଲା ।

## ୪୨। ମୋର ରୋଗୀ ସେବା

ଏଇଠାରେ ଗୋଟିଏ କଥା କହିଦେବା ମନେ କରୁଚି । ସେ ହେଉଚି ରୋଗୀ ସେବା । ଏହି ରୋଗୀସେବା କଟକରେ ମୁଁ ମାଟ୍ରିକ୍ୟୁଲେସନ୍ ୨ୟ ଶ୍ରେଣୀରେ ପଢ଼ିବାଦିନୁ ଆରଂଭ କରିଥିଲି । କଟକରେ ସେତେବେଳେ ସାଧାରଣ ଓଡ଼ିଆ ଓ ଓଡ଼ିଆ ଭଦ୍ରଲୋକଂକ ରହିବାର ଅବସ୍ଥା ବଡ଼ ଭଲ ନଥିଲା । ଓଡ଼ିଆ ଲୋକେ ପୂଝାରୀ ହୋଇ କାମ କରୁଥିଲେ । ସେତିକିବେଳେ ତାଂକୁ ନାନା ରୋଗ, ଏପରିକି ହଇଜା ପରି ରୋଗ ବରାବର ଧରୁଥିଲା । ଲୋକେ ଟୋପାଏ ପାଣି ନପାଇ ମରୁଥିଲେ । ମଲାପରେ ତାଂକୁ କେହି ପୋଡ଼ିବାକୁ ନଥିଲା । ଏସବୁ ଦେଖି ଗୋପବଂଧୁବାବୁ ଆମମାନଂକୁ ସଂଗେ ଧରି (ହରିଭାଇନା, ପ୍ରଚାରକ ଅନଂତ ମିଶ୍ର ଓ ମୋତେ) ଗୋଟିଏ ଦଳ କରିଥିଲେ । ଆମେ ଖବର ପ୍ରଚାର କରି ଦେଇଥିଲୁ— ସହରରେ ଯାହାର ଯେଉଁଠି ପୂଝାରୀ କିଂବା ଆତ୍ମୀୟମାନଂକ ମଧ୍ୟରେ ଏହିପରି ଦୁର୍ଗତି ଘଟିବ ସେ ଆମକୁ ଖବର ଦେଲେ ଆମେ ଯାଇ ପହଂଚିବୁ । ଏହିପରି ଅନେକ ଲୋକ ଆମକୁ ଖବର ଦିଅଂତି । ଆମେ ଯାଇ ସାଧାରଣତଃ ହଇଜା ରୋଗୀଂକ ଘରେ ପହଂଚୁ ।

ହଇଜାରେ ସେତେବେଳେ ଔଷଧ ବା ଚିକିତ୍ସା ବଡ଼ କମ୍ ଥାଏ । ରୋଗୀ ପ୍ରାୟ ମରିଯାଂତି । ଏପରିକି ଅନେକ ମୂର୍ଦାର ମଧ୍ୟ ଘରେ ପଡ଼ିଥାଂତି । ଆମେ ଯାଇ ତାଂକୁ ଶ୍ମଶାନକୁ ନେଉ । ସେ ମଧ୍ୟରୁ ଅଧିକାଂଶ ହଇଜାରେ ମରିଥାଂତି ।

ସମସ୍ତ ସହରରେ ଆମର ଏଇ ସେବା କରିବା କଥା ଖୁବ୍ ପ୍ରଚାର ହୋଇଗଲା । ମନେଅଛି, ଆମ ଟ୍ରେନିଂ କଲେଜ ହଷ୍ଟେଲ (କାଠଯୋଡ଼ିକୂଳ ଛାତ୍ରାବାସ) ଆଗରେ ଇଂଡ଼ା ଦେଉଳ ବୋଲି ଗୋଟିଏ ଦେବାଳୟ ଥାଏ । କେତେଗୁଡ଼ିଏ ଛାତ୍ର ସେଠାରେ ବସା କରି ରହୁଥାଂତି । ନେତ୍ରାନଂଦ ବୋଲି ଜଣେ ଛାତ୍ର ଥରକର କଲେରାରେ ପଡ଼ିଲା । ମୁଁ ତା ଭାଇ ବୋର୍ଡ଼ିଂରେ ମୋ ଖାଦ୍ୟ ପ୍ରଭୃତି ଖାଇବାକୁ ଛାଡ଼ିଦେଇ ସେଠାରେ ରହିଲି । ବୋର୍ଡ଼ିଂ ପରିଚାଳକ ସୁରେଶ ଗୁପ୍ତଂକ ପାଖକୁ ଖବର ଚାଲିଗଲା । ସେ ବଡ଼ ବିରକ୍ତ ହୋଇ ପ୍ରିନ୍ସିପାଲ ବି: ଭି: ଗୁପ୍ତଂକୁ ଜଣାଇଲେ । ବି: ଭି: ଗୁପ୍ତ ମୋତେ ଡକାଇ ପଠାଇଲେ । ମୁଁ ଜଣେ ବୃତ୍ତିଭୋଗୀ ଛାତ୍ର । ସେତେବେଳକୁ ମୁଁ ସକାଳୁ ଗାଧୋଇସାରି କିଛି ନଖାଇ ଖଂଡ଼େ ମଠା ପିଂଧି ରୋଗୀ ସେବା କରୁଥାଏ । ମୋର ଯେତେ ପୁରୁଣା ଚାଦର ଥିଲା ତାକୁ ଚିରି ଚିରି ରୋଗୀ ଶେଯରେ ପକାଇ ସାରିଥିଲି । ହାତ ପଟାସ୍ ପରମାଂଗାନେଟ୍ ପାଣିରେ ରଙ୍ଗ ହୋଇଥାଏ । ମୁଁ ସଂଗେ ସଂଗେ ପ୍ରିନ୍ସିପାଲଂକ ପାଖୁ ଦୋ'ତାଲାକୁ ଚାଲିଆସି କହିଲି, "ଆପଣ ମୋତେ ଅନୁଗ୍ରହ କରି ଟିକିଏ ଛାଡ଼ିଦିଅନ୍ତୁ । ସେ ରୋଗୀ ପାଖେ ଆଉ କେହି ନାଇ ।"

ମତେ ବି: ଭି: ଗୁପ୍ତ ନିରେଖି ଚାହିଁଲେ । କ'ଣ ମନକୁ ପାଇଲା, ତା'ପରେ କହିଲେ—"ହଉ ଯାଅ ।" ତା'ପରେ ସୁପରିନ୍‌ଟେଂଡ୍‌ଂଟଂକୁ ଡାକି କହିଲେ—"ତାକୁ ଦଶଟୋପା ସଲ୍‌ଫ୍ୟୁରିକ୍ ଏସିଡ୍ ପିଆଇଦିଅ ।" ସେ ଆସି ମୋତେ ଡାକି ପିଆଇଦେଲେ । ସେ ରୋଗୀଟି ସନ୍ଧ୍ୟାବେଳକୁ ମରିଗଲା । ସେ ଥିଲା କଟକ ଟ୍ରେନିଂ ସ୍କୁଲ ସଂଗେ ସଂଲଗ୍ନ ମଡ଼େଲ ସ୍କୁଲ ଛାତ୍ର ।

ଶ୍ରୀ ଚଂଦ୍ରମୋହନ ମହାରଣା ଥିଲେ ଟ୍ରେନିଂ ସ୍କୁଲର ହେଡ୍‌ମାଷ୍ଟର ଓ ଅଧ୍ୟକ୍ଷ । ମୁଁ

ଯାଇ ତାଂକୁ ଡାକିଲି । ସେ ଆସିଲେ । ଆମ ସଂଗେ ଶବକୁ ନେଇ ଖାନନଗର ଗଲେ । ପାଣି ବଢ଼ିଆସୁଥିବାରୁ ଆମେ ମଡ଼ା ମୁହଁରେ ଟିକିଏ ନିଆଁ ଲାଗିଦେଇ ନଈ ଭିତରକୁ ଫିଂଗିଦେଲୁ । ଏହା ମୋର ସ୍ପଷ୍ଟ ମନେ ଅଛି ।

## ୪୩। ରୋଗୀସେବା ୧୯୧୨

ସତ୍ୟବାଦୀ ସ୍କୁଲରେ ଆସି ଯୋଗଦେଲା ବେଳକୁ ଗୋପବଂଧୁ ବାବୁଂକର ବାରିପଦାରେ ଗୋଟିଏ ହୋମିଓପ୍ୟାଥି ଔଷଧ ରଖିବାର ସୁଂଦର ବାକ୍ସ ଥିଲା । ତାଂକଠାରୁ ମୁଁ ସେ ବାକ୍ସଟି ନେଇ ପାଖରେ ରଖି ହୋମିଓପ୍ୟାଥି ଚିକିତ୍ସା ଆରଂଭ କରିଦେଲି । ସେତିକିବେଳେ ଅକ୍ଲସାଦ୍ ସ୍କୁଲ ଘରପୋଡ଼ି (ଫେବୃୟାରୀ ୧୨ତାରିଖ ୧୯୧୨)ର ପରେ ପରେ ପୁରୀ ଜଗନ୍ନାଥଂକର ନବକଳେବର ହେଲା । ପୁରୀକୁ ରେଲ୍ ହେବା ପରେ ଏହା ପ୍ରଥମ ନବକଳେବର ଯାତ୍ରା । ସେଥିରେ ବହୁତ ଯାତ୍ରୀ ଆସି ପହଂଚିଲେ । ସେ ଯାତ୍ରୀମାନଂକୁ ସହରରୁ ବାହାର କରିବାକୁ ପୁରୀ ମ୍ୟୁନିସ୍‌ପାଲିଟି ବଡ଼ କମ୍ ସମର୍ଥ ହୋଇଥିଲେ । ଭାରି ହଇଜା ହେଲା ପୁରୀର ଯାତ୍ରୀମାନେ ଓ ତା'ପରେ ପାଖଆଖ ଗ୍ରାମମାନଂକରେ ଭାରି ହଇଜା ଲାଗିଲା । ଏପରି ବାଡ଼ି ସତ୍ୟବାଦୀ ଅଂଚଳରେ ଆଉ କେବେ ପଡ଼ିଥିବାର ମନେ ହେଉନାଇ । ସେତିକିବେଳେ ହରିଭାଇନା ପର୍ଯ୍ୟଂତ ନଥାଂତି । ସେ ଥାଂତି କଟକ ଏକାଡ଼େମୀ ସ୍କୁଲର ମାଷ୍ଟର । ମୁଁ ଛୋଟ ଛୋଟ ଛାତ୍ରମାନଂକୁ ନେଇ ହୋମିଓପ୍ୟାଥି ଚିକିତ୍ସାରେ ଲାଗିଗଲି । କାଳେ ଲୋକ ରାତି ଅଧରେ ଆସି ମୋତେ ଖୋଜିଲେ ନପାଇବେ, ସେଥିପାଇଁ ମୁଁ ସେତେବେଳର ବୋଡ଼ିଂ ବାରଂଡ଼ାରେ ଖଟ ପକାଇ ଶୋଉଥିଲି । ସ୍ୱର୍ଗତ ଶ୍ରୀ ରାମଚଂଦ୍ର ରଥେ ବରାବର ମୋ ସାଂଗରେ ଥାଂତି; ଦରକାର ହେଲେ ପିଲାମାନଂକୁ ବୋଡ଼ିଂରୁ ଧରି ମୁଁ ଗ୍ରାମମାନଂକୁ ଯାଏ ।

ସେକାଳେ ହଇଜାକୁ ଭାରି ଡର ଥିଲା । ପିଲାମାନେ ଭାରି ଭୟ କରୁଥାଂତି । ମୁଁ ଗାଆଁରେ ରୋଗୀ ଦେଖିବାକୁ ଯାଇ କୂଅରୁ ହାତରେ ପାଣି ପର୍ଯ୍ୟଂତ କାଢ଼ି ଆଣେ । ସେତେବେଳେ ମୁଁ ହିସାବ ରଖୁଥିଲି ପ୍ରଥମ ମାସରେ ୧୧୮ଜଣ ରୋଗୀ ଚିକିତ୍ସା କରିଥିଲି । ସେଥିରୁ ୧୯ଜଣ ମାତ୍ର ମରିଥିଲେ । ହୋମିଓପ୍ୟାଥି ଛଡ଼ା ଅନ୍ୟ ଚିକିତ୍ସା ପ୍ରାୟ ସେତେବେଳେ ନଥିଲା । ସାଲାଇନ୍ ଇନ୍‌ଜେକ୍‌ସନ୍ ଶିରାରେ ଦେବା ତା'ରି ଅଳ୍ପଦିନ ପରେ ବାହାରିଥିଲା; କିଂତୁ ମୁଁ ହୋମିଓପ୍ୟାଥିରେ ଭାରତର ତଥା ଆମେରିକାର ବହୁତ ଚିକିତ୍ସା ଗ୍ରଂଥ କିଣିଥିଲି । ପ୍ରଧାନ ଗ୍ରଂଥ ହେଉଚି କଲିକତାର "salzar's three lectures on cholera" । ସେ ଗ୍ରଂଥଟି ଏବେ ବି ହୁଏତ ସତ୍ୟବାଦୀର ପୁସ୍ତକାଗାରରେ ଅଛି । ଏହି ରୋଗୀ ସେବା ଘେନି ମୋର ବିଶେଷ ନାମ ହୋଇଗଲା । ଗୋଟିଏ କଥା ମନେଅଛି—ମୁଁ ଗ୍ରାମରେ ପ୍ରାୟ ଏକାବେଳକେ କୋଡ଼ିଏ ଜଣରୁ ବେଶୀ ରୋଗୀ ଚିକିତ୍ସା କରୁଥିଲି । ତାଂକୁ ଘରୁ ବାଲି ପର୍ଯ୍ୟଂତ ତିଆରି କରିନେଇ ଖାଇବାକୁ ଦିଏ । ଗୋପବଂଧୁ ବାବୁ ମଧେ ମଧେ ବାରିପଦା ବା କଟକରୁ ଆସି ମୋତେ ଉତ୍ସାହ ଦେଉଥାଂତି ।

୧୯୧୨ରେ ମୁଁ ପ୍ରଥମେ ସତ୍ୟବାଦୀ ସ୍କୁଲରେ ଶିକ୍ଷକ ଥିଲାବେଳେ ପୁରୀର ନବକଳେବର ସମୟରେ ଭୀଷଣ ହଇଜା ହୋଇଥିବା କଥା ଆଗରୁ କହିଚି । ସେତେବେଳେ

ପିଲା ଓ ଛାତ୍ରମାନଙ୍କୁ ନେଇ ମୁଁ ରୋଗୀମାନଙ୍କ ସେବାରେ ଲାଗି ପଡ଼ିଥିଲି । ଆମ ନିଜ ଗ୍ରାମରେ ଦିନେ ଅନେକଗୁଡ଼ାଏ ରୋଗୀ ପଡ଼ିବାର ଦେଖାଗଲା । ଭାରି ବର୍ଷା ମଝିରେ ମଝିରେ ହେଉଥାଏ । ମୁଁ ଦିନେ ଦୁଇଦିନ ଯାଇ ଗ୍ରାମରେ ରହିଲି । ଚିକିତ୍ସା ବରାବର ଚାଲିଥାଏ । ଲୋକଂକର ଅବସ୍ଥା ଓ ସୁବିଧା ନଥିବାରୁ ମୁଁ ନିଜଘରେ ବାର୍ଲି ତିଆରି କରି ତାକୁ ନେଇ ରୋଗୀମାନଙ୍କୁ ତାଂକ ଘରେ ଦେଉଥାଏ । କିଛି ସମୟପରେ ବୋଉ ବିରକ୍ତ ହୋଇ ମତେ କହିଲା, ''ଆମର ଏତେ ରୋଗୀମାନଙ୍କୁ ନେଇ ବାର୍ଲି ଖାଇବାକୁ ଦେବାରେ କଣ ଅଛି ? ତାଂକୁ ଔଷଧ ଦେବା ହେଉଚି ଆମ କାମ, ଏସବୁ କଣ ?''

ନନା ନଥିଲେ । ବାହାରୁ ଆସି ଶୁଣି କହିଲେ—''ଆଚ୍ଛା, ତୁ ତ ଯା କହି ପୁଅକୁ ମନା କରୁଚୁ । କାଲି ଯଦି ଏ ଦୁଷ୍କାଳରେ ଆମଘରେ କିଛି ହୁଏ, ତେବେ କିଏ ଆସିବ ?''

ସେଠାରେ ମୁଁ ଉତ୍ସାହିତ ହୋଇ ସେଇ କାର୍ଯ୍ୟରେ ଫେର୍ ଖୁବ୍ ଲାଗିଲି । ଏହା ମୋ ଜୀବନରେ ଗୋଟିଏ ଶିକ୍ଷା ପରି ଏବେ ବି ମନେଅଛି ।

ସତ୍ୟବାଦୀ ସ୍କୁଲ ଆରଂଭ ହେବା ପୂର୍ବରୁ ମୁଁ ଗୋପବଂଧୁବାବୁଂକ ବାରିପଦାରେ ବ୍ୟବହୃତ ହୋମିଓପ୍ୟାଥି ବାକ୍ସଟି ନେଇ ୧୯୧୨ ନବକଳେବର ହଇଜାରେ ଅତି ସଂତର୍ପଣରେ ମଫସଲରେ ଗ୍ରାମେ ଗ୍ରାମେ ବୁଲି ଚିକିତ୍ସା କରିବା କଥା କହିଚି । ଏପରି ଚିକିତ୍ସା କରୁଥିଲି ଯେ ଅଧାଚାଳ ଥିବା ବୋଡ଼ିଂରେ ମୁଁ ଶୋଇଥାଏ । ମୋ ପାଖରେ ନିଷ୍ଠାପର କର୍ମୀ ଶ୍ରୀ ରାମଚଂଦ୍ର ରଥେ ବରାବର ଶୋଉଥାଂତି; କାରଣ ରାତିରେ କେହି ଡାକିବାକୁ ଆସି ମୋତେ ଉଠାଇ ନ ପାରି ଫେରିଯିବେ ବୋଲି ତାଂକର ଭୟ ଥାଏ । ଏହି କାର୍ଯ୍ୟର ଧାରାଟି ଗୋପବଂଧୁବାବୁଂକ ସାହଚର୍ଯ୍ୟରେ ନୂଆ ନୁହେଁ ।

## ୪୪। ପୁରୀ ପ୍ରତ୍ୟାବର୍ତ୍ତନ

ମେଲେରିଆ ଭଲ କରିବାପାଇଁ କଟକରେ ପଢ଼ିବାକୁ ଆସିଥିଲି । ବରଷେ ରହିଲି । ମେଲେରିଆ ଭଲହୋଇ ତା'ପରେ ହଇଜା ହୋଇ ମଧ ଭଲ ହୋଇଗଲା । ପୁରୀ ପ୍ରତି ଆକର୍ଷଣଟା ବରାବର ମରିଯାଇ ନଥାଏ । ଏବେ ତା' ପୁଣି ଜାଗ୍ରତ ହେଲା । ବିଚାରିଲି ମୋତେ ଯଦି ଏନଟ୍ରାନ୍ସ ପାସ୍ କରିବାକୁ ହେବ, ତେବେ ମୁଁ କଟକରୁ ନକରି ପୁରୀରୁ କରିବି । ରମେଶ, ସୁଶୀଳ, ଯମେଶ୍ୱର ପ୍ରଭୃତି ମିତ୍ରମାନେ ମୋତେ ବାରଣ କଲେ । ମୋର ସାହଚର୍ଯ୍ୟ ଛାଡ଼ିବା କଷ୍ଟନାରେ ଦୁଃଖ ମଧ ପ୍ରକାଶ କଲେ । କିଂତୁ ଦାସେ ଆପଣେ ମୋତେ ଅନୁମତି ଦେଲେ—ମୋ ପ୍ରାଣର ଏ ଭାବ ପ୍ରତି ଅନୁକଂପା ପ୍ରକାଶ କଲେ । ମୁଁ ପୁରୀ ଫେରିଲି ।

ପୁରୀରେ ଅଧରଚଂଦ୍ର ମୁଖାର୍ଜୀ ବୋଲି ହେଡ୍‌ମାଷ୍ଟର ଥିଲେ । ଗଣିତରେ ଅତ୍ୟଂତ ସୁଦକ୍ଷ ବୋଲି ତାଂକର ନାମ ଥିଲା । ଉପରେ ଛଅଟା ଅଂକ ଲକ୍ଷ ସଂଖ୍ୟା ତଳେ ସେହିପରି ଚାରିଟା ଅଂକ ଲେଖି ସେ ସଂଗେ ସଂଗେ ମୁହଁରେ ଗୁଣିଦେଇ ତଳେ ଗାର ପକାଇ ଗୁଣନ ଫଳଟା ଲେଖି ଦେଇପାରୁଥିଲେ । ଏପରି ମୁଁ ଆଉ ଦେଖି ନାଇ । ସେ ମଧ ସେକାଳ ଅନ୍ୟାନ୍ୟ ଅନେକ ମାଷ୍ଟରଂକ ପରି ବଡ଼ ସାଧୁ ଓ ବାତ୍ସଲ୍ୟପରାୟଣ ଶିକ୍ଷକ ଥିଲେ । ତଥାପି ଶୁଣାଗଲା ତାଂକ ସ୍ଥାନରେ ଚଂଦ୍ରମୋହନ ମହାରଣା ହେଡ୍‌ମାଷ୍ଟର ହୋଇ ଆସିବେ ।

## ୪୫। ଚଂଦ୍ରମୋହନ ବାବୁ

ସେତେବେଳେ ଓଡ଼ିଆ ଜଣେ ହେଡ୍‌ମାଷ୍ଟର ହୋଇ ଆସିବେ ଏହା ଶୁଣିବାଟା ବଡ଼ କଥା । ମୁଁ ପିଲାଦିନେ ଚଂଦ୍ରମୋହନବାବୁଂକୁ ସ୍କୁଲ ଡେପୁଟୀ ଇନିସ୍‌ପେକ୍ଟର ଥିବାର ଦେଖିଥିଲି । ସ୍କୁଲ ଶିକ୍ଷକମାନଂକ ଭିତରେ ବଡ଼ ଯୋଗ୍ୟଲୋକ ବୋଲି ତାଂକର ସୁଖ୍ୟାତି ଥିଲା । ମୋ ମନେଅଛି, ଆମଗାଁ ସ୍କୁଲ ପରିଦର୍ଶନ କରିବାକୁ ଗଲାବେଳେ ସେ ଗୋଟିଏ କୋଇଲି ବୋବେଇବାର ଶୁଣି ପଚାରି ଦେଇଥିଲେ, ''ପଂଡ଼ିତ ମହାଶୟ କହଂତୁ ତ, ଏ ମାଈ କି ଅଂଡ଼ିରା କୋଇଲି ?'' ପଂଡ଼ିତ ମହାଶୟ ଟିକିଏ ଇତସ୍ତତଃ ହୋଇ କହି ପକାଇଲେ ''ମାଈ ହୋଇଥିବ । ଅଂଡ଼ିରାର ଏ ସୁଂଦର ସ୍ୱର ହେବ କୁଆଡୁ ?'' ଚଂଦ୍ରମୋହନ ବାବୁ କହିଲେ ନା ନା । ମାଈ କୋକିଳର ଏପରି ସ୍ୱର ନାହିଁ । ଆପଣ ଜାଣଂତି ନାହିଁ । କାଳୀଦାସ ଲେଖିଚଂତି—''ପୁଂସ୍କୋକୀଳୋଯନ୍ ମଧୁରମ୍ ଚୂକୂଜ'' । ସେକାଳେ ମଧ ଓଡ଼ିଆ ଶିକ୍ଷକମାନେ ସଂସ୍କୃତ ଜାଣୁଥିଲେ । ଚଂଦ୍ରମୋହନବାବୁ ସ୍କୁଲ ପରୀକ୍ଷା କରିବା ଛଡ଼ା ଏଇପରି କଥାଛଳରେ ବହୁତ ଆଲୋଚନା କରୁଥିଲେ । ଓଡ଼ିଆ ଶିକ୍ଷିତ ଶ୍ରେଣୀରେ ତାଂକର ଖୁବ୍ ଆଦର ଓ ସୁଖ୍ୟାତି ଥିଲା; କିଂତୁ ହାଇସ୍କୁଲରେ ହେଡ୍‌ମାଷ୍ଟର ହୋଇପାରୁ ନଥିଲେ । ସେକାଳେ ହାଇସ୍କୁଲମାନଂକରେ ବଂଗାଳୀପିଲା ବହୁତ ଥିଲେ । ଓଡ଼ିଆ ହେଡ୍‌ମାଷ୍ଟର ହେଲେ ସେମାନେ ମଧ ସହିପାରୁ ନଥିଲେ । ପୁରୀ ଜିଲ୍ଲାସ୍କୁଲର ହେଡ୍‌ମାଷ୍ଟର ହୋଇ ଆସିବାର ବର୍ଷେ ଦି'ବର୍ଷ ପୂର୍ବରୁ ଥରେ ସେ କିଛିଦିନ ପାଇଁ ରେଭେନ୍‌ସା କଲେଜିଏଟ ସ୍କୁଲରେ ହେଡ୍‌ମାଷ୍ଟର ହୋଇଥିଲେ । ସେତେବେଳେ ଦିନେ ସେ କ୍ଳାସକୁ ଆସିଲାବେଳକୁ ପିଲାମାନେ ପୂର୍ବରୁ ବିଚାର କରି ଗୋଟିଏ ଲିହଣ ଓ ଗୋଟିଏ ମୁଗୁର ଟେବୁଲ ଉପରେ ରଖି ଦେଇଥିଲେ । ଅବଶ୍ୟ ଯେଉଁମାନେ ରଖି ଦେଇଥିଲେ ସେମାନେ ତାଂକର ଉପାଧି ମହାରଣା ଦେଖି ତାଂକୁ ବଢ଼େଇ ବୋଲି ବିଚାରିଥିଲେ । ସେ କିଂତୁ ବଢ଼େଇ ନଥିଲେ । ସେ ଥିଲେ ଜାତିରେ ଥଟାରି । ସେ ଯାହାହେଉ, ସେତେବେଳେ ଖବରକାଗଜ ନଥିଲେ ମଧ ଏ ଖବର ଓଡ଼ିଶାରେ ବ୍ୟାପୀ ଯାଇଥିଲା । ଆମେ ସ୍କୁଲରେ ଓଡ଼ିଆ ପିଲାମାନେ ଏଥିରେ ନିଜକୁ ବଡ଼ ଅପମାନିତ ବୋଧ କରିଥିଲୁଁ; ତେଣୁ ଚଂଦ୍ରମୋହନ ବାବୁଂକ ପ୍ରତି ମୋର ସେ ଭକ୍ତି ଓ ଆଦର ଆଗରୁ ଥିଲା ତା' କହିବା ଦରକାର ନାହିଁ ।

ପରେ ସେ ଆସିଲେ । ଯଥାର୍ଥରେ ତାଂକପରି ଉଦାରଚେତା ଶିଶୁପ୍ରାଣ ଶିକ୍ଷକ ମୁଁ ବଡ଼ କମ୍ ଦେଖିଚି । ମୋତେ ସେ ଅତ୍ୟଂତ ବିଶ୍ୱାସ କରୁଥିଲେ । ଆସିବାର କିଛିଦିନ ପରେ ମୋ ଉପରେ ବୋଡ଼ିଂର ସମସ୍ତ ଭାର ଛାଡ଼ିଦେଇ ଏକପ୍ରକାର ନିଶ୍ଚିଂତ ହୋଇଥିଲେ । ପିଲାଂକର ବ୍ରହ୍ମଚର୍ଯ୍ୟଗତ ଚରିତ୍ରପାଇଁ ତାଂକର ବଡ଼ ତୀକ୍ଷ୍ଣ ଦୃଷ୍ଟି ଥିଲା । ସେଥିପାଇଁ ସର୍ବଦା ସେ ମୋ ସଂଗେ ବିଚାର ପରାମର୍ଶ କରି ଯାହା ଦରକାର ତା କରୁଥିଲେ । ମୁଁ ଶେଷରେ ଯେତେବେଳେ ବଛାବଛି ପରୀକ୍ଷା ପରେ ପୁରୀ ଜିଲାସ୍କୁଲ ଛାଡ଼ିଲି, ସେତେବେଳେ ସେ କହିଥିଲେ, ''ନୀଳକଂଠ ଚାଲିଗଲେ ହଷ୍ଟେଲ କାହା ଜିମା ରହିବ ।''

ସେତିକି ନୁହେଁ । ପାଠ ବୁଝିବା ଦରକାର ହେଲେ ତାଂକଦ୍ୱାର ମୋ ପାଇଁ ସର୍ବଦା ଅବାରିତ ଥିଲା । ରାତି ଏଗାରବେଳେ ମଧ ବୀଜଗଣିତର ମୋ ପକ୍ଷରେ ସେତେବେଳେ

ଅସାଧ ସମସ୍ୟାମାନ ଘେନିଯାଇ ମୁଁ ପହଂଚିଚି । ସେ ଶୋଇବାରୁ ଉଠିଆସି ମୋ ଅଂକଟି ମୋତେ ବୁଝାଇ ଦେଇ ପୁଣି ଯାଇ ଶୁଅଂତି । ମୋର ହସ୍ତାକ୍ଷର ବଡ଼ ଖରାପ ଥିଲା । ଅକ୍ଷରଗୁଡ଼ାକ ମୋଡ଼ା ମୋଡ଼ା ହୋଇ ସେଥିରେ ଅକ୍ଷରର ଦେହଠାରୁ ଲାଂଜ ମୁଂଡ଼ର କୁଟୀଳ ରେଖାସବୁ ବହୁତ ବାହାରୁଥାଏ । ଅକ୍ଷରଗୁଡ଼ାକ ବି ବହୁତ ବକ୍ରାକୃତି ଥାଏ । ମୋତେ ଦିନେ ସେ କହିଲେ, ''ନୀଳକଂଠ ତୁମେ ଏହାକୁ ବଦଳାଇ ଦିଅ'' ମୁଁ ବୁଝିପାରିଲି ନାଇ । ତା'ପରେ ମୋତେ ବୁଝାଇଲେ ମୁହୂର୍ତ୍ତେ ମନ ଠିକ୍ କରି କୃତସଂକଳ୍ପ ହେଲେ ଏହା ସହଜରେ ହୋଇଯିବ । ସେତିକିବେଳେ ମନୁଷ୍ୟର ସଂକଳ୍ପ ଶକ୍ତି (Will Power) ବିଷୟରେ ମୁଁ ତାଂକଠାରୁ ପ୍ରସଂଗତଃ ଯାହା ଶୁଣିଥିଲି ତା'ର ସ୍ମୃତି ଏବେ ମଧ ଜୀବଂତ ଅଛି । ମୁଁ ବହୁତ ଛାତ୍ର ଓ ଯୁବକଂକୁ ସେ କଥା କହୁଚି । ସେମାନଂକ ମଧରୁ ଅନେକ ଫଳ ବି ପାଇଥିବେ । ମୋ କଥା କହୁଚି । ତହିଁ ଆରଦିନ ମୁଁ ସଂକଳ୍ପ କରି ହସ୍ତାକ୍ଷର ବଦଳାଇ ବସିଲି—ଚଂଦ୍ରମୋହନ ବାବୁଂକ ହସ୍ତାକ୍ଷରକୁ ଆଦର୍ଶ କରି । ସେ ମୋତେ ବୁଝାଇଥିଲେ, ବ୍ୟବହାରରେ ମିତବ୍ୟୟିତା—ଅକ୍ଷରରେ ମଧ ସେଇଥା; ଲାଂଜ ମୁଂଡ଼, ମୋଡ଼ାଗାର ସବୁ ଦରକାର ନାଇ । ଅକ୍ଷର ସ୍ପଷ୍ଟ କରିବା ପାଇଁ ଗାରର ଯେତିକି ପ୍ରକାର ଓ ପରିମାଣ ଲୋଡ଼ା, ସେତିକି ହେଲେ ହେଲା । ଏହାହିଁ ଅକ୍ଷର ଭଲ କରିବାର ସୂତ୍ର । ଏକ ସପ୍ତାହ ଭିତରେ ମୋର ଅକ୍ଷର ବଦଳିଗଲା । ପରେ ସତ୍ୟବାଦୀ ସ୍କୁଲରେ ପିଲାଂକୁ ଅକ୍ଷରଲେଖା ଶିଖାଇଲାବେଳେ ଚଂଦ୍ରମୋହନ ବାବୁଂକ ତତ୍ତ୍ୱକଥାଗୁଡ଼ିକ ମଧ ମୋର ବରାବର ମନେଥିଲା ।

ଚଂଦ୍ରମୋହନ ବାବୁ ପ୍ରାୟ ଆକାଶ ନିର୍ମଳ ଥିବାବେଳେ ମୋତେ ସାଂଗେ ଘେନି ସ୍କୁଲହତା ଭିତରେ ବୁଲି ବୁଲି ବାଲିରେ ଆଳାପ କରୁଥାଂତି । ସେତିକିବେଳେ ଆକାଶକୁ ଚାହିଁ ଗ୍ରହର ଗତି; ମଂଗଳର ଅତିଚାର; ଚଂଦ୍ରପଥରେ ନିର୍ଦ୍ଦିଷ୍ଟ ଅଶ୍ୱିନୀ, ଅର୍ଦ୍ରା, ପୁନର୍ବସୁ, ଚିତ୍ରା, ସ୍ୱାତି, ଜ୍ୟେଷ୍ଠା, ଭାଦ୍ରପଦ ପ୍ରଭୃତିର ଉଜ୍ଜ୍ୱଳ ଯୋଗତାରାଗୁଡ଼ିକଠାରୁ ଆରଂଭ କରି କ୍ରମେ ଅନ୍ୟାନ୍ୟ ନକ୍ଷତ୍ରସବୁ ମୋତେ ଦେଖାଇ ବୁଝାଇ ଦେଉଥିଲେ । ପରେ ସତ୍ୟବାଦୀ ସ୍କୁଲରେ ଥିଲାବେଳେ ତାହାର ମାନଚିତ୍ର ଧରି ମୁଁ ରାତାରାତି ଆରାମଚୌକିରେ ସ୍କୁଲ ଅଗଣାରେ ବସି ଗ୍ରହତାରାସବୁ ଚିହ୍ନି ଗତି ଲକ୍ଷ୍ୟ କରି ବେଳେ ବେଳେ ପିଲାଂକୁ ଧରି ବିଲକୁ ଯାଇ ତାଂକୁ ତାରା ଦେଖାଇ ବୁଝାଇବାବେଳେ ମୋର ଚଂଦ୍ରମୋହନବାବୁ ହିଁ ମନେପଡୁଥିଲେ ।

ଥରେ ପିଲାଂକୁ ପ୍ରାଇଜ ବଂଟାହେବା ପୂର୍ବଦିନ ଆସିଷ୍ଟାଂଟ ହେଡ଼ମାଷ୍ଟର ଭୈରବଚଂଦ୍ର ଦତ୍ତ ଓ ଆସିଷ୍ଟାଂଟ ମାଷ୍ଟର ଚିଂତାମଣି କରଂକୁ ଘେନି ଚଂଦ୍ରମୋହନ ବାବୁ କାହାକୁ କେଉଁ ବିଷୟରେ କ'ଣ ପ୍ରାଇଜ ଦିଆଯିବ ଏହା ଠିକ୍ କରୁଥାଂତି । ଦୁଆରେ ଚପରାସୀ ଜଗିଥାଏ । କୌଣସି ଛାତ୍ର ଯିବେ ନାଇ କି କୌଣସି ଶିକ୍ଷକ ବିନା ଡକରାରେ ଯିବେ ନାଇ ବୋଲି ଆଦେଶ ଥାଏ । ଚଂଦ୍ରମୋହନ ବାବୁ ଶୃଙ୍ଖଳା ରକ୍ଷାରେ ଭାରି କଡ଼ା । ସମସ୍ତଂକର ସେଥିପାଇଁ ଭାରି ଡର ଥାଏ । ଜଣେ ଶିକ୍ଷକ ଆସି ଦୁଇପିଲାଂକର ନାମ କହି ଖବର ଦେଲେ । ସେମାନେ ସଦ୍‌ସ୍ୱଭାବ (Good conduct) ପ୍ରାଇଜ ପାଇବାର ଠିକ୍ ହେଲା । ସେ ଦୁଇଟି ଛୋଟ ଛୋଟ ସୁଂଦର ପିଲା । ସେମାନେ ବଡ଼ ମଧୁର ଓ ସୁଧାର ସ୍ୱଭାବର ବୋଲି ସମସ୍ତେ ଜାଣିଥିଲେ । ମୁଁ ତାଂକ ସ୍ୱଭାବ ସଂବଂଧରେ କୌଣସି ସଂତୁଷ୍ଟ ନଥିଲି । ମୁଁ ଶୁଣିବା ମାତ୍ରେ ହଠାତ୍ ସେ ଘର ଭିତରକୁ ଚଂଦ୍ରମୋହନ ବାବୁଂକ ପାଖକୁ ଯିବି ବୋଲି ବାହାରିଲି । ସମସ୍ତେ

ମନା କଲେ । ଚପରାସୀ ମଧ ମନା କଲା । ନମାନି ଭିତରକୁ ଚାଲିଗଲି । ଚଂଦ୍ରମୋହନ ବାବୁ ମୋତେ ଚାହିଁଦେଲେ । ଅନ୍ୟ ଦୁଇଜଣ ମାଷ୍ଟର ଅବାକ୍ ହୋଇଗଲେ । ନିଶ୍ଚୟ ବିଚାରିଲେ ମୋ ଉପରେ ଦଂଡ଼ ହେବ । ଚଂଦ୍ରମୋହନ ବାବୁ ଜମା ବିରକ୍ତ ନହୋଇ ମୋତେ ପଚାରିଲେ, ''କୁଆଡ଼େ ଆସିଲ ?'' ମୁଁ କହିଲି, ''ଅମୁକ ଅମୁକ ପିଲାଂକୁ ସଦ୍‌ସ୍ୱଭାବ ପୁରସ୍କାର ଦିଆଯିବାର ଶୁଣୁଚି ।'' ଚଂଦ୍ରମୋହନ ବାବୁ ପଚାରିଲେ, ''କ'ଣ ତୁମର ମତ ନୁହେଁ ?'' ମୁଁ କହିଲି, ''ନା ।'' ଆଉ କିଛି ନକହି ନିଜେ ଚଂଦ୍ରମୋହନ ବାବୁ କଲମ ଧରି ସେ ଦୁଇଟି ନାଁ କାଟିଦେଲେ । ମୁଁ ସଂଗେ ସଂଗେ ଚାଲିଆସିଲି । ସେଇଦିନ ରାତିରେ ସଦ୍‌ସ୍ୱଭାବ ପୁରସ୍କାର ଓ ସେଥିପାଇଁ ପିଲା ବାଛିବା ସଂବଂଧରେ ଚଂଦ୍ରମୋହନ ବାବୁଂକ ସଂଗେ ମୋର ବହୁତ କଥା ପଡ଼ିଲା । ବୋଧହୁଏ ତା'ପରେ ଚଂଦ୍ରମୋହନ ବାବୁ ସଦ୍‌ସ୍ୱଭାବ ନିମଂତେ ଆଉ କାହାକୁ କେବେ ପୁରସ୍କାର ଦେଇଚଂତି ବୋଲି ମୋର ମନେ ହେଉ ନାଇ ।

ଆଉଦିନେ ବୋଡ଼ିଂର ଜଣେ ଯୁବକ ଅନ୍ୟାନ୍ୟ ଦୁଇ ଏକ ଜଣ ବଂଗାଳୀ ପିଲାଂକ ସଂଗେ ରାତିରେ ବାହାରକୁ ଯାଇ ସମୁଦ୍ରପଂଟାରେ ବୁଲୁଥିବା କଥା ମୁଁ ଲକ୍ଷ୍ୟ କରି ଜାଣିଲି, ସମୁଦ୍ରକୂଳକୁ ବାୟୁ ପରିବର୍ତ୍ତନ ପାଇଁ ଆସିଥିବା କୌଣସି ଭଦ୍ରଲୋକଂକର ଯୁବତୀ ଅବିବାହିତା ଝିଅଂକ ସଂଗେ ସେମାନେ ସମୁଦ୍ରକୂଳେ ଅଲଗା ଜାଗାରେ ରାତିରେ ବହୁତ ସମୟ କଟାଉଚଂତି । ମୁଁ ନିଜେ ବୋଡ଼ିଂର ପିଲାଟିକୁ ଚେଷ୍ଟା କରି ମଧ ସେଥିରୁ ନିବୃତ୍ତ କରାଇ ପାରିଲି ନାଇ । ଚଂଦ୍ରମୋହନ ବାବୁଂକୁ ଯାଇ କହିଲି । ସେ ବଡ଼ ବିସ୍ମିତ ହେଲେ । କହିଲେ, ''ମୁଁ ଦେଖିପାରିବି ?'' ସେଦିନ ଜହ୍ନରାତି । ଖଂଡ଼େ ସାଧାରଣ ଲୁଗା ପିଂଧି ଚଂଦ୍ରମୋହନ ବାବୁ ମୋ ସଂଗେ ଗଲେ । ଦୂରରୁ ସବୁ ଦେଖିଲେ । ଫେରି ଆସିଲେ । ତହିଁ ଆରଦିନ କିଛି ନକହି ସେ ବଂଗାଳୀ ପିଲାଟିକୁ ସ୍କୁଲରୁ ବାହାର କରିଦେଲେ । ସେ ପିଲାଟିର ଅଭିଭାବକ ଜଣେ ପ୍ରତିଷ୍ଠିତ ଲୋକ । ସେ ଅନ୍ୟାନ୍ୟ ବଂଗାଳୀ ମିଳାଇ ଚଂଦ୍ରମୋହନ ବାବୁଂକ ନାମରେ ମୋକଦ୍ଦମା କରିବାକୁ ବାହାରିଲେ; ତଥାପି ଚଂଦ୍ରମୋହନ ବାବୁଂକର ଭ୍ରୂକ୍ଷେପ ନାଇ । କୌଣସି କାରଣ ସେ କହିଲେ ନାଇ । ଓଡ଼ିଆ ହୋଇ ବଂଗାଳୀଂକ ଉପରେ ଜୁଲମ କରୁଚଂତି ବୋଲି ସଭା ହେଲା । ଚଂଦ୍ରମୋହନ ବାବୁ ଅଟଳ । ପରେ ସବୁକଥା କ୍ରମେ ଜଣାପଡ଼ିଲା । ପୁରୀର ସ୍ୱନାମପ୍ରସିଦ୍ଧ ରାମଚଂଦ୍ର ଦାସ ମୁକ୍ତାର ମଧ୍ୟସ୍ଥ ହୋଇ ସମସ୍ତଂକୁ ଥଂଡ଼ା କରିଦେଲେ । ଗୋଟାଏ କିଛି ମୀମାଂସା ହୋଇଗଲା ।

## ୪୬। ଧର୍ମବିଶ୍ୱାସ

ପିଲାଦିନୁ ଧର୍ମବିଶ୍ୱାସ ଓ ତଦନୁଗତ କ୍ରିୟା ସବୁ ପ୍ରତି ମୋର ବୋଧହୁଏ ଟିକିଏ ସମାଲୋଚନା ଦୃଷ୍ଟି ଥାଏ । ମନେଅଛି, ଗାଁରେ ପଢ଼ିଲାବେଳେ ଥରେ ବୋଉ ଭଲ ପାଚିଲା କଦଳୀ ପେଂଡ଼ାଟାଏ ଆମ ଗାଁର ଅଧିଷ୍ଠାତ୍ରୀ ଦେବତା ହରଚଂଡ଼ୀ ଠାକୁରାଣୀଂକ ପାଇଁ ରଖିଥାଏ । ଗାଁରେ ସମସ୍ତେ ଜାଣଂତି, ଆମ ହରଚଂଡ଼ୀଠାରେ ଜଂତାଳ (ଭୋଜି) ହୁଏ । ହରଚଂଡ଼ୀଂକ ଆଜ୍ଞାମାଳ (ଲାଗି ହୋଇଥିବା ଫୁଲମାଳ) ସେବକମାନେ ଥାଳିରେ ଧରିଆଣି ଘଂଟ ବଜାଇ ଗାଁରେ ବୁଲାଇ ନିଅଂତି । ଲୋକେ କହଂତି, ସେତିକିରେ ହଇଜା ଠକ୍‌କିନି

ବଂଦ ହୋଇଯାଏ ହରଚଂଡ଼ୀ ରାତିରେ ଶାଢ଼ୀଟିଏ ପିଂଧି, ଦୀପଟିଏ ଧରି ଗାଁରେ ବୁଲିଯାଉଥିବା ବେଳେ କେତେ କେତେ ବୁଢ଼ା ଆଖିରେ ଦେଖିଥିବାର ମୋତେ କହିଂଂତି । ତାଂକ ଦେଖିବାରେ ପୁଣି ହରଚଂଡ଼ୀଂକ ଗୋଡ଼ ତଳେ ଲାଗେ ନାଇ । ବୁଲିଲାବେଳେ ପାଦତଳୁ ଚାଖଂଡ଼େ ଖଂଡ଼େ ଛାଡ଼ିକରି ଥାଏ । ବୁଢ଼ା ପ୍ରସା କରିବା ପାଇଁ ଦାଂଡ଼କୁ ବାହାରିବା ବେଳକୁ ହଠାତ୍ ଠାକୁରାଣୀ ଦୀପଟା ଲିଭେଇ ଦେଇ ଅଦୃଶ୍ୟ ହୋଇଯାଂତି । ବୁଢ଼ା ପ୍ରସା କରିସାରି ଘରକୁ ଆସି ପଂଜର ବାଟେ ଚାହାଂତି । ଠାକୁରାଣୀ ପୁଣି ସେହିପରି ଦୀପ ଧରି ଚାଲିଯିବାର ସେ ଦେଖଂତି । ହରଚଂଡ଼ୀ ମଧ କାଳସାଂକଠି ବିଜେ ହୁଅଂତି; ସବୁ ଆଗତ ଭବିଷ୍ୟ କଥା କହଂତି । କାହା ଗାଈ ହଜିଥିଲେ ମଧ କେଉଁଆଡ଼କୁ ମୁହଁକରି ଗଲେ ଗାଈ ମିଳିବ, ତାହା ସେ ବତାଇ ଦିଅଂତି, ଶୁଣିଚି ଗାଈ ମଧ ମିଳେ । ହରଚଂଡ଼ୀଂକ ଯୋଗେ ଆମ ଗାଁରେ ବାଡ଼ି, ବସଂତ ପ୍ରଭୃତିର ଯୋଗିନୀମାନେ ପଶିପାରଂତି ନାଇ । ସେମାନେ ଆଗ ପୁରୀରେ ବଡ଼ଠାକୁରଂକ ପାଖେ ଠୁଳ ହୁଅଂତି । ବଡ଼ଠାକୁରଂକୁ ମଣିଷ ଖାଇବାକୁ ମାଗଂତି । ବଡ଼ଠାକୁରେ ସବୁ ଗ୍ରାମଦେବତୀ-ମାନଂକୁ ଠୁଳ କରଂତି । ସେଠାରୁ କାହା ଗାଁକୁ କେଉଁ ଦେବୀ ଯିବ, କେତେ ମୁଂଡ଼ ଖାଇବ, ସବୁ ଠିକଣା କରି ବଡ଼ଠାକୁରେ ଯୋଗିନୀମାନଂକୁ ବରଗୀ ଦିଅଂତି । ଶୁଣିଚି, ଆମ ହରଚଂଡ଼ୀ ବରାବର ସାବଧାନ । ସେ କୌଣସିମତେ ବଡ଼ଠାକୁରଂକ ଗୋଡ଼ତଳେ ପଡ଼ି ତାଂକୁ ଦଉନୀ କରି ବିଶ୍ୱାସ କରାଇ ଦିଅଂତି ଯେ ତାଂକ ଗାଁରେ ଯୋଗିନୀ ଖାଇବା ପାଇଁ ମଣିଷ ନାହାଂତି । ସେ କହଂତି ମଲାମରୁଡ଼ିଆ ପିଲା ଚାରିଖଂଡ଼ ଧରି ମୁଁ ଗାଁ କରିଚି । ମୋ ଗାଁକୁ ଯୋଗିନୀ ପଠାଅ ନାଇ । ବଡ଼ଠାକୁରଂକ ପ୍ରାଣ ତରଳିଯାଏ । ସେ ଆମ ଗାଁକୁ ଯୋଗିନୀ ପଠାଂତି ନାଇ । ଆମ ଗାଁରେ ଯେ ବାଡ଼ି ବସଂତ ପଡ଼େ, ତା'ର କାରଣ ହେଉଚି ଯୋଗିନୀମାନେ ଅନ୍ୟ ଗାଁକୁ ଗଲାବେଳେ କେବେ କେବେ ଆମ ଗାଁରେ ପଶିଯାଂତି ତା' ପୁଣି ହରଚଂଡ଼ୀଂକ ଅଜଣାରେ । ଜଂତାଳ କରି ହରଚଂଡ଼ୀଂକୁ ଗୋଟାଏ ଭୋଜୀ ଖାଇବାକୁ ଦେଇ ଆଞ୍ଚାମାଳ ରୂପରେ ତାଂକୁ ଗାଁରେ ବୁଲାଇ ଦେଖାଇଦେଲେ, ସେ ସେଇଦିନ ରାତିରେ ଯାଇ ବଡ଼ଠାକୁରଂକୁ କହିଦିଅଂତି । ବଡ଼ଠାକୁରେ ଦୂତ ପଠାଇ ଯୋଗିନୀଂକୁ ଜବତ କରିଦିଅଂତି । ଏହାଇଁ ବରାବର ହୁଏ ବୋଲି ମୁଁ ବୁଢ଼ାମାନଂକଠାରୁ ନିର୍ଭର କରି ଶୁଣିଚି । ତଥାପି ବୋଉ ଯେଉଁ ପାଚିଲା କଦଳୀ ପେଂଡ଼ାଟି ରଖିଥିଲା, ମୁଁ ସେଥିରୁ ଦିଓଟି ଖାଇଦେଲି । ବୋଉ କେତେ ଦିଅ ଦେବତା କରି ଗୋଟିଏ ବୋଲି ମୋତେ ପୁଅ କରି ପାଇଚି । ତାକୁ ଅଂଧାର ଦେଖାଗଲା । ସେ ନନାଂକୁ ଡାକିଲା । ସଭା ବସିଲା ।

## ୪୭। ଚୂଡ଼ାଖିଆ—ବଳିଆ

ତା'ପୂର୍ବରୁ ଗୋଟିଏ ଘଟଣା ମଧ ଘଟିଯାଇଥିଲା । ଚାପରେ ଦିଅଁଂକ ଜଂତାଳ ପାଇଁ ବେତାଏ ଚୂଡ଼ା ଯାଉଥିଲା । ବଳିଆ ବୋଲି ଗୋଟିଏ ପିଲା ସେ ବେତାରୁ ଗଂଡ଼ାଏ ପାଟିକି ପକାଇ ଖାଇଦେଲା । ସଂଗେ ସଂଗେ ଚାପଟି ନଈମଝିରେ ଟୁବ୍‌କିନା ବୁଡ଼ିଗଲା । ଲୋକେ କିଏ ପହଁରି କିଏ ଛଣା ହୋଇ ଉପରକୁ ଆସିଲେ । ଜଂତାଳ ହେଲା । ହରଚଂଡ଼ୀ ବିଜେ ହୋଇ କହିଲେ, ବଳିଆ ଚୂଡ଼ା ଖାଇଯିବାରୁ ସେ ଚୂଡ଼ା ଅଇଁଠା ହୋଇଗଲା । ସେ ଜଂତାଳ ଭୋଗରେ ଲାଗଂତା କିପରି ? ସେଥିପାଇଁ ସେ ନାଆଟି ବୁଡ଼ାଇ ଦେଇଥିଲେ । ସେଇଦିନଠାରୁ

ଆମ ଗାଁରେ ସେଇ ପିଲାଟିର ନାମ ହେଲା 'ଚୁଡ଼ାଖିଆ-ବଳିଆ ।' ପରେ ମଧ୍ୟ ସେ ହେଲେ ଚୁଡ଼ାଖିଆ ବଳଭଦ୍ର ମିଶ୍ରେ । ଏବେ ସେ ପଂଦର କୋଡ଼ିଏ ବର୍ଷ ହେଲା ମଲେଣି । ଏ ସବୁ ପ୍ରମାଣ ବାହାରିଲା । ମୁଁ କହିଲି, "ଚୁଡ଼ାଖିଆ-ବଳିଆ କଥା ଅଲଗା; କିଂତୁ ବିଚାର୍ ଭଲା ବୋଉ, ତୋ ପାଇଁ କଦଳୀ ଥୁଆ ହୋଇଥାଂତା, ମୁଁ ଯଦି ଦି'ଟା ଖାଇ ଦେଇଥାନ୍ତି, ତୁ ଖୁସି ହୁଅଂତୁ ନା ମୋର ଅନିଷ୍ଟ କରନ୍ତୁ ? ହରଚଂଡ଼ୀ ତ ଆମର ମା । ସେ ଜାଣିଲେ ଖୁସି ହେବେ ।" ମୋର ଏ କଥାକୁ ସେ ଥଟ୍ଟା ବିଚାରି ଆହୁରି ବ୍ୟସ୍ତ ହେଲା । ନନା ସେଠାରୁ ମୀମାଂସା କରିଦେଲେ, "ଏ କଦଳୀ ପେଂଡ଼ା ଅଇଁଠା ହୋଇଗଲା । ଯାକୁ ଘରେ ଖର୍ଚ୍ଚ କର । ଆଉ ଏଡ଼ିକି ପେଂଡ଼ାଏ କଦଳୀ ଆଣି ହରଚଂଡ଼ୀଂକି ଦେବା ।" ଅବଶ୍ୟ ଶୀଘ୍ର ମୁଁ ଆଉଟକ କଦଳୀ ଖାଇବାର ଅଧିକାର ପାଇଲି ବୋଲି ଖୁସି ହୋଇଥିଲି । ତାପରେ ମଧ୍ୟ ମନେଅଛି ମୁଁ ଗାଁ-ସ୍କୁଲରୁ ବୃତ୍ତି ପାଇଲେ ବୋଉ ହରଚଂଡ଼ୀକୁ ଡାହାଣ ମାହାଣ ହଳେ ବୋଦା ଦେବ ବୋଲି ଯାଚିଥିଲା । ମୁଁ ତା' କରାଇ ଦେଇ ନଥିଲି । ନନା ମଧ୍ୟ ମୋ କଥାରେ ମତ ଦେଇଥିଲେ ।

## ୪୮। ପାଦ୍ରୀଙ୍କ ଧର୍ମପ୍ରଚାର

ନୂଆ ନୂଆ ପୁରୀ ଜିଲ୍ଲାସ୍କୁଲକୁ ଆସିଲାବେଳେ ପାଦ୍ରୀମାନେ ନରେଂଦ୍ରକୋଣ ପାଖେ ବଡ଼ଦାଂଡ଼ ଉପରେ ପ୍ରଭୁ ଯୀଶୁଂକ 'ସତ୍ୟ ସମାଚାର' ଖୁବ୍ ପ୍ରଚାର କରୁଥାଂତି । ମୁଁ ଆଗ୍ରହରେ ଶୁଣିବା ପାଇଁ ଗଲି । ହେଭରଲେଟ୍ ବୋଲି ଜଣେ ସାହେବ ପ୍ରଚାର କରୁଥିଲେ । ସେ କହୁଥିଲେ, "କାଠପଥରକୁ ଦେବତା ବୋଲି ମାନ ନାଇ । ନିରାକାର ଯୀଶୁଂକଠାରେ ମନଦେଲେ ଯୀଶୁ ତମକୁ ତ୍ରାଣ କରିବେ । ସେ ପାପୀଂକୁ ତ୍ରାଣ କରିବାକୁ ଜନ୍ମ ହୋଇଥିଲେ ।" ଏଇପରି କେତେ କଥା ସେଦିନ ଶୁଣିଲି । ସାହେବ କହିଲେ, କାଲି ଆସିବ । ତହିଁ ଆରଦିନ ଗଲାବେଳକୁ ସାହେବ ସେଇପରି କହୁଚଂତି । ଜଣେ ବୃଦ୍ଧ ବ୍ରାହ୍ମଣ ଆସି ଯୁକ୍ତି କଲେ, "ସାହେବ ଭଲା କହିଲ, ଏକାଦଶୀ ଦିନ ଚୁଡ଼ାଭଜା ଖଇ କରି ଦି'ପଇସାର କିଣିବ । ତା'କୁ ଜଗନ୍ନାଥଂକୁ ଦେଖାଇଦେବ । ତା'ପରେ ପ୍ରସାଦ ଖାଇବ । ସେ କିପରି କଥା । ଆଉ ତା' ନକରି କିଣିଲାମାତ୍ରେ ଭାସୁ ଭାସୁ କରି ଚୋବାଇ ଦେବ; ସେ କିପରି କଥା । ତମ ଯୀଶୁ ଏ କଥାକୁ କ'ଣ କହିଚଂତି ?" ସାହେବ ବୃଦ୍ଧ ବ୍ରାହ୍ମଣଂକୁ କିଛି ବୁଝାଇପାରିଲେ ନାଇ । ସେ ନିରାଶ ହୋଇ ସେଠାରେ ପାଦ୍ରୀଂକ ପାଇଁ ଯେଉଁ ଘରଟି ଅଛି ସେଇ ଘର ଭିତରକୁ ଗଲେ । ଆଉ କେତେଜଣ ଗଲେ । ତାଂକ ସଂଗେ ମୁଁ ଗଲି । ଗୋଟିଏ ଟେବୁଲ ପଡ଼ିଥିଲା । ତା'ର ଗୋଟିଏ ପଟରେ ଖଂଡ଼ିଏ ଚୌକି । ଆଉ ତିନିପଟରେ ବେଂଚ ପଡ଼ିଥିଲା । ସାହେବ ଚୌକିରେ ବସିଲେ । ଆମେ ସବୁ ବେଂଚରେ ବସିଲୁ । ସାହେବ ସୁଂଦର ଓଡ଼ିଆ କହିପାରୁ ଥିଲେ । ସେ ଠିଆ ହୋଇ ଛାତିରେ ହାତ ରଖି ବୋଧହୁଏ ଉପରକୁ ଚାହିଁ ପ୍ରାର୍ଥନା ଆରଂଭ କରିଦେଲେ । ପ୍ରାର୍ଥନା ଆରଂଭ କରିବା ପୂର୍ବରୁ ଆମକୁ ଠିଆ ହେବାକୁ କହିଥିଲେ; ଆମେ କିଂତୁ କେହି ଠିଆହୋଇ ନଥିଲୁ । ପ୍ରାର୍ଥନାରେ ଶୁଣିଲି, ପ୍ରଭୁଂକୁ ସେ ସାଧୁବାଦ କରୁଚଂତି—ଯାହା ପାଇଚଂତି ସେଥିପାଇଁ । ପୁଣି ମାଗିବା ଭିତରେ ପେଟକୁ ଖାଇବାକୁ ମାଗୁଚଂତି । ସାହେବ ବସିଲେ, କେତେକ ଆଳାପ ହେଲା । ସେ କହିଥିଲେ ମନେଅଛି, "ତମେମାନେ

ଏଇପରି ପ୍ରାର୍ଥନା କଲେ କ୍ରମେ ବୁଝିପାରିବ । ତମକୁ ଯାହା ଦରକାର ସବୁ ମିଳିଯିବ । ଖାଇବା ପିଇବାରେ ଆଉ କଷ୍ଟ ହେବ ନାଇ ।'' ତା'ପରେ ବୁଝାଇଲେ, ''ଯୀଶୁଂକୁ ଜଣାଇଦେବା ପାଇଁ ଜୀବନ ନେବାକୁ ହେବ । ସେ ଗୋଟିଏ ବଡ଼ ପବିତ୍ର କାର୍ଯ୍ୟ । ତାହା କଲେ ଯୀଶୁ ତମକୁ ଆଦର କରିବେ । ସଦା ପ୍ରଭୁଂକ (ଈଶ୍ୱରଂକ) ପାଖେ ତମ କଥା କହିବେ ।'' ଏହା ସବୁ କହି, ପରଦିନ ପୁଣି ଯିବାକୁ ମୋତେ ବିଶେଷ ଭାବରେ ଅନୁରୋଧ କଲେ; କିଂତୁ ମୁଁ ଆଉ ଯାଇ ନାଇ । ତଥାପି ଏ ସବୁ କଥା ପୁରୀରେ ଚହଟିଗଲା । ମୋତେ କେତେ ଲୋକ ଆସି ପଚାରିଲେ । ବିଶେଷରେ ପୁରୀ ଜିଲ୍ଲାସ୍କୁଲ ହେଡ଼ପଂଡିତ ସଦାଶିବ ମିଶ୍ର (ପରେ ସେ ହୋଇଥିଲେ ମହାମହୋପାଧ୍ୟାୟ ସଦାଶିବ ମିଶ୍ର) ମୋତେ ଘରକୁ ନେଇ ସବୁକଥା ଟିକିନିଖି କରି ଶୁଣିଲେ । ଶୁଣିସାରି ଆଉ ଯିବାକୁ ମନା କରିଦେଇଥିଲେ ।

ଏବେ କଟକରେ ସେକେଂଡ୍ କ୍ଲାସରେ ପଢ଼ିସାରି ଫେରିଲା ପରେ ସମସ୍ତ ବୋଡ଼ିଂର ଭାର ମୋ ଉପରେ ଥିଲାବେଳେ, ଦିନେ ପିଲାଏ ସଂଧ୍ୟା ୪ଟା ବେଳେ ବୁଲିଯିବାକୁ କହିଲେ । ମୁଁ ସେମାନଂକୁ ସଂଗେ ଘେନି ସମୁଦ୍ରକୂଳ ଆଡ଼କୁ ଗଲାବେଳେ ବାଟରେ ପଡ଼ିଲା ଖୀରଷ୍ଟାନଂକ ଗୀର୍ଜା । ମୁଁ ସବୁ ପିଲାଂକୁ ଘେନି ଗୀର୍ଜାରେ ଯାଇ ପଶିଲି । ତାଂକର ଉପାସନା ହେଉଥିଲା । ସେମାନେ ଆମକୁ ବସିବାକୁ ଦେଲେ । ତାଂକ ଉପାସନା ବି ସରିବାଯାଏଁ ଆମେ ସେଠି ବସିଲୁ । ସେଇଦିନ ମୁଁ ଦେଖିଛି, କିପରି ସେମାନଂକର ମିଳିତ ପ୍ରାର୍ଥନା ହୁଏ । ସେତେବେଳର ଖ୍ରୀଷ୍ଟୀୟାନମାନେ କିପରି ଓଡ଼ିଆ ଭାଷା କହୁଥିଲେ, ତା' ହୁଏତ ଏବେ ଅନେକ ଜାଣିପାରିବେ ନାଇ । ମୁଁ ମଧ୍ୟ ସେ ଭାଷା ଆଉ ଏବେ ପୂରାପୂରି ଅନୁକରଣ କରିପାରିବି ନାଇ । ଓଡ଼ିଆ ବାଇବେଲର ସେକାଳ ଅନୁବାଦ ଏବେ ହୁଏତ ଛାପାରେ ମିଳୁଥିବ । ତାକୁ ଦେଖିଲେ ଅନେକେ ଜାଣିପାରିବେ କିଂବା ସେକାଳର ଗୋରାପାଦ୍ରୀ ମାର୍ସମେନ୍ ସାହେବ କୌଣସି ଇଂରେଜୀ ସ୍କୁଲ ପାଠ୍ୟରୁ 'ତର୍ଜମୀକୃତ' ଯେଉଁ ପ୍ରଥମ ପାଠ୍ୟପୁସ୍ତକ ଖଂଡ଼ିଓଡ଼ିଆରେ ଲେଖିଥିଲେ । ତା' କେହି ଖୋଜି ଦେଖିପାରଂତି । ସେତିକିବେଳେ କେରୀ ସାହେବ ଖଂଡ଼ିଏ ଓଡ଼ିଆ ବ୍ୟାକରଣ ଲେଖିଥିଲେ । ସଂସ୍କୃତ ବ୍ୟାକରଣ ଅନୁକରଣରେ ନିମାଇଁବଲ୍ଲଭ ବିଦ୍ୟାସାଗରଂକ ସର୍ବସାର ବ୍ୟାକରଣ ଓ ସେଇ ଛାଂଚରେ ପରେ ରାଧାନାଥ ରାୟଂକ ବ୍ୟାକର[illegible]ବେଶ ତଥା ବଂଗଳାର ବିଦ୍ୟାସାଗରଂକ (ଈଶ୍ୱରଚଂଦ୍ର) ବୋଧୋଦୟର ଅନୁବାଦ ସଂଗେ ବଂଗ[illegible] ଅନୁକରଣର ଓଡ଼ିଆ ଭାଷା ଶିକ୍ଷାବିଭାଗ ସୂତ୍ରରେ ପ୍ରଚାରିତ ହେବା ପୂର୍ବରୁ ସେଇସବୁ ଥିଲା ଓଡ଼ିଆ ଭାଷାର ପୁସ୍ତକ । ତା'ପରେ ବଂଗଳାର ଅନୁକରଣ ଓ ଅନୁବାଦ ପୂର୍ବରୁ ଏଇ ପାଦ୍ରୀଂକ ଓଡ଼ିଆକୁ ସଜାଡ଼ିବା କଳ୍ପନାରେ ସ୍ୱର୍ଗତ ପଂଡ଼ିତ ଗୋବିଂଦ ରଥ ଗୋଟାଏ ବିରାଟ ଚେଷ୍ଟା ଆରଂଭ [illegible]ରିଥିଲେ । ଓଡ଼ିଆ ଭାଷା ଓ ସଂସ୍କୃତିର ପ୍ରତିଷ୍ଠା କରିବା ପାଇଁ ଗୋବିଂଦ ରଥେ ଯେଉଁ ଉଦ୍ୟମ [illegible]ରିଥିଲେ, ତାହା ସ୍ମରଣୀୟ । ହେଲେହେଁ ସେକାଳର ଶିକ୍ଷାବିଭାଗ କର୍ତାମାନେ ନିଜ ଲେଖା ନିଜେ ପ୍ରଚାର କରି ଅର୍ଥାଗମ ସଂଗେ ଓଡ଼ିଶାରେ ଯେଉଁ ସାହିତ୍ୟ ସାମ୍ରାଜ୍ୟ ସୃଷ୍ଟି କରିବାକୁ ବସିଥିଲେ ତା ଦାଉରେ ଅନେକ ଆଜି ଗୋବିଂଦ ରଥଂକ ନାମ ପର୍ଯ୍ୟଂତ ଜାଣଂତି ନାଇ । ପରେ ଯେଉଁମାନେ ବାହାରିଲେ, ସେମାନେ ଆନୁଗତ୍ୟରେ ଆତ୍ମପ୍ରତିଷ୍ଠା କରିବା ଛଡ଼ା ଆଉ କିଛି କରି ନଥିଲେ । ବହୁଦିନ ଏଇ ରୀତି ଚଳିଥିଲା । କହିଯାଇଚି 'ଇଂଦ୍ରଧନୁ' ଏଇ ସାହିତ୍ୟ ସାମ୍ରାଜ୍ୟ ପ୍ରତିଷ୍ଠାରେ ଗୋଟିଏ ବିଦ୍ରୋହ; କିଂତୁ ବିଭାଗୀୟ କର୍ତୃତ୍ୱର କାର୍ଯ୍ୟକାରିତା ପାଖେ ସେ ବିଦ୍ରୋହ ଠିକ୍ ବାଟ ଧରି ନଥିଲା କି ରହିଲା ନାଇ ।

ହେଲେହେଁ ସବାଆଗେ ପାଦ୍ରୀମାନେ ଓଡ଼ିଆକୁ ସଂସ୍କୃତ କରି ନଦେଖି କିମ୍ବା ବଂଗଳାର ଭ୍ରାତୃସୂତ୍ର ଭାବେ କଳନା ନକରି ଓଡ଼ିଆର ନିଜ ସ୍ୱାତଂତ୍ର୍ୟ ପ୍ରତି ଦୃଷ୍ଟି ଦେଇ ଲେଖା ଆରଂଭ କରିଥିଲେ । ଶୁଣିଚି କୌଣସି ପାଦ୍ରୀ ବାଇବେଲ୍ର ଅନୁବାଦ କରିବା ପାଇଁ ଜଣେ ଓଡ଼ିଆ ଖୀରସ୍ତାନଂକୁ ଗୋଟିଏ ଅଂଶ ଦେଇଥିଲେ । ଅନୁବାଦକ ଲେଖିଥିଲେ, ''ଯୀଶୁ ଶିଶୁମାନଂକୁ ସୁଖ ପାଆଂତି । ସାହେବ କାମ କରୁଥିବା ଜଣେ ବଢ଼େଇକୁ ଯାଇ ପଚାରିଲେ, ଶିଶୁ ବୋଇଲେ କ'ଣ ? ବଢ଼ାଇ କହିଲା, କେଂଦୁକାଠ ପରି ଗୋଟିଏ କଳାକାଠ । ସାହେବ ସେଠାରୁ କୌଣସି ଛୋଟପିଲାଂକୁ ଦେଖାଇ ଯାକୁ ତମେ କ'ଣ କହ ? ସେ କହିଲା, ପିଲା । ସାହେବ ଜାଣିଥିଲେ ସୁଖ ବୋଇଲେ ଆନଂଦ ବା ଭୋଗ (Happiness, Pleasure); ତେଣୁ ସୁଖ ପାଇବାଟା ତାଂକର ପସଂଦ ହୋଇ ନଥିଲା । କୁଆଡୁ କେଜାଣି ସେ ବାହାର କଲେ ଇଂରେଜୀ ଲଭ (Love)ର ଅନୁବାଦ ପ୍ରେମ କରିବା । ସେ ସେଠାରୁ ସଂଶୋଧନ କରି ସେ ବାକ୍ୟଟି କଲେ 'ଯୀଶୁ ପିଲାମାନଂକୁ ପ୍ରେମ କରଂତି ।' ସେ ଯାହାହେଉ, ଭାଷା ଠିକ୍ କରିବା ଦରକାର ହେଲେ ସେମାନେ ବଢ଼େଇ, ମୂଲିଆଂକୁ ପଚାରି ତା' କରୁଥିଲେ । ଓଡ଼ିଆ ତାଂକର ମାତୃଭାଷା ନଥିବାରୁ ଅବଶ୍ୟ ଭାଷାକୁ ସୁରୁଚିସଂପନ୍ନ କରିବାରେ ଦକ୍ଷତା ତାଂକର ନହେବାର କଥା— ହେଉ ନଥିଲା । ତଥାପି ଲିଖିତ ଭାଷା ତିଆରି କରିବାରେ ସେ ଯେଉଁ ସୂତ୍ର ଧରିଥିଲେ, ତାହାହିଁ ଠିକ୍ । ଆଜି ସେ ଭାଷା ପଢ଼ିଲେ ଆମକୁ ହୁଏତ ହସ ମାଡ଼େ ସେତେବେଳେ ହୁଏତ ଲୋକଂକ କାନକୁ ଭଲ ଜଣାଯାଉଥିବ; କିଂତୁ ସେ ବାଟରେ ବିକାଶ ହୋଇଥିଲେ ମନେହୁଏ ଓଡ଼ିଆ ଗଦ୍ୟ ବହୁଦିନରୁ ସ୍ୱାଭାବିକ ଧାରାରେ ପଡ଼ିଯାଇଥାଂତା କିଂତୁ ଓଡ଼ିଶାର ଭାଷା ଓ ସାହିତ୍ୟ ବିକାଶ ଏ ଯୁଗରେ ବର୍ଷାକାଳରେ ଶରତର ଉଜ୍ଜ୍ୱଳ ଖଂଡ଼ମେଘ ପରି ଆପାତତଃ ସୁଂଦର ହେଲେ ମଧ ଶୁଭଂକର ହୋଇ ନାଇ । ଏପରିକି ମନସ୍ୱୀ ଫକୀରମୋହନଂକ ପରି ଯଥାର୍ଥ ଓଡ଼ିଆ ଭାଷାରେ କୃତିଲେଖକ ମଧ ସେ ଯୁଗରେ ପ୍ରଭାବ ବିସ୍ତାର କରିପାରି ନାହାଂତି ।

## ୪୯। ଗୀର୍ଜାକୁ ଯାତ୍ରା

ମାତ୍ର ମୁଁ କହୁଥିଲି ପାଦ୍ରୀଂକ ଗୀର୍ଜାରେ ଉପାସନା ଶୁଣିବା ପ୍ରଥା । ତହିଁ ଆରଦିନ ପଂଡ଼ିତ ସଦାଶିବ ମିଶ୍ରେ ସେ କଥା ଶୁଣିଲେ । ସେଥିରେ ସେ ଅତ୍ୟଂତ ବିବ୍ରତ ହୋଇ ଚଂଦ୍ରମୋହନ ବାବୁଂକୁ ଆସି କହିଲେ । ସ୍କୁଲର ଛାତ୍ର ଓ ମାଷ୍ଟରମାନଂକ ଭିତରେ ଭୀଷଣ ଚାଂଚଲ୍ୟ ଖେଳିଗଲା । ସମସ୍ତେ କହିଲେ, ଆଚ୍ଛା ନୀଳକଂଠଂକୁ ଚଂଦ୍ରମୋହନ ବାବୁ ବଢ଼ ଚାଟ କଲେ । ଆଉ ଗତି ରହିବ ନାଇ । ନୀଳକଂଠ ଖ୍ରୀଷ୍ଟାନ ହେବ, ଆଉ ସମସ୍ତଂକୁ ଖ୍ରୀଷ୍ଟାନ କରିବ । ବୋଡ଼ିଂରେ ପିଲାମାନେ କି ପ୍ରାୟଶ୍ଚିତ କରିବେ ସେ କଥାର ମଧ ବିଚାର ଲାଗିଗଲା । ପିଲାମାନଂକ ମୁହଁଟିମାନ ଶୁଖିଗଲା । ଶେଷକୁ ସ୍କୁଲ କ୍ଲାସ ଭିତରୁ ଚଂଦ୍ରମୋହନବାବୁଂକ ପାଖକୁ ମୋତେ ଡକରାପଡ଼ିଲା । ସମସ୍ତେ ଯେପରିକି ତଟସ୍ଥ । କହିଚି ଶାସନଶୃଂଖଳା ବିଷୟରେ ଚଂଦ୍ରମୋହନ ବାବୁ ଥିଲେ ଭାରି କଡ଼ା । ମୁଁ ଗଲାବେଳକୁ ଚଂଦ୍ରମୋହନ ବାବୁ ବସିଥିବା ଅଫିସ ଘର ବାଟରେ ଥିବା ଘରେ ବସିଥିଲେ ପଂଡ଼ିତ ମହାଶୟ । ତାଂକ ସଂଗେ ଥିଲେ ମାଷ୍ଟର ଚିଂତାମଣି କର, ଭୈରବଚଂଦ୍ର ଦାଶ ଓ ଆଉ କିଏ ଜଣେ ଦୁଇଜଣ ମାଷ୍ଟର । ପଂଡ଼ିତ ମହାଶୟଂକ ମୁହଁରେ ମୋ ପ୍ରତି ରାଗ ଫୁଟି ପଡୁଥିଲା । ମୋତେ ସେ

ବଡ଼ ସୁଖ ପାଂତି । କହିଲେ, ''ଯା ଯାହାକଲୁ ପାଇବୁ, ମୁଁ ଆଉ କ'ଣ କରିବି, କିଏ ଆଉ କ'ଣ କରିବ ?'' ମୁଁ ଟିକିଏ ଶଂକିତ ହୋଇ ପଡ଼ିଲି । ବିଚାରିଲି ଚଂଦ୍ରମୋହନବାବୁଂକ ସଂଗେ ଗୋଟିଏ କ'ଣ ବିଚାର ହୋଇ ସିଦ୍ଧାଂତ ହୋଇ ସାରିଚି । ଚଂଦ୍ରମୋହନବାବୁଂକ ପାଖେ ଯାଇ ପହଂଚିଲି । ପାଖରେ ବସିଥିଲେ ଆସିଷ୍ଟାଂଟ ହେଡ଼ମାଷ୍ଟର ସ୍ୱର୍ଗତ ମହେଂଦ୍ରନାଥ ଦତ୍ତ । ଚଂଦ୍ରମୋହନ ବାବୁ ଗଂଭୀର ସ୍ୱରରେ ପଚାରିଲେ, ''ତମେ କାଲି ବୋଡ଼ିଂ ପିଲାଂକୁ ଘେନି ଗୀର୍ଜାକୁ ଯାଇଥିଲ ?'' ମୁଁ କହିଲି, 'ହଁ' ।

ଚ—ମୋତେ କହିକରି ଗଲ୍ ନାଇ ?

ମୁଁ—ଚାରିଟା ପରେ ବୁଲିବାକୁ ଯାଇଥିଲି ।

ସେ କହିଲେ, ତଥାପି ବାହାରକୁ ଯିବାର ଥିଲେ ତ ମୋତେ କହିକରି ଯିବାର ଥିଲା ।

ମୁଁ—ଆଜ୍ଞା ବାହାରେ ତ ଗୋଟାଏ ପାଇଖାନା ଅଛି, ସେଠାକୁ ଯିବାକୁ ହେଲେ କ'ଣ କହିକରି ଯିବାକୁ ହେବ । ସେ ଟିକିଏ ହସିଦେଲେ । କହିଲେ, ''ଗୀର୍ଜାକୁ କାହିଁକି ଗଲ ?'' ମୁଁ କହିଲି, ''କାଲି ଆପଣ village blacksmith କବିତା ଆମକୁ ପଢ଼ାଉଥିଲେ । ବୁଝାଇ ଗଲେ, "Here's the parson pray and preach" । ପାର୍ସନ (parson) ଉପାସନା ବେଳେ ଆଗ ପ୍ରାର୍ଥନା କରଂତି, ତାପରେ ପ୍ରଚାର କରଂତି । ଆମ ହିଂଦୁଂକର ତ ସେସବୁ କିଛି ହୁଏନାଇ । ଟିକିଏ ଦେଖିଲେ ଭଲ ହେବ ବୋଲି ମୁଁ ପିଲାଂକୁ ଘେନି ସେଇଆ ଦେଖାଇବାକୁ ଯାଇଥିଲି । ପିଲାଂକୁ ମଧ ବାଟରେ ସେଇ କଥାଟା ବୁଝାଇ ବୁଝାଇ ଆସିଥିଲି । ସେ କହିଲେ, ''ଓ ଏଇଥିପାଇଁ ଯାଇଥିଲ । ହଉଯାଅ ।'' ତା'ପରେ ଆସିଲାବେଳକୁ ପଂଡ଼ିତ ମହାଶୟ ଦେଖିଲେ । ସେ ହୁଏତ ବିଚାରିଥିଲେ ମୋର ଦଂଡ଼ ହେବ ଓ ସେଥିରେ ସେ ମଧସ୍ଥତା କରିବେ । ମୋତେ କ୍ଷମା ମିଳିବ, ଏଇପରି କିଛି କିଂତୁ ମୋ ମୁହଁରୁ ସେ ବୁଝିପାରିଲେ ହୁଏତ କିଛି ହେଲାନାଇ । ତା'ପରେ ମୋତେ ଧରି ଶାସନ କରିବା ଆରଂଭ କଲେ ।

## ୫୦। ରଏଟର୍ ସାହେବ

ଗୋଟାଏ କଥା ମନେ ପଡୁଛି । ସେ କହିଥିଲେ, ଖ୍ରୀଷ୍ଟାନମାନଂକୁ ତମେ ଛୁଇଁଥିବ । ସେଥିରେ କ'ଣ ଜାତି ଗଲାନାଇ ? ତା'ପୂର୍ବରୁ ଆମ ସ୍କୁଲକୁ ପରିଦର୍ଶନ କରିବା ପାଇଁ ଗୋରା inspector ଆସିଥିଲେ । ତାଂକ ନାଁ ରଏଟର । ତାଂକୁ ଚୌକି ଯୋଗାଇବା ପାଇଁ ଚଂଦ୍ରମୋହନବାବୁଂକର ଭାରି ଚିଂତା ପଡ଼ି ଯାଇଥିଲା । ପରେ ବହୁ ଚେଷ୍ଟାକରି କେଉଁଠାରୁ ଯୋଗାଡ଼ କରି ଗୋଟାଏ ମୁହଁ ପାଖ ଅଧେ ମେଲା ବଡ଼ ଗୋଲ ଚୌକି ସଂଗ୍ରହ କରିଥିଲେ । ସେଥିରେ ମଧ ସେ ବସିଯାଇ ପୁଣି ଉଠିଗଲାବେଳକୁ ଚୌକିଟା ତାଂକ ସଂଗେ ଉଠିଥିଲା । ଶେଷକୁ ସେ ଗୋଟାଏ ବେଂଚରେ କୌଣସିମତେ ଗୋଟିଏ ପିଚାରୁ ହୁଏତ ଅଧେ ରଖି ବସିବାକୁ ବାଧ ହୋଇଥିଲେ । ଏଡ଼େ ମୋଟା ମଣିଷ ମୁଁ କେବେ ଦେଖିନାଇ । ସେ କିଂତୁ ପୂରା ଇଂରେଜ । ହୁଏତ ନୂଆ ହୋଇ ଆସିଥାଂତି । ଇଂରେଜୀ ଶିଷ୍ଟାଚାର ଛଡ଼ା ଆଉ କିଛି ଜାଣୁ ନଥିଲେ କିଂବା ଜାଣଂତି ବୋଲି ହୁଏତ ଜଣାଉ ନଥିଲେ । ସେକାଳେ ଅନେକଂକ ବ୍ୟବହାର ସେଇଆ ଥିଲା । ସେ ସବୁ ଶିକ୍ଷକମାନଂକ ସଂଗେ ଏପରିକି କୌଣସି

କୌଣସି ଛାତ୍ରଙ୍କ ସଂଗେ ମଧ କରମର୍ଦ୍ଦନ କରୁଥିଲେ । ମୁଁ ଦେଖିଥିଲି ପଂଡ଼ିତଂକ ସଂଗେ ସେ ବଡ଼ ଆଦର ଓ ଆଗ୍ରହରେ କରମର୍ଦ୍ଦନ କରିଥିଲେ । ମୁଁ ପଂଡ଼ିତଙ୍କୁ ଜବାବ ଦେଲି, ''ଆପଣ ସେଦିନ ଉଏଟର ସାହେବଂକ ସଂଗେ କରମର୍ଦ୍ଦନ କଲାବେଳେ ଜାତିଟାକୁ କ'ଣ ଘରେ ରଖି ଆସିଥିଲେ ।'' ପଂଡ଼ିତ ମହାଶୟ ଟିକିଏ ଅପ୍ରତିଭ ହୋଇଯାଇ କହିଲେ, ''ଆମେ ଯାଉଁଯାଇ ଅଂଟାପାଣି କଲୁ ।'' ମୁଁ କହିଲି, ''ମୋତେ ତେବେ ବେକପାଣି କରିବାକୁ କହିଲେ ନାଇ, ଚଂଦ୍ରମୋହନବାବୁଂକ ଆଗେ ଗୁହାରି କରିବାକୁ ଯାଉଥିଲେ କାହିଁକି ?'' ମୋର ଏପରି ଦୁରଂତତା ଦେଖି ଚିଂତାମଣି ବାବୁ କୌଣସିମତେ ମତେ ଧରି ବାହାରକୁ ଘେନିଗଲେ ।

## ୫୧। ବ୍ରାହ୍ମଣସମିତି (ପୁରୀ)

ମୁଁ ପୁରୀ ଜିଲ୍ଲା ସ୍କୁଲକୁ ଫେରି ଆସିଲି ୧୯୦୪ ଆଦ୍ୟରେ । ସେତେବେଳକୁ ପୁରୀରେ ବ୍ରାହ୍ମଣ ସମିତି ବୋଲି ଗୋଟିଏ ପ୍ରତିଷ୍ଠିତ ଅନୁଷ୍ଠାନ ଥାଏ । ଏଥିରେ ବ୍ରାହ୍ମଣ ଛାତ୍ରମାନଙ୍କୁ ସାହାଯ୍ୟ ଦେଇ ପଢ଼ାଇବାର ବ୍ୟବସ୍ଥା ହେଉଥାଏ । ସେଥିପାଇଁ ଏବେ ହୀରାଗୋହିରୀ ସାହିରେ ଯେଉଁ ବ୍ରାହ୍ମଣ ସମିତି ହଷ୍ଟେଲ ଅଛି ସେଇଟି ତିଆରି ହୋଇଥାଏ । ତା' ଭିତରେ ଯେଉଁ ଚଂଦ୍ରଶେଖର ହଲଟି ଅଛି, ତା ହେବାପାଇଁ ହୁଏତ ଉଦ୍ୟମ ଆରଂଭ ହୋଇ ନ'ଥାଏ । ଥାଏ ଖାଲି ବୋଡ଼ିଂ ପାଇଁ କେତେଗୁଡ଼ିଏ ଚାଳଘର । ସେଥିରେ ପୁରୀଜିଲ୍ଲା ସ୍କୁଲରେ ପଢ଼ିବା ପିଲାଏ କେତେଜଣ ଥାଂତି । ପୁଣି ସଂସ୍କୃତ ସ୍କୁଲର କେତେଜଣ ଛାତ୍ର ମଧ ଥାଂତି । ପଂଡ଼ିତ ସଦାଶିବ ବିଶ୍ର ଏଥିରେ ଖୁବ୍ ମନଦେଇ ଲାଗିଥାଂତି । ମୁଁ ଯାଇ ପ୍ରଥମେ ସେଇଠାରେ ରହିଥିଲି । ପଂଡ଼ିତ ଗୋପବଂଧୁ ଦାସ ସେଇଠାରେ ରହି ଏମ୍.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଂତି । ସେ ଅବଶ୍ୟ ପରେ ଏମ୍.ଏ. ପଢ଼ା ଛାଡ଼ିଦେଇ ଓକିଲାତି ପଢ଼ା ଧରିଥିଲେ । ଗୋପବଂଧୁ ଦାସଂକ ସଂଗେ ସେଇଠାରେ ରହିଲାବେଳେ ସବୁବେଳେ ଦିନରାତି କଥାବର୍ତ୍ତା ଓ ଆଳାପର ସୁବିଧା ମିଳିଲା ।

## ୫୨। ସ୍ୱର୍ଗତ ରାମଚଂଦ୍ର ଦାସ

ଆଉ ଜଣେ ଦେଶପ୍ରାଣ କର୍ମପୁରୁଷଂକୁ ଏଇଠାରେ ଭଲକରି ଦେଖିଥିଲି । ସେ ହେଉଚଂତି ସ୍ୱର୍ଗତ ମୁକ୍ତାର ରାମଚଂଦ୍ର ଦାସ, ସେ ସେକାଳର ଓଡ଼ିଆରେ ପାସ୍‌କରା ମୁକ୍ତାର । ସେ ଇଂରାଜୀ ଜାଣୁ ନଥିଲେ; ତଥାପି ଇଂରେଜୀରେ ବକ୍ତୃତା ଦେଲେ ମୋଟାମୋଟି ବୁଝି ଯାଉଥିଲେ । ସବୁବେଳେ କହଂତି, ''ମୋର ଇଂରେଜୀ ପଢ଼ା ଫାଷ୍ଟବୁକ୍ ଘୋଡ଼ାଲେସନ ଯାଏ । ସେଥିରେ ଇଂରେଜୀ କେତେ ବୁଝିବି ।'' ସେତେବେଳେ ପ୍ୟାରିଚରଣ ସରକାରଂକର ଇଂରେଜୀ ଫାଷ୍ଟବୁକ୍ (First Book of Reading) ଇଂରେଜୀ ଆରଂଭ କଲା ଲୋକେ ଓ ଛାତ୍ରମାନେ ପ୍ରଥମରୁ ପଢୁଥିଲେ । ତା'ର ୫/୬ଟି ପାଠ ପରେ ଗୋଟାଏ ଘୋଡ଼ା.ଚିତ୍ର ଥାଇ ଇଂରେଜୀ ଶବ୍ଦର ବନାନ ଶିଖାଇବା ପାଇଁ ଗୋଟାଏ ପାଠ ଥିଲା । ସେଇ ପର୍ଯ୍ୟଂତ ପଢ଼ିଲେ ଇଂରେଜୀ ସ୍ୱର ବ୍ୟଂଜନ ବର୍ଣ୍ଣ ଓ ତାର ମୌଳିକ ଉଚ୍ଚାରଣ ମୋଟାମୋଟି ଜଣାଯାଉଥିଲା । ସେ ସେଇକଥାକୁ ଲକ୍ଷ୍ୟ କରି ଥଟ୍ଟା କରି ଏକଥା କହଂତି ।

ତାଂକପରି ସରସ ସୁଂଦର ଆଳାପି ଓ ହୃଦୟବାନ ଲୋକ ମୁଁ ଖୁବ୍ କମ୍ ଦେଖିଚି । 'ବ୍ରାହ୍ମଣ ସମିତି' ଅନୁଷ୍ଠାନଟି ଯାହା ନାଁରେ ହେଉ, ତା'ର ପ୍ରକୃତ କର୍ମୀ ଥିଲେ ଏଇ ମୁକ୍ତାର ରାମଚଂଦ୍ର ଦାସ । ସେ ନିଜର ଖାଇବା ପିଇବା ସବୁ ଭୁଲି ଏଇଥିରେ ଲାଗିଥାଂତି । ସେ ମୁକ୍ତାର ହୋଇ ସେକାଳକୁ ଚାହିଁ ଖୁବ୍ ରୋଜଗାର କରୁଥିଲେ । ସେତେବେଳକୁ ତାଂକର ବୟସ ହୋଇଥିଲା ସତଚିରିଶ । ଦୁଇଟି ପୁତ୍ର ଓ ପତ୍ନୀଂକୁ ଘେନି ତାଂକର ପରିବାର । ଚାକର ଥାଏ; ପୂଝାରୀ ନଥାଏ; କିଂତୁ ତାଂକର ସବୁ ରୋଜଗାର ଛାତ୍ରମାନଂକ ପାଇଁ । ସେ ଅନେକ ଛାତ୍ରଂକୁ ସାହାଯ୍ୟ ଦିଅଂତି । ତା'ବାଦ୍ 'ବ୍ରାହ୍ମଣ ସମିତି'ରେ ଖୁବ୍ ଲାଗିଥାଂତି । ଦିନେ ମୁଁ ବ୍ରାହ୍ମଣ ସମିତିରେ ଗ୍ରାମରୁ ଯାଇ ପହଂଚିଲାବେଳକୁ ସେଠାରେ ରାଂଧୁଣିଆ ନଥିଲା କି ଆଉ କେହି ନଥିଲେ । ମୋର ହାତରେ ରାଂଧି ଖାଇବାର କଥା । ରାମଚଂଦ୍ର ଦାସେ ଆସି ମୋତେ ନିଜ ଘରକୁ ନେଇଗଲେ । ରାତି ପ୍ରାୟ ୧୦ଟା ପର୍ଯ୍ୟଂତ କଥାବାର୍ତ୍ତା ଚାଲିଲା । ତା'ପରେ ଭୋଜନରେ ବସିଲୁ । ଭୋଜନପାଇଁ ଖାଲି ବଗଡ଼ା ଭାତ ଓ ସାଂଗକୁ ମେଂଚାଏ ଲାଉସିଝା । ମୁଁ ଖାଇପାରିଲି ନାଇ । ଦେଖିଲି ସେ ବି ଖାଇପାରିଲେ ନାଇ । କ'ଣ ଅଳ୍ପ ଖାଇଚୁ, ସେ ଆଉ ଟିକିଏ ଲାଉ ସିଂତୋଳା ଆଣିବାକୁ କହିଲେ । ଘରେ ଆଉ ନଥିଲା । ଆମ ସଂଗରେ ଆଉ ଜଣେ ଦି'ଜଣ ଖାଇ ବସିଥିଲା ପରି ମନେହେଉଚି । ସେମାନେ ମଧ ଅତିଥି । ରାମଚଂଦ୍ର ଦାସେ ହଠାତ୍ ଆମକୁ ଚାହିଁ ଅତି ସରସ ସ୍ମିତ ଦୀପ୍ତ ମୁହଁରେ କହିଲେ, "ହଉ ପାଣି ପିଇଦିଅ, କାଲି ସକାଳୁ ଫେର ଖାଇବା ନାଇ କି ?"

ଓଡ଼ିଆ ଛାତ୍ରମାନେ କିପରି ଭଲ ମଣିଷ ହେବେ, ପଢ଼ି ଭଲ ପଂଡ଼ିତ ହେବେ, ସେଥିରେ ସେ ବରାବର ଲାଗିଥାଂତି । ଛାତ୍ରଂକୁ ଦେଖିଲେ ତାଂକ ସଂଗେ ବସି ଦିନରାତି ଆଳାପ କରଂତି । ନିଜେ ଓଡ଼ିଆ ସାହିତ୍ୟରେ ବଡ଼ ମନ ଦେଇଥାଂତି । ନୂଆ ବହି ବାହାରିଲେ ଅତି ଆଦରରେ ପଢ଼ଂତି ଏବଂ ଛାତ୍ରମାନଂକୁ ଡାକି ତାଂକ ସଂଗେ ପଢ଼ଂତି ଓ ଆଲୋଚନା କରଂତି । ଦିନକ କଥା କହୁଚି ସେତେବେଳକୁ ନୂଆ ହୋଇ ବାହାରିଥାଏ ମଧୁସୂଦନ ରାଓଂକ 'ବସଂତ ଗାଥା', ପୁରୀର ଓକିଲ ସ୍ୱର୍ଗତ ପଦ୍ମଚରଣ ପଟ୍ଟନାୟକ ପୁରୀଜିଲ୍ଲା ସ୍କୁଲରେ ମୋର ଥିଲେ ସହପାଠୀ । ସେ ଓଡ଼ିଆ ସାହିତ୍ୟରେ ନୂଆବହି ବାହାରିଲେ ତାକୁ ଆଗ ପଢ଼ି ପକାଉଥିଲେ । କବିତାଗୁଡ଼ିକ ଏକପ୍ରକାର ତାଂକର ସାଂଗେ ସାଂଗେ ମୁଖସ୍ଥ ହୋଇଯାଉଥିଲା । ତାଂକୁ ଓ ମୋତେ ତହିଁ ସଂଗେ ଆଉ କେତେକ ଛାତ୍ରଂକୁ ରାମଚଂଦ୍ର ଦାସେ ଡକାଇ ପଠାଇଲେ 'ବସଂତ ଗାଥା' ପଢ଼ି ଆଲୋଚନା କରିବା ପାଇଁ । ଦେଖିଲୁ ପଦ୍ମଚରଣ ପଟ୍ଟନାୟକଂକର ସେତେବେଳକୁ 'ବସଂତଗାଥା' ପଢ଼ାସରି ଅନେକ ମୁଖସ୍ଥ ହୋଇସାରିଥିଲା । ଆମେ କେହି ବହି ଦେଖି ନଥିଲୁ । ରାତି ୧୧ଟା ପର୍ଯ୍ୟଂତ ସେଦିନ ଆଲୋଚନା ଚାଲିଲା । ଆମ ସାଂଗେ ବସିଥାଂତି ଆଉ ଜଣେ ଛାତ୍ର । ସେ ହେଉଚଂତି କାଣିଆ ବେରବୋଇ ଶାସନର ଗୋବିଂଦ ଦାସ । ସେ ଏନଟ୍ରାନ୍ସ ପାସ୍ କରି ପରେ ପୋଲିସ ସବ୍-ଇନ୍‌ସିପେକ୍ଟର ହୋଇଥିଲେ । ଏବେ ସେ ଲୋକାଂତରରେ । ତାଂକୁ ସମସ୍ତ ଖର୍ଚ୍ଚ ଦେଇ ରାମଚଂଦ୍ର ମୁକ୍ତାର ପଢ଼ାଉଥାଂତି । ପରେ ସେ ଏନଟ୍ରାନସ ପାସ୍ କରି ପୋଲିସ ଚାକିରି ପାଇଁ ଦରଖାସ୍ତ ଦେଇ ଉଦ୍ୟମ କଲାବେଳେ ରାମଚଂଦ୍ର ଦାସଂକୁ ବଡ଼ ବାଧିଥିଲା । ସେ କହିଥିଲେ, "ଗୋବିଂଦ ଏବେ ପାଠପଢ଼ି ପୋଲିସ ହେବାକୁ ଗଲା ।" ପିଲାମାନଂକୁ ଦେଶସେବୀ, ସାହିତ୍ୟିକ, ଉଚ୍ଚାଭିଳାଷୀ ହେବାପାଇଁ ସବୁବେଳେ ସେ ସଂକେତ ଦିଅଂତି, ଉତ୍ସାହ ଦିଅଂତି । ତାହାହିଁ ଥିଲା ତାଂକର ଏକାଂତ କାମନା ।

ସେ ରାତି 'ବସଂତଗାଥା' ଆଳାପରେ ଗୋବିଂଦ ମଝିରେ ମଝିରେ ଘୁମାଇ ପଡୁଥାଂତି । ସେଥିରେ ରାମଚଂଦ୍ର ଦାସ ଯେପରି ଆଦର ଓ କୌଶଳରେ ଗୋବିଂଦଂକୁ ମଧ ଆଲୋଚନା ଶୁଣାଇବା ପାଇଁ ଉଦ୍ୟମ କରୁଥାଂତି, ତାହା ଦେଖି ଶିଖିବାର ଜିନିଷ । ସେ ବିରକ୍ତ ହୁଅଂତି ନାଇ କି ଦୁଃଖ ପ୍ରକାଶ କରଂତି ନାଇ, ଅଥଚ ନିଜ ଭାବରେ ଅଦ୍ଭୁତ ପ୍ରକାରରେ ଶ୍ରୋତାଂକୁ ପ୍ରଭାବିତ କରି ପାରୁଥିଲେ । ଆମ ସାଂଗରେ ଯୁକ୍ତିରେ ମଧ ସେ ନିତାଂତ ଅଗ୍ରାହ୍ୟ ଓ ଅଯୌକ୍ତିକ କଥାଟା ମଧ ଫସ୍ କରି କାଟି କହି ଦିଅଂତି ନାଇ । କଥାଟାକୁ ଆପାତତଃ ଗ୍ରହଣ କଲାପରି ଆଳାପ ଆରଂଭ କରିଦିଅଂତି, ଶେଷକୁ ଆମେ ବୁଝିପାରୁ ଆମ କଥାଟା ଭୁଲ । କୌଣସି ଛାତ୍ରର ବୁଦ୍ଧି ବା ଯୁକ୍ତି ପ୍ରଣାଳୀକୁ ସେ ହଠାତ୍ ଅଗ୍ରାହ୍ୟ କରଂତି ନାଇ କିଂବା ହଠାତ୍ ସେଥିପ୍ରତି ଦୁରାଗ୍ରହ ଦେଖାଂତି ନାଇ । ଏଇ ଯେଉଁ ଗୋବିଂଦଂକୁ ସେ ନିଜେ ସାହାଯ୍ୟ କରି ମଣିଷ କରାଉଥିଲେ ଓ ତାଂକ ସଂଗେ ବସଂତଗାଥା ବିଷୟରେ ସମ୍ପୂର୍ଣ୍ଣ ଧୈର୍ଯ୍ୟ ରଖି ଆଳାପ ମଧ କରୁଥିଲେ, ତାଂକର ଯୁକ୍ତିଶକ୍ତି ଓ ମନର ଗତି ଚିହ୍ନାଇବା ପାଇଁ ଦିନକର କଥା କହୁଚି । ସ୍କୁଲମାନଂକୁ ସେତେବେଳେ ଶିକ୍ଷାବିଭାଗୀୟ ଡିରେକ୍‌ଟର କେବେ ଆସୁ ନଥିଲେ । ବିଭାଗୀୟ ଇନିସ୍‌ପେକ୍ଟରଂକ ଉପରେ ସମସ୍ତ ବଂଗ-ବିହାର ଓଡ଼ିଶାର ଜଣେ ଡିରେକ୍‌ଟର ଥାଂତି ବୋଲି ଆମେ ଖାଲି ଶୁଣୁ । ରଏଟର ସାହେବ ଇନିସ୍‌ପେକ୍ଟର । ଥରେ ମାତ୍ର ଆମ ସ୍କୁଲକୁ ଆସିଥିଲେ । ସେ କଥା କହୁଚି । ସେ ଅସାଧାରଣ ମୋଟା ଥିଲେ । ତାଂକୁ ଦେଖି ଗୋବିଂଦ ମୋତେ ଆସି ପଚାରିଥିଲେ, ''ହଇରେ କଂଠ, ଏ ତ ଇନିସ୍‌ପେକ୍ଟର ହୋଇ ଏଡ଼େ ମୋଟା ହୋଇଚି, ଡିରେକ୍‌ଟର କେଡ଼େ ମୋଟା ହୋଇ ନଥିବ ?''

ରାମଚଂଦ୍ର ଦାସ ଅତ୍ୟଂତ ସୁବକ୍ତା ଥିଲେ । ଆଳାପରେ ସମସ୍ତଂକୁ କିଣି ନେଉଥିଲେ । ଯୁବକମାନଂକୁ ଦେଶର ଭବିଷ୍ୟତ ଭାବି ତାଂକ ସଂଗେ ପ୍ରାଣ ମିଶାଇ ଦେଉଥିଲେ । ନିଜର ବୋଲି କିଛି ତାଂକର ନଥିଲା କହିଲେ ଚଳେ । ପ୍ରାଣଟା ତାଂକର ଅତ୍ୟଂତ ବିସ୍ତୀର୍ଣ୍ଣ ଥିଲା । ୧୯୦୬ରେ ତାଂକର ମୃତ୍ୟୁ ହୋଇଥିଲା । ମୃତ୍ୟୁ ପୂର୍ବରୁ ମୁଁ ଓ ଆମ ଗାଁର ଆର୍ତ୍ତଭାଇନା (ପଂଡ଼ିତ ଆର୍ତ୍ତତ୍ରାଣ ଦାସ) ଦୁହେଁ ତାଂକୁ ପୁରୀ ଘରଠାରେ ଦେଖିବାକୁ ଯାଇଥିଲୁ । ତାଂକର ବହୁମୂତ୍ର ରୋଗ, କିଂତୁ ଆଉ କି ରୋଗ ଥିଲା କହି ହେଉ ନାଇ । ତାଂକ ଗୋଡ଼ ଚଳୁ ନଥାଏ । ବଡ଼ କଷ୍ଟରେ ଉଠି ଟିକିଏ ଚାଲୁଥାଂତି । ଆର୍ତ୍ତଭାଇନା ଫଳିତ ଜ୍ୟୋତିଷ ଜାଣିଥିଲେ । ଫଳିତ ଜ୍ୟୋତିଷରେ ରାମଚଂଦ୍ର ଦାସଂକର ବିଶ୍ୱାସ ନଥାଏ; ତଥାପି ଆର୍ତ୍ତଭାଇନା କହିବାରୁ ଜାତକଖଂଡ଼ ଆସିଲା । ଆର୍ତ୍ତଭାଇନା ଗଣନା କରି କହିଦେଲେ, ''ରାମଚଂଦ୍ର ଦାସଂକର ଏ ଦଶାରେ ମୃତ୍ୟୁ ହେବ ନାଇ ।'' ରାମଚଂଦ୍ର ସଂଗେ ସଂଗେ ଚାକରକୁ ବଡ଼ ପାଟିକରି କହିଦେଲେ, ''ଆରେ ଘରେ କହିଦେ ପଂଡ଼ିତ ମହାଶୟ କହିଲେ, ମୁଁ ଏଥର ମରିବି ନାଇ । କିଛି ଚିଂତା ନାଇ ।'' ଆମକୁ କହିଲେ, ହଉ ଘରେ ଟିକିଏ ଦଂଭ ପାଇଯାଆଂତୁ । ତା'ପରେ ଅନେକ ଆଳାପ ହେଲା । ଆମେ ଉଠିଆସିଲା ବେଳେ ବହୁ କଷ୍ଟରେ ମୋତେ ଉଠି କୁଂଢ଼ାଇ ପକାଇ ବଡ଼ କଷ୍ଟରେ ଦାଂଡ଼ଦୁଆର ପର୍ଯ୍ୟଂତ ଆସି ମୋ ମୁଂଡ଼ରେ ହାତ ଦେଇ କହିଲେ, ''ମୁଁ ଯାଉଚି, ଭଗବାନ ତମକୁ ବଡ଼ ମଣିଷ କରଂତୁ । ଦେଶକୁ କେବେ ଭୁଲିବ ନାଇ ।'' ଏ ହେଉଚି ୧୯୦୬ ମସିହାର କଥା । ମୁଁ ସେତେବେଳେ ଏଫ୍.ଏ. ପଢୁଥାଏ ।

## ୫୩। ସ୍ୱର୍ଗତ ଚଂଦ୍ରଶେଖର ସାମନ୍ତ ଓ ମୋର ପ୍ରଥମ ପ୍ରକାଶିତ ଲେଖା

ବ୍ରାହ୍ମଣସମିତିରେ ଗୋପବଂଧୁଂକ ସଂଗେ ରହିବା କଥା କହୁଥିଲି । ସେତିକିବେଳକୁ ସ୍ୱର୍ଗତ ସାମଂତ ଚଂଦ୍ରଶେଖର ସିଂହ ଅତ୍ୟଂତ ରୁଗ୍ଣ ହୋଇ ମୃତ୍ୟୁ ନିକଟ ଜାଣି କ୍ଷେତ୍ରରେ ମରିବା ପାଇଁ ଆସି ପୁରୀରେ ରହୁଥିଲେ । ମୁଁ ବିଚାରୁଥାଏଁ ତାଂକୁ ଯାଇ ଟିକିଏ ଦେଖିଆସିବି; କିଂତୁ ସେକଥା ହୋଇପାରି ନାଇ । ହଠାତ୍ ତାଂକର ମୃତ୍ୟୁ ସଂବାଦ ଶୁଣିଲି । ଗୋପବଂଧୁ ଦାସ ଆମମାନଂକୁ ଓ ଆଉ କେତେକଂକୁ ଧରି ବିଚାର କଲେ ତାଂକର ଦଶାହ ଦିନ ଗୋଟିଏ ସଭା କରିବା । ସେଥିରେ କିଏ ତାଂକର ଜୀବନୀ ଲେଖିବ । କେହି କିଛି ଜାଣଂତି ନାଇ । ସମସ୍ତେ ନାଇ କଲେ । ମୁଁ କିଂତୁ ସେ କାଳରୁ ନାନା ସ୍ଥାନରେ ପିଲାଂକୁ ଘେନି ସଭାମାନ କରୁଥିଲି । ବୋଧହୁଏ ଏହା କହିଲେ ନିତାଂତ ବହୁଭାଷଣ ହେବ ନାଇ ଯେ, ସେ କାଳରେ ପୁରୀ କଟକର ଛାତ୍ରମାନଂକ ଭିତରେ ଏପରି ସଭା ନଥିଲା ଯହିଁରେ ମୁଁ ସେକ୍ରେଟେରୀ ବା ପ୍ରେସିଡ଼େଂଟ ହୋଇ ନଥିଲି । ଗୋପବଂଧୁ ଦାସେ କହିଲେ, ''ଏତେ ସଭା କରୁଚ, ପ୍ରବଂଧ ପଢୁଥିବ, ବକ୍ତୃତା ଦେଉଥିବ, ତମେ ଲେଖ ନା ।'' ମୁଁ କହିଲି, ''ମୁଁ ଚେଷ୍ଟା କରିବି ।'' ସେତେବେଳକୁ ମୁଁ ଚଂଦ୍ରଶେଖରଂକୁ ଦେଖିବାକୁ ଯିବି ଭାବି ତାଂକ ସିଦ୍ଧାଂତ ଦର୍ପଣ ଖଣ୍ଡ ସଂଗ୍ରହ କରି ପଢ଼ିବା ପାଇଁ ପାଖରେ ରଖିଥାଏ । ତା'ରି ଇଂରାଜୀ ମୁଖବଂଧକୁ ମୂଳ କରି ମୁଁ ତାଂକର ଗୋଟିଏ କ୍ଷୁଦ୍ର ଜୀବନୀ ଲେଖିବସିଲି । ଲେଖା ଶେଷ ହେବାରୁ ଗୋପବଂଧୁ ଦାସେ ପଢ଼ିଲେ । ରାମଚଂଦ୍ର ଦାସ ମୁକ୍ତାର ସେତେବେଳେ ପ୍ରତିଦିନ ସଂଧ୍ୟାରେ କଚେରୀରୁ ଫେରି ବ୍ରାହ୍ମଣ ସମିତିକୁ ଆସଂତି । ସେ ଆସିଲାମାତ୍ରେ ଗୋପବଂଧୁ ଦାସ ମୋ ପ୍ରବଂଧଟି ତାଂକ ଆଗେ ନିଜେ ପଢ଼ି ଶୁଣାଇଲେ । ସେଇ ପ୍ରବଂଧଟି ପରେ ଦଶାହ ଦିନ ପଢ଼ା ହେଲା । ପରେ—ପ୍ରାୟ ଦୁଇବର୍ଷ ପରେ ସେଇ ପ୍ରବଂଧଟି ଉତ୍କଳ ସାହିତ୍ୟରେ ବାହାରିଲା । ତାହାହିଁ ମୋର ପ୍ରଥମ ପ୍ରକାଶିତ ଲେଖା ।

ଏ ଲେଖାଟି ବାହାର କରିବାରେ ମଧ ଟିକିଏ କଥା ଏଠାରେ କହିବାର ଅଛି । ଏକରେ କାଗଜରେ ଲେଖା ବାହାର କରିବା ସେତେବେଳେ ଯେ କି ଜିନିସ, ତା' ଏବେ ବୁଝାଇ ହେବ ନାଇ । ତା'ପରେ ମୁଁ ମଫସଲିଆ ପିଲା, ଭାରି ଲାଜକୁଳା । ଲେଖାଟି ବିଶ୍ୱନାଥ କରଂକୁ ଦେବି କିପରି, ବିଚାରୁଥାଏ, ଦେଇପାରୁ ନଥାଏ । ସାଂଗରେ କଲେଜର ପଦ୍ମଚରଣ ପଟ୍ଟନାୟକ ପଢୁଥାଂତି । ତାଂକର ବିଶ୍ୱନାଥ କରଂକ ଘରକୁ ଭାରି ଗତାଗତ ଥାଏ । ମୁଁ ଏ ମଧରେ ଥେୟର (Theyer) ସାହେବଂକ ଲିଖିତ ବେଂଜାମିନ୍ ଫେଂକଲିନଂକ ଜୀବନୀ ପଢୁଥିଲି । ସେଥିରେ ଦେଖିଲି ପିଲାଦିନେ ସେ ଏଇପରି କାଗଜକୁ ଲେଖା ଦେବାରେ ଭାରି ଲାଜକୁଳା ଥିଲେ । ଦିନେ ଗୋଟିଏ ଲେଖା ଲୁଚାଇ କରି ନାମ ନଦେଇ କୌଣସିମତେ ସଂପାଦକଂକ ହାତରେ ପଡ଼ିବା ଭଳି ରଖି ଦେଇଆସିଲେ । ସେଇଟି ବାହାରିଗଲା । ତା'ପରେ ସେ ପ୍ରକାଶ୍ୟ ଭାବରେ ଲେଖା ଦେଲେ । ମୁଁ ପଦ୍ମଚରଣ ପଟ୍ଟନାୟକଂକୁ ବହୁଦିନ ପରେ ମୋ ଲେଖାଟି ପଢ଼ାଇଲି । ସେ କହିଲେ, ''ସେ ନେଇ ବିଶ୍ୱନାଥ କରଂକୁ ଦେବେ ।'' ସେ ବିଶ୍ୱନାଥ କରଂକୁ ଦେବା ପାଇଁ ମୋ ଲେଖାଟି ନେଇଗଲେ । କେତେଦିନ ପରେ ଲେଖାଟି ଉତ୍କଳ ସାହିତ୍ୟ କାଗଜରେ ବାହାରି ପଡ଼ିଲା । ସେଦିନ ମୋ ମନରେ ଯାହା ହୋଇଥିଲା, ତା' ଲେଖି ହେବ ନାଇ । ମଧୁସୂଦନ ରାଓଂକ ନାତିଆଁପୁଅ, ପ୍ରଶାଂତ କଲେଜରେ ଆମ ଉପର କ୍ଲାସରେ ପଢୁଥିଲେ । ମଧୁବାବୁ ମୋ ଲେଖାଟି ପଢ଼ିସାରି ମୋତେ ଉତ୍ସାହ ଦେଇ

ନିଜର ଗ୍ରାହକତା ଓ ଆଶୀର୍ବାଦ ପ୍ରଶାଂତଂକ ହାତେ ମୋ ପାଖକୁ ପଠାଇ ଦେଇଥିଲେ । ଆଉ କେତେଲୋକ ମଧ୍ୟ ଖୁବ୍ ଉତ୍ସାହ ଦେଇ ମୋତେ ଲେଖିଥିଲେ । ବାଲେଶ୍ୱରର ସ୍ୱର୍ଗତ ଉମାକାଂତ ମହାପାତ୍ର ମୋ ଉପର କ୍ଲାସରେ ସେତେବେଳେ ବି.ଏ. ପଢୁଥାଂତି । ସେ ମୋ ସଙ୍ଗେ ବୋଡ଼ିଂରେ ଥିଲେ ମଧ୍ୟ ସେତେବେଳେ ଛୁଟିରେ ଗ୍ରାମରେ ଥିଲେ । ସେ ଏଇ ଲେଖା ପଢ଼ି ମୋତେ ଗୋଟିଏ ଦୀର୍ଘ ଚିଠି ଲେଖିଥିଲେ । ଗୋଟିଏ ବାକ୍ୟ ମନେ ଅଛି—"I read it with much gusto. It is very good." Gusto ଶବ୍ଦଟି ସେଇଥିରୁ ମୁଁ ଶିଖିଥିଲି, ମୋ ମନେ ଅଛି । ଉମାକାଂତ ବାବୁ ଭଲ ଇଂରେଜୀ ଜାଣୁଥିଲେ ବୋଲି ତାଂକର ନାମ ଥିଲା । ସେ ପରେ ଓଡ଼ିଆ ସରକାରଂକର Translator ହୋଇଥିଲେ ।

ସେ ଯାହାହେଉ, ମୋର ଏବେ ମଧ୍ୟ ନିଜ ଲେଖାରେ ଆତ୍ମଦୈନ୍ୟର ଭାବ ବରାବର ଯାଇ ନାଇ । ଏବେ ବି କିଛି ଲେଖିଲେ ଯାହାକୁ ହେଲେ ଶୁଣାଇ ଭଲ ଅନୁମୋଦନ ନ'ପାଇଲେ ମୁଁ ପ୍ରାୟ ସାହସ କରି ପ୍ରକାଶ କରେ ନାଇ । ଦରକାର ପଡ଼ିଲେ କେହି ନମିଳିଲେ କଲେଜର ଛାତ୍ରଂକୁ ଏପରି ମୋ ନିଜପୁଅକୁ ମଧ୍ୟ ଶୁଣାଇ ଠିକ୍ କରିନିଏ । କେହି କୌଣସି ଅଂଶ ଆଛା ଲାଗୁ ନାଇ ବୋଲି କହିଲେ ତତ୍କ୍ଷଣାତ୍ ବଦଳାଇ ଦିଏ ଓ ପୁଣି ଶୁଣାଏ । କାରଣ ମୋର ଗୋଟିଏ ଧାରଣା ପଡ଼ିଯାଇଚି ମୁଁ ମୋ ପାଇଁ ଲେଖୁ ନାଇ । ଅନ୍ୟ ପଢ଼ି ବୁଝିବା ଓ ଗ୍ରହଣ କରିବା ପାଇଁ ଲେଖୁଚି । ସେଇ ମାପକାଠିଟି ସବୁବେଳେ ମୁଁ ମନେ ରଖିଥାଏ । ସେଥିପାଇଁ ଯେତେବେଳେ ପରେ ପିଲାଂକ ପାଇଁ ଘରୋଇ ଭାଷାରେ ଲେଖିବା ମୁଁ ପ୍ରଥମେ ଆରଂଭ କଲି ସେତେବେଳେ ପିଲାଂକୁ ଶୁଣାଇ ଲେଖା ଠିକ୍ କରିଥିଲି । କହିଦିଏଁ ମୁଁ ଲେଖିବା ପୂର୍ବରୁ ଅତି ଘରୋଇ ଭାଷାରେ ସୁଂଦର ସୁରୁଚିସଂପନ୍ନ କରି ଲେଖିବାଟା ଓଡ଼ିଶାରେ ଆରଂଭ ହୋଇ ନଥିଲା । ୧୯୨୧ରେ ପିଲାଂକ ରାମାୟଣରେ ମୁଁ ଏହା ପ୍ରଥମେ ଆରଂଭ କରିଥିଲି । ତା'ପରେ ଶକ୍ତିଥିବା ଲେଖକମାନେ କ୍ରମେ ଲେଖିଲେ । ସେତିକି ନୁହେଁ, ୧୯୧୯ରେ ଯେତେବେଳେ ରାଧାନାଥ ବାବୁଂକ କାବ୍ୟ ସମାଲୋଚନାରେ ସତ୍ୟବାଦୀ ସ୍କୁଲର ସହକର୍ମୀ ବାସୁଦେବ ମହାପାତ୍ର ଓ ରଘୁନାଥ ମିଶ୍ର ମୋତେ ନିଜେ ଲେଖି ଲେଖାଇ ଦେବା ପାଇଁ ଆକ୍ଷେପ କରି କହିଲେ, ସେତେବେଳେ ମୁଁ 'କୋଣାର୍କେ' କାବ୍ୟ ଲେଖିବସିଲି । ସତର ଦିନ ଭିତରେ ଏହା ଲେଖା ହୋଇ ଛାପାଖାନାକୁ ଦିଆହୋଇଥିଲା । ତଥାପି ରାତିରେ କେତେକ ଲେଖିସାରି ସକାଳୁ ସେମାନଂକୁ ଶୁଣାଇ ଦିଏ । ସେମାନେ ଟିକିଏ ଦ୍ୱିଧା ପ୍ରକାଶ କଲେ ସଂଗେ ସଂଗେ ସେ ଅଂଶଟି ଫିଂଗିଦେଇ ଆଉ ଥରେ ଲେଖେ । ଏବେ ମଧ୍ୟ ସେୟାଇ ମୋର ରୀତି ।

## ୫୪। ବିଭା ହେବି ନାଇ

ଏତିକିବେଳେ ସାଂଗରେ ଗୋପବଂଧୁ ବାବୁ, ତହିଁରେ ପୁଣି ରାମଚଂଦ୍ର ଦାସଂକ ମୋହନ ପ୍ରଭାବ । କଥାବାର୍ତ୍ତାରେ ସ୍ଥିର ହୋଇଗଲା ମୁଁ ବିଭା ହେବି ନାଇ । ଦେଶକାର୍ଯ୍ୟରେ ଜୀବନ ଦେବା ପାଇଁ ଗୋଟିଏ ଦଳ ଗଢ଼ି ଗୋପବଂଧୁ ଦାସଂକ ସଂଗେ କାର୍ଯ୍ୟରେ ଲାଗିବି । ସେଥିରେ ହରିଭାଇନା ଓ ଅନଂତ ମିଶ୍ରେ ଦୁହେଁ ତ ରହିବେ । ଆଉ କୃତବିଦ୍ୟ ଯୁବକମାନଂକୁ ପରେ ସଂଗ୍ରହ କରିବା । ପୂର୍ବେ କହିଚି, ସୁଆଂଢ଼ ଗାଁରେ ନଈବଂଧ ଉପରେ ଯେଉଁ ସଂକଳ୍ପ

ହୋଇଥିଲା, ତା' ଏଇଭାବରେ କାର୍ଯ୍ୟରେ ପରିଣତ କରିବାକୁ ହେବ । ଏଇ ବିଚାର ଦିନକୁ ଦିନ ଘନୀଭୂତ ହେବାରେ ଲାଗିଲା । ଜୀବନ କ୍ରମେ ନୂଆପରି ଲାଗିଲା । କ୍ରମେ ଜୀବନର କ୍ରିୟାସବୁ ସଂଯତ, ଶୃଂଖଳିତ ଓ ଏକମୁଖୀ କରିବାର ଉଦ୍ୟମ ଭିତରେ ପ୍ରତିଷ୍ଠିତ ହେଲା । ସେ ବିଷୟ ମଧ୍ୟ ବରାବର ଆଲୋଚନାରେ ମାଜି ହୋଇଯାଉଥାଏ । ଗୋପବଂଧୁ ବାବୁଂକର ତରୁଣ ପ୍ରାଣରେ ସେତେବେଳର ସମ୍ମୋହନ ଓ ବ୍ୟାପକ ପ୍ରଭାବ ଏବେ ସ୍ମୃତିର ଅନୁଭବରେ ମୋତେ ସେଇ ଯୌବନର ପ୍ରଥମ ପ୍ରସ୍ଥକୁ ଆଜି ମଧ୍ୟ ଘେନି ଯାଉଚି ।

ଏଇଠାରେ ପ୍ରସଂଗକ୍ରମେ ଆଉ ଗୋଟିଏ କଥା କହିଦିଏଁ । ବିବାହ ନକରି ଦେଶସେବକ ଦଳ ଗଢ଼ିବାର କଳ୍ପନାରେ ଆଉ ଗୋଟିଏ କଥା କାରଣ ସ୍ୱରୂପ କାମ କରିଥିଲା । ହରିଭାଇନା ଓ ଅନଂତ ମିଶ୍ରେ ଦୁହେଁ ସେତେବେଳକୁ ବିବାହିତ । ପଂଡ଼ିତ ଗୋପବଂଧୁ ଦାସଂକର ମଧ୍ୟ ଗୋଟିଏ ପୁତ୍ର ଓ ଦୁଇଟି କନ୍ୟା ଥିଲେ । ଏପରି ସ୍ଥଳେ ଦେଶସେବା ପାଇଁ ଅବିବାହିତ ବ୍ରହ୍ମଚାରୀଦଳ ଗଢ଼ିବା କଥାଟା ପାରିପାର୍ଶ୍ୱିକ ବାୟୁମଂଡ଼ଳରେ ନଥିଲା । ବଂଗ ଔପନ୍ୟାସିକ ବଂକିମଚଂଦ୍ର ଚାଟାର୍ଜୀଂକ ''ଆନନ୍ଦ ମଠ'' ଗ୍ରନ୍ଥର ପ୍ରଭାବ ସେତେବେଳକୁ ସ୍ପଷ୍ଟଭାବରେ ମୋ ଉପରେ ପଡ଼ିଥିଲା ବୋଲି ମନେ ହେଉନାଇ ।

## ୫୫। ଗୋପବଂଧୁଂକ ପୁତ୍ରର ମୃତ୍ୟୁ ଓ ମୋ ଉପରେ ତାର ପ୍ରଭାବ

ମାତ୍ର ଏଠାରେ ସ୍ପଷ୍ଟ ଘଟଣାଟି ହେଉଚି, ଦାସେ ଆପଣଂକ ପୁତ୍ରର ମୃତ୍ୟୁ । ସେ ବହୁ ପିଲାଦିନୁ ବିଭା ହୋଇଥିଲେ । ଏପରିକି ଏନ୍‌ଟ୍ରାନସ ଚତୁର୍ଥ ଶ୍ରେଣୀରେ (ଏବର ୮ମ ଶ୍ରେଣୀ) ପଢ଼ିଲାବେଳକୁ ତାଙ୍କର ଗୃହସ୍ଥାଶ୍ରମ ହୋଇଯାଇଥିଲା । ତାଂକର ପତ୍ନୀ ପ୍ରାୟ ୯-୧୦ ବର୍ଷ ଘର କରିସାରିଥିଲେ । ସେ ନିଜେ ବି: ଏଲ: ପଢ଼ି ଓକିଲାତି କରିବା ଆଡ଼କୁ ନଯାଇ ବ୍ରାହ୍ମଣସମିତିରେ ରହି ଏମ: ଏ: ଆଡ଼କୁ ପ୍ରସ୍ତୁତ ହେଉଥିଲେ । ହଠାତ୍ ଖବର ପାଇଲେ ତାଂକ ନିଜଗ୍ରାମ ସୁଆଂଡ଼ରେ ତାଂକ ପୁତ୍ରଟିର ଜରାତିସାର ହେଲା । ସେଠାରୁ ସେ ନିଜର ସ୍ତ୍ରୀ ପୁତ୍ର ତା ସଂଗେ ଛୋଟ କନ୍ୟାଟି ଏ ସମସ୍ତଂକୁ ପୁରୀକୁ ଅଣାଇଲେ । ପୁରୀର ଏକ ମାର୍କେଟ ପାଖେ ତାଂକର ନିଜର ଗୋଟିଏ ଘର ଥିଲା । ସେ ପରିବାର ଘେନି ସେଠାରେ ରହିଲେ । ଡାକ୍ତର ଓ କବିରାଜ ସବୁ ଚିକିତ୍ସା ଆରଂଭ କରିଦେଲେ । ମୁଁ ପ୍ରାୟ ତାଂକର ସେଇ ଘରେ ଥାଏ କହିଲେ ଚଳେ । ମୁକ୍ତାର ରାମଚଂଦ୍ର ଦାସ ମଧ୍ୟ ବରାବର ସେଠାକୁ ଆସଂତି । କ୍ରମେ ରୋଗ ବଢ଼ିଗଲା । ଶେଷକୁ ପୁତ୍ରଟିର ମୃତ୍ୟୁ ହେଲା । ଦାସେ ଆପଣେ କେବେ ପାରିବାରିକ ଭାବରେ ଆସକ୍ତ ଥିବାର ମୁଁ ଦେଖି ନଥିଲି । ସେତିକିବେଳେ ସେ ତାଂକ ଭାର୍ଯ୍ୟାଂକ ସହିତ ଯେପରି ବ୍ୟାକୁଳ ଓ ବିବ୍ରତ ହୋଇପଡ଼ିଥିଲେ, ତା' ଆଜି ମଧ୍ୟ ମୋର ମନେ ପଡ଼ିଚି, ମୁଁ ସେତେବେଳେ ପିଲା । ବିଶେଷ କିଛି ବୋଧ ଦେଇପାରୁ ନଥାଏ । ରାମଚଂଦ୍ର ମୁକ୍ତାର ଓ ସ୍ୱର୍ଗତ ତମପଡ଼ାର ବାସୁଦେବ କର ଡାକ୍ତର ଦୁହେଁ ପାଖରେ ରହି ଗୋପବଂଧୁଂକୁ ବହୁତ ବୁଝାଉଥାଂତି, କିଂତୁ ଗୋପବଂଧୁଂକର କୋମଳ କବିପ୍ରାଣ ସେ ଘଟଣାରେ ଅତ୍ୟଂତ ଉଦ୍‌ବେଳିତ ହେଉଥାଏ ।

## ୫୬। ମୋର ସଂକଳ୍ପ

ଏଇ ଘଟଣା ପରେ ମୋର ଟିକିଏ ଚିଂତା ପଡ଼ିଗଲା । ଦେଖିଲି ଯେତେ ବଡ଼ ମହାପୁରୁଷ ହେଲେ ମଧ୍ୟ ପାରିବାରିକ ଦୁର୍ବଳତା ମନୁଷ୍ୟଙ୍କୁ ବେଳେ ବେଳେ ସ୍ଥିତିଭ୍ରଷ୍ଟ କରିପାରେ । ଅତଏବ ସେ ଦୁର୍ବଳତା ନଥିବା ଭଳି ପରିସ୍ଥିତି ସୃଷ୍ଟି କଲେ ଦେଶକାର୍ଯ୍ୟରେ ବହୁତ ବେଶି ସୁବିଧା ହେବ । ଏତେଦିନ ପରେ ଦାସ ଆପଣଂକ ସଂଗେ ବିଚାର ହେଲା । ବହୁତ ଏପାଖ ସେପାଖ ହେବା ପରେ ଦାସେ ଆପଣେ ଏଥିରେ ସମ୍ମତି ଦେଲେ । ସେତେବେଳକୁ ଦାସେ ଆପଣଙ୍କ ପ୍ରତି ହରିଭାଇନା, ଅନଂତ ମିଶ୍ରେ ଓ ମୁଁ ଏ ତିନିହେଁ ଅତ୍ୟଂତ ଅନୁରକ୍ତ ହୋଇ ପଡ଼ିଥାଉ । ତା'ର କାରଣ ହେଉଚି, କେବଳ ତାଂକର ମଧୁର ଓ ପ୍ରୀତିଶୀଳ ବ୍ୟକ୍ତିତ୍ୱ ନୁହେଁ, ତା' ଭିତରେ ଥାଏ ଭବିଷ୍ୟତର ପୁଣ୍ୟସାଧନା ଓ ଚରିତ୍ରଗଠନ ସଂଗେ ଦେଶସେବା । ଏଇ ସବୁ ବିଚାରରେ ଆମର କେତେ ରାତି ଯେ ପାହିଯାଇଚି, ତା' ଆଜି କହିବା ଦୁଷ୍କର । ତେଣୁ ଦାସେ ଆପଣଂକ ସଂଗେ ବିଚାରରେ ଯାହା ସିଧାଂତ ହେଲା, ସେଥିରେ ଆଉ ଦ୍ୱିଧା କରିବାର କିଛି ନ'ଥିଲା ।

## ୫୭। ବିବାହ ପ୍ରସଂଗ

ସେ ହେଉଚି ୧୯୦୪ ମସିହା; ଅର୍ଥାତ୍ ପୁରୀରେ ମୋର ଏନ୍‌ଟ୍ରାନ୍‌ସ କ୍ଲାସ ପଢୁଥିବା ବର୍ଷ । ବହୁତ ବିବାହ ପ୍ରସଂଗ ଆସୁଥାଏ । ସେତେବେଳର ଆମର ସମାଜରେ ଏନ୍‌ଟ୍ରାନ୍‌ସ କ୍ଲାସରେ ପାଠ ପଢ଼ିବା କମ୍ ଜିନିଷ ନୁହେଁ । ସେଥିରେ ପୁଣି ମୁଁ ପିଲାଦିନୁ ବୃଦ୍ଧ ପ୍ରବୀଣ ସାମାଜିକମାନଂକ ସଂଗେ ମଧ୍ୟ ତୀବ୍ର ଓ ଉଜ୍ଜ୍ୱଳ ଯୁକ୍ତି ଆରଂଭ କରିଦେବାରେ ପଶ୍ଚାତ୍‌ପଦ ନଥାଏ । ପୁରୀରେ ଥାଂତି ସେତେବେଳେ ଜଣେ ପ୍ରବଳ ଧନୀ । ତାଂକ ଘର ମାର୍କଂଡ଼ ସାହିରେ । ତାଂକର ଥାଏ ବିବାହ ଦେବା ପାଇଁ ଝିଅ । କାଳିକାଦେବୀ ସାହୀର ସ୍ୱନାମପ୍ରସିଦ୍ଧ ଉତ୍କଳର ଆଦିମ ନାଟ୍ୟକାର ସ୍ୱର୍ଗତ ହରିହର ରଥ । ଆମ ନନାଂକର ହରିହର ରଥଂକ ପ୍ରତି ବଡ଼ ଖାତିର ଥାଏ । ମନେଅଛି, ସେହି ଧନୀ ହରିହର ରଥଂକୁ ମୋ ବିବାହ ପ୍ରସଂଗ କରି ନନାଂକ ପାଖକୁ ପଠାଇଲେ । ଆଂଭେମାନେ ଗରିବ ପରିବାର । ହରିରଥେ ଆସି ନନାଂକୁ କହିଲେ, ''ସଂଗେ ସଂଗେ ଚାରିହଜାର ଟଂକା ନିଅ । ପୁଅପାଇଁ ନିର୍ବଂଧ କର । ଅନେକ ଅଳଂକାର ଓ ଜିନିଷ ପାଇବ । ତା'ପରେ ସେ ପୁଅକୁ ଯେ ପର୍ଯ୍ୟଂତ ପୁଅର ଇଚ୍ଛା, ସେ ପର୍ଯ୍ୟଂତ ପଢ଼ାଇବେ ।'' ନନା ଆସି ପ୍ରସ୍ତାବଟି ମୋ ଆଗେ କଲେ । ମୁଁ ସେତେବେଳକୁ ବିବାହ ସଂବଂଧୀୟ ସଂକଳ୍ପରେ ଦାସେ ଆପଣଂକ ସଂଗେ ଯୁକ୍ତିତର୍କ ଆରଂଭ କରି ନଥାଏ । ମାତ୍ର ସଂଗେ ସଂଗେ ନନାଂକୁ ଉତ୍ତର ଦେଲି, ମୋର ପତ୍ନୀରୁ ଆଗତ ଅର୍ଥରେ ମୁଁ ମଣିଷ ହେବା କଥା ହେବ ନାଇ । ସେତେବେଳେ 'ଭବଭୂତି'ରୁ ଶ୍ଳୋକଟି ବୋଲିଥିଲି ଓ ବୁଝାଇ ଦେଇଥିଲେ—

''ଉତ୍ତମଂ ସ୍ୱାର୍ଜିତଂ ବିତ୍ତଂ,
ମଧ୍ୟମଂ ପିତୁରର୍ଜିତଂ,
ଅଧମଂ ଭ୍ରାତୃବିତ୍ତଂଚ,
ସ୍ତ୍ରୀ ବିତ୍ତମଧମାଧମମ୍ ।''

ଆମ ନନା ବଡ଼ ବୁଝିପାରିବା ଲୋକ ଥିଲେ । ମୁଁ ଭଲ ପଢୁଥିବାର ଶୁଣି ସେ ମଧ୍ୟ ମୋ ପ୍ରତି ଅତ୍ୟଂତ ଅନୁରକ୍ତ ଥିଲେ । ସେ ଏକଥାଟି ବଡ଼ ବେଗେ ବୁଝିଗଲେ, ଆଉ କିଛି କହିଲେ ନାଇ । କିଂତୁ କନ୍ୟାଦାୟଗ୍ରସ୍ତ ଲୋକଂକ—ଆଉ ବିଶେଷତଃ ଧନୀଲୋକଂକର ବରପାତ୍ର ସଂଗ୍ରହ କରିବାରେ ଚେଷ୍ଟା ଏତେ ସହଜରେ ନିବୃତ୍ତ ହୁଏ ନାଇ । ପୁଣି ଏକଥାଟି ନୂଆ ହୋଇ ବଂଗଦେଶରୁ ଆମର ମାନୀକରଣ ସମାଜ ବାଟେ ଓଡ଼ିଶାକୁ ଆସୁଥାଏ । ମୋର ଯେତେଦୂର ମନେଅଛି, ଜାତି କିଣିବା ବାଟେ ଭିଂଗାରପୁରର ଚୌଧୁରୀ ଜମିଦାର ଓ ତାଂକରି ଅନୁକରଣରେ ପୁରୀର କେତେକ ବ୍ରାହ୍ମଣ ବଂଶରେ ପଶୁଥାଏ । ପୂର୍ବେ ଏପରି ଟଂକା ଦବାନବା ଧନୀ ପରିବାରଂକ ମଧ୍ୟରେ ଆବଦ୍ଧ ନଥିଲା । ପୁରୀର ଶାସନୀ ବ୍ରାହ୍ମଣମାନଂକ ଭିତରେ, ମୋ ମନେଅଛି, ଏହା ସେ ପର୍ଯ୍ୟଂତ ମଧ୍ୟ ଆବଦ୍ଧ ଥିଲା ଜାତିରେ । ପୁଣି ଦଶ, ପଂଦର ଟଂକାରୁ ଏହା ବେଶି ନ ଥିଲା । ପରେ ନନା ଯେତେବେଳେ ପ୍ରଚଳିତ ରୀତି ଅନୁସାରେ ମୋ ପାଇଁ କନ୍ୟା ଠିକ୍ କରିଥିଲେ, ସେତେବେଳେ ଏଇ ଜାତିର ତୁଳନା ବିଚାର କରି ଭଦ୍ରଲୋକମାନେ ନନାଂକୁ କନ୍ୟାପକ୍ଷ ନିମଂତେ ପଂଦର ଟଂକା ଦେବାପାଇଁ ନିର୍ଦ୍ଧାରିତ କରି ଦେଇଥିଲେ । ଏଥିରୁ ଜଣାଯିବ, ସେତେବେଳେ ସମାଜରେ ବରକୁ ଟଂକା ଦେଇ କିଣିବା ରୋଗଟି କିପରି କ୍ରମେ ଭର୍ତି ହେଉଥିଲା ।

ସେ କଥା ଯାହାହେଉ, ପୁରୀରେ ସେ ଧନୀବ୍ୟକ୍ତି ଛାଡ଼ିଲେ ନାଇ । ମୋ ପାଖକୁ ଓ ମୋ ବୋଉ ପାଖକୁ ମଧ୍ୟ ଭଦ୍ରଲୋକ ପଠାଇବାରେ ଲାଗିଲେ । ମୋର ସେତେବେଳେ ନାନା ଆଦର୍ଶ ଚଳଣି ଘେନି ପ୍ରାଣ ବଡ଼ ଉତ୍ୟକ୍ତ ଥାଏ । ଶେଷକୁ ମୁଁ ନିଜର ବିବାହ ନହେବା ସଂକଳ୍ପକୁ ଦୃଢ଼ କଲି । ଦାସେ ଆପଣଂକ ସଂଗେ ପୁଣି ବାରଂବାର ଏ ବିଷୟରେ କଥାବାର୍ତ୍ତା ହେଲା । ସେ ମଧ୍ୟ ମତ ଦେଲେ । ଶେଷକୁ ନନା, ବୋଉ ସମସ୍ତେ ଏକଥା ଜାଣିଲେ । ନନା ମୋତେ ଆସି ବିବାହ କଥାରେ ମତାଇବାଠାରୁ ଗୋପବଂଧୁ ଦାସଂକ ପାଖେ ଯାଇ ବରାବର ଧାରଣା ଦେଲେ । ମୁଁ ତାଂକର ଗୋଟିଏ ପୁଅ । ତାଂକ ପରିଣତ ବୟସରେ ମୋର ଜନ୍ମ । ମୋତେ ବିବାହ ଦବାପାଇଁ ତଥା ସେଇ ସୂତ୍ରରେ କୁଳରକ୍ଷା କରିବା ପାଇଁ ତାଂକର ଅତ୍ୟଂତ ଆଗ୍ରହ ଓ ଉତ୍କଂଠା ପ୍ରକାଶ ପାଇଲା । ଦିନେ ମୁଁ ତାଂକୁ ଏକାଂତରେ ବଂଶ ସଂତର୍ପଣରେ ଗୋଟିଏ ପୋଷ୍ୟପୁତ୍ର ଗ୍ରହଣ କରିବା ପାଇଁ ଅନୁରୋଧ କଲି । ସେ ଯାଇ ଦାସେ ଆପଣଂକ ଆଗେ ଏକଥା କହି କାଂଦିଲେ । କୋମଳ କବିପ୍ରାଣ, ଦାସେ ଆପଣେ ଆଉ ସଂଭାଳି ପାରିଲେ ନାଇଁ । ମତେ ଡାକି ନାନା କଥା ବୁଝାଇ ମୋର ବିବାହ ନକରିବା ସଂକଳ୍ପକୁ ପରିତ୍ୟାଗ କରିବାକୁ କହିଲେ ।

## ୫୮। ଗୋପବଂଧୁଂକ ନିର୍ଦ୍ଦେଶ ଓ ମୋର ବିବାହ ଅନୁଷ୍ଠାନ

ସେ ହେଉଚି ୧୯୦୪ ମସିହାର ଶେଷ । ୧୯୦୫ ମସିହା ଫେବୃୟାରୀ ୧୫ ତାରିଖରେ କଟକରେ ମୋର ଏନ୍‌ଟ୍ରାନ୍‌ସ ପରୀକ୍ଷା । ମୋ ବିବାହଘର ଠିକ୍ ହେଲା ଫେବୃୟାରୀ ୫ ତାରିଖ । ମୁଁ କଟକରୁ ଆସି ବିଭାଘର ଶେଷ କରି ସାତମଂଗଳା କଟାଇ ଆଠମଂଗଳା ଦିନ ଯାଇ ପୁଣି କଟକରେ ସେବ କଲେଜିଏଟ ବୋଡ଼ିଂରେ ପହଂଚିବାର କଥା ମୋର ଏବେ ମନେ ପଡୁଚି । କାରଣ ମୁଁ ସେତେବେଳେ ପୁରୀରେ ବଛାବଛି ପରୀକ୍ଷା ଦେଇସାରି ପୁଣି

କଟକ ଯାଇ ମୋତେ ସୁଖ ପାଉଥିବା ମାଷ୍ଟର ଓ ଛାତ୍ରମାନଂକ ସାହଚର୍ଯ୍ୟରେ ସେବ କଲେଜ ପ୍ରିନ୍‌ସିପାଲ ସ୍ୱର୍ଗତ ବି. ଭି. ଗୁପ୍ତ (ବିପିନି ବିହାରୀ ଗୁପ୍ତ), କଲେଜ ସୁପରିଟେଂଡ୍ରେଂଟ୍ ଶ୍ରୀଯୁକ୍ତ ସୁରେଶଚଂଦ୍ର ଗୁପ୍ତଂକ ପୂର୍ଣ ଅନୁମତିରେ ଯାଇ କଲେଜିଏଟ୍ ବୋଡ଼ିଂରେ ପରୀକ୍ଷା ଦେବାକୁ ରହିଥିଲି । ସେଇଠାରୁ ବିବାହ ବାର୍ତ୍ତା ପାଇଥିଲି ଓ ପୁଣି ସେଇଠାକୁ ଫେରି ଅଇଲି ।

## ୫୯। ସ୍ୱର୍ଗତ ଯମେଶ୍ୱର ମିଶ୍ର

ଏଇଠାରେ କହିରଖେ, ସେଠାରେ ମୋର ସହାଧାୟୀମାନଂକ ମଧରେ ମୋର ସଂଗେ ବୋଡ଼ିଂରେ ଏକତ୍ର ରହୁଥିବା ହିଂଦୋଳର ଶ୍ରୀ ଯମେଶ୍ୱର ମିଶ୍ର ଥିଲେ ଜଣେ ଭାରି ସାଂଗ । ତାଂକର ଜୀବନରେ ଆଦର୍ଶବାଦ ତ୍ୟାଗ ଓ ବିଦ୍ୟାରେ ବିଜ୍ଞତା ଖୁବ୍ ଥିଲା । ଦ୍ୱିତୀୟ ଶ୍ରେଣୀରେ ପଢ଼ିବା କାଳରୁ ତାଂକ ସାଂଗେ ମୋର ଭାରି ଆତ୍ମୀୟତା ଥିଲା । ସେ ଥିଲେ ବିବାହିତ; କିଂତୁ ତାଂକର ଗୃହସ୍ଥ ଧର୍ମ ଆରଂଭ ହୋଇ ନଥିଲା । ଆମ କଳ୍ପିତ ଦଳରେ ଯୋଗ ଦେଇ ଦେଶ କାମ କରିବାରେ ମୋ ସଂଗେ ସେ ବରାବର ଏକମତ ଥିଲେ । ଏ କ୍ଷେତ୍ରରେ ସ୍ପଷ୍ଟ ଭାବରେ ସେଇ ମୋର ପ୍ରଥମ ନୂତନ ସଂଗୀ ଥିବାର ମନେଅଛି; କିଂତୁ ଆଜି ମଧ ମନେପଡୁଚି ମୁଁ ପରୀକ୍ଷା ଦେଇ ଆସି ଘରେ ଥାଏ । ଦିନେ ହଠାତ୍ ତାଂକର ମୃତ୍ୟୁସଂବାଦ ପାଇଲି । ସେଦିନର ଅନୁଭୂତି ଓ ପ୍ରାଣବିକୃତି ବର୍ଣ୍ଣନା କରି କହିପାରୁ ନାଇ । ବୋଉ ଏକଥା ଜାଣିଲା । ମତେ ବାଧ କରି ଖାଇବାକୁ ଦେବାକ ବସିଲା; କିଂତୁ ମୋ ପେଟକୁ ଭାତ ଗଲାନାଇ । ଏଇଠାରେ କହିଦିଏଁ, ତା'ର ଅଳ୍ପଦିନ ପରେ ଏନ୍‌ଟ୍ରାନ୍‌ସ ପରୀକ୍ଷାର ଫଳ ବାହାରିଲା । ସେତେବେଳେ ଚାରିଜଣ ମାସକୁ ଟ୨୦ (ସେତେବେଳକୁ ଟ୧୨ ହୋଇ ଯାଇଥିଲା) ଲେଖାଏଁ ପ୍ରାଦେଶିକ ବୃତ୍ତି ପାଉଥିଲେ । ତାଂକ ଭିତରେ ଠିକ୍ ଯମେଶ୍ୱର ମୋ ଉପରେ ଥିଲେ ।

## ୬୦। ଗୋଦାବରୀଶ ପୁରୀ ସ୍କୁଲ ଛାତ୍ର

ଏଇଠାରେ ପୁରୀଜିଲ୍ଲା ସ୍କୁଲର ଏବେ ସ୍ୱର୍ଗତ ପଂଡ଼ିତ ଗୋଦାବରୀଶଂକ ସଂବଂଧରେ ଟିକିଏ କହିଦିଏ । ଗୋଦାବରୀଶ ବୟସରେ ମୋଠାରୁ ଦେଢ଼ ବରଷ ସାନ; କିଂତୁ ପାଠରେ ସାନ ବରଷେ । ତାଂକ ପିତା ବଡ଼ ଦରିଦ୍ର ଥିଲେ; କିଂତୁ ସେ ଥିଲେ ନୈଷ୍ଠିକ ବ୍ରାହ୍ମଣ । ଗୋଦାବରୀଶ ୧୯୦୦ ମସିହାରେ ବାଣପୁର ମଧ-ଓଡ଼ିଆ ସ୍କୁଲରୁ ପାଶ୍ କରିଥିଲେ, ମୁଁ ଶ୍ରୀରାମଚଂଦ୍ରପୁର ମଧ-ଓଡ଼ିଆ ସ୍କୁଲରୁ ପାସ୍ କରିବାର ଠିକ୍ ବରଷକ ପରେ । ତାଂକ ନନା ବହୁତ ବିଶିଷ୍ଟ ଲୋକଂକ ସାହାଯ୍ୟ ଓ ସାହଚର୍ଯ୍ୟରେ ତାଂକୁ ଆଣି ପୁରୀଜିଲ୍ଲା ସ୍କୁଲରେ ଛାଡ଼ି ଯାଇଥିଲେ । ସେ ବୋଡ଼ିଂରେ ରହିଲେ । ମୁଁ ମଧ ବୋଡ଼ିଂରେ ଥାଏ । ମୋର ତାଂକର ଚିହ୍ନା ଥାଏ । କ୍ରମେ ଉତ୍ତର ବୟସରେ ମୁଁ ଯେତେବେଳେ କଟକରୁ ଫେରି ଏନ୍‌ଟ୍ରାନ୍‌ସ ପରୀକ୍ଷା ପାଇଁ ପୁରୀରେ ପ୍ରସ୍ତୁତ ହେଲି, ସେତେବେଳେ ତାଂକର ମୋର ଖୁବ୍ ଘନିଷ୍ଠତା ହେଲା । ତା'ର ମୁଖ୍ୟ କାରଣ ହେଉଚି ବଂଗଳାର ଶ୍ରୀ ଶଶିଭୂଷଣ ରାୟ ଚୌଧୁରୀ । ସେ ଥିଲେ ବିପ୍ଳବୀମାନଂକ ମୂଳରେ । ଯୁବକମାନଂକ ସଂଗେ ସବୁଠାରେ ସବୁବେଳେ ତାଂକର ପରିଚୟ ହୁଏ । ସେଥିରେ ହିଁ ସେ ଯୁବପ୍ରାଣକୁ ତ୍ୟାଗ ଓ ଦେଶସେବା ପାଇଁ ଉଦ୍‌ବୁଦ୍ଧ କରଂତି ।

## ୬୧। ମଧୁବାବୁଂକ ପୁରୀ ଆଗମନ ଓ ପ୍ରଚାର ସଭା

ଏତିକିବେଳେ ଘଟିଥିଲା ଆଉ ଗୋଟିଏ ଘଟଣା । ୧୯୦୩ ଶେଷକୁ ଉତ୍କଳ ସମ୍ମିଳନୀ କଟକରେ ଆରଂଭ ହୋଇଥିଲା । ତା'ରି ପରେ ୧୯୦୪ ଖ୍ରୀ:ଅ:ରେ ମଧୁସୂଦନ ଦାସ ପ୍ରଥମେ ସମ୍ମିଳନୀର ପ୍ରଚାର ଆରଂଭ କଲେ । ସେଥିରେ କୃଷି ଓ ବାଣିଜ୍ୟ ଶିକ୍ଷାଦେବା ପ୍ରଧାନ କଥା ଥିଲା; କିଂତୁ ଏ ଦୁଇଟି ଭିତରେ ପ୍ରଧାନ କଥା ଥିଲା ସ୍ୱଦେଶୀ । ଏହା ବଂଗଳାର ସ୍ୱଦେଶୀ ଆଂଦୋଳନ ଆରଂଭର ଦୁଇବର୍ଷ ବା ତହିଁରୁ ଅଧିକ ପୂର୍ବର କଥା । ମଧୁସୂଦନ ଦାସ (ଡାକନାମ ମଧୁବାବୁ), ସ୍ଥାନେ ସ୍ଥାନେ ବୁଲି ବକ୍ତୃତାମାନ ଦେବାକୁ ଆରଂଭ କଲେ । ପୁରୀରେ ହୋଇଥିବା ଜଗନ୍ନାଥ ବଲ୍ଲଭ ମଠରେ ବିରାଟ ସଭା । କାରଣ ମଧୁବାବୁ ଆସିବେ ଓ ମଠରେ ବିରାଟ ସଭା ହେବ ବୋଲି ବିଜ୍ଞାପନ ଦିଆଯାଇଥିଲା । ଆଂଭେମାନେ ସମସ୍ତେ ଗଲୁ । ମୁଁ ସେତେବେଳେ ପୁରୀ ଜିଲ୍ଲାସ୍କୁଲ ଛାତ୍ର । ମୋ ସଂଗେ ଥାଂତି ଜଣେ ବଂଗାଳୀ ଛାତ୍ର ସ୍ୱର୍ଗତ ଶ୍ରୀ ନଗେଂଦ୍ରନାଥ ରକ୍ଷିତ । ତାଂକ କଥା ପରେ କହୁଚି । ସଭାଟିରେ ଅନେକ ଲୋକ ଉପସ୍ଥିତ ଥାଂତି । ମଧୁବାବୁ ବକ୍ତୃତା ଦେଲେ । ସେଇଦିନ ବକ୍ତୃତାରେ ଆରଂଭ କରି କହିଥିବା ଗୋଟିଏ କଥା ଏବେ ମୋ ମନେଅଛି, ''ଆମେ ସବୁ ଚମଡ଼ାଯାକ ବିକି ଦେଉଚୁ । ସେଇ ଚମଡ଼ା ବିଲାତରେ ଯୋତା ତିଆରି ହୋଇ ସେଇ ଯୋତା ପୁଣି ଆସି ଆମରି ପଇସାରେ କିଣା ହୋଇ ଆମରି ପିଠରେ ପଡୁଚି ।'' ଏଇପରି ମଧୁବାବୁ ନିଜର ଅନୁକରଣୀୟ ବାଗ୍ମୀତାରେ ଯେତେବେଳେ ସ୍ୱଦେଶୀ ବ୍ୟବହାର ପାଇଁ ନିଜର ଗଭୀର ନିବେଦନ ଛୁଟାଇଦେଲେ, ସେତେବେଳେ ଜନତା କିପରି ମୁଗ୍ଧ ହୋଇ ଚାହିଁଥିଲା, ତା ଆଜି ମୋର ମନେପଡୁଚି । ବଂଗାଳୀପିଲା ନଗେଂଦ୍ରନାଥ ରକ୍ଷିତ ମଧ ସେଥିରେ ଅତ୍ୟଂତ ତନ୍ମୟ ହୋଇଯାଇଥିଲେ । ସବାଶେଷକୁ ବାହାରି ଥିଲା ମଧୁବାବୁଂକ ଗୋଟିଏ ମଲାଟବଂଧା ଖାତା । ସେଇ ଖାତାର ପ୍ରଥମ ପୃଷ୍ଠାରେ ବାହାରିଥିଲା ଗୋଟିଏ ନିବେଦନ । ତାହାର ମର୍ମ ହେଉଚି, ସମସ୍ତେ ସ୍ୱଦେଶୀ ବ୍ୟବହାର କରିବା ପାଇଁ ସଂକଳ୍ପ କରଂତୁ । ସେଇ ସଂକଳ୍ପଟି ଅନ୍ୟ ପୃଷ୍ଠାରେ ମୂଳରୁ ଲେଖା ଥିଲା । ଯେତେଦୂର ମନେଅଛି, ତାର ମର୍ମ ହେଉଚି, ''ମୁଁ ପ୍ରାଣପଣେ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର କରିବି । ବିଶେଷରେ ସ୍ୱଦେଶୀ ଲୁଗା ଛଡ଼ା ଆଉ କିଛି କେବେ ପିଂଧିବି ନାଇ ।'' ଏଭଳି କିଛି ।

## ୬୨। ସ୍ୱଦେଶୀ ପ୍ରତିଜ୍ଞାପତ୍ର

ମନେଅଛି, ସେ ଖାତା ବୁଲିଗଲା । କେହି ଦସ୍ତଖତ କରିବାକୁ ସାହସ କଲେ ନାଇ । ସେ ହେଉଚି ଇଂରେଜ ଅମଳ । ସେତେବେଳେ ଇଂରେଜଂକ ପ୍ରତିପତ୍ତିର ବେଳ । ଲର୍ଡ଼ କର୍ଜନଂକ ପରି ଦଂଠା ଲୋକ ସେତେବେଳେ ଗଭର୍ଣ୍ଣର ଜେନେରାଲ । ସାହସ କରି ସ୍ୱଦେଶୀ ପ୍ରତିଜ୍ଞାପତ୍ରରେ ଦସ୍ତଖତ କରୁଚି କିଏ ? ହୁଏତ ଆଜି ଲୋକେ ଏହାର ତାତ୍ପର୍ଯ୍ୟ ଅନୁମାନରେ ବୁଝିପାରିବେ ନାଇ । ସଭାରେ ପୁଲିସ ରହିଚି । ଇଂରେଜ ଭୟରେ ଲୋକେ ଥରୁଥାଂତି । ଲୁଗା ସହିତ ସବୁ ବ୍ୟବହାର୍ଯ୍ୟ ମାଲ ହେଉଚି ଇଂରେଜୀ । ଯେପରିକି ସବୁ ସାହାବଂକର; ତେଣୁ ସବୁ ସରକାରଂକର । ସ୍ୱଦେଶୀ ବ୍ୟବହାର ସଂକଳ୍ପ କଲେ ସରକାରଂକ ବିରୋଧୀ

ହେବାକୁ ହେବ । ଏ କଥାରେ ଯେ ସତ୍ୟ ନଥିଲା, ତାହା ନୁହେଁ । ବିଶେଷରେ ପୁଲିସ ଓ ସରକାରୀ କର୍ମଚାରୀମାନେ ଏହା ହିଁ ସାଧାରଣତଃ ମନେ କରୁଥିଲେ । ପୁଲିସ ଏଥିରେ ଦୃପ୍ତ । ଅନ୍ୟ କର୍ମଚାରୀ ଏଥିରେ ସଂକୁଚିତ । ସଂକଳ୍ପ କରି ତହିଁରେ ଦସ୍ତଖତ କରିବା ଏଡ଼େ ସହଜକଥା ନ ଥିଲା ।

ସ୍ପଷ୍ଟ ମନେଅଛି, ଏ ପ୍ରତିଜ୍ଞାପତ୍ର ବୁଲି ବୁଲି ଆମ ପାଖକୁ ଆସିଲା । ଆମେ ସେତେବେଳେ ସ୍କୁଲଛାତ୍ର । ମଧୁବାବୁଙ୍କ ସତୃଷ୍ଣ ନୟନ ମଧ ଆମ ପର୍ଯ୍ୟଂତ ଆସି ଆମ ଉପରେ ପଡ଼ିଲା । ସେ ଖାତାରେ ପ୍ରଥମେ ଦସ୍ତଖତ କଲେ ନଗେଂଦ୍ରନାଥ ରକ୍ଷିତ । ତାପରେ ଦସ୍ତଖତ କରିଥିଲି ମୁଁ ନିଜେ । ଆମକୁ ଦେଖି କେତେଜଣ ଯୁବକ, ବିଶେଷରେ ସ୍କୁଲଛାତ୍ର ଦସ୍ତଖତ କଲେ । ଆଉ କେହି ସ୍ୱାଧୀନଚେତା ଯୁବକ ଦସ୍ତଖତ କରିଥିବେ ମୋର ଆଜି ମନେ ନାଇଁ; କିଂତୁ ଯେତେଦୂର ମନେଅଛି, କର୍ମଚାରୀ ତ କର୍ମଚାରୀ ଓକିଲମାନେ ମଧ ଦସ୍ତଖତ କରିବା ପାଇଁ ଡରିଥିଲେ । ଅବଶ୍ୟ ଅନେକ ଓକିଲ, ମୁକ୍ତାର ସଭାରେ ଅନୁପସ୍ଥିତ ଥିଲେ । ଗୋପବଂଧୁ ବାବୁ ସେଦିନ କଟକରେ ଥାଂତି, ମାତ୍ର ମନେଅଛି, ଶେଷକୁ ମଧୁବାବୁଂକର ଶେଷ ଓ ନିରାଶ ଦୃଷ୍ଟି । ସେ ଯାହାହେଉ, ସେଇଦିନଠାରୁ ପୁରୀଜିଲ୍ଲା ସ୍କୁଲ ବୋଡ଼ିଂରେ ଥିବା ନଗେଂଦ୍ରନାଥ ରକ୍ଷିତ ଓ ମୁଁ ଦୁହେଁ ସ୍ୱଦେଶୀ ବସ୍ତ୍ରାଦି ଛଡ଼ା ଅନ୍ୟକିଛି ବ୍ୟବହାର କରି ନାହୁଁ । ବିଦେଶୀ ବର୍ଜନ ଓ ସ୍ୱଦେଶୀ ବସ୍ତ୍ର ପରିଧାନ ସେଇଦିନଠାରୁ ମୁଁ ଆରଂଭ କରିଥିଲି । ଏଇ ଆରଂଭ ମୂଳରେ ଥିଲା ଗୋଟିଏ ସଂକଳ୍ପ ଓ ସେଇ ସଂକଳ୍ପକୁ ଘେନି ଗୋଟିଏ ପ୍ରତିଜ୍ଞାପତ୍ରରେ ସ୍ୱାକ୍ଷର ।

## ୬୩। ନଗେଂଦ୍ରନାଥ ରକ୍ଷିତ

ଏଇଠାରେ ନଗେଂଦ୍ରନାଥ ରକ୍ଷିତଂକ କଥା ଟିକିଏ କହେ । ସେ ଆସି ବିନା ଟିକେଟରେ ପୁରୀରେ ପହଂଚିଲେ । ତାଂକଠାରେ ପଇସା ନଥିଲା । ହୁଏତ ଘରୁ ସେ ପଇସା ପାଉ ନ'ଥିଲେ; କିଂତୁ ଏନ୍‌ଟ୍ରାନ୍‌ସ ପଢ଼ିବାକୁ ତାଂକର ଇଚ୍ଛା । ପୁରୀ ଜିଲ୍ଲାସ୍କୁଲ ବୋଡ଼ିଂରେ ସେ ଆସି ପହଂଚିଲେ । ଶ୍ରୀ ଚଂଦ୍ରମୋହନ ମହାରଣା ସେତେବେଳକୁ ସଂଭବତଃ ହେଡ଼ମାଷ୍ଟର ହୋଇ ଆସୁଥିବାର ଜଣାଯାଇଥାଏ; କିଂତୁ ଆସି ନଥାଂତି । ମୁଁ ନଗେଂଦ୍ରଂକୁ ନିଜ ପାଖେ ରଖିଲି । ବଡ଼ ଆତ୍ମୀୟତା ହେଲା । କ୍ରମେ ସେ ପୁରୀ ଜିଲ୍ଲା ସ୍କୁଲର ଯେଉଁ ''Poor fund'' ଥିଲା, ତା'ର ଭାର ନେଲେ । ତାଂକଯୋଗେ ସେତେବେଳେ 'ପୁଅର ଫଣ୍ଡ'ରେ ବହୁତ ଅର୍ଥାଗମ ହୋଇଥିଲା । ସେ ଅର୍ଥରୁ ସେ ନିଜର ଅତି ଆବଶ୍ୟକୀୟ ଖର୍ଚ୍ଚ ପାଇଁ ସାହାଯ୍ୟ ପାଉଥିଲେ । ଏହି ସାହାଯ୍ୟ ମଧ ଅତି ଅଳ୍ପ ଥିଲା । ଏଣେ ବୋଡ଼ିଂରେ ଆମ ମେସ୍‌ରେ ସମସ୍ତେ ତାଂକୁ ବିନା ପଇସାରେ ରଖିଥିଲୁ । ବୋଡ଼ିଂ ଖର୍ଚ୍ଚକଥା ଓ ଖାଦ୍ୟକଥା ଏଠାରେ ଟିକିଏ କହିଲେ ମଂଦ ହେବନାଇ । ମୋ ମନେଅଛି, ଏଇବର୍ଷ କିଂବା ଏହାର କୌଣସି ପୂର୍ବବର୍ଷ ମୁଁ ଠିକ୍ କହିପାରୁ ନାଇଁ । ଥରେ ଆମ ମେସ୍‌ରେ ଚହଳ ପଡ଼ିଗଲା ଏପରି ମେନେଜର ରହିଲେ ଆମେ ଆଉ ଚଳିପାରିବୁ ନାଇଁ । ମୋର ସବୁବେଳେ ସତୀର୍ଥ ଓ ସମଅଂତେବାସୀଂକ ଭିତରେ ଟିକିଏ ବିଶେଷତ୍ୱ ଓ ପ୍ରତିଷ୍ଠା ଥାଏ । ମୋ ଆଗେ ଏକଥା ପଡ଼ିଲା । ବୁଝି ଦେଖିଲି ଏହାର କାରଣ ହେଉଚି, ସବୁ ମାସରେ ଚାଉଳ ସହିତ ଜଣଂକୁ ଦେଢ଼ଟଂକା ମଧରେ ଖର୍ଚ୍ଚ ପଡ଼େ । ସେ ମାସରେ ପଡ଼ିଚି ଜଣକେ ଏକ ଟଙ୍କା ନଅ ଅଣା (ଶହେ ପଞ୍ଚାବନ ପଇସା) ଏବର ।

## ୬୪। ପୂଜାଛୁଟି

ମୁଁ ପୂର୍ବେ ମାସକୁ ଟ୪/ କରି ମଧ୍ୟ-ଓଡ଼ିଆ ବୃତ୍ତି ପାଉଥିଲି । ତାହା ଚାରିବର୍ଷ ପାଇଲି । ହାଇସ୍କୁଲ ୨ୟ ଶ୍ରେଣୀକୁ ତା ସରିଯାଇଥିଲା । ଆମଘରୁ କିଛି ଚାଉଳ ଆସେ । ଆଉ କିଛି ସାମାନ୍ୟ ପଇସା ଆସେ । ଚାଉଳତକ ବଜାର ଦରରେ ମେସକୁ ବିକ୍ରି ହୁଏ ଓ ପଇସାରୁ ମୁଁ ଖର୍ଚ୍ଚ ଦିଏ । ସେ ବର୍ଷ ପୂଜାଛୁଟି ପଡ଼ିଗଲା । ସମସ୍ତେ ଚାଲିଗଲେ । ପୃଥ୍ୱୀରାଟି ମଧ ଗ୍ରାମକୁ ଗଲା; ମାତ୍ରକ ନଗେଂନ୍ଦ୍ର ଓ ମୁଁ ଦୁହେଁ ବୋଡ଼ିଂରେ ରହିଲୁ । ମୋ ଚାଉଳ ଓ ସାମାନ୍ୟ ପଇସା ଛଡ଼ା ପାଖରେ ଆଉ କିଛି ନାହିଁ, ମୁଁ ହାତରେ ରାଂଧିବି । ଚାଉଳ ମଧ ବେଶି ବଳିବା ଭଳି ନାହିଁ । ମୋ ମନେଅଛି ସମସ୍ତ ପୂଜାଛୁଟିଟାଯାକ ମୁଁ ପ୍ରାୟ ଜଣଂକ ପାଇଁ ରାଂଧେ । ଦୁହେଁ ତାକୁ ଖାଉ ଓ ବଛାବଛି ପରୀକ୍ଷା ପାଇଁ ପ୍ରସ୍ତୁତ ହେବା ବାହାନାରେ ନାନା କାର୍ଯ୍ୟରେ ଲାଗିଥାଉ ।

## ୬୫। ବିବାହ ବଜାର ଓ କଳଂକିତ ସମାଜ

ମୋ ବିଭାଘର କଥା କହୁଥିଲି, ସେ ସଂପର୍କରେ ଯାହା କହିଲି ତା' ହୁଏତ ଅନେକେ ବୁଝିପାରିବେ ନାହିଁ । ସେତେବେଳକୁ ବଂଗଦେଶରୁ ଅନ୍ୟାନ୍ୟ ସାମାଜିକ ଚଳଣି ଅନୁକରଣରେ ପଶିଲାପରି ବରପଣ ପ୍ରଥା ଓଡ଼ିଶାରେ ଆରଂଭ ହେଉଥାଏ । ବୋଧହୁଏ ଗୌଡ଼ୀୟ ବୈଷ୍ଣବ ଓ ଫଳିତ ଜ୍ୟୋତିଷଂକ ପ୍ରଭାବ ପଶିଲାପରି ଏ ପ୍ରଥା ଦେଶର କରଣମାନଂକ ପାଖେ ଆରଂଭ ହୋଇ ବ୍ରାହ୍ମଣ ସମାଜରେ ବ୍ୟାପୁଥାଏ । ଏ ପ୍ରଥା ଅନୁସାରେ କନ୍ୟାଦାୟ ହେଉଚି ପିତା ଭ୍ରାତା ପ୍ରଭୃତିଂକ ଗୋଟିଏ ବଡ଼ ଅସହ୍ୟ ଯନ୍ତ୍ରଣା ଓ ବେଦନା । ବର ଖୋଜିବା ଏଥିରେ ବଡ଼ କଷ୍ଟ । ଟଂକା ନଦେଲେ ଭଲ ବର ମିଳଂତି ନାଇ । ଜ୍ୱାଇଁ ପିଲାଟି ଯେବେ ପାଠ ପଢୁଥାଏ କିଂବା ତାର ପଢ଼ିବାର ସଂଭାବନା ଥାଏ, ତେବେ ତା'ର ମୂଲ୍ୟ ବେଶି ହୁଏ । ଏପରିକି ସମୟ ସମୟରେ ଏ ମୂଲ୍ୟ ଛଡ଼ା ପାଠ ପଢ଼ାଇବାର ଭାର ଶ୍ୱଶୁର ଗ୍ରହଣ କରଂତି । କୌଣସି କୌଣସିଠାରେ ବରକୁ ଟଂକାଦେଇ ତା'ପରେ ଶ୍ୱଶୁର ପାଠ ପଢ଼ାଇବାର ଭାର ନିଅଂତି । ମତେ ପୁରୀର ସେ ଧନୀବ୍ୟକ୍ତି ନିଜର ଯେଉଁ କନ୍ୟାଟି ପାଇଁ ଚାରିହଜାର ଟଂକା ଆଣି ନନାଂକ ପାଖରେ ଥୋଇଥିଲେ କହିଦିଏଁ ସେଇ କନ୍ୟାଟି ପରେ ଆମରି ଗ୍ରାମରେ ବିଭା ହୋଇଥିଲେ । ସେ ଜୋଇଁ ବାଳକଟି ସେତେବେଳେ ଏନ୍‌ଟ୍ରାନ୍‌ସ ୩ୟ ଶ୍ରେଣୀରେ ପଢୁଥିଲେ; ଅର୍ଥାତ୍ ଏନ୍‌ଟ୍ରାନ୍‌ସ ପରୀକ୍ଷାବେଳକୁ ତାଂକର ଆଉ ତିନିବର୍ଷ ବାକୀ ଥିଲା । ସେ ବିଶ୍ୱବିଦ୍ୟାଳୟରୁ ଉଚ୍ଚଡ଼ିଗ୍ରୀ ଲାଭ କରିଥିଲେ; କିଂତୁ ଏ ସମସ୍ତ ଶିକ୍ଷାର ଭାର ବସ୍ତୁତଃ ତାଂକର ଶ୍ୱଶୁର ବହନ କରିଥିଲେ ।

ବିବାହର ଏଇ ଦୃଷ୍ଟିଭଂଗୀଟି ଏବେ ସମାଜରେ ଖୁବ୍ ବଢ଼ିଚି । ମୋ ପିଲାଦିନେ ଏହା ମାତ୍ରକ ଆରଂଭରେ ଥିଲା । ତା'ପୂର୍ବରୁ ଅବସ୍ଥା ଯାହା ଥିଲା, ସେ ଅବସ୍ଥାର ବିକାଶ ଏ ନୁହେଁ; ଏହା ସେ ଅବସ୍ଥାର ପରିବର୍ତ୍ତନ । ସେ ଅବସ୍ଥାଟି କ'ଣ ଥିଲା ସେ ବିଷୟରେ ବହୁତ କଥା ଜାଣିବାର ଅଛି । ସେ ସବୁକଥା ଏଣିକି ଜାଣିବା ବଡ଼ କଷ୍ଟ । ଟିକିଏ ସୂଚନାରେ କହିଦିଏ ।

କରଣମାନଙ୍କ ଘରେ ଠିକ୍ କ'ଣ ଥିଲା, ମୁଁ କହିପାରିବି ନାହିଁ; କିନ୍ତୁ ମୋଟାମୋଟି ଉଚ୍ଚ ସମାଜର ବିଧି ଯାହା ଥିଲା, ସେଥିରୁ ସେମାନେ ଅଲଗା ନଥିଲେ ବୋଲି ମନେହୁଏ । କଥାଟି ହେଉଚି—ଓଡ଼ିଶାର ରାଜାଙ୍କ ସଂପର୍କରେ ଆସି ବ୍ରାହ୍ମଣ ଓ କରଣମାନେ ଆପଣା ଆପଣା ଭିତରେ କିଂଚିତ ଜାତିଭେଦର ଆଭାସ ଗଢ଼ି ସାରିଥିଲେ । ବିଶେଷରେ ଚୈତନ୍ୟଙ୍କ ଆଗମନ ପରେ ଓଡ଼ିଶାରେ ସେ ରୀତିର ଗୋଟିଏ ଘୋର ପରିବର୍ତ୍ତନ ଦେଖାଦେଇଥିଲା । ଚୈତନ୍ୟଙ୍କ ସଂଗେ ଅନେକ ବଂଗାଳୀ ଶିଷ୍ଟଲୋକ ପୁରୀକୁ ଆସି ସେଠାରେ ରହିଥିଲେ । ଦେଶର ଧର୍ମ ଉପରେ ସେମାନେ ରାଧାକୃଷ୍ଣ ଭକ୍ତିଜନିତ ପରକୀୟା ପ୍ରେମର ଭାବ ସ୍ପଷ୍ଟଭାବରେ ଚିପି ଭର୍ତ୍ତି କରିଥିଲେ । ପରକୀୟା ସଂଗେ ରତିସ୍ୱାଦରେ ଧର୍ମ ଆସ୍ୱାଦନ କରିବାର ନାମ କେବଳ ସହଜିଆ ବୈଷ୍ଣବଧର୍ମ ନୁହେଁ; କାର୍ଯ୍ୟରେ ଏହା ବଡ଼ ସହଜ ଓ ସୁଖସ୍ୱାଦ୍ୟ ଧର୍ମ । ରାଜାଂକଠାରୁ ଆରଂଭ କରି ତାଂକ ପାଖରେ ଥିବା ଶିଷ୍ଟ କରଣମାନଙ୍କ ଭିତରେ ଏହା ଖୁବ୍ ପଶିଥିଲା । ବ୍ରାହ୍ମଣମାନେ ଏ ରୀତିରେ ପଶି ମଧ ପଶିପାରୁ ନଥିଲେ । ତେଲଂଗା ମୁକୁଂଦଦେବ ଓଡ଼ିଶାର ଶେଷ ସ୍ୱାଧୀନ ରାଜା । ସେତେବେଳକୁ ପଚାଶ ବର୍ଷକାଳ ଚୈତନ୍ୟସଂଗୀ ବଂଗାଳୀମାନେ ରାଜଦ୍ୱାରରେ ବିଶେଷରେ ପୁରୀରେ ଖୁବ୍ ପ୍ରତିପତ୍ତି ଜନ୍ମାଇ ପ୍ରଭାବରେ ନିଜର ଜାତିଭେଦଭାବ; ଅର୍ଥାତ୍ କୁଳୀନ ଅକୁଳୀନ ଭାବ ଭର୍ତ୍ତି କରିଥିଲେ । ତେଲଂଗା ମୁକୁଂଦଦେବ ଏବର ଦାଂଡ଼ମୁକୁଂଦପୁର ଶାସନ ବସାଇବାକୁ ଆରଂଭ କରିଥିଲେ । ସେଥିସଂଗେ ସେ ଗୋପୀନାଥଂକ ମଂଦିର ଓ ତା ପାଖେ ଗୋଟିଏ ବଡ଼ ପୋଖରୀ ଖୋଳାଇଥିଲେ । ପୋଖରୀଟି ଟିକିଏ ଅଗ୍ନିକୋଣକୁ ମୋଡ଼ । ଗୋପୀନାଥଂକ ଜଗମୋହନ ଅଧା ତିଆରି ହୋଇଚି । ଏବେ ମଧ ଦେଶରେ କିଂବଦଂତୀ ଅଛି—

"ପୋଖରୀ ଦିଗି ଦହନ
ଖଂଡ଼ିଆ ଜଗମୋହନ,
ରାଜା ମୁକୁଂଦଦେବ ବାଇ,
ଛଅଶହରେ ଗାଁ ବସାଇଲେ,
କେହି କାହାରି ଘରେ ନଖାଇ ।"

ଏଠାରେ ଏ ସଂପର୍କରେ ଦେଖିବା କଥାଟି ହେଉଚି ଶେଷ ଦୁଇଧାଡ଼ି ମାତ୍ର । ଛହଶହ ହେଉଚି ଖୁବ୍ ସଂଭବ ଛଅ ଅଂଶ । ଏଇ ଅଂଶଟି ପରେ ଖଂଡ଼ିରେ ପରିଣତ ହୋଇଥିଲା । ପ୍ରଥମ ଖଂଡ଼ି, ଦ୍ୱିତୀୟ ଖଂଡ଼ି, ତୃତୀୟ ଖଂଡ଼ି, ଚତୁର୍ଥ ଖଂଡ଼ି ପର୍ଯ୍ୟଂତ ପରବର୍ତ୍ତୀ ଶାସନମାନଙ୍କରେ ଏବେ ମଧ ଦେଖାଯାଏ । ସେ ଯାହାହେଉ, ଏଠାରେ କଥାଟି ସ୍ପଷ୍ଟ ହେଉଚି ଯେ, ବ୍ରାହ୍ମଣମାନଂକ ଭିତରେ ବିଶେଷରେ ପ୍ରତିଷ୍ଠିତ ଶାସନର ଦାନୀୟ ବିପ୍ରଂକ ଭିତରେ ଜାତିଭେଦର ପ୍ରଭାବ କ୍ରମେ ପଶିଆସୁଥିଲା ।

## ୬୬। ଇତିହାସର ପ୍ରଚ୍ଛଦପଟ ଓ ବ୍ରାହ୍ମଣ ଶାସନ

ଏହାପରେ ଓଡ଼ିଶାର ପରାଧୀନତା ଅର୍ଥାତ୍ ଚିରକାଳ ନିମନ୍ତେ ଓଡ଼ିଶାର ସ୍ୱାଧୀନତା ଏତିକିବେଳେ ଲୋପ ପାଇଲା । ଏହା ସ୍ୱନାମ-ପ୍ରସିଦ୍ଧ କଳାପାହାଡ଼ଙ୍କ ପରବର୍ତ୍ତୀ ଘଟଣା ।

କଳାପାହାଡ଼ ଓଡ଼ିଶା ଜିଣିବାର ପ୍ରାୟ ୨୨ବର୍ଷ ପରେ; ଅର୍ଥାତ୍ ୧୫୯୦ ଖ୍ରୀ:ଅ:ରେ ଭୋଇବଂଶର ରାମଚଂଦ୍ର ଦେବଂକୁ ମୋଗଲସମ୍ରାଟ ଆକବରଂକ ସେନାପତି ଓ ପ୍ରାଦେଶିକ ଶାସନକର୍ତ୍ତା ମାନସିଂହ ଆସି ଓଡ଼ିଶାର ରାଜାରୂପେ ପ୍ରତିଷ୍ଠିତ କଲେ । ତାଂକର ରାଜଧାନୀ ହେଲା ଖୋର୍ଦ୍ଧା । ତାଂକ ପୂର୍ବରୁ ଦୁଇଜଣ ଭୋଇବଂଶୀ ରାଜା ସ୍ୱାଧୀନ ଓଡ଼ିଶାରେ ଥିଲେ । ଜଣଂକର ନାମ ହେଉଚି ଗୋବିଂଦ ବିଦ୍ୟାଧର ବା ସୁବର୍ଣ୍ଣକେଶରୀ ଗୋବିଂଦଦେବ । ତା'ପରେ ତାଂକ ପୁଅ ପ୍ରତାପଦେବ । ତାଂକର ଡାକନାମ ଥିଲା ଚକାପ୍ରତାପ । ଏଇ ଦୁଇଜଣଂକର ଦୁଇଟି ଶାସନ ଥିଲା । ଗୋଟିଏ ଏବର ବୀରଗୋବିଂଦପୁର, ଆଉ ଗୋଟିଏ ଏବର ବୀରପ୍ରତାପପୁର । ଏତିକିବେଳେ କଳାପାହାଡ଼ଂକ ବିଧ୍ୱଂସ ପରେ ଏଇ ରାମଚଂଦ୍ରଦେବ ଓଡ଼ିଶାର ମଂଦିରଧର୍ମ ପ୍ରଭୃତିର ଯେ ସଂଶୋଧନ ଓ ପୁନଃପ୍ରତିଷ୍ଠା କରିଥିଲେ, ଇତିହାସରେ ତାହାର ପଟାଂତର ଅଛି ବୋଲି ମନେ ହେଉନାଇ । ତାଂକରି ସମୟରେ ମାନସିଂହଂକ ଇଚ୍ଛା ଓ ଦାନଧର୍ମରେ ପୁରୀରେ ମୁକ୍ତିମଂଡ଼ପ (ଅର୍ଥାତ୍ ଏବେ ଯେପରି ଅଛି ସେଇ ମୁକ୍ତିମଂଡ଼ପ) ନିର୍ମିତ ହୋଇଥିଲା ଓ ସେଥିରେ ୧୬ଟି ଖଂବ ବସାଇ ସେଇ ୧୬ଟି ଖଂବର ଅଧିକାର ବ୍ରାହ୍ମଣକୁ ଦେବାପାଇଁ ପୁରୀ ନିକଟସ୍ଥ ରାହାଂଗ ପ୍ରଗଣାରେ ୧୬ଟି ଶାସନ ବସାଇ ଦିଆଯାଇଥିଲା କଥାଅଛି, ଏଇ ରାମଚଂଦ୍ର ଦେବଂକର ଡାକନାମ ଥିଲା ରମାଇ ରାଉତରା । ସେ ଗୋବିଂଦ ବିଦ୍ୟାଧରଂକ ପୁତୁରା ଥିଲେ ଓ ଚକାପ୍ରତାପଂକ କକେଇ ପୁଅ ବା ଦଦେଇପୁଅ ଭାଇ ଥିଲେ । ଏଇ ରାମଚଂଦ୍ର ଦେବ ଭୋଇବଂଶୀ ରାଜା ଗୋବିଂଦ ବିଦ୍ୟାଧରଂକ ଠାରୁ ନିଜର ରାଜବଂଶ ଗଣନା କରିଥିଲେ ଓ ସେଇ ଅନୁସାରେ ନିଜର ୧୬ଟି ଶାସନ ପୂର୍ଣ୍ଣ କରିଥିଲେ । ଏଇ ଶାସନଗୁଡ଼ିକର ନାମ ହେଉଚି ବୀରଗୋବିଂଦପୁର (ଦୁଇଖଂଡ଼ି ବା ଦୁଇ ଶାସନ); ତା'ପରେ ବୀରପ୍ରତାପପୁର (ଦୁଇଖଂଡ଼ି ବା ଦୁଇଶାସନ), ରାମଚଂଦ୍ର ଦେବଂକ ପ୍ରତିଷ୍ଠିତ ବୀର ରାମଚଂଦ୍ରପୁର (ଚାରିଖଂଡ଼ି ବା ଚାରିଶାସନ); ଶ୍ରୀରାମଚଂଦ୍ରପୁର (ଦୁଇଖଂଡ଼ି ବା ଦୁଇଶାସନ); ପ୍ରତାପ ରାମଚଂଦ୍ରପୁର (ଏହାର ପୂର୍ବନାମ ପାଟଲୀ; ତିନିଖଂଡ଼ି ବା ତିନିଶାସନ), ବିଜୟ ରାମଚଂଦ୍ରପୁର (ଏହାର ପୂର୍ବନାମ କୋରଂଗା ବା କଳିଂଗ—ଏହା ଏକଖଂଡ଼ି ବା ଏକଶାସନ); ଉଭୟମୁଖୀ ରାମଚଂଦ୍ରପୁର (ଏହା ଦୁଇଖଂଡ଼ି ବା ଦୁଇଶାସନ) ।

ଏଇ ଶାସନ ଦାନରେ ବ୍ରାହ୍ମଣର କୁଳୀନ ଭାବ ଆଉରି ଟିକିଏ ସ୍ପଷ୍ଟତର ହୋଇଥିଲା । ତା'ପରେ ଏଇ ରାମଚଂଦ୍ରଦେବଂକ ନାତି ନରସିଂହ ଦେବଂକ ବେଳେ ପ୍ରାୟ ୧୬୩୦ ଖ୍ରୀ:ଅ: ପରେ ବୀରନରସିଂହପୁର ଶାସନ ବସିଥିଲା ଓ ଏଇ ଗ୍ରାମରେ ସ୍ପଷ୍ଟଭାବରେ ବଂଗାଳୀ ବ୍ରାହ୍ମଣଂକ କୁଳୀନ ଧର୍ମ ଓ ତାନ୍ତ୍ରିକତା ଅନୁକୃତ ହୋଇଥିଲା ବଂଗାଳୀ କୁଳୀନଂକ ଅନୁକରଣରେ ଏଇଠାରେ ପ୍ରଥମ ସାମଂତ ସୃଷ୍ଟି ଓ ସାମଂତଂକୁ ସମାଜରେ ପ୍ରତିଷ୍ଠା ଦେବାପାଇଁ ତାଂକ ସାଂଗକୁ ଭଟ୍ଟମିଶ୍ର ସୃଷ୍ଟି କରାଯାଇଥିଲା । ଏଇମାନଂକଠାରୁ ପୁରୀର ବ୍ରାହ୍ମଣମାନଂକ ଭିତରେ ଯେଉଁ ତାନ୍ତ୍ରିକତା ପ୍ରବେଶ କଲା, ତାହା କାର୍ଯ୍ୟରେ ଗୌଡ଼ୀୟ ବୈଷ୍ଣବଂକ ସହଜିଆ ଧର୍ମଠାରୁ ଆଉରି ବୀଭତ୍ସ ଥିଲା କହିଲେ ଚଳେ । ଗୌଡ଼ୀୟ ବୈଷ୍ଣବଂକ ଭିତରେ ତାନ୍ତ୍ରିକଂକ ପଂଚମକାର ସେବା କେବଳ ସୁଂଦରୀ ପରକୀୟା ଯୁବତୀର ଅନ୍ୱେଷଣରେ ଏକପ୍ରକାର ସୀମାବଦ୍ଧ ଥିଲା; କିଂତୁ ଏଇ ବ୍ରାହ୍ମଣର ତାନ୍ତ୍ରିକତାରେ ଯେଉଁ ଜିହ୍ୱାଯୋନୀର ସ୍ୱଚ୍ଛଂଦ ସେବା ପିଟିଥିଲା; ତାହା ଏଠାରେ ବର୍ଣ୍ଣନା କରି କହିବାର କଥା ନୁହେଁ । ଏଇଠାରୁ ଓଡ଼ିଶାର ଶାସନିବ୍ରାହ୍ମଣ ତଥା ଶିଷ୍ଟ ବିଶିଷ୍ଟମାନଂକ ଭିତରେ

ଦେବୀପୂଜାର ଘଟା ପ୍ରତିଷ୍ଠିତ ହୋଇ ପ୍ରକାଶ ପାଇଥିଲା । ପୁରୀର ଗୋସଣୀଯାତ ଏଇ ପ୍ରଭାବର ସ୍ପଷ୍ଟ ଫଳ ଓ ମନେହୁଏ ବିମଳାପୀଠ ପ୍ରଭୃତି ଏହାରି ପ୍ରଭାବରେ ସ୍ପଷ୍ଟ ଫୁଟିଥିଲା । ଅବଶ୍ୟ ଅନୁମାନ ହୁଏ, ଆଉରି ଆଗରୁ ବୀରଜାଂକୁ ଭୈରବୀ କରି ଜଗନ୍ନାଥଂକୁ ତାଂକର ଭୈରବ କରିବା କଥାଟି ଉତ୍ତରଆଡୁ ପଶିଥିଲା । ସ୍ପଷ୍ଟ ଭାବରେ ଏଇ ବୀରଜାଂକୁ ବିମଳା ନାମ ଦେଇ ପୁରୀ ମଂଦିର ଭିତରେ ପୂରାଇ ଦେବୀର ପ୍ରତିଷ୍ଠା ପୁରୀରେ ବଢ଼ାଇବା କାମଟି ପୁରୀ ପାଖ ତାନ୍ତ୍ରିକ ବ୍ରାହ୍ମଣ ଓ ତାନ୍ତ୍ରିକ ମୁଖ୍ୟ ପ୍ରବର୍ତ୍ତକ ଖୋର୍ଦ୍ଧାର ତାନ୍ତ୍ରିକ ରାଜାଂକ କାର୍ଯ୍ୟ । ଏଇସବୁ ପରିସ୍ଥିତିରେ ପୁରୀପାଖ ଶାସନୀ ବ୍ରାହ୍ମଣମାନଂକ ଭିତରେ ଗୋଟିଏ ଜାତିଭେଦ ସୋପାନର ଶ୍ରେଣୀଭେଦ ପ୍ରକାଶ ପାଇଥିଲା । ଯେଉଁମାନେ ଶାସନୀ ବ୍ରାହ୍ମଣ ନୁହଂତି ସେମାନଂକ ଭିତରେ ଏଇ ଶାସନୀଂକ ଅନୁକରଣରେ କ୍ୱଚିତ ଏଇ ଭେଦଭାବ ପ୍ରକାଶିତ ହୋଇଥିଲେ ମଧ ସେମାନଂକ ଭିତରେ ମୋ ପିଲାଦିନ ପର୍ଯ୍ୟଂତ ଏହା ସ୍ପଷ୍ଟ ଜାଣିବାର କୌଣସି ସଂକେତ ନଥିଲା । ବିଶେଷତଃ ଏଇଭଳି ଅନେକ ଅଶାସନୀ ବ୍ରାହ୍ମଣଂକ ଭିତରେ 'ପଂଚସଖା' ଓ ଜଗନ୍ନାଥ ଦାସଂକ ଭାଗବତର ପ୍ରଭାବ ଖୁବ୍ ପ୍ରକାଶିତ ଭାବରେ ଚଳୁଥିବାରୁ ତାନ୍ତ୍ରିକ ବ୍ରାହ୍ମଣଂକ ଜାତିଭେଦ ଭାବ ସେତେ ପଶିପାରି ନ'ଥିଲା ।

ତାନ୍ତ୍ରିକ ଭେଦଭାବ ନଥିବାରୁ ବ୍ରାହ୍ମଣଂକ ଭିତରେ ମୋ ପିଲାଦିନୁ ବରପଣ ବା କନ୍ୟାପଣ ବୋଲି କିଛି ନଥିଲା । ଲୋକେ ଜାତିପାଇଁ ମୂଲ୍ୟ ଦେଉଥିଲେ । ବିବାହ ପ୍ରସଂଗ ଠିକ୍ ହୋଇଗଲେ, ତା'ପରେ ଭଦ୍ରଲୋକ ବସି ଜାତିର ମୂଲ୍ୟ ନିରୂପଣ କରି କିଏ କାହାକୁ କେତେ ଦେବ ଠିକ୍ କରି ଦେଉଥିଲେ । ମୋର ବିଭାଘରେ ଭଦ୍ରଲୋକମାନେ ଏଇପରି ଠିକ୍ କରିଦେଲେ ଯେ ମୋ ନନା (ପିତା) କନ୍ୟାପିତାଙ୍କୁ ୧୫ଟଂକା ଦେବେ । ସେଥିମଧରେ ମୋର ଆଉ ଶ୍ୱଶୁରଂକ ଜାତି ବିଚାରରେ ଆମର ଦେୟ ହେଲା ୧୦ଟଂକା । ମୁଁ ଛୋଟ ଜାତି ଘରର ନାତି ହୋଇଥିବାରୁ ଆମକୁ ଦେବାକୁ ହେଲା ଆଉ ୫ଟଂକା । ତା'ପରେ ଆମ ଶ୍ୱଶୁର ମୋ ବୋଉକୁ କହି ତା'ଠାରୁ ମାଗିନେଲେ ଆଉ ୫ଟଂକା । ଏପରି ଆମକୁ ଦବାକୁ ହୋଇଥିଲା, ଶ୍ୱଶୁରଂକ ଘରକୁ ଟଂକା ୨୦/ ।

## ୬୭। ମୋର ପିତାମହ ଓ ମୋର ପୈତୃକ ଜାତି

ମୁଁ ଗୋଟିଏ ଛୋଟ ବ୍ରାହ୍ମଣଘରର ନାତି ଥିଲି; ଅର୍ଥାତ୍ ମୋ ବୋଉ ଗୋଟିଏ ଛୋଟ ବ୍ରାହ୍ମଣର ଝିଅ ଥିଲେ । ତାଂକର ଛୋଟ ହେବାର ପ୍ରଧାନ କାରଣ ହେଉଚି, ସେକାଳେ ମଧ ସେ ପାଦରେ ଚାଲି ଚାଲି କାଶୀ ବା ବୃଂଦାବନ ପ୍ରଭୃତି ଅଂଚଳରୁ ପୁରୀକୁ ଯାତ୍ରୀ ଆଣୁଥିଲେ ଓ ସେଥିରୁ କିଛି ଲାଭ କରୁଥିଲେ । ଆମ ନନାଂକୁ (ବାପାଂକୁ) ଜ୍ୱାଇଁ କରିବାରେ ସେ ଜାତି କିଣିଥିଲେ ଓ ସେଥିପାଇଁ ଆମ ନନାଂକ କରଜଯାକ ସବୁ ଶୁଝି ଦେଇଥିଲେ । ସେ କରଜର ପରିମାଣ ସେତେବେଳେ ଥିଲା ଟଂକା ମୂଲ୍ୟରେ ଟ୧୨୦/ । ସେଥିପାଇଁ ମୋ ଅଜା (ବୋଉର ନନା) ଛଅଟି ସୁନାମୋହର ବାହାର କରି ନନାଂକୁ ଦେଇଥିଲେ । ଏଇଥିପାଇଁ ମୋ ବୋଉର ଜାତିଭାବ ଅତ୍ୟଂତ ଦୃଢ଼ ଥିଲା । ବରପଣ ନେଇ ମିଶ୍ରଘରୁ ଝିଅ ଆଣି ବୋହୂ କରିବା କଥାଟାକୁ ସେମାନେ ପସଂଦ କରି ନଥିଲେ ।

## ୬୮। ଢୋଲ ମହାପାତ୍ରେ ଓ ମାଟିଆ ମିଶ୍ରେ

ମିଶ୍ର ଘର କଥାଟା ମୁଁ ଯେ ଏଠାରେ କହିଲି, ତାହାର କାରଣ ହେଉଚି, ଏ ଅଂଚଳର ଜାତିଭେଦରେ ସେଇ କଥାଟି କୁହାଯାଇଥିଲା । ୧୬୩୦ ଖ୍ରୀ:ଅ: ପାଖ ଆଖ ବୀରନରସିଂହପୁରରେ ସାମଂତ ଭଟ୍ଟମିଶ୍ର ବଂଶ ସୃଷ୍ଟି ହେଲା । ପରେ ପୁରୀ ପାଖ ଅଂଚଳ ଶାସନମାନଂକରେ ଯେଉଁମାନେ ସାମଂତ ଭଟ୍ଟମିଶ୍ର ନୁହଂତି, ସେଇ ଶ୍ରେଣୀର ବ୍ରାହ୍ମଣମାନଂକ ଭିତରେ ଜାତି କିଣି ଭଲ ବ୍ରାହ୍ମଣ ହବା ଗୋଟିଏ ରୀତି ପ୍ରକାଶ ପାଇଥିଲା । ପ୍ରଥମ ଅବସ୍ଥାରେ ଯାହା ହୋଇଥିଲା, ତାକୁ ସୂଚାଇ କରି ଗୋଟିଏ କିଂବଦଂତୀ ଥିଲା । ତାହା ହେଉଚି—

"ଢୋଲ, ମାଟିଆ ନଈ
ଦାସଂକ ପାଖେ ନ ଯାଇ,
ଯେବେ ରଣପୁର ଯାଇ,
କଂଧ ବିଟାଳିଆ ହୋଇ ।"

ଏହାର ଅର୍ଥ ହେଉଚି, ବୀରରାମଚଂଦ୍ରପୁରରେ ଢୋଲ ମହାପାତ୍ର ଓ ମାଟିଆ ମିଶ୍ର (ଢୋଲ, ମାଟିଆ ପ୍ରଭୃତି ନାମମାନ ପୂର୍ବେ ବହୁତ ଥିଲା । କାହାର ଗୋଟାଏ ବଡ଼ ପେଟ ଥିଲେ, ତାକୁ ହୁଏତ କହୁଥିଲେ ଢୋଲା । ସେଇପରି କିଏ ହୁଏତ କହିଥିଲା, ଆମ ବାପ, ବଡ଼ବାପେ ଯେତେ ଗୋରା ଥିଲେ, ମୁଁ ସେତେ ନୁହେଁ, ମୁଁ ଟିକିଏ ମାଟିଆ, ସେଇଠାରୁ ତା'ର ନାମ ସେଇ କାରଣରୁ ହେଲା ମାଟିଆ) । ଏ ଦୁହେଁ ସେତେବେଳେ ଧନୀ ଥିଲେ ଓ ସାଆଂତ ଭଟ୍ଟମିଶ୍ରଂକ ଘରେ ବଂଧୁ କରି ବଡ଼ ହେଉଥିଲେ । 'ନଈ' ହେଉଚି—ନଈକୂଳରେ ଗ୍ରାମ ବୀରପ୍ରତାପପୁର । ସେଇ ଗ୍ରାମର କୌଣସି ମିଶ୍ରଙ୍କୁ କୁହାଯାଏ 'ନଈ' । ସେମାନେ ମଧ ଢୋଲ ମାଟିଆଂକ ପରି ଧନୀ ଓ ସେକାଳର ଜାତିପ୍ରେମୀ ଥିଲେ । ଦାସଂକ ପାଖେ ନଯାଇ ସାମଂତ ଭଟ୍ଟମିଶ୍ରଂକର ଯେ କଥାଟି ଅଛି, ସେ କଥାଟି ଶ୍ରୀରାମଚଂଦ୍ରପୁରର କୌଶିକ ଗୋତ୍ର ଦାସଂକ ପାଖକୁ ଯିବନାଇ । ଖୁବ୍ ସଂଭବ ସେମାନେ ଖୁବ୍ ଧନୀ ଥିଲେ ଓ ଯେକୌଣସି ସାମଂତ ଭଟ୍ଟମିଶ୍ରଂକୁ ଟଂକା ଦେଇ କିଣି ନେଉଥିଲେ । ନିଜେ ଲେଖକ ସେଇ ଦାସଂକ କୁଳୋଦ୍ଭବ । 'ଯେବେ ରଣପୁର ଯାଇ' ଏକଥାରେ ଅଛି ରଣପୁରରେ ଥିବା ମହାପାତ୍ର ଘର । ସେମାନେ ଉପରୋକ୍ତ ବ୍ରାହ୍ମଣମାନଂକ ଭିତରୁ ଟିକିଏ ପରେ । ତୁମୁରାପୁଟ ବୋଲି ଏକ ପାରିକୁଦ ରାଜାଂକ ପୂର୍ବପୁରୁଷ ବାଣପୁରର ରାଜା ସେଇ ବାଣପୁରରେ ଗୋଟିଏ ଗ୍ରାମ ବସାଇଥିଲେ । ଅବଶ୍ୟ ମନେ ରଖିବାର ଅଛି ଗଡ଼ଜାତମାନଂକରୁ ସବୁ ଶାସନ ଖୋର୍ଦ୍ଧାର ରାମଚଂଦ୍ରଦେବଂକ ପରେ ପୁରୀର ଅନୁକରଣରେ ବସାଯାଇଥିଲା । ତୁମୁରାପୁଟ ସେଇଥିରୁ ଗୋଟିଏ । ତୁମୁରାପୁଟର ଜଣେ ମହାପାତ୍ର ରଣପୁରରେ ରହି ବହୁତ ସାମଂତ ଭଟ୍ଟମିଶ୍ରଂକୁ କିଣି ନେଇ ବଂଧୁ କରିଥିଲେ । ଏଠାରେ ସେଇ କଥାର ସୂଚନା ଅଛି ।

## ୬୯। ଦୁବ, ଦେବତା ଓ ଭିଂଗାର

ଏ ସବୁମାନେ ଯେଉଁ ବରମାନଂକୁ କିଣୁଥିଲେ, ସେମାନେ ଅନେକ ଗରିବ ଥିଲେ ଓ ସେମାନଂକ ଭିତରେ ଅନେକ ଦ୍ୱିତୀୟ ପକ୍ଷର ବର ଥିଲେ । ଲୋକଂକ ଭିତରେ ଏଇ ରୀତି

ଫଳରେ ଗୋଟିଏ ବ୍ରାହ୍ମଣଂକ ଭିତରେ କୁଳୀନ ଭାବର ଅହଂକାର ଖୁବ୍ ପଶିଯାଇଥିଲା । ଏହାର ପରବର୍ତ୍ତୀ ସ୍ତରରେ ବାହାରିଥିଲେ ତିନୋଟି ଘର । ମନେ ହେଉଚି ଏମାନେ କେହି ଓଡ଼ିଶାର ଦାନୀୟ ବିପ୍ର ନୁହଂତି । ଦାନୀୟ ବିପ୍ରଂକ ଭେଦଭାବ ଅନ୍ୟମାନଂକ ଭିତରେ ପ୍ରବେଶ କରିଥିଲା ଏଥିରେ ତିନିଟି ଘର ବାହାରିଥିଲେ । ସେ ହେଉଚନ୍ତି 'ଦୁବ', 'ଦେବତା', 'ଭିଂଗାର' । ଏଥିରୁ 'ଦୁବ' ହେଉଚଂତି ଅତି ନୂଆ । କଥାଅଛି, ଏମାନଂକର ଦେଉଳସେବା ଥିଲା । 'ଦେବତା' ହେଉଚଂତି ନରହରିପୁରର ମିଶ୍ର ବ୍ରାହ୍ମଣ । ଏହାଂକର ଉପାଧି ପୂର୍ବେ ଥିଲା 'ଦେବତା' । ଏମାନେ ଥିଲେ ମାସ୍ତାନ ବା ହଳୁଆ ବ୍ରାହ୍ମଣ । ତା ଆଗରୁ ଥିଲେ 'ଭିଂଗାର' ଅର୍ଥାତ୍ ଭିଂଗାରପୁରର 'ଦାସ' ବ୍ରାହ୍ମଣ । କିଂବଦଂତୀ ଅଛି, ଏମାନେ ଅଦାଚାଷ କରୁଥିଲେ । ଖୁବ୍ ସଂଭବ ଏମାନେ ପଣ୍ୟରି ବ୍ରାହ୍ମଣ ବା ସାରୁଆ ପଂଡ଼ା । ଏଇ ତିନିହେଁ ଚାଷ ଓ ବ୍ୟବସାୟରେ ଖୁବ୍ ବଢ଼ି ଉଚ ବ୍ରାହ୍ମଣ କିଣିବାରେ ବହୁତ ଟଂକା ଖର୍ଚ୍ଚ କରୁଥିଲେ । ଶେଷବେଳକୁ ଏମାନଂକ ଭିତରେ ବର କିଣି ଝିଅକୁ ସୁଖରେ ରଖିବା ଭାବଟି ପ୍ରକାଶ ପାଇଲା । ଜାତି କିଣାରେ ଏମାନେ ବିଶେଷରେ ଭିଂଗାରପୁରର ଦାସେ ହଜାର ହଜାର ଖର୍ଚ୍ଚ କରୁଥିଲେ । ସଂଗେ ସଂଗେ ପୁରୀର ମିଶ୍ରଘର ଏଇ ହଜାର ସଂଖ୍ୟାକୁ ଜ୍ୱାଇଁ କିଣିବାରେ ଲଗାଇଲେ । କ୍ରମେ ଅନ୍ୟମାନଂକ ଭିତରେ ଜାତିଭାବ ଏଇ ଜ୍ୱାଇଁ କିଣାଭାବରେ ପରିଣତ ହୋଇଥିଲା । ମୋ ବିବାହର ଅନେକ ଦିନ ଯାଏ ଜାତି କିଣା କି ଜ୍ୱାଇଁ କିଣା ବାରି ହେଉ ନଥିଲା; କିଂତୁ କିଣିବାର ହଜାର ସଂଖ୍ୟକ ଟଂକା ପ୍ରକାଶ ପାଇଥିଲା ଓ ମୋ ନିଜ ବିବାହରେ ଜାତିକିଣା କି ଜ୍ୱାଇଁ କିଣା ଯେପରି ସୀମା ଓ ସରହଦରେ ଥିଲା, ତାହା ଏକରକମ ସୂଚନାରେ କୁହାଯାଇଚି । କିଂତୁ ଯେତେ ଜ୍ୱାଇଁ କିଣା ଭାବ ପଶିଥିଲେ ମଧ ଜାତିଭେଦ ଓ ସେଇ ହିସାବରେ ଘୋର ରକ୍ଷଣଶୀଳତା ସତ୍ୟବାଦୀ ସମେତ ପୁରୀର ଆଖପାଖ ଅଂଚଳରେ ମୋର ଯୌବନରେ ଅତି ପ୍ରତିଷ୍ଠିତ ଓ ସଂଗତ ଥିଲା ।

## ୭୦। ସ୍ୱଦେଶୀ ପ୍ରଚାର (ଶୋଭାଯାତ୍ରା ସଂଗୀତ)

ଘରେ ଘରେ ଉଠୁ ଗ୍ୟାଂନର ଝଂକାର
ଜୟ-ବୈଜୟଂତୀ ଉଡ଼ୁ ଏକତାର
ହୀନ ଏ ଦଶା ଯାଉରେ
(ହେ ଭାଇ) ହୀନ ଏ ଦଶା ଯାଉରେ ।।
ଘରେ ଘରେ ଜ୍ୱଳି ଦିଅ ଗ୍ୟାଂନଜ୍ୟୋତି
ଅଗ୍ୟାଂନ-ଜଡ଼ତା ଯାଉ ହେ ଝଟତି
ଭାଇ ଭାଇ ମିଳି ଦିଅ କରତାଳି,
ବିଷଦ-ରଜନୀ ପାଉରେ—
(ହେ ଭାଇ) ବିଷାଦ-ରଜନୀ ପାଉରେ ।୧।
ସାମ୍ୟ ଧର୍ମବାଦି-ବୀର ପ୍ରସବିନୀ
ଗ୍ୟାଂନ ଦୀପିକା ଭୂମି ସନାତନୀ
ବୀର-ଜନନୀ ପୁଣ୍ୟ ଧରଣୀ
ମା'ର କ୍ଲେଶ ଯାଉରେ—
(ହେ ଭାଇ) ମା'ର କ୍ଲେଶ ଯାଉରେ ।୨।

ଦେଶବାସୀର ଦୁର୍ଗତି ଭଳି
ତ୍ୟାଗ ଧରମେ ପ୍ରାଣ ଉଜ୍ଜଳି
ତେଜ ନିରାଶା, ପ୍ରାଣର ଆଶା
ଫୁଟି ବିଶୁ ଦାଉ ଦାଉରେ—
(ହେ ଭାଇ) ଫୁଟି ବିଶୁ ଦାଉ ଦାଉରେ ।୩।
ବୀର-ଯଯାତି-ବଂଶେ ଜନମ,
ନୁହ ଭାଇ ପଶୁ, ନକର ହେ ଭ୍ରମ,
ସ୍ୱାର୍ଥ ପଦେ ଦଳି ଦିଅ ଆତ୍ମବଳି,
ଜାତି-ଜଡ଼ତା ଯାଉରେ—
(ହେ ଭାଇ) ଜାତି-ଜଡ଼ତା ଯାଉରେ ।୪।
(ନୀଳକଂଠ ଦାସ)

୧୯୦୫/୬ରେ ମହାବିପ୍ଳବୀ ସ୍ୱଦେଶ ପ୍ରେମୀ ଖୁଦିରାମ ବୋଷ ଫାସି ପାଇବା ପୂର୍ବରୁ କଟକ ଆସିଥିବା ସମୟରେ ତାଂକ ସହିତ ଶୋଭାଯାତ୍ରାରେ ଗଲାବେଳେ ଗାଉଥିବା ସଂଗୀତ ।

ଆଉଗୋଟେ ଉଦାହରଣ ମନେ ପଡୁଚି । ମୁଁ I.A. ପରୀକ୍ଷା ଦେବା ପରେ ଫଳ ବାହାରିବା ପୂର୍ବରୁ ଦେଶରେ ସ୍ୱଦେଶୀ ପ୍ରଚାର କରିବାରେ ବାହାରିଥିଲି । ଦୁଇଖଂଡ଼ ଗେରୁଆ ଲୁଗା, ଖଂଡ଼ିଏ ଗେରୁଆ ପଂଜାବୀ ପିଂଧି; କାରଣ ଗେରୁଆ ନହେଲେ ଲୁଗା ମଇଳା ହୋଇଯିବ । ଏଇ ଦୁଇଖଂଡ଼ିରୁ ପୁଣି ଖଂଡ଼ିକରେ ଗାଧୋଇ ଆଉ ଖଂଡ଼ିଏ ମୁଂଡ଼ରେ ପଗଡ଼ି ପରି ଭିଡ଼ି ଗ୍ରାମକୁ ଗ୍ରାମ ବୁଲିବାକୁ ହେଉଥିଲା । ସଂଗରେ ଥିଲେ କେତେକାଳ ପ୍ରଚାରକ ଅନଂତ ମିଶ୍ର ଓ ଆଉ କେତେକାଳ ରାୟଚକ୍ରଧରପୁରର ପଂଡ଼ିତ ଫକୀର ମିଶ୍ର । ସେଇ ଫକୀର ମିଶ୍ର କାବ୍ୟତୀର୍ଥ ପାସ୍ କରି ଏନ୍ଟ୍ରାନ୍ସ ପାସ୍ କରିଥିଲେ । ସେ ସମୟରେ ଗ୍ରାମମାନଂକ ଭିତରେ ଶୋଇଥିବା ବେଳେ ଅନେକ ପ୍ରକାରର ଭୟଂକର ଦୃଶ୍ୟ ସବୁ ଦେଖିବାର ଏବେ ବି ମନେଅଛି ।

ଏ ସ୍ୱଦେଶୀ ପ୍ରଚାର କରିବା ପୂର୍ବରୁ ଆଂଭେମାନେ 'କଳାପାହାଡ଼' ଗ୍ରାମରୁ ଜଣେ ତଂତୀକୁ ଆଣି ତାକୁ ଟୁଇଲ୍ ବୁଣା ଶିଖିବା ପାଇଁ କଟକକୁ ପଠାଇଲୁ । ସେଇ ସୂତ୍ରରେ ସ୍କୁଲମାନଂକରେ ବିଶେଷତଃ ଆଂଭେମାନେ ସଭାକରି ଲୋକଂକୁ ବକ୍ତୃତା ଦେଉଥିଲୁ । ସେଥିମଧ୍ୟରୁ ଖୋର୍ଦ୍ଧା ହାଇସ୍କୁଲ ବକ୍ତୃତା ଦେବାର ଗୋଟିଏ ପ୍ରଧାନ ସ୍ଥାନ ଥିଲା ।

ଏତିକିବେଳେ ବା ଏହାର କିଛିଦିନ ପୂର୍ବରୁ ପଂଡ଼ିତ ଗୋପବଂଧୁ ଦାସ ପୂର୍ବର ପଂଡ଼ିତ ହରିହର ଦାସଂକୁ ଆମ ଗ୍ରାମର ବୋଲି ଜାଣି ପ୍ରତି କୁମାରପୂର୍ଣ୍ଣମୀ ଦିନ ସେଠାରେ ଯାଇ ହରିହରଂକ ଜୟଂତୀ ସଭାକରି ବକ୍ତୃତା ଦେଉଥିଲେ । ତାଂକର ଗୋଟିଏ ବକ୍ତୃତା ମୋ ମନରେ ଏବେ ମଧ ଲେଖା ହେଲାପରି ରହିଚି । ସେଥରର ପୂର୍ବ ଢଂଗ ଟିକିଏ କହିଦିଏ । ସେଦିନ ଗୋପବଂଧୁ ଦାସଂକ ଗ୍ରାମ ସୁଆଂଡ଼ରୁ ଗୋପବଂଧୁ ଦାସ, ହରିଭାଇନା ଓ ମୁଁ ବାହାରି ଭାର୍ଗବୀ ତେଇଁ ବରାଳ ଗ୍ରାମ ବାଟେ ସତ୍ୟବାଦୀ ଆଡ଼କୁ ଆସୁଥିଲୁ । ବାଟରେ ଗୋଟିଏ ହଳ କରିବା ଲୋକ ଆଉ ଗୋଟିଏ ହଳକରିବା ଲୋକ ସଂଗରେ କଳି କରୁଥିଲା । କଳିରୁ ହାତ ଉଠାଉଠି

ପର୍ଯ୍ୟଂତ ଯାଇଥିଲା । ଆମେ କ୍ରମେ ବୁଝିପାରିଲୁ ସେ ଯୋଡ଼ିକ ଭାଇ । ଜମିର ହିଡ଼ ଘେନି କଳି କରୁଥିଲେ । ଗୋପବଂଧୁ ଦାସ ହଠାତ୍ ବସି ପଡ଼ିଲେ । ଆମେ କହିଲୁ, "ବେଳ ହୋଇଯିବ ଯେ ।" ସେ ଆମକୁ କହିଲେ—"Blessed are the Peace makers, କଳିଟାଏ ରାସ୍ତାରେ ଦେଖିଯିବା ନାଇ । ଯା ହେବାର ହେଉ ।" ତା'ପରେ ଆମେ ଘଂଟାଏକାଳ ସେଠାରେ ବସି ତାଂକ ବିବାଦର ସବୁକଥା ଶୁଣି ଶେଷକୁ ବିବାଦଟି ଛିଂଡ଼ାଇ ଦେଲୁ । ଆମେମାନେ ସତ୍ୟବାଦୀ ଆଡ଼କୁ ବାହାରିଲୁ । ସେଦିନ କୁମାରପୂର୍ଣ୍ଣମୀ । ହଠାତ୍ ମେଘ ଘୋଟି ଆସିଲା, ବାଟରେ ଅସରାଏ ବର୍ଷା ହୋଇଗଲା । ସତ୍ୟବାଦୀ ଡାକ୍ତରଖାନା ପାଖ ପୋଖରୀରେ ଆମେ ତିନିହେଁ ଯାଇ ସ୍ନାନ କରି ଓଦାଲୁଗା ପିଂଧି ଉପାସ ଭୋକରେ ବଡ଼ ବ୍ୟାକୁଳ ହୋଇ ବାହାରିଲୁ । ସତ୍ୟବାଦୀ ମଂଦିରରୁ ମହାପ୍ରସାଦ କିଣି ତାକୁ ନେଇଯାଇ ଗ୍ରାମରେ ଲୁଗାପାଲଟି ଖାଇଲୁ । ସେଇଦିନ ସନ୍ଧ୍ୟାରେ ପଂଡ଼ିତ ହରିହର ଦାସଂକ ଶ୍ରାଦ୍ଧସଭା ସେଇଦିନ ଗୋପବଂଧୁ ଦାସଂକର ସେ ସଭାରେ ବକ୍ତୃତା ମୁଁ କେବେ ଭୁଲିପାରିବି ନାଇ ।

ଏଇ କୁମାରପୂର୍ଣ୍ଣମୀ ସଭାରୁ ଠିକ୍ ସେଇଦିନ ସତ୍ୟବାଦୀ ସ୍କୁଲର ଆରଂଭ ହୋଇଥିଲା । ଏଇ ସଭାରୁ ବି ଶ୍ରୀରାମଚଂଦ୍ରପୁର ଗ୍ରାମ ପୁସ୍ତକାଗାରର ନାମ ହୋଇଥିଲା "ହରିହର ଲାଇବ୍ରେରୀ" । ସେଇ ନାମଟି ଏବେ ବି ଅଛି । ଏଇ ହରିହର ଦାସଂକ ମୃତ୍ୟୁ ୧୮୭୨ ମସିହାରେ । ମନେ ରଖିବାର ଅଛି—ଏବର ଆଚାର୍ଯ୍ୟ ହରିହର ଦାସ ମଧ ସେଇ ଶ୍ରୀରାମଚଂଦ୍ରପୁର ଗ୍ରାମର ଓ ମୋର ଜଣେ ଗ୍ୟାଂତି ଜକେଇଂକର ପୁଅ ।

ଏହିପରି ବହୁତ କ୍ଷୁଦ୍ର କ୍ଷୁଦ୍ର ଘଟଣା ମନେପଡୁଚି । ସେତେବେଳେ ଜୀବନକୁ ଆମେ କିପରି ଗଢ଼ି ନେଉଥିଲୁ ତା' ମନେପଡ଼ିଲେ ଭାବର ଆବେଗରେ ବେଳେ ବେଳେ ଲେଖିବାର ଇଚ୍ଛା ବଂଦ ହୋଇଯାଏ ।

## ୭୧। ସତ୍ୟବାଦୀର ପରିକଳ୍ପନା

ଆଉ ଦିନକର କଥା ବି କହିଦିଏ । ସମସ୍ତ କଳ୍ପନା, ଯୋଜନାଦିରେ ଥିଲେ ଆପଣେ । ଆପଣେ (ଆମେ ତିନିହେଁ ଗୋପବଂଧୁଂକୁ 'ଆପଣ' ବୋଲି ଡାକୁଥିଲୁ; ଦାସେ ଆପଣେ ବୋଲି ଚିହ୍ନାଇ ଦେଉଥିଲୁ) ମତେ ସବୁବେଳେ ଲୋଡ଼ଂତି । କିଭଳି କାର୍ଯ୍ୟ କେଉଁଠାରେ ଆରଂଭ କରିବା ଏ ବିଷୟରେ ବହୁଦିନ ବହୁରାତି ବିତିଯାଇଚି । ଶେଷକୁ ଠିକ୍ ହେଲା—ଗୋଟାଏ ବିଦ୍ୟାଳୟ କରିବା । ପୁନାର ଫରଗୁସନ କଲେଜ ସେତେବେଳେ ଆଖି ଆଗରେ ଥିଲା । ଇଂଲଂଡ଼ର ଇଟନ, ହାରୋ, ରୁଗ୍‌ବି ପରି ପବ୍‌ଲିକ୍ ସ୍କୁଲମାନଂକ କଥା ମଧ ଆଂଭେମାନେ ଶୁଣିଥିଲୁ । ବିଶେଷରେ ରୁଗ୍‌ବି ସଂପର୍କରେ ଏଡୁଇନ୍ ଆରନଲଡ଼ଂକ କଥା ଆମେ ଖୁବ୍ କଥାବାର୍ତ୍ତା ହେଉଥିଲୁ । ତାଂକ ଲାଇଟ୍ ଅଫ୍ ଏସିଆ (Light of Asia) ନାମକ ପୁସ୍ତକକୁ ସେତେବେଳକୁ ବଂଗ ନବୀନ ସେନ୍ 'ଅମିତାଭ' ନାମରେ ବଂଗଳାରେ ପ୍ରକାଶ କରିସାରିଥାଂତି । ଏସବୁ ଆମ ତରୁଣ ପ୍ରାଣରେ କି ପ୍ରଭାବ ପକାଇଥିଲା, ତାହାର ବିଶ୍ଳେଷଣ ଓ ଭାଷାରେ ପ୍ରକାଶ ଅସଂଭବ । ଏ ସମସ୍ତ ପ୍ରଭାବ ମୂଳରେ ଥିଲେ ଗୋପବଂଧୁ । ତାଂକର କିଂତୁ ପ୍ରଭାବର ପୀଠ ଥିଲେ ଓଡ଼ିଶାର ପୁଣ୍ୟଶ୍ଳୋକ ପଂଡ଼ିତ ହରିହର ଦାସ; ସେ ହେଉଚଂତି

ପୁରୀ ସଂସ୍କୃତ କଲେଜର ପ୍ରତିଷ୍ଠାତା । ଏହି କଲେଜକୁ ସେ ଯାହା କଳ୍ପନା କରିଥିଲେ ଓ ସମାଜ-ସଂସ୍କାର ଦିଗରେ ତାଂକର ଯେ ପ୍ରେରଣା ଓ ପୁରୋଦୃଷ୍ଟି ଥିଲା, କେଜାଣି କିପରି ଗୋପବଂଧୁ ସେଥିରେ ତନ୍ମୟ ଥିଲେ । ଆମେ କେହି ତାଂକୁ ଦେଖି ନାହୁଁ, ଗୋପବଂଧୁ ବି ଦେଖି ନଥିଲେ । ତାଂକର ମୃତ୍ୟୁ ୧୮୭୨ ଫେବୃୟାରୀ । ଅତି ଅକାଳରେ ସେ ଇହଧାମ ଛାଡ଼ିଥିଲେ; କିଂତୁ ତାଂକର ଆତ୍ମା ଯେପରିକି ଗୋପବଂଧୁଂକୁ ଚିରପ୍ରଭାବିତ କରିଥିଲା । ଫରଗୁସନ କଲେଜଠାରୁ ହାରୋ, ଇଟନ୍, ରୁଗ୍‌ବି ପର୍ଯ୍ୟଂତ ସମସ୍ତଂକୁ ଯେପରିକି ଆଂଭେମାନେ ସେଇ ହରିହରଂକ କଳ୍ପନା ଓ ଉଦାହରଣ ଭଳି ଦେଖୁଥିଲୁ । ଗୋପବଂଧୁ ତନ୍ମୟ ହୋଇ ହରିହରଂକ କଥା କହଂତି । ହରିହରଂକୁ ଘେନି ଗୋପବଂଧୁ ସେକାଳ 'ମୁକୁର'ରେ ଗୋଟିଏ କବିତା ଲେଖିଥିଲେ । ସତ୍ୟବାଦୀ ବିଦ୍ୟାଳୟ ପୂର୍ବରୁ ସେ କବିତାଟି ଲେଖା ହୋଇଥିଲା । ସେ 'ମୁକୁର' ମୋ ପାଖରେ ନାଇ । ସେଥିରୁ ଯୋଡ଼ିଏ ଧାଡ଼ି ମୋର ସବୁବେଳେ ମନେଅଛି—

★ "ମୂକ ହୋଇକରି ଆଜିଯାଏଁ ହରି
ଯେବେ ରହିଥାଂତ ବଂଚି !
ଓଡ଼ିଆଂକ ହାତେ ଦେଇଥାଂତ ସତେ
ଉନ୍ନତି-ଭଂଡ଼ାର କଂଚି ।"

କବିତାର ଶେଷ ଧାଡ଼ିଟି ହେଉଚି—

ଆସ ହରିହର ପଂଡ଼ିତ ପ୍ରବର
ସମାଜ ସଂସ୍କାର କର ।

୧୯୦୩-୧୯୦୪ରେ ତିନିହେଁ କଟକ କଲେଜ ହଷ୍ଟେଲରେ ଥିଲୁ । ଗୋପବଂଧୁ ପଢୁଥିଲେ ଓକିଲାତି, ହରିଭାଇନା ପଢୁଥିଲେ ଏଫ୍.ଏ. ଓ ମୁଁ ପଢୁଥିଲି ଏନ୍‌ଟ୍ରାନ୍‌ସ କ୍ଲାସମାନଂକରେ । ସେତିକିବେଳକୁ ମଧେ ମଧେ ମାଟ୍‌ସିନି, ଗାରିବାଲ୍‌ଡ଼ି ପ୍ରଭୃତିଂକ କଥା ମଧ ପଡ଼ିଯାଉଥିଲା ।

ମନେଅଛି ୧୯୦୪ ସାଲର 'ପ୍ରାର୍ଥନା' ପୁସ୍ତିକାର କଥା । ସେତେବେଳେ ଓଡ଼ିଶା ବୋଲି ପ୍ରଦେଶ ନଥିଲା । ଓଡ଼ିଆର ଭାଷା ବା ସାହିତ୍ୟ ଅଛି ବୋଲି ପ୍ରତିବେଶୀଏ ଜାଣି ନଥିଲେ, ଜାଣିଲେ ବା ସ୍ୱୀକାର କରୁ ନଥିଲେ । ଗୋପବଂଧୁ ବୁଝୁଥିଲେ, ଭାଷା ଓ ସାହିତ୍ୟ ବିନା ଜାତିର ବିକାଶ ଅସଂଭବ । ମନେଅଛି, ଏ ଘଟଣାର କେତେବର୍ଷ ପରେ ଦିନେ କିପରି

★ ହରିହର ମରିବାର କିଛିଦିନ ପୂର୍ବରୁ ମୂକ ଓ ପାଗଳ ହୋଇଯାଇଥିଲେ ।

('ମୋ ସଂସ୍କୃତ ଓ ସଂସ୍କୃତି'ରେ ଦେଖ)

ତା' ସାଂଗେ ସେକାଳରେ ଓଡ଼ିଆ ସାହିତ୍ୟ ଓ କଲିକତା ବିଶ୍ୱବିଦ୍ୟାଳୟ ଏବଂ ବଂଗାଳୀଂକର ତା' ପ୍ରତି ଅନାସ୍ଥା, ସମାଲୋଚନାର ଅଭାବ, କାବ୍ୟ ନାଟକାଦି ବୋଲି ଯାହା ଲେଖା ହେଉଥିଲା, ସେଥିରେ ଗୌଣତ୍ୱ ମନୋବୃତ୍ତି ସଂଗେ ଅନୁକୃତି ଓ ପ୍ରାଣହୀନତା ସେ ସବୁର ଭବିଷ୍ୟତ୍, ତହିଁ ସଂଗେ ଦେଶ ପ୍ରଦେଶରେ ଭବିଷ୍ୟତ୍ ପ୍ରଭୃତି କଥା ଅତି ଅତର୍କିତ ଭାବରେ ବରାବର ଚାଲୁଥିଲା ।

କାଂଦି କାଂଦି ଆସି ସେ କହି ପକାଇଥିଲେ, ''ନୀଳକଂଠ, ଖରସୁଆଁରୁ ଓଡ଼ିଆ ଉଠିଗଲା ।'' ମାତ୍ର ମୁଁ କହୁଥିଲି ୧୯୦୪ ମସିହାର ଉତ୍କଳ ସମ୍ମିଳନୀ କଥା । ସଂବଲପୁର ସେତେବେଳକୁ ଓଡ଼ିଶାକୁ ଆସି ନଥାଏ । ଗୋଟିଏ ପ୍ରଶ୍ନ ଉଠିଲା—ସଂବଲପୁର ସହିତ ସମସ୍ତ ଓଡ଼ିଶା ହୁଏତ ଗଂଜାମକୁ ଘେନି ଓଡ଼ିଶା ମଧ୍ୟପ୍ରଦେଶରେ ମିଶିବ । ଗୋପବଂଧୁ ସେଇ ମତ ଧଇଲେ । ଏ ମତରେ ସେ ପ୍ରଭାବିତ କରି ସାଥି କରିଥିଲେ, ସେକାଳର ବଡ଼ ଓକିଲ ସ୍ୱର୍ଗତ ଗୋକୁଳାନଂଦ ଚଉଧୁରୀ ଓ ପାଦ୍ରିସାହେବ ଢର୍ଙ୍କ ହାଓ୍ୱେଲସ୍‌ଂକୁ । ସୁନାମଧନ୍ୟ ମଧୁସୂଦନ ଦାସ ଥିଲେ ଏ ମତର ବିରୋଧୀ । ତାଂକ ମତ ଥିଲା—ସଂବଲପୁର ସୁଦ୍ଧା ବଂଗଳାକୁ ଆସୁ ଓ ସମସ୍ତେ ବଂଗଦେଶରେ ରହଂତୁ । ଅବଶ୍ୟ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶଟିଏ ହେବାକଥା ସେତେବେଳେ କଳ୍ପନାରେ ଥିଲା କି ନା ସଂଦେହ ।

ମାତ୍ର ମୁଁ କହୁଥିଲି ଏ ସଂପର୍କରେ ଗୋପବଂଧୁଂକର କ୍ରିୟା ଓ ସେଇ କ୍ରିୟାର ପ୍ରଭାବ । ଗୋପବଂଧୁ ସେକାଳର କଲେଜ ହଷ୍ଟେଲରେ ଥାଂତି । ବରଗଡ଼ର ସ୍ୱର୍ଗତ ଓକିଲ ଶ୍ରୀ ବାଲୁଂକେଶ୍ୱର ମିଶ୍ର ସେତେବେଳେ ହଷ୍ଟେଲରେ ରହି ବି.ଏଲ. ପଢୁଥାଂତି । ବାଲୁଂକେଶ୍ୱରଂକର ତଥା ତତ୍କାଳୀନ କଟକର ସଂବଲପୁର ଛାତ୍ରମାନଂକର ଗୋପବଂଧୁବାବୁଂକ ମତ ସଂଗେ ମତ ଏକ ହୋଇଗଲା । ବାଲୁଂକେଶ୍ୱର ବାବୁ ଆସୁଥିବା ଉତ୍କଳ ସମ୍ମିଳନୀରେ ପ୍ରଚାର କରିବା ପାଇଁ ଗୋଟିଏ ପୁସ୍ତିକା ଲେଖିଲେ ଓ ଗୋପବଂଧୁବାବୁଂକୁ ଦେଖାଇଲେ । ଗୋପବଂଧୁ ଦାସ ଥରେ ଦୁଇଥର ସଂଶୋଧନ କଲେ—ତା'ପରେ ଘଟିଲା ଅଦ୍ଭୁତ କଥା । ଯୁବକ ଗୋପବଂଧୁ ଖାଲି ଖଟ ଉପରେ ମୁହଁ ମାଡ଼ି ପଡ଼ିଥାଂତି, ନିଦ ନଥାଏ, କିଂତୁ କାହାରି ସଂଗେ ଆଳାପ କରିବାର ମଧ୍ୟ ତାଂକୁ ଦେଖାଯାଏ ନାଇ । ଡାକିଲେ ଚାହାଂତି ଅନ୍ୟମନସ୍କ ଭାବରେ, ଆଖି ଲାଲ ଦିଶୁଥାଏ । ତିନିଦିନ ପରେ ଉଠିଲେ । ଲେଖିଦେଇ ଗଲେ ଯାହା ସେଉଟି 'ପ୍ରାର୍ଥନା' ନାମରେ ପୁସ୍ତିକାଗାରରେ ଛପା ହେଲା । ଆମେ ପିଲାଯାକ ତାକୁ ଦ୍ୱିତୀୟ ବର୍ଷ ସମ୍ମିଳନୀ କ୍ୟାଂପରେ ବାଂଟିଥିଲୁ । ସେ ପୁସ୍ତିକାର ଯୁକ୍ତି ଏପରି ଅକାଟ୍ୟ ଥିଲା ଯେ ସେଥିରେ ଗଂଜାମ ସମେତ ସମସ୍ତ ପ୍ରତିନିଧିମାନେ ତନ୍ମୟ ହୋଇଯାଇଥିଲେ । ଏପରିକି ମଧୁବାବୁ ନିଜକଥା ଶୁଣାଇ ବୁଝାଇବାରେ ଶଂକିତ ହୋଇଥିଲେ, କିଂତୁ ଏସବୁ ଭିତରେ ମୋର କହିବାର କଥା ସେଇ ଗୋପବଂଧୁଂକ ଯୋଗସାଧନା ଓ କଳ୍ପନାର କ୍ରିୟାରେ ତନ୍ମୟତା । ତତ୍‌କାଳୀନ ସମସ୍ତ ସଂଗୀ ସହଚରଂକୁ ତାହା କି ଭାବରେ ପ୍ରଭାବିତ କରୁଥିଲା—ତାହା ଅନୁମେୟ ।

## ୨୨। ସ୍ଥାନ ବିଚାର

ତା'ପରେ ସ୍କୁଲକଥା । ଗୋଟିଏ ସ୍କୁଲ କରିବା ଠିକ୍ ହେଲା । ତତ୍କାଳୀନ ଗଡ଼ଜାତ ଓ ମୋଗଲବଂଦୀ—କଳାହାଂଡ଼ିଠାରୁ ନୀଳଗିରି ମୟୂରଭଂଜ ଓ ସଂବଲପୁର ଠାରୁ ପୁରୀ ଓ ଗଂଜାମ ସର୍ବତ୍ର ସ୍ଥାନ ଖୋଜିବାରେ ଆମେ ଲାଗିଗଲୁ । ଶେଷକୁ ସ୍ୱର୍ଗତ ମଧୁସୂଦନ ରାଓ ଦିନେ କଥାବର୍ତ୍ତା ମଧ୍ୟରେ କହିପକାଇଲେ, ସତ୍ୟବାଦୀର ବଉଳ ଛୁରୀଅନା ବନ ପରି ସ୍ଥାନ ଏଥିପାଇଁ ଆଉ ନାଇ । ଠିକ୍ ହୋଇଗଲା ସେଇଠାରେ ସ୍କୁଲ କରିବାକୁ ହେବ । କର୍ମରେ ବାଧା କ'ଣ ସେ ପ୍ରତି ଦୃଷ୍ଟି ଯିବାଭଳି ଅବସ୍ଥା ଆମର ଆଉ ନଥିଲା । ଗୋପବଂଧୁଂକ ପ୍ରେରଣାରେ ସେତେବେଳେ ସେ ସବୁର ସ୍ଥାନ ନଥିଲା । ଶଗଡ଼େ ଇଟା ଧରି ସତ୍ୟବାଦୀ

ମଂଦିର ପଛଆଡ଼େ ଦୁହେଁ ଦିନେ ପହଂଚିଗଲୁ, ଗୋଟିଏ ମାପ ଫିତା ଧରି । କ୍ଷୁଦ୍ର କ୍ଷୁଦ୍ର କୁରୀଅନା ଗଛର ଘନଜଂଗଲ । ସିଧାକରି ଫିତା ପକାଇବାର ସ୍ଥାନ ନଥିଲା । ଇଟା ରଖିବୁ କେଉଁଠାରେ ଜାଣିହେଲା ନାଇ, ମାତ୍ର ତାହାଇ ହେଉଚି ବିଶାଳ ସତ୍ୟବାଦୀ ସ୍କୁଲର ଭୌତିକ ପ୍ରାରଂଭ ।

ମଧୁବାବୁଂକ ଥାନ ବାଛିବାର ମୂଳରେ ଥିଲା ପଂଡ଼ିତ ହରିହର ଦାସଂକ ସ୍ମୃତି । ମଧୁସୂଦନ ରାଓଂକ ପ୍ରାଣରେ ହରିହରଂକର ପୁଣ୍ୟ ପ୍ରଭାବ ସାକ୍ଷାତ ଭାବରେ ପଡ଼ିଥିଲା । ସେ ବୁଝିଥିଲେ, ସବୁ ସଂସ୍କାର ଓ ବିକାଶ ମୂଳରେ ନୂତନ ଶିକ୍ଷା ପୁରୀର ସ୍ୱର୍ଗତ ମୁକ୍ତିଆର ରାମଚଂଦ୍ର ଦାସ ସେଇ ହରିହରଂକ ସ୍ମୃତିରେ ସାରାଜୀବନ ଉଦ୍‌ବୃଦ୍ଧ ଥିଲେ । ଗୋପବଂଧୁଂକର ସେ ରାମଚଂଦ୍ର ଦାସ ଥିଲେ ଯେପରିକି ଦୀକ୍ଷାଗୁରୁ । ମୁଁ ତାଂକୁ ଅଳ୍ପଦିନ ଦେଖିଚି । ସାମାନ୍ୟ କଥାବାର୍ତ୍ତାରେ ଅଲକ୍ଷିତ ଭାବରେ ନିଜର ଉନ୍ନତ ମତ ଅତି ରକ୍ଷଣଶୀଳଂକ ମଧ୍ୟରେ ପ୍ରଚାର କରିବାର ମନୀଷା ଓ କୌଶଳ ତାଂକଠାରେ ଯାହା ମୁଁ ଦେଖିଚି, ଅନ୍ୟତ୍ର ତାହା ଦେଖିନାଇ । ବିରୋଧରେ କହିବା ଲୋକର କଥାକୁ ଆଦୌ ପ୍ରତିବାଦ ନକରି ଶେଷରେ ତାକୁ ସେ ମନାଇ ଛାଡ଼ି ଦେଉଥିଲେ—ଘଂଟାକ କଥାବାର୍ତ୍ତା ପରେ । ତାଂକର ସମସ୍ତ ଚିଂତା ଓ କାର୍ଯ୍ୟ ତ୍ୟାଗପୂତ ଥିଲା । ସେଇ ପ୍ରଚୁର ପ୍ରାଣର ପ୍ରଭାବ ଗୋପବଂଧୁଂକ ଠାରେ ଆବାଲ୍ୟରୁ ପଡ଼ିଥିଲା ଓ ସେଇ ଭାବରେ ଗୋପବଂଧୁ ଆମ ଗ୍ରାମରେ ହରିହର ସ୍ମୃତି ପ୍ରତି କୁମାରପୂର୍ଣ୍ଣମୀରେ ପାଳନ କରୁଥିଲେ । ସେଇ ସଭାରେ ତାଂକ ବକ୍ତୃତା ଶୁଣି ଆମେ ମୁଗ୍ଧ ହୋଇ ଯାଉଥିଲୁ । ମଫସଲର ବୁଢ଼ା ବୁଢ଼ା ରକ୍ଷଣଶୀଳ ଲୋକେ ଆତ୍ମବିସ୍ମୃତ ହୋଇ ଯାଉଥିଲେ । ସେଇ ହରିହରଂକ ସ୍କୁଲ ପରଂପରାରେ ପ୍ରତିଷ୍ଠିତ ମଧ୍ୟ ଭର୍ଣ୍ଣାକ୍ୟୁଲର ସ୍କୁଲ ଓ ତାହାପରେ କେତେବର୍ଷ ମଧ୍ୟଇଂରେଜୀ ସ୍କୁଲର ଉଦ୍ୟମରେ ଚାଲିଥିଲା । ଗୋପବଂଧୁଂକ ପ୍ରଭାବରେ ପଡ଼ି ସମସ୍ତେ କହିଲେ—ହରିହରଂକ ସ୍ମୃତି-ପୂତ ଏ ବିଦ୍ୟାଳୟଟି ନାମତଃ 'ହରିହର ଲାଇବ୍ରେରୀ' ଏହା ସେଇ ସ୍ମୃତିର ସଂକେତ ।

## ୭୩। ସତ୍ୟବାଦୀ ବିଦ୍ୟାଳୟର ଆରଂଭ

ତାହାପରେ ହେଲା ସତ୍ୟବାଦୀ ବିଦ୍ୟାଳୟର ଆରଂଭ । ଏଥିପାଇଁ ଶିକ୍ଷକ, ଛାତ୍ର, ବେଂଚ, ଚଉକି, ଲାଇବ୍ରେରୀ ସବୁ ଉଠି ଆସିଥିଲା ଶ୍ରୀରାମଚଂଦ୍ରପୁରରୁ । ଆଜି ମନେ ପଡ଼ିଯାଉଚି, ଟିକିଏ କହିଦିଏ, ସ୍କୁଲଟିକୁ ଲାଇବ୍ରେରୀଠାରୁ ପେନ୍‌ସିଲକଟା ଛୁରୀଟି ପର୍ଯ୍ୟଂତ ସଂଗେ ଘେନି ସତ୍ୟବାଦୀ ସ୍କୁଲ କରିବାକୁ ସଂକଳ୍ପ କରି ଆସିଥିଲେ ସେଇ ମାଇନର ସ୍କୁଲ ହେବାକୁ ଯାଉଥିବା ମିଡ଼ିଲ ଭର୍ଣ୍ଣାକ୍ୟୁଲର ସ୍କୁଲର ତତ୍କାଳୀନ ହେଡ଼ ପଂଡ଼ିତ ସେଇ ଶ୍ରୀରାମଚଂଦ୍ର-ପୁର ନିବାସୀ ସ୍ୱର୍ଗତ ପଂଡ଼ିତ ଶ୍ରୀ ମଧୁସୂଦନ ମିଶ୍ର । ସେ ମୋର ମଧ୍ୟ ବାଲ୍ୟଗୁରୁ । 'ବଡ଼ ଆପଣେ' ବୋଲି ଆମେ ସମସ୍ତେ ତାଂକୁ ଡାକୁଥିଲୁ । ତାଂକର ଶିକ୍ଷା ବଳରେ ମୁଁ ଭର୍ଣ୍ଣାକ୍ୟୁଲର ବୃତ୍ତି ପାଇ ପୁରୀ ଜିଲ୍ଲାସ୍କୁଲକୁ ପଢ଼ିବାକୁ ଯାଇଥିଲି । ପରିଚୟ ପାଇଁ ମଧ୍ୟ କହିଦିଏ, ପ୍ରଚାରକ ଅନଂତ ମିଶ୍ରଂକର ପାଂଚ ଭାଇରେ ସେ ସର୍ବଜ୍ୟେଷ୍ଠ ଓ ପ୍ରଚାରକ ନିଜେ ସର୍ବକନିଷ୍ଠ । ପଂଡ଼ିତ ମଧୁସୂଦନଂକ ପରି ଆମ କର୍ମରେ ଐକାଂତିକ ଆଂତରିକତା ଓ ଆମ ପୁରୋଦୃଷ୍ଟିରେ ଏକପ୍ରାଣତା ମୁଁ ଆଉ ଦେଖିଚି ବୋଲି ମନେ ହେଉନାଇଁ । ସ୍ୱୟଂ ଗୋପବଂଧୁ ମଧ୍ୟ ସେଥିପାଇଁ ତାଂକୁ

ଗଭୀର ଆଦର ଓ ଭକ୍ତି କରୁଥିଲେ । ଏଇ ପଂଡ଼ିତ ମଧୁସୂଦନ ମଧ ସ୍ୱର୍ଗତ ହରିହରଂକ ସ୍ମୃତିରେ ନିଜ ପ୍ରାଣକୁ ପୂର୍ଣ୍ଣ କରି ରଖିଥିଲେ । ମୁଁ ତାଂକର ଶିଷ୍ୟ; ତଥାପି ସତ୍ୟବାଦୀ ବିଦ୍ୟାଳୟରେ ସେଥିପାଇଁ ତାଂକର କେବେ କୌଣସି ନିଷ୍ଠା ବା ଶୃଙ୍ଖଳାରେ ଟିକିଏ ହେଲେ ଶିଥିଳତା ମୁଁ ଦେଖିନାହିଁ । ଦିନକ କଥା ଆଜି ମନେ ପଡ଼ିଗଲେ ପ୍ରାଣର ପୁରୁଣା ଆଘାତ ନୂଆ ହୋଇ ଉଠୁଚି । ବଡ଼ ଆପଣେ ବୃଦ୍ଧ ହୋଇ ଆସିଥିଲେ, ଭୋଜନପରେ ଗ୍ରାମରୁ ଆସଂତି ଅଧମାଇଲିରୁ ବେଶି । ଶ୍ରେଣୀରେ ପଢ଼ାଇଲାବେଳେ ଥରେ ଦୁଇଥର ଘୁମାଇବାର ଦେଖିଲି । କିଛି ନକହି ବସିବା ପାଇଁ ହାତଥିବା ଚଉକିଟି କାଢ଼ି ଆଣି ଗୋଟିଏ ଟୁଲ୍ ଦେବାପାଇଁ ତହିଁ ଆରଦିନଠାରୁ ବ୍ୟବସ୍ଥା କରିଦେଲି । ସେ କିଂତୁ ନିର୍ବିକଳ୍ପ-ଟୁଲ୍‌ରେ ଆସି ବସିଲେ ପଢ଼ାଇଲେ । ଯାହାହେଉ, ମୁଁ ତ ମନୁଷ୍ୟ; ମୋ ପ୍ରାଣକୁ ବାଧିଲା । ଆଜି ମଧ ମନେପଡ଼ିଲେ ମୋତେ କାଂଦମାଡ଼େ, କିଂତୁ ସ୍କୁଲର କର୍ମନିଷ୍ଠାରେ ମୋର ଏ ରୁକ୍ଷତା ପୁଣ୍ୟକର୍ମନିଷ୍ଠ ପଂଡ଼ିତଂକ ପ୍ରାଣରେ ବରଂ ଆହ୍ଲାଦ ଜନ୍ମାଇଥିଲା । ଏଇପରି ପୁଣ୍ୟଶ୍ଳୋକ ପଂଡ଼ିତ ହରିହରଂକ ପବିତ୍ର ସ୍ମୃତିପୀଠରେ ଗୋପବଂଧୁଂକର କଳ୍ପନା ଓ ଯୋଜନାର ଶରୀର ଧରି ଠିଆ ହୋଇଥିଲା, ସତ୍ୟବାଦୀ ବିଦ୍ୟାଳୟ ବୋଧହୁଏ ୧୯୦୯ ମସିହା କୁମାରପୂର୍ଣ୍ଣମୀ ଦିନ । ମୁଁ ବି.ଏ. ପାସ୍ କରିସାରି ଏ ବିଦ୍ୟାଳୟର 'ଶୁଭଦିଆ'ରେ ଯୋଗଦେଇ, ଏଇ କଳ୍ପନାର ଉପଯୁକ୍ତ ହେବାପାଇଁ ଏକା ଏମ୍.ଏ. ପାସ୍‌କରି ଆସିବା ଲାଗି କଲିକତା ଯାଇଥିଲି ।

## ୭୪। ସତ୍ୟବାଦୀ ବିଦ୍ୟାଳୟରେ ମୋର ଯୋଗଦାନ

୧୯୧୧ ଅକ୍ଟୋବରରେ ଯୋଗ ଦେଲି ଓ ୧୯୧୨ ଆଦ୍ୟରୁ ହାଇସ୍କୁଲ କରିବା ପାଇଁ ଉଦ୍ୟମ ଆରଂଭ ହେଲା । ଯେଉଁ ସୂଚନା ଦେଲି ତାହା ସ୍ମୃତିପରଂପରାର ବିଧୌତ ଘଟଣାର ମଞ୍ଜାମାତ୍ର । ଘଟଣା ସବୁ ମୋ ମନେ ନାଇ କି ମୁଁ ଲେଖିରଖି ନାଇ । ଦେଖିଲି, ଚଂଦ୍ରଶେଖର ମିଶ୍ର ନିଜ ଦୈନଂଦିନ ଘଟଣାର ବିବରଣୀରେ 'ସତ୍ୟବାଦୀରେ ସାତବର୍ଷ' ବୋଲି ଖଂଡ଼େ ପୁସ୍ତକ ଲେଖିଚଂତି । ସେ ଯାହା ପୁସ୍ତକରେ ପ୍ରକାଶ କରିଚଂତି, ସେ ସବୁରେ ଲେଖକର ଭାବାବେଶ ଓ ଅତିରଂଜନ ନାହିଁ । ସେକାଳେ ସେ ଯାହା ଲେଖି ରଖିଥିଲେ ବସ୍ତୁତଃ ତାହାହିଁ ପ୍ରକାଶ କରିଚଂତି । ଏକଥା ମୁଁ ତାଂକ ଦୈନିକ ବିବରଣୀ ସଂଗେ ପୁସ୍ତକର ଅଂଶ ମିଳାଇ ଦେଖିଚି; ଏଣୁ ଏ ପୁସ୍ତକଟି ଉପାଦେୟ ।

ସାମାନ୍ୟ ସ୍ମୃତି ଉପରେ ନିର୍ଭର କରି ମୋ ଭଳି ଲୋକ 'ସତ୍ୟବାଦୀ ସ୍କୁଲ' କଥା ଲେଖିବସିଲେ ହୁଏତ ଠିକ୍ ହେବନାହିଁ । ପ୍ରାଣର ପ୍ରତିଷ୍ଠିତ ଭାବରାଶି ସ୍ମୃତିରୂପ ମଞ୍ଜାର ଚାରିପଟେ ବେଢ଼ି ତାଂକୁ ଘୋଡ଼ାଇ ବା ଭଳାଇ ଦେବାର ଶଂକା ଖୁବ୍ ଅଛି । ସତ୍ୟବାଦୀ ସ୍କୁଲ ମୋ ପ୍ରତି ଏବେ ବି ଇତିହାସ ନୁହେଁ ।

## ୭୫। ସତ୍ୟବାଦୀରେ ଅସ୍ତସ୍ମୃତିରେ ଦୁଇଟି ଉଜ୍ଜ୍ୱଳ ରେଖା

ଯୋଡ଼ିଏ ଲୋକଂକ କଥା ଟିକିଏ ସୂଚନା ଦେଇ ସତ୍ୟବାଦୀର ପ୍ରଭାବ ପୀଠ ପ୍ରତି ଦୃଷ୍ଟି ଆକର୍ଷଣ କରିବାକୁ ମନେହେଉଚି । ତହିଁମଧରୁ ଗୋଟିଏ ଅନଂତ ମିଶ୍ର, ତାଂକୁ

କହୁଥିଲେ—ପ୍ରଚାରକ ଅନଂତ ମିଶ୍ର । ଏପରି ନିଃସଙ୍ଗ, ନିରଳସ, ପରପ୍ରାଣ ଓ କର୍ମସର୍ବସ୍ୱ ବ୍ୟକ୍ତି ବଡ଼ କମ୍ ଦେଖାଯାଂତି । ବିଦ୍ୟା ତାଂକର ବିଶେଷ ନଥିଲା; କିଂତୁ ସେ ବିଚାର ତାଂକ ସଂବଂଧରେ କରଣୀୟ ନୁହେଁ । ତାଂକର ବ୍ୟକ୍ତିତ୍ୱ ଥିଲା ସ୍ୱତନ୍ତ୍ର । ସେ ଯଥାର୍ଥରେ ମୁଠାଏ ଭାତ ଖାଇବାକୁ ନପାଇ ମରିଚଂତି । ମୃତ୍ୟୁଶଯ୍ୟାରେ ହୁଏତ ତାଂକ ସଂଗୀସହଚର କେହି ପାଖରେ ନଥିଲେ; କିଂତୁ ମଲାବେଳେ ଦେଶର ଭବିଷ୍ୟତ ଛଡ଼ା ଓ ସଂଗୀମାନଂକ କଳ୍ପନା ଓ କ୍ରିୟା ଯୋଜନା ଛଡ଼ା ଆଉ କିଛି ସେ ଚିଂତା କରୁ ନଥିଲେ । ସେ ସତ୍ୟବାଦୀର କିଛି ନଥାଇ ମଧ ସବୁ ଥିଲେ । ଗୋପବଂଧୁ ନିଜର ସମ୍ମିଳନୀମୂଳକ ଦେଶ କର୍ମରେ ତାଂକୁ ପାଇ ନିଜକୁ ବଡ଼ କୃତାର୍ଥ ମଣୁଥିଲେ ।

## ୭୬। ରାମଚଂଦ୍ର ରଥ

ଆଉ ଜଣେ ସ୍ୱର୍ଗତ ରାମଚଂଦ୍ର ରଥ । ବିଦ୍ୟା ତାଙ୍କର ଏନ୍‌ଟ୍ରାନ୍‌ସ ପାସ୍ । ସେ ଆମ ସମାଜର ଶ୍ରେଷ୍ଠ ସାମଂତ (କୁଳୀନ ବ୍ରାହ୍ମଣ); ବଡ଼ ଗରିବ ଥିଲେ । ଏନ୍‌ଟ୍ରାନ୍‌ସ ପଢ଼ିଲାବେଳେ ଗୋପବଂଧୁଂକୁ ଦିନେ କଥାପ୍ରସଂଗରେ ନିଜର ଧନାଭାବ କଥା କହିବାରୁ ଗୋପବଂଧୁ କହିଲେ, 'ମାଗ ନାହିଁ', ଅର୍ଜିକରି ପଢ଼ । 'କଣ କିପରି ଅର୍ଜିବି ?' କହିବାରୁ ଗୋପବଂଧୁ ହଠାତ୍ କହିଲେ, ''ଷ୍ଟେସନରୁ କ'ଣ ବୋଝ ବୋହି ପାରିବ ନାହିଁ ?'' ତା'ପରେ ସେଇ କାମ ସେ କଲେ; ସେଥିରେ ଚଳିଲେ ଓ ପାଠ ପଢ଼ିଲେ, ଦିନେ ଛଅପଇସା ମଜୁରି ଲାଗି ଗୋଟିଏ ଶୁଖୁଆପଟ ମୁଂଡ଼ରେ ଷ୍ଟେସନରୁ ବୋହି ପୁରୀ ସହରକୁ ଆଣିବାର ମୁଁ ନିଜେ ଦେଖିଚି । ସେ ଏନ୍‌ଟ୍ରାନ୍‌ସ ପାସ୍ କରି ମାସକୁ ୧୦ଟଂକାରେ ପୁରୀ କଚିରିରେ ନିଯୁକ୍ତ ହେଲେ । ତାପରେ ତାଂକୁ ପେସ୍କାରି କାମ ଖୋର୍ଦ୍ଧାରେ ମିଳିଲା । ଦରମା ମାସକୁ ୩୫ ଟଂକା । ମୁଁ ଆସି ସତ୍ୟବାଦୀରେ ଯୋଗଦେଲି ।

ସେତେବେଳକୁ ଆଉ କେହି ନାହିଁ । ପ୍ରଥମରେ ଅନେକ ଦିନଯାଏଁ ମୁଁ ଏଇପରି ଏକା ଥିଲି । ସେଥିରେ ରାମଚଂଦ୍ର ହେଲେ ମୋର ଏକମାତ୍ର ସଂଗୀ । ସେପରି ସଂଗୀ ଆଉ କେବେ ପାଇଚି ବା ପାଇବି ବୋଲି ମନେ ହେଉନାହିଁ । ତାଂକ ପୁଣ୍ୟ ପ୍ରଭାବ ଓ ପ୍ରାଣ ପ୍ରାଚୁର୍ଯ୍ୟ ମୋ ପକ୍ଷରେ ଭୁଲିବାର ନୁହେଁ । ସ୍କୁଲରେ ଯୋଗଦେଇ ସାରି ମୁଁ ତାଂକଠାରୁ ଖୋର୍ଦ୍ଧାରୁ ଚିଠି ପାଇଲି—ସେ ସତ୍ୟବାଦୀ ବିଦ୍ୟାଳୟରେ ଯୋଗଦେବାକୁ ଲୋଡ଼ଂତି । ସେତେବେଳେ ବହୁକଷ୍ଟରେ ମୋର ମାସିକ ଟଂକା ୩୦ଟି ଯୋଗାଡ଼ ହେଉଥିଲା, ଆଉ ଶିକ୍ଷକ ବି ହଠାତ୍ ଦରକାର ନଥିଲେ । ମୁଁ ସବୁକଥା ଜଣାଇ ଅପେକ୍ଷା କରିବାକୁ ଲେଖିଥିଲି । ଅଳ୍ପଦିନ ପରେ ଦିନେ ସେ ଆସି ସତ୍ୟବାଦୀରେ ହାଜର, କହିଲେ, ''ମୁଁ ରହିବି ।'' ମୁଁ ବିସ୍ମିତ ହେଲି । ସେ କହିଲେ, ''ଏ ପେସ୍କାରି କାମ ବଡ଼ ଖରାପ, ଏଥିରେ ଆଉ ଦିନାକେତେ ରହିଲେ, ସତ୍ୟବାଦୀରେ ଆପଣଂକ ସଂଗେ ରହିବା ପାଇଁ ମୋର ଆଉ କିଛି ମାତ୍ର ଯୋଗ୍ୟତା ରହିବ ନାହିଁ । ଦିନେ ମତେ ଜଣେ (ବିଶିଷ୍ଟ ଓ ପରିଚିତ ଲୋକଂକ ନାମ ସେ କହିଲେ) ଟଂକାଟିଏ ଲାଂଚ ଯାଚିଲେ; ମୁଁ ନେଲି ନାହିଁ । ସେ ମୋତେ ବହୁତ ବୁଝାଇଲେ, କହିଲେ, ଏପରି ନିଅଂତି, ନନେଲେ ହେବନାହିଁ । ଲୋକମାନେ କହିବେ ତୁମେ ତାଂକ କାମ ଠିକ୍

କରୁନାହଁ—ଇତ୍ୟାଦି ମୁରବିପଣିଆ ଓ ଯୁକ୍ତି ଶୁଣି ମୁଁ ଦୁଃଖିତ ଓ ଲଜ୍ଜିତ ହେଲି । ତାଂକୁ ସେଦିନ ମନାକଲି । ଦୁଇ ତିନିଦିନ ପରେ ସେଇପରି ଆଉ ଗୋଟିଏ କାର୍ଯ୍ୟରେ ସେ ମୋତେ ଦୁଇଟଂକା ଲାଂଚ ଯାଚିଲେ । ବହୁତ ଲୋଭାଇଲେ, ବୁଝାଇଲେ; ନିରାଶ ହୋଇ ମଧ ଏ ଉଦ୍ୟମ ଛାଡ଼ିବେ ନାହିଁ ବୋଲି କହିଲେ । ରାତିରେ ମୁଁ ଶୋଇନାଇ । ଦେଖିଲି—ଚରିତ୍ର ଖରାପ ହୋଇଯିବ । ତହିଁ ଆରଦିନ ଇସ୍ତଫା ଦେଇଦେଲି । ମତେ ଟଂକା ଦିଅଂତୁ ନଦିଅଂତୁ—ମୁଁ ଏଠି ରହିବି ।'' ତାଂକ ଘରେ କୌଣସି ସଂବଳ ନଥିଲା; ତେଣୁ ଯେ କୌଣସିମତେ ୬ଟଂକା ଲେଖାଏଁ ମାସକୁ ତାଂକୁ ଦେବାର ସ୍ଥିର ହେଲା ।

## ୭୭। ନିଶ ଆଂଦୋଳନ

ସେତିକିବେଳକୁ ନିଶ ଆଂଦୋଳନ ନାମରେ ମୋ ଉପରେ ତଥା ସତ୍ୟବାଦୀ ଅନୁଷ୍ଠାନ ଉପରେ ସାମାଜିକ ଅତ୍ୟାଚାର । ଅବଶ୍ୟ 'ନିଶ' ସଂଗେ ସେ ସାମାଜିକ ଆଂଦୋଳନର ବିଶେଷ କିଛି ତାତ୍ତ୍ୱିକ ବା ନୈତିକ ସଂପର୍କ ନଥିଲା । ମୁଁ କଲିକତାରେ ପଢ଼ିବାବେଳୁ ଦାଢ଼ି ଖିଅର ହୋଇ ଖାଲି ନିଶ ରଖିଥିଲି । ପଂଡ଼ିତମାନେ ମୋର ଲୋକବିରୁଦ୍ଧ କ୍ରିୟା ଲୋକଂକୁ ବୁଝାଇବା ପାଇଁ ସଂକେତସ୍ୱରୂପ ନିଶଟାକୁ ଦେଖାଇଦେଲେ; ତେଣୁ ସେକାଳର ଜାତି ବର୍ଣ୍ଣ ଭେଦ ଉଠାଇବା ପାଇଁ ଯେଉଁ ବିରାଟ ସାମାଜିକ ଆଂଦୋଳନ ହୋଇଥିଲା, ତାହାର ନାମଟି ହେଉଚି 'ନିଶ ଆଂଦୋଳନ' । କଥା ହେଉଚି, ମୋ ଯୋଗେ ଆକୃଷ୍ଟ ହୋଇ ଚାରିଆଡ଼ୁ ଛାତ୍ର ସତ୍ୟବାଦୀ ଆସିଲେ । ସମସ୍ତଂକ ପାଇଁ ଛାତ୍ରାବାସରେ ବ୍ୟବସ୍ଥା ହେଲା । ମୁଁ ଥାଏ, ସେ କୁଳଗୃହରେ ଏକପ୍ରକାର କୁଳପତି । ସଦାସର୍ବଦା ମୁଁ ସେଠାରେ ଥାଏ । କୁଳଗୃହର ଛାତ୍ରମାନେ ସମସ୍ତେ ବର୍ଣ୍ଣ ଓ ଧର୍ମ ନିର୍ବିଶେଷରେ ଏକ ପଙ୍‌କ୍ତିରେ ଖାଇବାର ବ୍ୟବସ୍ଥା ହେଲା । ସତ୍ୟବାଦୀ ରକ୍ଷଣଶୀଳ ବ୍ରାହ୍ମଣ ଶାସନମାନଂକର କେଂଦ୍ର । ସେଇ ରକ୍ଷଣଶୀଳମାନେ ଆସି ମତେ ଅନୁରୋଧ କଲେ—''ବ୍ରାହ୍ମଣ ଓ ଅବ୍ରାହ୍ମଣଂକ ପାଇଁ ଅଲଗା ଅଲଗା ଭୋଜନ ସ୍ଥାନର ବ୍ୟବସ୍ଥା କର । ତା' ନହେଲେ ଲୋକଂକୁ ଅସହ୍ୟ ହେଉଛି ।'' ମୁଁ କହିଲି, ''କୁଳଗୃହର ସମସ୍ତ ଅନ୍ତେବାସୀଂକର ମୁଁ କୁଳପତି; ସୁବିଧା ଥିଲେ ମୋର ପତ୍ନୀ ନିଜ ପୁତ୍ରରୂପେ ସେମାନଂକୁ ରାଂଧି ଖାଇବାକୁ ଦିଅଂତା । ମୁଁ ଏଇ ପୁତ୍ରମାନଂକର ମଧରେ ବର୍ଣ୍ଣ ଧର୍ମ ଭେଦ କରି ପାରିବି ନାହିଁ, କ୍ଷମାକରଂତୁ ।'' ସେଥିପାଇଁ ରକ୍ଷଣଶୀଳମାନେ ତତ୍କାଳୀନ ପଂଡ଼ିତମାନଂକୁ ଧରି ମତେ ଅପାଙ୍‌କ୍ତେୟ କରି ଶାସନ କରିବାର ବହୁ ଉଦ୍ୟମ କରିଥିଲେ । ସ୍କୁଲ ସେତେବେଳେ ବକୁଳବନ ବନଭିତରେ ଗୋଟିଏ ଚାଳଘରର ବଡ଼ ବଂଗଳା ପରି ଘରେ ଥିଲା । ସେଥିରେ ମୋରି ପଢ଼ା, ପୁଷ୍ପାରେ ମୋର ନୋଟଥିବା ବଡ଼ ବଡ଼ ପୁସ୍ତକମାନ ମଧ ଥିଲା । ଘର ଲାଇବ୍ରେରୀ ମିଶି ସେକାଳେ ପ୍ରାୟ ପାଂଚ ହଜାର ଟଂକା ଯାଏ ।

## ୭୮। ରକ୍ଷଣଶୀଳଂକ କର୍ମ

ରକ୍ଷଣଶୀଳମାନେ ଗୁପ୍ତରେ ନିଆଁ ଲଗାଇ ସେସବୁ ପୋଡ଼ିଦେଲେ । ସେତିକିବେଳକୁ ଆକସ୍ମିକ ଭାବରେ ପୁରୀରେ ନୂଆ କଳେବର । ସେ ବର୍ଷ ଯେଉଁ 'ବାଡ଼ି' ପଡ଼ିଥିଲା ତା'

ଏବେ କଳ୍ପନା କରି ହେବ ନାଇ । ଲୋକେ ବାଡ଼ିକୁ ଭାରି ଡରୁଥିଲେ । ମୁଁ, ରାମଚଂଦ୍ର ଓ ସ୍କୁଲପିଲାଂକୁ ସଂଗେ ଧରି ରାତିଦିନ ଅତଂଦ୍ରିତ ଭାବରେ ଗ୍ରାମମାନଂକରେ ରୋଗୀ ସେବାରେ ଲାଗି ଯାଇଥିଲି । ସେଇଯୋଗେ ରକ୍ଷଣଶୀଳମାନେ ମୋତେ ଅପାଙ୍‌କ୍ତେୟ କରିପାରି ନଥିଲେ । ଏକମାତ୍ର ରାମଚଂଦ୍ର ସେ କାଳରେ ମୋର ସାହାଭରସା; ସେ ପୁଣି ଶ୍ରେଷ୍ଠ କୁଳୀନ । ତାଂକର ନିରାଡ଼ଂବର ତେଜସ୍ୱୀତା ଓ ମହାମାନବୀୟ ଭାବରେ ବିଦ୍ୱେଷର ଉପେକ୍ଷା ଯେ ଦେଖିଚି, ସେ ଜାଣେ । ସେତେବେଳେ ତା' ମୋର କି ସଂପଦ ଥିଲା ଆଜି କିମିତି କହିବି ?

## ୭୯। ତଥାପି ଭାବରାଜ୍ୟରେ ମୃତ୍ୟୁ ନାଇଁ

ଦେଶବାସୀ ଖୋଜି ଦେଖିବେ କି ? ଜିନିଷ ଚାଲିଯାଏ, ଭାବରାଜ୍ୟରେ ମୃତ୍ୟୁ ନାଇଁ ଏ ଭାବରାଜ୍ୟରେ ପୁଣି ସ୍ମୃତିର ସଂପର୍କ କେତେ ଓ କିପରି ସଭ୍ୟତାର ଇତିହାସରେ ତାହା ଅନୁସଂଧେୟ; ତଥାପି ଭାବ ଇତିହାସଭୂମି ଛାଡ଼ି ସ୍ମୃତିରେ ହିଁ ପ୍ରଭାବ ବିସ୍ତାର କରେ । ଏବେ ଗୋପବଂଧୁଂକର ତିଳତର୍ପଣ ହେଉଚି । ଆମେ ଆଜି କହୁଚୁ ଏ ତର୍ପଣ ଭାରତୀୟର ପାରଂପରିକ ଅନୁଷ୍ଠାନ । ଆଜି ମଧ ଆମେ ତର୍ପଣ କରୁ—''ସୋମପା ପିତର ସ୍ତୃପ୍ୟଂତାମ୍'', ଅର୍ଥ କଲେ ଅନେକଂକୁ ବିକୃତ ଲାଗିବ । ଏହାର ଅର୍ଥ ହେଉଚି, ''ସୋମରସ ମଦ୍ୟପାନ କରୁଥିଲେ ଆମର ଯେଉଁ ପିତୃମାନେ ସେମାନେ ତୃପ୍ତ ହୁଅଂତୁ ।'' ଗୋପବଂଧୁଂକ ଏ ତର୍ପଣରେ ସେ ମହାମାନବର ପ୍ରଭାବ ଅଛି କି ନାଇଁ, ତାହା ମୋର କଥନୀୟ ନୁହେଁ । 'ନାମେ ଭକ୍ତି'ରେ ମଧ ମହାପୁରୁଷ ପୁଣି ନଷ୍ଟ ହୁଅଂତି, ତାଂକ ପ୍ରଭାବ ବିକୃତ ହୁଏ । ଏ କ୍ଷେତ୍ରରେ ତା' ନହେଉ । ଗୋପବଂଧୁ ରାମଚଂଦ୍ର ଆଦିଂକୁ ଧରି ପୁଣ୍ୟ ପ୍ରଭାବରେ ଜୀବିତ ହୁଅଂତୁ । ଦେଶର ଶିକ୍ଷାସାଧନା ସେଥିରେ ପ୍ରାଣବଂତ ହେଉ । ପ୍ରତ୍ୟେକେ ଦେଖଂତୁ ସେମାନଂକ ଜନ୍ମବେଳର ପରିସ୍ଥିତିକୁ ମୃତ୍ୟୁ କେବଳ ପରିସ୍ଥିତି ବିକାଶରେ ପ୍ରବୃଦ୍ଧ ହୋଇଚି । ମୁଁ ଆଉ କହିବି ନାଇ ।

## ୮୦। ସତ୍ୟବାଦୀ ବିଦ୍ୟାଳୟର ଆରଂଭ

ସତ୍ୟବାଦୀ ବିଦ୍ୟାଳୟର ପରମାୟୁ ବଡ଼ କମ୍ ଥିଲା । ୧୯୦୯ ଖ୍ରୀଷ୍ଟାବ୍ଦରେ କୁମାର-ପୂର୍ଣ୍ଣମୀ ଦିନ ତାହା ଆରଂଭ ହୋଇଥିଲା । ମୁଁ ରେଭେନ୍‌ସା କଲେଜରୁ ବି.ଏ. ପାସ୍‌କରି ଗ୍ରାମକୁ ଆସି ଏ ବିଦ୍ୟାଳୟ ଆରଂଭ କରିଥିଲି । ପରେ ଏହି ବିଦ୍ୟାଳୟରେ ରହିବା ପାଇଁ ଉପଯୁକ୍ତ ହେବା ନିମଂତେ କଲିକତା ଏମ୍.ଏ. ପଢ଼ିବାକୁ ଯାଇଥିଲି । ଏମ୍.ଏ. ପଢ଼ିବାକୁ ଯିବା ପାଇଁ ମୋର ଅର୍ଥବଳ ନଥିଲା । ଦିନେ ଅଧ୍ୟାପକ ଶ୍ରୀ ଗୋପାଳଚଂଦ୍ର ଗାଂଗୁଲି ଯିବାବେଳକୁ ମୋତେ କଟକରେ ପଚାରିଥିଲେ, ''ତୁମେ କାହିଁକି କଲିକତା ଏମ୍.ଏ. ପଢ଼ିବାକୁ ଯାଉଛ ? ତୁମେ ତ ସତ୍ୟବାଦୀ ବିଦ୍ୟାଳୟରେ ରହିବାକୁ ସ୍ଥିର କରିଛ । ଏମ୍.ଏ. ପଢ଼ିବା ଆଉ ଦରକାର କ'ଣ ?'' ମୁଁ ଉତ୍ତର ଦେଇଥିଲି—''ସତ୍ୟବାଦୀ ମଫସଲ ସ୍ଥାନ । ମୁଁ ସ୍କୁଲର ଚାଳକ ହୋଇ ରହି ସମସ୍ତଂକର ସବୁପ୍ରକାର ସଂଦେହ ଦୂର କରିବା ପାଇଁ ପ୍ରସ୍ତୁତ ନଥିଲେ ଏପରି ଦୁରୂହ କାର୍ଯ୍ୟର ଭାର ନେବା ଠିକ୍ ହେବ କି ?'' ସେଠାରୁ ଶ୍ରୀ ଗାଂଗୁଲି ପଚାରିଥିଲେ—''ତୁମର ତ ଅର୍ଥାଭାବ । ଟଂକା କାହୁଁ ପାଇବ ?'' ମୁଁ କହିଲି—

"ସେଥିପାଇଁ ଚିଂତା ନାହିଁ । ତାହା କୌଣସିମତେ ପୂରଣ ହୋଇଯିବ ।" ତା'ର ଅଳ୍ପଦିନ ପରେ ମୋର ବୃତ୍ତି ପାଇବା ଖବର ବାହାରିଲା । ତାହା ହେଉଛି ମାସକୁ ୩୦ଟଂକା । ବି.ଏଲ୍. ପଢ଼ିବା ପାଇଁ ବୃତ୍ତି ସେତେବେଳେ ଓଡ଼ିଶାରେ ବି.ଏଲ୍. ପଢ଼ିବା ସୁବିଧା ନଥିଲା । ଛ'ଟି ବୃତ୍ତି କଲିକତାରେ ଦିଆଯାଉଥିଲା । ସେ ବର୍ଷ ମୁଁ ପ୍ରଥମ ବୃତ୍ତି ପାଇଥିଲି । ବି.ଏଲ୍. ଓ ଏମ୍.ଏ. ଉଭୟ ପାଠ ପଢ଼ା ଚାଲିଲା ।

ଏମ୍.ଏ. ପରୀକ୍ଷା ଦେବାରେ ମୋର ବଡ଼ ଅସୁବିଧା ଉପୁଜିଲା । ମୋର ବାତାଜୀର୍ଣ୍ଣ ହେଲା । ମୁଁ ଦିନକେ ଗୋଟିଏ ଡିଂବ ଛଡ଼ା ଆଉ କିଛି ଖାଉ ନଥିଲି । ସମସ୍ତେ କହିଲେ— ମୁଁ ସେ ବର୍ଷ ପରୀକ୍ଷା ଦେବା ଉଚିତ ନୁହେଁ । "ଶରୀରମାଦ୍ୟମ"; କିଂତୁ ଆଉ ବର୍ଷେ ଅପେକ୍ଷା କରିବାକୁ ମୋର ମନ ଓ ଅର୍ଥବଳ ନଥିଲା । ସେହି ଏମ୍.ଏ. ପରୀକ୍ଷାରେ ଆଠଦିନରେ ଆଠୋଟି ଉତ୍ତର କାଗଜ ମଧ୍ୟରୁ ମୁଁ ଦୁଇଦିନର ଉତ୍ତର ଦେଇପାରି ନଥିଲି । କାରଣ ସେ ଦୁଇଦିନ ମୁଁ ପ୍ରତିମୁହୂର୍ତ୍ତରେ ପାଇଖାନା ଯାଉଥିଲି । ଗାର୍ଡ଼ମାନେ ମୋତେ ଦେଖି ଭାରି ସହାନୁଭୂତି ପ୍ରକାଶ କରୁଥାଂତି । ଯାହେଉ କୌଣସିମତେ ମୁଁ ଉତ୍ତୀର୍ଣ୍ଣ ହୋଇଗଲି ଓ ୧୯୧୧ ଅକ୍ଟୋବର ମାସରେ ଆସି ସତ୍ୟବାଦୀ ସ୍କୁଲରେ ଯୋଗଦେଲି ।

ସେତିକିବେଳେ ଗୋପବଂଧୁ ବାବୁ ମୋତେ ସ୍କୁଲରୁ ମାସିକ ଟ୩୦/ ଦେବାର କଥା କଲେ; କିଂତୁ ମୋର ଶଳା ଏବଂ ଭଣଜା ଦୁହେଁ ସ୍କୁଲର ଛାତ୍ର । ସେଥିପାଇଁ ପରେ ବିଚାର କରି ମତେ ମାସକୁ ଆଉ ଅଧିକ ଦଶଟଂକା ଏହିପରି ଚାଳିଶି ଟଂକା ଦେବାର କଥା କଲେ । ଏ ଚାଳିଶି ଟଂକା ଆଉ ଆଗରୁ କେହି ନେଇ ନଥିଲେ । ହରିଭାଇନା (ଆଚାର୍ଯ୍ୟ ହରିହର ଦାସ) 'ଏକାଡ଼େମୀ'ରୁ ଚାକିରି ଛାଡ଼ି ଆସି ପ୍ରାୟ ସାତ ଆଠ ମାସ ପରେ ସତ୍ୟବାଦୀ ସ୍କୁଲରେ ଯୋଗଦେଲେ । 'ଏକାଡ଼େମୀ' ସ୍କୁଲରେ ସେ ମାସକୁ ଚାଳିଶି ଟଂକା ବେତନ ପାଉଥିଲେ । ତାଂକୁ ସେହି ହାରରେ ଦରମା ଦିଆଗଲା । ପ୍ରାୟ ଦେଢ଼ବର୍ଷ ପରେ ଗୋଦାବରୀଶ ଆସିଲେ । ତାଂକର ସ୍ତ୍ରୀ ଓ କନ୍ୟା ସାଂଗରେ ଥିଲେ । ଆଉ ଏକ ସଂତାନ ହେବାର ସଂଭାବନା ବି ଥିଲା । ଘର ଚଳାଇବା ପାଇଁ ଜଣେ ଲେଖାଯୋଖା ନାନୀ (ବଡ଼ ଭଉଣୀ)କୁ ସାଂଗରେ ଆଣିଥିଲେ । ଏମାନେ ସମସ୍ତେ ସତ୍ୟବାଦୀରେ ବସା ଭଡ଼ା କରି ରହିଲେ । ତାଂକୁ କେତେ ଦରମା ଦେବାକୁ ହେବ ଆଂଭେମାନେ ଠିକଣା କରିପାରି ନଥିଲୁ । କଥା ହେଲା ହରିଭାଇନା ତାଂକର ସମସ୍ତ ଖର୍ଚ୍ଚର ହିସାବ ରଖିବେ । ତାଂକୁ ଯାହା ଦରକାର ସେତିକି ଦିଆଯିବ । ତେଣୁ ତାଂକୁ ଅନ୍ୟମାନଂକଠାରୁ ଅଧିକ ଦରମା ଦିଆ ହେଲା । ଗୋଦାବରୀଶ ବଡ଼ ଯୋଗ୍ୟବ୍ୟକ୍ତି ଥିଲେ । ତାଂକ ଆଗମନ ପିଲାଂକ ଭିତରେ ବେଶ୍ ଆଗ୍ରହ ଓ ଉତ୍ସାହ ଆଣିଦେଲା ।

ତା'ପରେ ଆସିଲେ ସ୍ୱର୍ଗତ କୃପାସିଂଧୁ ମିଶ୍ର, ଏମ୍.ଏ. । ସେ ସସ୍ତ୍ରୀକ ବସା କରି ରହିଲେ । ସେ କହିଲେ, ତାଂକର ମାସିକ ପଚାଶ ଟଂକା ଖର୍ଚ୍ଚ ପାଇଁ ଦରକାର । ତାହା ହିଁ ଶେଷ ପର୍ଯ୍ୟଂତ ତାଂକ ଦରମାର ହାର ଥିଲା । କାରଣ ସତ୍ୟବାଦୀରେ ଏହି ଟଂକା ପାଇଁ କେହି କେବେ ଭାବିତ ହେଉନଥିଲେ । ସମସ୍ତଂକ ଭିତରେ ତ୍ୟାଗ ଓ ତିତିକ୍ଷାର ପ୍ରଚ୍ଛନ୍ନ ଉତ୍ତାପ ଗୋପବଂଧୁବାବୁ ଲକ୍ଷ୍ୟ କରି ପାରୁଥିଲେ । ପରେ ହାଇସ୍କୁଲ ଶିକ୍ଷକଂକର ଦରମାର ଗୋଟିଏ ରେଟ୍ ଇନିସ୍‌ପେକ୍ଟର ସ୍ଥିର କରିଦେଲେ । ଆମେ ପ୍ରକୃତରେ ପାଇବା ଦରମାଠାରୁ ଯେଉଁ ଅଧିକ ଟଂକା ନେଉଥିଲୁ, ତାହା ଦାସ ଆପଣଂକ ପାଖରେ ଜମା ରହୁଥିଲା । ପରେ ସେହି

ଟଂକାରେ ''ନୀଳାଚଳ ସମାଚାର'' ପତ୍ରିକା ଛପା ହେଉଥିବା ପ୍ରେସ୍ ପୁରୀରୁ କିଣା ହୋଇ ସତ୍ୟବାଦୀକୁ ଆସିଥିଲା । ଏହି ପ୍ରେସ୍ ପରେ ସତ୍ୟବାଦୀ ପ୍ରେସ୍‌ର ମୂଳଦୁଆ ହୋଇ ଆଗେ ପୁରୀ ଓ ପରେ କଟକକୁ ଅଣା ଯାଇଥିଲା । 'ନୀଳାଚଳ ସମାଚାର' ମଝିରେ ପୁରୀରେ ବଂଦ ହୋଇଯାଇଥିଲା । ଏବେ କେତେବର୍ଷ ହେଲା ପୁଣି ପ୍ରକାଶ ପାଉଚି—ସୁଖର କଥା । ଓଡ଼ିଆ ପାଠକଂକ ପଠନପ୍ରୀତିର ଅଭାବ ଏକ ଜଣାଶୁଣା କଥା । ସେଥିରେ 'ନୀଳାଚଳ ସମାଚାର' ଅବସ୍ଥା କଣ ହେବ କହି ହେଉନି ।

## ୮୧। ସମାଜରେ ପ୍ରତିକ୍ରିୟା

ଏହି ସମାଜ ସଂସ୍କାର ବିଷୟ ଘେନି କେତେଗୁଡ଼ିଏ କଥା ମନେପଡୁଚି । ସମସ୍ତେ ବୁଝିପାରିବେ ନାଇଁ—ସେକାଳେ ସତ୍ୟବାଦୀ ସମାଜର ଅବସ୍ଥା କ'ଣ ଥିଲା । ମୁଁ ଯେତେବେଳେ ଏମ୍. ଏ. ପାସ୍ କରି ସତ୍ୟବାଦୀରେ ପଢ଼ାଇବାକୁ ଆସିଲି, ଲୋକେ ହୁଏତ ସେ ପରିସ୍ଥିତି କଳ୍ପନା କରିପାରି ନଥିବେ । କେବଳ ସତ୍ୟବାଦୀ ପାଖରୁ ନୁହେଁ ଓଡ଼ିଶାର ସବୁଆଡୁ ଛାତ୍ରମାନେ ସତ୍ୟବାଦୀରେ ପଢ଼ିବାକୁ ଆସିଲେ । ସେଥିରୁ ଅନେକ ଛାତ୍ରଂକର ମଧ ଅଭିଭାବକ ସଂଗରେ ଆସି କହିପୋଛି ଯାଉଥିଲେ । କଳାହାଣ୍ଡିର ଅତି ମଫସଲ ସ୍ଥାନରୁ ମଧ ପିଲାଏ ପଢ଼ିବାକୁ ଆସୁଥିଲେ । ଏହା ପୂର୍ବରୁ ମୁଁ ଏମ୍.ଏ ପଢ଼ିଲାବେଳୁ ମୋର ଏଇ ନିଶ ଆଂଦୋଳନକୁ ବାହାନା ଧରି ବହୁତ ପ୍ରବଂଧ ଲେଖା ହୋଇଥିଲା । ସେଥିମଧରୁ 'ଉତ୍କଳ ସାହିତ୍ୟ'ରେ 'ନୀତି ଓ ପ୍ରକୃତି', 'ଆମର ଥିଲା ଓ କାରଣ ଥାଇପାରେ' ଓ 'ଅଳ୍ପ ହେବୁ' ପ୍ରଭୃତି ବଡ଼ ତୀବ୍ର ପ୍ରବଂଧ ସବୁ ଲେଖା ହୋଇ ଯାଇଥିଲା । ଲୋକେ ମତେ ଦେଖି ହଠାତ୍ କିଛି ବୁଝି ପାରି ନଥିଲେ ।

ମୁଁ ସେତେବେଳେ ଦେଖିଚି—ସେତେବେଳର ଅଭିଭାବକମାନେ ମତେ ବିସ୍ମୟ ଓ ସଂତର୍ପଣରେ ଦେଖୁଥାଂତି । କ୍ରମେ ମୋର ଏଇ ସମାଜ ସଂସ୍କାର ଭାବ ସମସ୍ତ ଉତ୍କଳରେ ବ୍ୟାପ୍ତ ହୋଇଗଲା । ଏପରିକି ଗଂଜାମ ବାଟେ ଦକ୍ଷିଣକୁ ଓ ମେଦିନୀପୁର ବାଟେ କଲିକତା ଆଡ଼କୁ ସେ ସବୁର ପ୍ରଭାବ ଚାଲିଗଲା । ଏକ କଥାରେ କହିଲେ ମୋର ଏଇ ସଂସ୍କାର ଭାବ ନେଇ ସାମାଜିକ ଅଂଚଳରେ ବଡ଼ ନାମ ହୋଇଗଲା । ମଧେ ମଧେ ମୋ ପାଖକୁ ସେକାଳ ସମାଜର ମୁଖ୍ୟମାନେ ଦଳବାଂଧି ଯୁକ୍ତି କରିବାକୁ ଆସିଲେ ।

ଦିନେ ମନେଅଛି ଦଳେ ଲୋକ ଆସି ମୋ ସଂଗେ ସମାଜରେ ଉଶୃଂଖଳତା ନ ଦେଖେଇବା ପାଇଁ କହିବସିଲେ । ମୁଁ କହୁ କହୁ ତାଂକୁ ଥଟ୍ଟାରେ କହିଲି—''ଆମ ଗ୍ରାମରେ ଜଣେ ଲୋକ ଥିଲା । ସେ ଟିକିଏ ଭାଂଗ ଖାଏ । ଦିନେ ସନ୍ଧ୍ୟାବେଳେ ଶୋଇବାକୁ ଯାଇ ଗୋଡ଼ କୁଆଡ଼କୁ ରଖିବ ବୋଲି ବଡ଼ ବ୍ୟସ୍ତ ହୋଇ ପଡ଼ିଲା । କ୍ରମେ ଯୁଆଡ଼କୁ ଗୋଡ଼ କଲା ସେଆଡ଼େ ଦେବତା ଥିବାର ସେ ଅନୁଭବ କଲା । ଶେଷକୁ ଆକାଶକୁ ଗୋଡ଼ କଲା । ସେଥିରେ ତା ମନେହେଲା—ଖ ଅର୍ଥାତ୍ ବ୍ରହ୍ମ । ତା'ପରେ ପୃଥିବୀ ତଳେ ବାସୁକୀ, ଶେଷକୁ ବ୍ୟାକୁଳ ହୋଇ ଦୁଇଗୋଡ଼କୁ ଉପରକୁ ରଖି ହଲାଇ ହଲାଇ ଆଲୋ ବୋଉ କୁଆଡ଼େ ଗୋଡ଼ କରିବିଲୋ'' ବୋଲି ଡକା ପକାଇଲା । ଏପରି ସମାଜକୁ ଗୋଟି ଗୋଟି କଥା ଧରି ବୁଝି ବସିଲେ ମୋର ଶେଷକୁ ସେଇ ଅବସ୍ଥା ହେବ ସିନା ।

ସେମାନେ ସମସ୍ତେ ହସିଲେ, ଆଉ କଥା ନକହି ଫେରିଗଲେ । ଏହିପରି ଗ୍ରାମ ଲୋକମାନଂକ ସଂଗେ ସ୍କୁଲରେ ତଥା ଗ୍ରାମରେ ବହୁତ ଯୁକ୍ତି ଓ ଥଟ୍ଟା କରିବାକୁ ପଡ଼ିଚି । କିଂତୁ ମୁଁ ଏଇ ଥଟ୍ଟା ଭିତରେ ବଡ଼ ଜଗିଥାଏ କାହାରି ପ୍ରାଣରେ ଆଘାତ ଦିଏନାଇ । ଲୋକେ ହସି ହସି ସବୁ ବୁଝି ଯାଆଂତି ।

## ୮୨। ଜୋଇଁଂକ ଶ୍ଳୋକ ଆବୃତ୍ତି

ଆଉ ଗୋଟିଏ କଥା କହେ । ସେଇଟି ମୋର ବିବାହ ଦିନର କଥା । ସେଦିନ ରାତିରେ ଆମ ସମାଜରେ ଫୁଲ ସଭାହୁଏ । ସେଥିରେ ଜୋଇଁମାନେ ପ୍ରଥମେ ଶ୍ଳୋକବୋଲି ସଭାକୁ ଶୁଣାଇ ଦିଅଂତି । ତା'ପରେ ଶ୍ଳୋକ ବୋଲା ଆରଂଭ ହୁଏ ।

ଜଣେବୃଦ୍ଧ—ଲେଖାରେ ମୋ ଶ୍ୱଶୁରଂକ କକେଇ ମତେ ଆସି କହିଲେ—''ଜୋଇଁ ଗୋଟିଏ ଶ୍ଳୋକ ବୋଲଂତୁ ।'' ମୁଁ ସେତେବେଳେ ଏନ୍‌ଟ୍ରାନ୍‌ସ ପଢୁଥାଏ । ଅବଶ୍ୟ ସେତେବେଳକୁ ମୋର ଗୀତା ପ୍ରାୟ ମୁଖସ୍ଥ ହୋଇ ଯାଇଥିଲା । ଶ୍ଳୋକ ବି ମତେ ଜଣାଥାଏ; କିଂତୁ ମୁଁ କହିଲି, ''ଆପଣ ଏ ବୃଦ୍ଧ ବୟସରେ ଏ ଦୁର୍ଗତି ଭିଆଉଚଂତି କାହିଁକି ? ଜାଣି ଶୁଣି ତ ମୂର୍ଖ ଜୋଇଁଟିଏ କରିଚଂତି । ଏ ସମସ୍ତ ବ୍ରାହ୍ମଣଂକ ସଭାରେ ଜୋଇଁଟିକୁ ମୂର୍ଖ ବୋଲି ଜଣାଇଦେବା କଣ ଆପଣଂକ ଉଦ୍ଦେଶ୍ୟ ?''

ସେଠାରୁ ସେ ବୃଦ୍ଧ ହସିଲେ ଓ ଆଉ ସମସ୍ତ ଶୁଣିବା ଲୋକ କେହି କେହି ହସିଲେ । ସେତିକିରେ ସେକଥା ବଂଦ ହୋଇଗଲା । ଅବଶ୍ୟ ଯେପରି ଶ୍ଳୋକ ବୋଲାହୁଏ ବିଶେଷରେ ଜୋଇଁମାନେ ଯେପରି ଶ୍ଳୋକ ବୋଲଂତି ସେ ଏକପ୍ରକାର ଗୋଟିଏ କୁସଂସ୍କାର ରହସ୍ୟ । ଅବଧାନେ ଶ୍ଳୋକ ଶିଖେଇ ଦିଅଂତି । ବାଳକ ଜ୍ୱାଇଁ ସେସବୁ ଶିଖି ସଭାରେ ଯାଇ ବୋଲଂତି । ମୋ ସ୍କୁଲ କାଳରେ ମନେଅଛି—ଜଣେ ବାଳକ ଏହିପରି ଅବଧାନଂକଠାରୁ ଶିଖି ସଭାରେ ଗୋଟିଏ ଶ୍ଳୋକ ବୋଲିଥିଲେ । ସେ ହେଉଚି—

''ଗର୍ଜଂତି ମେଘାଃ ବର୍ଷଂତି ପାଣି
ଉଠଂତି ଚେଂଗା ବେଳକାଳ ଜାଣି ।''

ଏହିପରି ଶ୍ଳୋକ ବୋଲିବା ରୀତି ସମାଜରେ କ୍ରମେ ପ୍ରସାର ଲାଭ କରୁଥିଲା । ତେଣୁ ମୋର ତା ପ୍ରତି ଭଲ ଭାବ ନଥିଲା ।

## ୮୩। ସତ୍ୟବାଦୀ ବିଦ୍ୟାଳୟ ଘରପୋଡ଼ି

ସତ୍ୟବାଦୀର ବର୍ତ୍ତମାନ ବିଦ୍ୟାଳୟ ଗୃହଟି କୋଠାଘର । ସେତେବେଳେ ଏହାର ମଝି ମାହାଲା ସ୍ଥାନରେ ମାଇନର ସ୍କୁଲର ଗୋଟିଏ ଚାଳ ବଂଗଳା ଥାଏ । ଉଦ୍ୟୋକ୍ତାମାନେ ଧନୀଲୋକ ନୁହଂତି । ନିଜ ନିଜର ପାଠ୍ୟ ପୁସ୍ତକମାନ ଦେଇ, ଚାଂଦାଭେଦା କରି ଭିନ୍ନ ଭିନ୍ନ ଅଂଚଳରୁ ଅର୍ଥ ସଂଗ୍ରହ କରି ବହୁ କଷ୍ଟରେ ସେମାନେ ଗୋଟିଏ ବଡ଼ ଧରଣର ଲାଇବ୍ରେରୀ କରିଥିଲେ । ମୋର ସମସ୍ତ ପଢ଼ାବହି ଓ ନୋଟ ସେହି ଲାଇବ୍ରେରୀରେ ଥିଲା । ସେ

ଲାଇବ୍ରେରୀ ସେହି ଘରେ ଗୋଟିଏ ବଖରାରେ ଥିଲା । ଇଂରେଜୀ କୋଚିଂ କ୍ଲାସ ମଧ୍ୟ ସେହି ଘରର ଅନ୍ୟ ଗୋଟିଏ ପ୍ରକୋଷ୍ଠରେ ବସୁଥିଲା ।

ନୂଆ ଶ୍ରେଣୀ ଖୋଲିବାର ଅଳ୍ପଦିନ ପରେ ସେହି ବିରାଟ କାଷ୍ଠ ନିର୍ମିତ ଗୃହଟିକୁ ପାଖଆଖ ଗ୍ରାମର କେହି ରକ୍ଷଣଶୀଳ ଦୁର୍ବୃତ୍ତ ଗୋପନରେ ପୋଡ଼ି ପକାଇଲେ । ୧୯୧୧-୧୨ ମସିହା ବେଳକୁ ମାଇନର ସ୍କୁଲ ସଂଗେ ହାଇସ୍କୁଲ ୪ର୍ଥ ଶ୍ରେଣୀ (ଅଷ୍ଟମ) ଖୋଲିଥାଏ ମାତ୍ର । ପୂର୍ଣ୍ଣ ହାଇସ୍କୁଲ ହେଲାବେଳକୁ ସେହି ତିନି ଚାରି ବର୍ଷ ମଧ୍ୟରେ ଅସ୍ପୃଶ୍ୟତା ଦୂରୀକରଣ, ସାମାଜିକ ବହୁ କୁସଂସ୍କାରର ତ୍ୟାଗ, ଏକ ପଙ୍‌କ୍ତିରେ ଜାତିଧର୍ମ ନିର୍ବିଶେଷରେ ଭୋଜନ ଆଦି କେତେକ ଦେଶ ଓ ସମାଜର ଉନ୍ନତିକର ଯୋଜନା ଆମେମାନେ କାର୍ଯ୍ୟକାରୀ କରିବାରେ ଲାଗିପଡ଼ିଥିଲୁ । ମୁଁ କେତେକ ଯୁବକଙ୍କୁ ନିଜ ମତରେ ଅନୁପ୍ରାଣିତ କରି ସେମାନଙ୍କ ମନରେ ପଂଡ଼ିତ ବ୍ରାହ୍ମଣ ନିଶ ରଖିବା ଶାସ୍ତ୍ର ବିରୁଦ୍ଧ ନୁହେଁ; ତେଣୁ ନିଶ ରଖିବା ସାମାଜିକ ନୀତିର କ୍ଷତିକାରକ ନୁହେଁ ବୋଲି ଏକ ପ୍ରତିଷ୍ଠିତ ବିଶ୍ୱାସ ଆଣି ଦେଇଥିଲି । ମୁଁ ଏବଂ ମୋ ଦଳର ଯୁବକମାନେ ନିଶ ରଖିଲୁ । ରକ୍ଷଣଶୀଳ ବ୍ରାହ୍ମଣ ସମାଜରେ ଚହଳ ପଡ଼ିଗଲା । ନିଶ ରଖିବାରୁ ଏବଂ ଅନ୍ୟାନ୍ୟ କୁସଂସ୍କାରକୁ ନମାନି କାର୍ଯ୍ୟ କରିବାରୁ ଆମମାନଙ୍କୁ ସାମାଜିକ ଶାସ୍ତି ଦେଇ ନପାରି ଆମମାନଙ୍କ କର୍ମକେନ୍ଦ୍ରକୁ ଜାଳି ପୋଡ଼ିଦେବାର ବିଚାର ସେମାନେ ବୋଧହୁଏ ଆଗରୁ କରିଥିଲେ । ସକାଳୁଆ ସ୍କୁଲସାରି ସମସ୍ତେ ଗଲାପରେ ଉପରବେଳା ସ୍କୁଲଘର ଭସ୍ମୀଭୂତ ହୋଇଗଲା । ଲାଇବ୍ରେରୀଟି ମଧ୍ୟ ବିବାକ ଜଳିଗଲା । ଅଳ୍ପ କେତେଖଂଡ଼ ବେଂଚ ଓ ଟେବୁଲ ବାହାରିଥିଲା ।

କିଂତୁ ରାତାରାତି ଆମେମାନେ ଲାଗିପଡ଼ି ଚାଂଚର ଛାମୁଡ଼ିଆମାନ କରିଦେଲୁ । ଯଥାରୀତି ସେଥିରେ ଶ୍ରେଣୀଗୁଡ଼ିକ ବସିଲା । ପଢ଼ାର ଗାମ୍ଭୀର୍ଯ୍ୟ କୌଣସିମତେ କମିଲାନି; ମାତ୍ର ମୁଁ ଓ ଅନ୍ୟମାନେ କିଂଚିତ୍ ବିଷଣ୍ଣ ହୋଇ ପଡ଼ିଥିଲୁ ।

ପରଦିନ ଖରାବେଳକୁ ଘରପୋଡ଼ି ସଂବାଦ ପାଇ ଗୋପବଂଧୁ ବାରିପଦାରୁ ଆସି ପହଂଚିଲେ । ଶିକ୍ଷକମାନେ ସମସ୍ତେ ତାଂକ ଗୋଡ଼ତଳେ ମୁଂଡ଼ିଆ ମାଇଲେ । ସମସ୍ତେ ବିଷଣ୍ଣ; କିଂତୁ ତାଂକ ମୁଖ ସରସ, ପ୍ରଫୁଲ୍ଲ ଓ ସହାସ୍ୟ ଥିଲା । ସେ ଆଂଭମାନଙ୍କୁ ଉତ୍ସାହ ଦେଇ କହିଲେ—''ଏଥିପାଇଁ ଦୁଃଖ କ'ଣ ? ଭଗବାନଙ୍କ ଇଚ୍ଛା ବୋଧହୁଏ ଏ ବିଦ୍ୟାଳୟ ପାଇଁ କୋଠାଘର ହେବ ।''

ଗୋପବଂଧୁଂକ ଆଗ୍ରହ ଓ ଅନୁପ୍ରେରଣା ଜୀବନରେ ଭୁଲିବାର ନୁହେଁ । ମୁଁ ତ ତାଂକୁ ଦେଖିବାମାତ୍ରେ ସାହସ ପାଇଥିଲି । ତାଂକ କଥା ଶୁଣିବା ପରେ ମତେ ଅକଳଂତା ଆନଂଦ ମିଳିଲା । ମୁଁ କ୍ଷଣକେ ଅଗ୍ନିଦାହର ବ୍ୟଥା ଭୁଲିଗଲି ।

ଶିକ୍ଷକମାନେ ଯଥାରୀତି କ୍ଲାସ କଲେ । ମୁଁ ମଧ୍ୟ ମୋ କ୍ଲାସକୁ ଗଲି ।

## ୮୪। ଘରପୋଡ଼ି ପରେ

ନୈତିକ ଚରିତ୍ରର ବିକାଶ ଲାଗି ସତ୍ୟବାଦୀ ବିଦ୍ୟାଳୟର ପରିକଳ୍ପନା ହୋଇଥିଲା । ଶୃଂଖଳା, ଧୈର୍ଯ୍ୟ ଓ ସଂଯମ ସ୍କୁଲର ମୂଳଭିତ୍ତି । ଘରପୋଡ଼ି ପରଦିନ ପରୀକ୍ଷା ହେବାର

ଥିଲା । ପିଲାମାନେ ପ୍ରଶ୍ନ କାଗଜ ନେଇ ନିଜ ଇଚ୍ଛାନୁସାରେ ସ୍ଥାନ ବାଛି ନେଲେ । କୌଣସି ଶିକ୍ଷକ ବୁଲି ମଧ ଦେଖିଲେ ନାହିଁ । ଯଥାସମୟରେ ଛାତ୍ରମାନେ ଖାତା ଦେଇଗଲେ । ସେ ପତ୍ରଟିରେ ଯେ ଯେପରି କରଂତି ଠିକ୍ ସେହିପରି କରିଥିଲେ । ଆମ ଉପରକୁ କିଂତୁ ବିପଦ ପରେ ବିପଦ ମାଡ଼ି ଆସିଲା । ସେଦିନ ଦିନ ଗୋଟାକବେଳେ ପ୍ରବଳ ପବନ ଆରଂଭ ହେଲା । ପୁରୁଣା ଘରର ସୁରକ୍ଷିତ କାଂଥଗୁଡ଼ିକ ଏକାବେଳକେ ଅଜାଡ଼ି ହୋଇ ପଡ଼ିଲା । ଟିଣଗୁଡ଼ିକ ଛିନ୍ନଛତ୍ର ହୋଇପଡ଼ିଲା । ମୁଁ ଓ ଅନ୍ୟମାନେ ଦୁଃଖ ନକରି ସିଂହ ବିକ୍ରମରେ ପିଲାମାନଂକୁ ଧରି ବାହାରି ପଡ଼ିଲୁ । ବର୍ଷା ଓ ପବନରେ ମଧ ଟିଣଗୁଡ଼ିକୁ ଯତ୍ନର ସହିତ ଏକତ୍ର କଲୁ । ସମସ୍ତ ଛାତ୍ର ଓ ଶିକ୍ଷକମାନେ ବୋଡ଼ିଂ ଓ ସ୍କୁଲଘର ତିଆରିର ସମସ୍ତ କାର୍ଯ୍ୟ ହାତେ ହାତେ କରୁଥାଂତି, A Blockଟି ଭାଂଗିଗଲା ।

ମୁଁ ଏବଂ ଗୋପବଂଧୁବାବୁ ବର୍ଷ ଶେଷ ଆଡ଼କୁ ଅର୍ଥ ସଂଗ୍ରହ ଓ ଗୃହ ନିର୍ମାଣ ଉପକରଣ ସଂଗ୍ରହ କରିବା ନିମଂତେ ବାହାରକୁ ଗଲୁ । ଆମର ଏଇ କାମ ଉତ୍କଳବାସୀଂକ ପ୍ରାଣରେ ବେଶ୍ ଆକର୍ଷଣ ଆଣି ପାରିଥିଲା । ଏମାର ମଠରେ ମହଂତ ମହାରାଜ, ରାଧାକାଂତ ମଠାଧୀଶ ପ୍ରଭୃତି ଧନାଢ଼୍ୟ ବହୁ ସ୍ଥାନୀୟ ବ୍ୟକ୍ତି ଓ ଗଡ଼ଜାତର ରାଜା ମହାରାଜାମାନେ ଓ ବିଶେଷରେ ଗଂଜାମର ରାଜା ଓ ଜମିଦାରମାନେ ସତ୍ୟବାଦୀ ବିଦ୍ୟାଳୟର ଗୃହନିର୍ମାଣ ପାଇଁ ଯଥାଶକ୍ତି ସାହାଯ୍ୟ ଓ ସାହାଯ୍ୟର ପ୍ରତିଶ୍ରୁତି ଦେଉଥିଲେ ।

## ୮୫। ଗୁରୁକୁଳ ନିୟମାବଳୀ

ପ୍ରାୟ ୧୯୧୪ ବେଳକୁ ସତ୍ୟବାଦୀ ଗୁରୁକୁଳ ଆଶ୍ରମର ପ୍ରକୃତ ମୂଳଭିତ୍ତି ଦିଆ ଯାଇଥିଲା । କ୍ରମଶଃ ଛାତ୍ର ସଂଖ୍ୟା ବୃଦ୍ଧିପାଇ ଛାତ୍ରାବାସ ଭରପୂର ହୋଇଗଲା । ବଡ଼ ଛୋଟ, କଠୋର ଓ କୋମଳ ପ୍ରକୃତିବିଶିଷ୍ଟ ଧନୀଦରିଦ୍ର ବହୁ ସଂଖ୍ୟକ ଛାତ୍ରଂକର ବୋଡ଼ିଂରେ ସମାଗମ ହେଲା । ଅତି ଅଳ୍ପ ସଂଖ୍ୟକ ଶିକ୍ଷକ ବାହାରେ ଥିଲେ ବା ନିକଟବର୍ତ୍ତୀ ଗ୍ରାମମାନଂକରୁ ଆସି ପାଠ ପଢ଼ାଇ ସନ୍ଧ୍ୟାକୁ ଘରକୁ ଫେରି ଯାଉଥିଲେ । ଛାତ୍ରାବାସକୁ ପରେ ନିୟମ ପ୍ରଣୟନ କରି ଶୃଂଖଳିତ କରିଦେଲି । ପ୍ରଥମେ ପ୍ରତି କୋଠରିରେ ଜଣେ ଜଣେ ମନିଟର ଥାଆଂତି । ସେମାନେ ପିଲାମାନଂକର ଶିକ୍ଷା ଦେଖୁଥିଲେ; ଚରିତ୍ରବତ୍ତା ଲକ୍ଷ୍ୟ କରୁଥିଲେ । ଏପରିକି ଶାସନ କରିବାର ପ୍ରୟୋଜନ ହେଲେ ଦଂଡ଼ ଦେବାର ଅଧିକାର ମଧ ପାଇଥିଲେ । ମାତ୍ର ତିରିଶ ଗୋଟି ବୋଡ଼ିଂ କୋଠରି ହୋଇଯିବା ପରେ ତିରିଶଜଣ ମନିଟର ପ୍ରୟୋଜନ ହେଲେ । ସମସ୍ତେ ମେଧାବୀ ଛାତ୍ର ଓ ଚରିତ୍ର ସଂପନ୍ନ ହୋଇଥିବା ପ୍ରୟୋଜନ । ପ୍ରଥମେ ଏହି ଚିଂତାରେ ଶିକ୍ଷକମାନଂକୁ ଛାତ୍ରମାନଂକ ସହିତ ମିଶିବାର ଅଧିକ ସୁଯୋଗ ଦେଲି । ନିୟମ ହେଲା, ଶିକ୍ଷକମାନେ ବୋଡ଼ିଂରେ ରହିବେ, ପିଲାମାନଂକର ଘରପଢ଼ାରେ ଯଥାଶକ୍ତି ସାହାଯ୍ୟ କରିବେ । କୌଣସି ଶିକ୍ଷକ ଟିଉସନ୍ କରିବାକୁ ମନା କରି ଦେଇଥିଲି । ବହୁ ଛାତ୍ର ଓ ଯୁବକ ଶିକ୍ଷକମାନେ ଏକତ୍ର ବସବାସ କରିବାରୁ ସେମାନଂକ ଆଚରଣରେ କେତେକ ତ୍ରୁଟି ଦେଖାଗଲା । ମୁଁ ଏଥିପ୍ରତି ଅତିମାତ୍ରାରେ ଅସହିଷ୍ଣୁ ହୋଇପଡ଼ିଲି । କଠୋର ଦଂଡ଼ ମଧ ଦେଲି । ଭଲ ଛାତ୍ରମାନେ ମୋ ପାଖରେ ଆଗ୍ରହରେ ବିହ୍ୱଳ ହୋଇ ପଡୁଥିଲେ । ମଂଦ ଛାତ୍ରମାନେ ମତେ ଅତିମାତ୍ରାରେ ଭୟ କରୁଥିଲେ । ମାତ୍ର ନିୟମ, ଶୃଂଖଳାରେ ସବୁକଥା ପରିଚାଳିତ ହେବା ଏବଂ ଗଣତନ୍ତ୍ର

ନୀତିରେ ଛାତ୍ରମାନେ ପରସ୍ପରର ସହାୟକ ହେବାର ଉପାଦେୟତା ଉପଲବ୍ଧି କରି ଦିନେ ଗୋପବଂଧୁ ବାବୁ ସମସ୍ତ ଛାତ୍ରଙ୍କୁ ଏକତ୍ର କଲେ ।

## ୮୬। ସତ୍ୟବାଦୀ ବିଦ୍ୟାଳୟରେ ଗଣତନ୍ତ୍ରର ପରୀକ୍ଷା ଓ ବିକାଶ

ମୁଁ ଗଣତନ୍ତ୍ର ନୀତିର ଉପାଦେୟତା ପିଲାମାନଂକୁ ବୁଝାଇ ଦେଲି । ସେଦିନ ପ୍ରାଚୀନ ଗ୍ରଂଥ ସଂଗ୍ରାହକ ପଂଡ଼ିତ ବିଶ୍ୱନାଥ ରଥ କାବ୍ୟତୀର୍ଥ ପ୍ରଥମଥର ସ୍କୁଲକୁ ଆସିଥିଲେ । ମୋର ମନେଅଛି, ମୁଁ ପ୍ରାଂଜଳ ଭାବରେ ବାଳକମାନଂକୁ ଉଦ୍‌ବୋଧନ ଦେଇ ଜଣାଇ ଦେଲି ଯେ, ଶିକ୍ଷକ ଓ ଛାତ୍ରମାନେ ସମସ୍ତେ ମିଶି ଗୋଟିଏ ପରିବାର । ଆଗକାଳର ଗୁରୁକୁଳ ଆଶ୍ରମର ଏ ଯୁଗକୁ ଖାପ ଖାଇଲା ଭଳି କେତେକ ନିୟମ ଓ କାର୍ଯ୍ୟକ୍ରମ ରହି ଆଧୁନିକ ଶିକ୍ଷା ପିଲାମାନେ ଲାଭ କରିବେ । ଭିତ୍ତି ଭାରତୀୟ ଓ ଶିକ୍ଷା ପାଶ୍ଚାତ୍ୟ ଭାବଧାରାରେ ପ୍ରଭାବିତ; ତେଣୁ ଗୁରୁକୁଳ ଆଶ୍ରମର ଚାଲିଚଳଣି, ଆଚାର ଯଥାସଂଭବ ଏହିଠାରେ ରଖାଯିବ । ଛାତ୍ର, ଶିକ୍ଷକ ଏକ ପରିବାର ପରି । ପ୍ରଥମେ ଯେଉଁମାନଂକୁ ମନିଟର ରୂପେ ବଛା ଯାଉଥିଲା, ସେମାନଂକୁ ବହୁତ କ୍ଷମତା ଦିଆଗଲା । ତାହାର ସୁବ୍ୟବହାର କରି, ଅନ୍ୟାନ୍ୟ ମନିଟର ଯେପରି ତାଂକରି ଆଦର୍ଶରେ ତିଆରି ହେବେ, ଏକଥା ବୁଝାଇ ଦେଲି । ଶିକ୍ଷା ଓ ଚରିତ୍ର ଉଭୟ ଦିଗରେ ଦୃଷ୍ଟି ଦେବାକୁ କହିଲି । ତଥାପି ଶିକ୍ଷକମାନେ ଓ ନିଜେ ଗୋପବଂଧୁବାବୁ ଉତ୍ତମ ଛାତ୍ର ସମାଜ ପ୍ରତି ତୀବ୍ର ଦୃଷ୍ଟି ରଖିଥାଂତି । ଆମର ଅନୁସଂଧାନ ଚରିତ୍ର ପରୀକ୍ଷା ଏବଂ ନିର୍ବାଚନ ପ୍ରଣାଳୀ ଅତି ଚମତ୍କାର ଥିଲା । ଯୋଗଜନ୍ମା ଗୋପବଂଧୁଂକର ସାମାନ୍ୟ କଥା ପଦକରୁ ଲୋକର ଅଂତର ଜଣାଯିବା ଅତି ଆଶ୍ଚର୍ଯ୍ୟଜନକ ଥିଲା । ବେଶଭୂଷାରେ ସରଳତା, ନିରାଡ଼ଂବର ବ୍ୟବହାର ସତ୍ୟବାଦୀର ଛାତ୍ରଗୋଷ୍ଠୀର ଆତ୍ମିକ ଧର୍ମ ଥିଲା ।

ଗୋପବଂଧୁବାବୁଂକ ପାଇଁ ସ୍ୱତନ୍ତ୍ରଘର ହୋଇଥାଏ ଓ ସେଥରେ ମୁଁ ମଧ୍ୟ ରହିଥାଏ । ଦାସେ ଆପଣେ ଆସିଲାବେଳେ ଦୁହେଁ ଏକାଠି ରହୁ । ସେ ଘରଟି ସମସ୍ତଂକର ଦୃଷ୍ଟିକେଂନ୍ଦ୍ର ଥାଏ । ମୁଁ ସକାଳେ ଟିକିଏ ଡେରିରେ ଉଠେ ଏବଂ ଉଠିବାମାତ୍ରେ ଦୁଆର ମୁହଁରେ ଦାଂତ ଘଷିଲାବେଳେ ଶିକ୍ଷକମାନେ ଆସି ଯୁଟଂତି । ତାହାପରେ ଆମର ଆଲୋଚନା ପ୍ରଭୃତି ଚାଲେ । ମୁଁ ପ୍ରତିଦିନ ସେହି ଘରକୁ ଫେରି ଶାସ୍ତ୍ରପାଠ, ଚର୍ଚ୍ଚା, ଆଲୋଚନା ଓ ଉନ୍ନତ ବିଷୟମାନଂକର ଅନୁଶୀଳନରେ ଲାଗିପଡ଼େ ।

ମୁଁ ପ୍ରତିଦିନ ପ୍ରାୟ ରାତି ଦୁଇଘଂଟା ପର୍ଯ୍ୟଂତ ପଢ଼େ । ମୋର କ୍ଷଣକୋପ ଓ ଦଂଡ଼ ଦେବାକାଳରେ ନିଷ୍ଠୁରତା ଦେଖି କେତେକ ନବାଗତ ଛାତ୍ର ମତେ ଅତ୍ୟଂତ ଭୟ କରୁଥିଲେ; କିଂତୁ ମୋର ନିବିଡ଼ ପରିଚୟରେ ଆସିଥିବା ଛାତ୍ରମାନେ ମୋର ପରିଶ୍ରମ ଓ ଅଧ୍ୟୟନ ଅଭ୍ୟାସ ଦେଖି ମୋତେ ଅସାଧାରଣ ମଣିଷ ବୋଲି ଭାବୁଥିଲେ । ମୋ ସମ୍ମୁଖ ରାସ୍ତାରେ ଛାତ୍ରମାନେ ଅତି ବିନୀତ ଧୀରସ୍ଥିର ଭାବରେ ଅଳ୍ପ ଆନତ ହୋଇ ଚାଲି ଯାଉଥିବାର ଦେଖିଲେ ମୁଁ ମନେ ମନେ ବହୁତ ହସେ । ଅନୁଭବ କରେ ସାଧାରଣ ଛାତ୍ରଂକ ପାଖରୁ ମୁଁ ହୁଏତ ବହୁତ ଦୂରେଇ ଯାଇଛି । ସେଥିପାଇଁ ତାଂକ ସହିତ ମିଶିବାକୁ ଚେଷ୍ଟା କରେ । ଦୋଷତ୍ରୁଟିକୁ କ୍ଷମା ଦେଲେ ଏବଂ ଭୁଲ୍‌କୁ ଭଲ ବୋଲି ଗ୍ରହଣ କରିନେଲେ ସିନା ପିଲାଏ ପାଖକୁ ଲାଗି ଆସଂତି । ମୁଁ ତ

ସବୁଦିନେ ଦୋଷପାଇଁ ନିଷ୍ଠୁର ହୁଏ; ତେଣୁ ପିଲାଏ ଭୟରେ ମୋ ଆଗରେ ସିଧା ହୋଇ ଚାଲିପାରଂତି ନାଇ ।

## ୮୭। ନୂତନ ପରିକଳ୍ପନା

ଗୋପବଂଧୁବାବୁ ପଶ୍ଚିମବଂଗର ବିଶ୍ୱଭାରତୀ ଅନୁଷ୍ଠାନ ଦେଖି ଫେରିଥାଂତି । ସମସ୍ତ ଶିକ୍ଷକ ଓ ଛାତ୍ରମାନଂକ ଉପସ୍ଥିତିରେ ସେ 'ଶାଂତିନିକେତନ'ର କାର୍ଯ୍ୟକଳାପ ବିଶଦ୍‌ଭାବରେ ବର୍ଣ୍ଣନା କଲେ ଏବଂ କହିଲେ, ''ସେଠାରେ ଛାତ୍ରାବାସ ଓ ବିଦ୍ୟାଳୟ ଗଣତନ୍ତ୍ର ନୀତିରେ ଛାତ୍ରମାନଂକ ଦ୍ୱାରା ପରିଚାଳିତ ହୁଏ ବୋଲି କେବଳ କଥାରେ କୁହାଯାଏ । ପିଲାମାନେ ବଜାର ସଉଦା କରଂତି—ଅର୍ଥାତ୍ ଗାଡ଼ିରେ ବସି ତାଲିକା ନେଇ ଜଣେ ଦୁଇଜଣ ଛାତ୍ର ପୂଝାରୀ ଚାକରଙ୍କୁ ଘେନି ବଜାରକୁ ଯାଂ'ତି । ତାଲିକା ଅନୁସାରେ ପୂଝାରୀ ଓ଼ ଚାକରମାନେ ବଜାରରୁ ଜିନିଷ ଆଣିଲାପରେ, ସେହି ତାଲିକା ଓ ହିସାବ ଘେନି ପିଲାମାନେ ଫେରଂତି; ମାତ୍ର ଏହା ପ୍ରକୃତ କର୍ମକୁଶଳତା ନୁହେଁ । ଛାତ୍ରାବାସର ଯାବତୀୟ କଥା—ଖାଇବା, ଖୁଆଇବା, ଧୋଇବା, ବସିବା, ପଢ଼ିବା, ପଢ଼ାଇବା ସକଳ କାର୍ଯ୍ୟ ପିଲାମାନେ କରିବେ, ହାତରେ କରିବେ—ତେବେ ଶିକ୍ଷା ପୂର୍ଣ୍ଣାଂଗ ହେବ । ଆଜିକାଲି ପାଠପଢ଼ି ଟାଇଟଲ୍ ପାଇ ଫେରି ଆସୁଥିବା ଯୁବକମାନେ ଚାକିରି ଛଡ଼ା କୌଣସି କାର୍ଯ୍ୟ କରିପାରୁ ନାହାଂତି । ମାତ୍ର ତୁମେମାନେ ଏଠାରେ ଘରକାମ ହାତରେ କରି ଶିଖିଲେ ତୁମମାନଂକ ଜୀବନ ସବୁକ୍ଷେତ୍ର ଲାଗି ଓ ସକଳ ଅବସ୍ଥା ଲାଗି ପ୍ରସ୍ତୁତ ହୋଇଯିବ । ପ୍ରଚାରିତ ଓ ବିଜ୍ଞାପିତ ସୁନାମ ସୁନାମ ନୁହେଁ । ପ୍ରକୃତ କାର୍ଯ୍ୟ ନୀରବରେ ହୁଏ । ଯଶ ସମ୍ମାନ ଲାଳସାରେ ଲୋକ ଦେଖାଣିଆ କାର୍ଯ୍ୟ କରିବା ଏ ବିଦ୍ୟାଳୟର ଲକ୍ଷ୍ୟ ନୁହେଁ । ତୁଂଭେମାନେ ସମସ୍ତେ ଭାବି ଏକ ଯୋଜନା ତିଆରି କର । ନିଜ କାର୍ଯ୍ୟ ନିଜେ କରିବ । ବୋର୍ଡ଼ିଂରେ ଚାରିଶହ ପିଲାଂକୁ ଖୁଆଇବ; ଅର୍ଥାତ୍ ପ୍ରତିଦିନ ଗୋଟିଏ ଲେଖା ନିରାଡ଼ଂବର ଭୋଜି କରିବ । ଶିକ୍ଷକମାନେ ସର୍ବସାଧାରଣ ଛାତ୍ରଂକ ପରି ରହିବେ । କ୍ଷମତାର ଅପବ୍ୟବହାର ନହେବାପାଇଁ ଶିକ୍ଷକମାନଂକ ଉପରେ ଅଂକୁଶ ମଧ୍ୟ ରହିବ ।''

ପ୍ରତ୍ୟହ ବିଦ୍ୟାଳୟ ଛୁଟିପରେ ବହୁ ଆଲୋଚନା ଚାଲିଲା । ତିନିଦିନ ମଧ୍ୟରେ ବହୁପ୍ରକାର ଯୋଜନା ପିଲାମାନେ ଓ ଶିକ୍ଷକମାନେ ପେଶ୍ କଲେ । କୌଣସିଟି ପୂର୍ଣ୍ଣରୂପେ କାର୍ଯ୍ୟକାରୀ ହୋଇପାରିଲା ପରି ବୋଧହେଲା ନାଇ । ତୃତୀୟ ଦିନ ରାତିରେ ଖାଇବା ପରେ ପୁଣି ସମସ୍ତେ ଏକତ୍ର ହେଲେ । ମୁଁ ଗୋଟିଏ ଯୋଜନା ମନେ ମନେ ସ୍ଥିର କରିନେଲି । ଛାତ୍ର ଶ୍ରୀ ଚଂଦ୍ରଶେଖରକୁ ମୋ ଯୋଜନା ଲିପିବଦ୍ଧ କରିବାକୁ ଡାକି ବସିଲି, ସେ ଅପ୍ରତ୍ୟାଶିତ ଯୋଜନାଟି ସମସ୍ତଂକ ମନକୁ ଘେନିଲା । ସେହି ଅନୁସାରେ ସ୍କୁଲ ଭାଂଗିବା ପର୍ଯ୍ୟଂତ ବୋର୍ଡ଼ିଂ ଓ ମେସ୍ ସୂଚାରୁରୂପେ ପିଲାମାନଂକ ଦ୍ୱାରା ପରିଚାଳିତ ହୋଇଥିଲା । ମନିଟରମାନଂକ କର୍ତ୍ତବ୍ୟ ଦୈନଂଦିନ ନିର୍ଘଂଟରେ ଯେପରି ଥିଲା, ସେହିପରି ରହିଲା; ମାତ୍ର ପ୍ରତି ବ୍ଲକର ଶେଷ ପ୍ରକୋଷ୍ଠରେ ଜଣେ ଜଣେ ଶିକ୍ଷକ ରହିଲେ । ମନିଟରମାନଂକ ଶକ୍ତି ବହିର୍ଭୂତ କାର୍ଯ୍ୟରେ ସେମାନେ ସାହାଯ୍ୟ କଲେ । ପିଲାମାନଂକର ଅଭାବ ଅଭିଯୋଗ ମନିଟରମାନେ ଶିକ୍ଷକମାନଂକୁ ଜଣାଇବେ । ବ୍ଲକ୍ ଶିକ୍ଷକମାନଂକୁ ସେହି ବ୍ଲକ୍‌ର ଯେକୌଣସି ଛାତ୍ର ନିଜର କଥା ଜଣାଇ ପାରିବ । ମନିଟରମାନଂକ କ୍ଷମତାକୁ ସୁନିୟନ୍ତ୍ରିତ କରିବାପାଇଁ ଏହି ଯୋଜନା ଉଦ୍ଦିଷ୍ଟ ଥିଲା ।

## ୮୮। ମୁଁ ପ୍ରଧାନଶିକ୍ଷକ ଥିବାବେଳର କେତୋଟି କଥା

ମୋର ପ୍ରଧାନ ଶିକ୍ଷକତ୍ୱ ସମୟର ଘଟଣାବଳୀ ଆଜି ସ୍ପଷ୍ଟରୂପେ ମୋର ମନେ ନାହିଁ । ତେବେ ମୋର ଯେପରି ମନେ ହେଉଚି, ମୁଁ ଅତି ଗଂଭୀର ଥିଲି ଓ ପିଲାମାନେ କିପରି ଭଲ ପାଠ ପଢ଼ିବେ, ଶୁଣିବାମାତ୍ରେ ଗିଳିପକାଇ ମନେରଖି ପାରିବେ ଓ ପ୍ରାଂଜଳ ଭାବରେ ଭାବ ବ୍ୟକ୍ତ କରିପାରିବେ, ସେଥିପାଇଁ ମୁଁ ଅତି ତତ୍ପର ଥିଲି । ଏଥିପାଇଁ ମତେ ଅନେକ ସମୟରେ ବଡ଼ ଅସହିଷ୍ଣୁ ହେବାକୁ ପଡୁଥିଲା । ପାଠପଢ଼ାରେ ପିଲାମାନଂକର ଅତ୍ୟଂତ ଆଗ୍ରହ ଦେଖି ମୁଁ ପରେ କ୍ଲାସ ଲାଇବ୍ରେରୀର ବ୍ୟବସ୍ଥା କରିଦେଲି । ପ୍ରତ୍ୟେକ ଶ୍ରେଣୀର ଉପଯୋଗୀ ପୁସ୍ତକଗୁଡ଼ିଏ ଗୋଟିଏ ଗୋଟିଏ ଛୋଟ ଆଲମାରୀରେ ପ୍ରତି ଶ୍ରେଣୀ ଗୃହରେ ରଖା ଯାଉଥିଲା । ଗୋପବଂଧୁବାବୁ କ୍ଲାସ ଲାଇବ୍ରେରୀର ବହି ଦିଆଯିବାର ଆଉ ଗୋଟିଏ ବିଧି ଯୋଡ଼ି ଦେଲେ । ପ୍ରତିକ୍ଲାସର ଶିକ୍ଷକମାନେ ଛାତ୍ରର ମାନସିକ ରୁଚି ଓ ଗ୍ରହଣ କ୍ଷମତା ଜାଣି ତାକୁ ଉପଯୋଗୀ ପୁସ୍ତକ ଦେବେ ଏବଂ ସେ ବହି ପଢ଼ି ଫେରାଇଲା-ବେଳେ ତା'ଠାରୁ ପାଠ ଆଦାୟ କରିବେ ।

କହିରଖିବାର ଅଛି, ଓଡ଼ିଶାର ତତ୍କାଳୀନ ଶିକ୍ଷାବିଭାଗ ଇନ୍‌ସପେକ୍ଟର ମିଃ ମ୍ୟାକୋଂବି ସତ୍ୟବାଦୀ ପରିଦର୍ଶନରୁ ଫେରି ପରେ କ୍ଲାସ ଲାଇବ୍ରେରୀର ଏହି ପଦ୍ଧତିକୁ ଓଡ଼ିଶାର ସମସ୍ତ ସ୍କୁଲ ପାଇଁ ଚଳେଇବାର ଚେଷ୍ଟା କରିଥିଲେ । ଆଜି ସେଇ ପଦ୍ଧତିର ଛାୟା ସ୍କୁଲମାନଂକରେ ଆନୁସୃତ ହେଉଅଛି ।

ଆଉ ଗୋଟିଏ କଥା । ଇନ୍‌ସପେକ୍ଟର ମ୍ୟାକୋଂବି ସାହେବ କ୍ଲାସ ଦେଖୁ ଦେଖୁ ମାଇନର ଶେଷ କ୍ଲାସରେ ଜଣେ ଛାତ୍ରର ମଡ଼େଲ ଡ୍ରଇଁ ଦେଖି ବଡ଼ ଆଗ୍ରହ ପ୍ରକାଶ କରିଥିଲେ, ଏ ମଡ଼େଲ୍ ଡ୍ରଇଁ ଶିକ୍ଷାର ଗୋଟିଏ କ୍ଷୁଦ୍ର ଇତିହାସ ଅଛି । ଦିନେ ସ୍କୁଲର ହେଡ୍‌ପଂଡ଼ିତ କହିଲେ, ''ମାଇନର କ୍ଲାସରେ ମଡ଼େଲ ଡ୍ରଇଁ ପରୀକ୍ଷା ହେବାର ଗୋଟିଏ ବିଭାଗୀୟ ବ୍ୟବସ୍ଥା ହେଲାଣି । ମଡ଼େଲ ଡ୍ରଇଁ ଶିଖିବା ପାଇଁ ଆମକୁ ଆପଣ କଟକ ନରମାଲ୍ ଇସ୍କୁଲ ପଠାଂତୁ । ନୋହିଲେ ଆମେ ଶିଖାଇପାରିବୁ ନାଇ ।''

ମୁଁ ଟିକିଏ ଚୁପ୍ ରହିଲି ଓ ତା'ପରେ କହିଲି—''ହଉ ମୁଁ ନିଜେ ଶିଖାଇବି ।'' ତା'ପରେ ମୁଁ ଚକ୍ଷୁବିଜ୍ଞାନ ସଂବଂଧୀୟ ବହି (Optics) ମଗାଇ ସେହି ବହିରୁ ଦେଖି ଦେଖି ପଂଦରଟି ପାଠ ଦେଲି । ସେହି ପଂଦରଟି ପାଠର ଫଳରେ ଛାତ୍ରମାନେ ଭଲ ମଡ଼େଲ ଡ୍ରଇଁ କରିପାରୁଥିଲେ । ମୁଁ ସେ କଥାଟି ଇନ୍‌ସପେକ୍ଟର ମ୍ୟାକୋଂବି ସାହେବଂକୁ ବର୍ଣ୍ଣନା କରି କହିଦେଲି । ସେ ଟିକିଏ ଆଶ୍ଚର୍ଯ୍ୟ ହେଲା ପରି ମୋତେ କହିଲେ—''ଆପଣ ଏ ପଂଦରଟି ପାଠ ଗୋଟିଏ କ୍ଷୁଦ୍ର ପୁସ୍ତକରେ ଛପାଇ ଦିଅଂତୁ; ଦରକାରରେ ଆସିବ ।''

ମୁଁ ସେଇ ପଂଦରଟି ପାଠ ସଂକଳିତ ପୁସ୍ତକକୁ "A hand book of model Drawing" ନାମରେ ଛପାଇ ଦେଲି । ପରେ ସେଇ ପୁସ୍ତକ ସବୁ ଇସ୍କୁଲ ପାଇଁ ପାଠ୍ୟରୂପେ ମନୋନୀତ ହୋଇଥିଲା ।

ପ୍ରତ୍ୟେକ ଶ୍ରେଣୀରେ ଭୂଗୋଳ ଓ ଇତିହାସ ପଢ଼ାଇବା ପାଇଁ ମୁଁ ଗୋଟିଏ ପଦ୍ଧତି ପ୍ରଚଳନ କରିଥିଲି । "Significant No.6" ବୋଲି ଗୋଟିଏ ନୀତି ବାହାର କରି

ପିଲାମାନଙ୍କୁ ବୁଝାଇଦେଲି ଯେ, 'ଆଦିମ ଯୁଗ', 'ବୈଦିକ ଯୁଗ', 'ହିନ୍ଦୁ ଯୁଗ', 'ମୁସଲମାନ ଯୁଗ', 'ମରହଟ୍ଟା ଯୁଗ' ଓ 'ବ୍ରିଟିଶ ଯୁଗ'—ଏ ଛ' ଯୁଗ; ବେଦ ଚାରି, ବେଦାଂଗ ଓ ଦର୍ଶନଶାସ୍ତ୍ର ଏ ମଧ୍ୟ ଛ' । ଚନ୍ଦ୍ରଗୁପ୍ତ, ଅଶୋକ, କନିଷ୍କ, ହର୍ଷବର୍ଦ୍ଧନ, ଯଶୋବର୍ଦ୍ଧନ ଓ ପୃଥ୍ୱୀରାଜ—ଏମାନେ ଛ' ରାଜା । ଦେଶ ବିଦେଶର ଜ୍ଞାନଲାଭ କରିବା ପାଇଁ ସିଲାବସ୍‌ରେ ଅତିରିକ୍ତ ମାନଚିତ୍ର ୧୦୦ ନଂବରର ବିଧାନ ଥିଲା । ସେ ନଂବର ମୋଟ ନଂବରରେ ମିଶାଯାଇ ମୋଟ୍ରିକସନ୍‌ରେ ସାହାଯ୍ୟ କରେ ।

ଶିକ୍ଷାଦାନରେ ଅବହେଳା ପ୍ରଦର୍ଶନ କରୁଥିବା କିଂବା ଭ୍ରମମାର୍ଗରେ ପରିଚାଳିତ କରୁଥିବା ଶିକ୍ଷକମାନଂକ ପ୍ରତି ମୁଁ ଅତି ନିଷ୍ଠୁର ଥିଲି । ମୋର ମନେଅଛି ଥରେ ଜଣେ ନୂତନ ଗ୍ରାଜୁଏଟ ଶିକ୍ଷକ ହୋଇ ସତ୍ୟବାଦୀକୁ ଆସିଲେ । ସେ ନବମ ଶ୍ରେଣୀରେ ଇଂରାଜୀ ବ୍ୟାକରଣ ପଢ଼ାଇବାକୁ ଯାଇ କହିଲେ, "Any word ending with ly is an adverb" ମୁଁ ଛକି ପଦାରେ ଏକଥା ଶୁଣୁଥାଏ । ଜଣେ ବିଚକ୍ଷଣ ଛାତ୍ର ତାଂକୁ ସଂଗେ ସଂଗେ ପ୍ରଶ୍ନ କଲା— "Itally and Cicily ମଧ୍ୟ adverb ?" ମୁଁ ଏହାପରେ କ୍ଲାସରୁ ସେ ନୂତନ ଶିକ୍ଷକଂକୁ ଡକାଇଆଣି ସତ୍ୟବାଦୀ ସ୍କୁଲ ଛାଡ଼ି ଅନ୍ୟତ୍ର ଚାଲିଯିବାକୁ କହିଲି ।

କେବଳ ଏତିକି ନୁହେଁ, କୌଣସି ଛାତ୍ରର ଔଦ୍ଧତ୍ୟ କିଂବା କ୍ଷୀଣ ଅହମିକା ଦେଖିଲେ ମୁଁ ସହିପାରୁ ନଥିଲି । ସେଥିଯୋଗୁ ପିଲାମାନେ ମତେ ଅତ୍ୟଂତ ଭୟ କରୁଥିଲେ; କିଂତୁ କର୍ତ୍ତବ୍ୟ ପାଖରେ ମୁଁ ଯେତିକି ନିଷ୍ଠୁର ହେଉଥିଲି କୃତିତ୍ୱ ପାଖରେ ସେତିକି ନିଷ୍କପଟ ଭାବରେ ନିଜକୁ ଅଜାଡ଼ି ଦେଇ ପିଲାମାନଂକ ସହିତ ମିଶିଯାଉଥିଲି । ଆଜି ବି ଏ ବୃଦ୍ଧ ବୟସରେ ମୋ ସହିତ ମିଶିଥିବା ଲୋକେ ଏଇକଥା ଅନୁଭବ କରୁଥିବେ ।

## ୮୯। କୋଣାର୍କ ପର୍ଯ୍ୟଟନ

୧୯୧୭ କୁମାରପୂର୍ଣ୍ଣିମା କୋଣାର୍କ ପର୍ଯ୍ୟଟନ ମୋ ଜୀବନର ଏକ ଅବିସ୍ମରଣୀୟ ଅଧ୍ୟାୟ । ମୋର ଶ୍ରେଷ୍ଠ କାବ୍ୟ 'କୋଣାର୍କେ'ର 'ରାମଚଂଡ଼ୀରେ ସନ୍ଧ୍ୟା ଓ ରାମଚଂଡ଼ୀରେ ସକାଳ' ରଚନା କରିବାର ବିପୁଳ ପ୍ରେରଣା ମୁଁ ଏଇ ୧୯୧୭ ଯାତ୍ରାରେ ଲାଭ କରିଥିଲି । ଏହା କୋଣାର୍କକୁ ସତ୍ୟବାଦୀ ସ୍କୁଲର ଦ୍ୱିତୀୟ ଯାତ୍ରା । ପ୍ରଥମ ଯାତ୍ରା କଥାଟି ଟିକିଏ କହିଦିଏ, ବିଦ୍ୟାଳୟର ଚାରିଶହ ଛାତ୍ର ଓ ଶିକ୍ଷକ ଏଗାର ଖଂଡ଼ି ଶଗଡ଼ରେ ଖାଦ୍ୟସାମଗ୍ରୀ ଲଦି କୋଣାର୍କ ଅଭିମୁଖେ ବାହାରିଲୁ । ପିଲାମାନେ କେବଳ ଗପରେ ସମୟ ନଷ୍ଟ କରିବେ ନାହିଁ ବୋଲି ସମସ୍ତଂକୁ କ୍ଲାସ ଲାଇବ୍ରେରୀମାନଂକରୁ ଏବଂ ସ୍କୁଲର ସାଧାରଣ ଲାଇବ୍ରେରୀରୁ ନିର୍ବାଚନ କରି ଶ୍ରେଣୀଶିକ୍ଷକମାନେ ପୁସ୍ତକ ଦେଇଥିଲେ ।

ସେ ଯାତ୍ରା ଅତି ଆନଂଦଦାୟକ ଓ କୌତୂହଳପ୍ରଦ ହୋଇଥିଲା । ଉପରବେଳା ଆଂଭେମାନେ ବାହାରିବା ଆଗରୁ କର୍ମଠ ଓ ଉତ୍ତମ ବାଳକ ଆଠଜଣ ଆଗରୁ ଯାଇ ବଳଂଗା ହାଟରେ କ୍ୟାଂପ୍ କରି, ଖିଆପିଆର ଯୋଗାଡ଼ କରିଥିଲେ । ସେତେବେଳେ ପ୍ରଥମ ପୃଥିବୀ ମହାଯୁଦ୍ଧ ଲାଗିଥାଏ । ଚାରିଶହ ବାଳକ ଦଳବଳ ହୋଇ ମନିଟରଂକ ଅଧୀନରେ ଚାଲିଥାଂତି ସୈନିକମାନେ ଶୃଂଖଳିତ ଓ ନିୟମିତ ଭାବରେ ପାଦ ପକାଇ ଚାଲିବା ପରି ଆଂଭେମାନେ

ଚାଲିଥାଉଁ । ଶିକ୍ଷକମାନେ ବାଂଟି ହୋଇ ଗ୍ରୁପ୍‌ଗୁଡ଼ିକର ଚାଲିଚଳନ ନିରୀକ୍ଷଣ କରୁଥାଂତି । ଦର୍ଶକମାନେ ଆଂଭମାନଂକୁ ସୈନିକ ବୋଲି ବିଚାରୁଥାଂତି । ଅନ୍ୟାନ୍ୟ ଶିକ୍ଷକମାନେ ଦୀର୍ଘ ପଙ୍‌କ୍ତିଦ୍ୱୟର ମୂଳରୁ ଶେଷଯାଏଁ ଦେଖି ଦେଖି ଚାଲିଥାଂତି । ବଳଂଗା ହାଟରେ ସନ୍ଧ୍ୟାର ଅବ୍ୟବହିତ ପୂର୍ବରୁ ପହଂଚିଲୁ । ଘଂଟା ଅନୁସାରେ କାର୍ଯ୍ୟ ହେଲା । ପରଦିନ ନିମାପଡ଼ା ମାଇନର ସ୍କୁଲର ଶିକ୍ଷକ ଓ ଛାତ୍ରମାନେ ଆଂଭମାନଂକୁ ବହୁ ସାହାଯ୍ୟ କରିଥିଲେ । ସେମାନଂକର ବ୍ୟବହାର ଏଡ଼େ ସୁଂଦର ଥିଲା ଯେ ଆଂଭେମାନେ ସେମାନଂକୁ ଆମ ଭିତରର ବୋଲି ଧରିନେଇଥିଲୁଁ । ସେଠାରେ ଶ୍ଳୋକାଂତ ହୋଇଥିଲା । ତହିଁରେ ଆକୃଷ୍ଟ ହୋଇ ନିମାପଡ଼ା ଶିକ୍ଷକ, ଛାତ୍ର ଓ ଲୋକସାଧାରଣ ଜମିଯାଇ ଶୁଣୁଥିଲେ ।

ନିମାପଡ଼ାରେ ସେ ଦିନକ କଟାଇ ସକାଳୁ ଯାଇ ଗୋପ ହାଟରେ । ଖରାବେଳେ ପହଂଚିଲୁ ଓ ସେଠାରେ ବିଶ୍ରାମ ନେଲୁ । ସନ୍ଧ୍ୟାବେଳେ ଟିକିଏ ଦୀର୍ଘପଥ 'ଖରାଗାଁ'କୁ ଯିବାର ଠିକ୍ ହୋଇଥିଲା । ଆଗରୁ ସ୍ୱେଚ୍ଛାସେବକମାନେ ଯାଇଥିଲେ । ପ୍ରାୟ ପାଂଚମାଇଲ ଦୂରରୁ ସନ୍ଧ୍ୟା ଓ ଅଂଧାର ହୋଇଗଲା । ସେ ଅଂଚଳ ଦୂର ମଫସଲ । ଲୋକମାନେ ଆଂଭମାନଂକର ଦୀର୍ଘ ପଙ୍‌କ୍ତିଦ୍ୱୟର ଶୃଂଖଳିତ ପଦକ୍ଷେପ ଓ 'ଲେଫ୍‌ଟ ରାଇଟ୍' ଆଦେଶ ମୂଳକ ଶବ୍ଦମାନ ଶୁଣି ଆଂଭମାନଂକୁ ସୈନ୍ୟଦଳ ବୋଲି ବିଚାରି ଦୂରରେ ରହିଲେ । ବାଟ ଦିଶୁ ନଥାଏ । ଶଗଡ଼ ସରିରେ ଆଂଭେମାନେ ଚାଲିଥାଉ । ଆଂଭେମାନେ ସବୁଗୁଡ଼ିକ ଲଂଠନ ଜଳାଇ ଉପରକୁ ଟେକିଧରିଲୁ । ଖରାଗାଁର ଲୋକେ ଆମକୁ ଅପେକ୍ଷା କରିଥାଂତି । ସେମାନେ ବି ଗଛରେ ଚଢ଼ି ଆଲୋକ ଦେଖାଇଲେ ଏବଂ ବାଦ୍ୟ ଧ୍ୱନିକଲେ । ବାଟ ଦେଖି ନଥିବାରୁ ଆଉ ଖରାଗାଁ ଯିବା କଷ୍ଟକର ହେଲା ନାହିଁ । ଦଳେ ଭଦ୍ରବ୍ୟକ୍ତି ଖରାଗାଁରୁ ଆସି ବାଦ୍ୟ ବଜାଇ ଆମକୁ ପାଛୋଟି ନେଲେ । ସେଠାରେ ଏକ ବିରାଟ ଭୋଜୀର ବ୍ୟବସ୍ଥା ଆଗରୁ ହୋଇଥିଲା । ଡେରିରେ ପହଂଚିବାରୁ ସେଦିନ ଘଂଟା ବାଜିବା ଅନୁସାରେ କାର୍ଯ୍ୟକ୍ରମ କୋହଳ କରିଦିଆଗଲା । ଚର୍ଚ୍ଚା କରୁଥିବା ଭଦ୍ରଲୋକ ମହାଶୟ ପାନ ପ୍ରଭୃତି ମୁଖବାସର ବ୍ୟବସ୍ଥା କରିଥିଲେ; କିଂତୁ ଛାତ୍ରମାନଂକ ପାଇଁ ତାହା ନିଷିଦ୍ଧ ବୋଲି ଜଣାଇଦେଲି ।

ତହିଁଆରଦିନ ସକାଳବେଳା ଅତି ଚଂଚଳ ଖିଆପିଆ ସାରି କୋଣାର୍କ ଯିବାକୁ ବାହାରିଲୁଁ । ଜଣେ ବାଳକ କୋଣାର୍କ ଦେଖିବା ଆଗ୍ରହକୁ ସଂଭାଳି ନପାରି ତିନିଚାରି ଜଣକୁ ମତାଇ ଆଗ ଦେଖିଆସିଲା । ମୁଁ ଏକଥା ଜାଣି ତାକୁ ଦଂଡ଼ ଦେଲି ଏବଂ ସମସ୍ତଂକୁ ବୁଝାଇ ଦେଲି ଯେ, ବିନା ଅନୁମତିରେ ଯିବା ପ୍ରଥମ ଦୋଷ, ଦ୍ୱିତୀୟ ଦୋଷ ସ୍ୱାର୍ଥପରତା । ତତ୍ପରେ ପଙ୍‌କ୍ତିବଦ୍ଧ ହୋଇ ଆମେ ଚାଲିଲୁ । ଦୂରରୁ ମଂଦିରର ହାତୀ ଘୋଡ଼ାସବୁ ଜୀବଂତ ପରି ଦେଖାଯାଉଥାଂତି । ବେଢ଼ା ଭିତରେ ପ୍ରବେଶ କରି ପ୍ରତ୍ୟେକ ମୂର୍ତ୍ତି, ପ୍ରତ୍ୟେକ ପ୍ରସ୍ତରଖଂଡ଼ ଓ ମୁଖଶାଳା, ପ୍ରଧାନ ମଂଦିର ଏବଂ ସୁରକ୍ଷିତ ମୂର୍ତ୍ତିମାନ ଦର୍ଶନ କଲୁ । ମନପୂରାଇ ସମସ୍ତ ଦୃଶ୍ୟ ଦେଖି ସେଠାରେ ଥିବା ଡାକବଂଗଳାରେ ବିଶ୍ରାମ ନେଇ ଅନ୍ୟ ବାଟରେ ସମସ୍ତେ ଫେରି ଆସିଲୁ ।

ତା'ପରେ ଏଇ କୋଣାର୍କକୁ ୧୯୧୭ରେ ଆଉଥରେ ଯାତ୍ରା କରିଥିଲୁ । ମୋ 'କୋଣାର୍କେ' କାବ୍ୟ ପ୍ରଥମେ ଏଇ ସ୍ମୃତିରେ ଆରଂଭ ହୋଇଛି । ଏଇ ଯାତ୍ରାରେ ମୋ ସାଂଗରେ ପ୍ରାୟ ପଚାଶଜଣ ପିଲା ଥିଲେ । ସଂଗରେ ଗୋଦାବରୀଶ ବାବୁ ମଧ ଥିଲେ । କୋଣାର୍କଠାରୁ

କୁଶଭଦ୍ରା ନଦୀର ମୁହାଣ ଉପରେ ଅବସ୍ଥିତ ରାମଚଂଡ଼ୀ ସେଠାକୁ ଚାରିମାଇଲ ସେଠାରେ ରାତିରେ ରହିଲୁ । ପିଲାମାନଂକ ସଂଗେ ଡାକବଂଗଳାରେ ବସିଚି । କୋଣାର୍କର ଅପାସୋରା ଛିନ୍ନସ୍ମୃତି ମତେ ଦୋହଲଉଥାଏ । ପିଲାମାନେ ମା' ଭଉଣୀକୁ ଛାଡ଼ି ଆଜି ଦୂରରେ । ଗ୍ରାମରେ ଥିଲେ ଡେଉଁଥାଂତେ; ଖେଳୁଥାଂତେ; କେତେ ମଉଜ କରୁଥାଂତେ । ସେମିତି ଗୋଟାଏ ପିଲାଦିନର ଅନୁଭୂତି ପିଲାଂକ ମେଳରେ ମୋ ମନରେ ଚେଇଁଉଠିଲା; ମାତ୍ର ସେତିକିବେଳେ ଘୋର ଝଡ଼ବର୍ଷା ମାଡ଼ିଆସିଲା । ଆମେ କୌଣସିମତେ ରାତିଟି କଟେଇ ତା'ପରଦିନ ସତ୍ୟବାଦୀକୁ ଫେରିଆସିଲୁ । ମୁଁ ସେଇଠି ମୋ 'କୋଣାର୍କେ' କାବ୍ୟର ପରିକଳ୍ପନା କଲି ।

## ୯୦। ଛାତ୍ରମାନଂକ ଆଲୋଚନା ସଭା

ପ୍ରତି ଶନିବାର ଦିନ ଛାତ୍ରମାନଂକର ଆଲୋଚନା ସଭା ହେଉଥିଲା । ସେଥିରେ ବେଳେ ବେଳେ ସଭାରେ ଦ୍ୱଂଦ୍ୱାତ୍ମକ ବିଷୟ ଘେନି ପ୍ରବଳ ଯୁକ୍ତିତର୍କ ମଧ ହୁଏ । କ୍ରମେ ଏଥିରେ ଛାତ୍ରମାନଂକର ଲେଖନ ପରିପାଟୀ ଓ ବକ୍ତୃତାରେ ରୁଚି ଓ ଦକ୍ଷତା ମଧ ପ୍ରକାଶ ପାଉଥିଲା । (ଏତିକିବେଳେ ଶ୍ରୀଯୁକ୍ତ ରତ୍ନାକର ପତି ସ୍କୁଲକୁ ଶିକ୍ଷକ ହୋଇ ଆସିଥିଲେ । ସେ ଛାତ୍ରମାନଂକ ସଂଗେ ପ୍ରତ୍ୟକ୍ଷ ଭାବରେ ମିଶୁ ନଥିଲେ; ପରୋକ୍ଷରେ ସବୁ ଦେଖୁଥିଲେ ଓ ଜାଣୁଥିଲେ) କିଂତୁ କ୍ରମେ ଦେଖାଗଲା—ସଭାରେ ଛାତ୍ରଂକ ଉପସ୍ଥିତି କମି ଯାଉଚି । ସେଠୁ ଦିନେ ମୁଁ ସଭାର କର୍ମକର୍ତ୍ତା ଛାତ୍ରମାନଂକୁ ଡାକି କହିଲି, "ଗୋଟିଏ କଥା କର । ବିନା ପଇସାରେ ଶିଖିବା ବଡ଼ ସହଜ ନୁହେଁ । ଏଣିକି ପ୍ରତ୍ୟେକ ଛାତ୍ର ଚାରିଅଣା ପ୍ରବେଶିକା ଫି ଦେବେ ଓ ପ୍ରତି ସଭାଦିନ ପ୍ରତି ଛାତ୍ର ଗୋଟିଏ ଗୋଟିଏ ପଇସା ଦେଇ ଉପସ୍ଥାନ ପକାଇବେ ଏବଂ ଗୋଟିଏ ଟଂକା ଏକା ସାଂଗରେ ଦେଲେ ବରାବର ମେଂବର ରହିବେ, ଆଉ ଉପସ୍ଥାନ ପକାଇବେ ନାଇ ଓ ସେମାନଂକ ପ୍ରତି ଧରାବଂଧା ନିୟମ କିଛି ରହିବ ନାଇ; ମାତ୍ର ତିନିଥର ପଇସା ନଦେଇ ଅନୁପସ୍ଥିତ ରହିଲେ ନାମ କଟିଯିବ ଓ ପ୍ରବେଶିକା ଫି ଚାରିଅଣା ପୁଣି ନୂଆକରି ଦେବାକୁ ହେବ ।" ଆଉ ମଧ ଚିତ୍ତାକର୍ଷକ କରିବା ପାଇଁ ଗୋଟିଏ ଯୋଜନା ମଧ ଯୋଡ଼ିଦେଲି । ଥରେ ପ୍ରବଂଧପାଠ, ଥରେ ବକ୍ତୃତା ଓ ତା'ପରେ ଲାଗି ଲାଗି ଦୁଇ ଶନିବାରରେ ଦୁଇଥର ବକ୍ତୃତା ପ୍ରତିଯୋଗିତା ହେବାର ସ୍ଥିର ହେଲା । ମାସର ଶେଷ ଶନିବାର ଦିନ କ୍ଲବର ଗୋଟିଏ ବୈଠକ ହେବ । ତା ନାମ 'Lalegro club' ତହିଁରେ ଯେ ଯା ଇଚ୍ଛା କରିବ ଅର୍ଥାତ୍ ପ୍ରବଂଧ ପାଠ, କବିତା ଆବୃତ୍ତି, ଗଳ୍ପପାଠ, ବକ୍ତୃତା ଆଲୋଚନା ଇତ୍ୟାଦି କରିପାରିବେ ଭାଷା ଉପରେ ଗୁରୁତ୍ୱ ନଦେଇ ଏସବୁ ହୋଇ ପାରିବ ବୋଲି ଠିକ୍ କଲି; ଯେ ଯାହା ପଢ଼ିବେ, ସେ ପାଂଚଦିନ ଆଗରୁ ସଂପାଦକଂକୁ ତାହା ଜଣାଇବେ ଓ ବିଷୟ ବଛା ହେବ ।

ଇତିହାସ ଆଲୋଚନା ପାଇଁ ରବିବାର ସକାଳୁ ସଭା ବସିବାର ଓ ସେଥିପାଇଁ ସ୍ୱତନ୍ତ୍ର କର୍ମୀ ନିଯୁକ୍ତ ହେବାର ସ୍ଥିର ହେଲା ।

ଏ ବିଚାର ରାତି ବାରଟାରେ ସ୍ଥିର ହେଲା । ତା'ପରେ ଉତ୍ସୁକ ପିଲାମାନେ ରାତିରେ ଫେରିଗଲେ । ତହିଁ ଆରଦିନ ସକାଳୁ ଏକଥା ବୋଡ଼ିଂ ଓ ସ୍କୁଲରେ ପ୍ରଚାରିତ ହୋଇଗଲା । ସମସ୍ତଂକର ଭାରି ଉତ୍ସାହ ଦେଖାଗଲା । ଶହ ଶହ ଛାତ୍ର ଆସି ନାମ ଲେଖାଇଲେ । ତାହା

ପରଠାରୁ ଛାତ୍ରଂକର ଆଲୋଚନା ସଭା ଖୁବ୍ ଜାଗି ଉଠିଲା । ଏତିକିମାତ୍ର ଏବେ ମନେପଡୁଚି ଶିକ୍ଷକମାନଂକର ଆଲୋଚନାରେ ଭାଗ ନେବା ଭିତରେ ଗୋଦାବରୀଶ ସେକ୍ସପିୟରରୁ ଆବୃତ୍ତି କରୁଥିଲେ । ମୁଁ ମଧ୍ୟେ ମଧ୍ୟେ ସଂସ୍କୃତରେ ପ୍ରବଂଧ ଲେଖୁଥିଲି । ତା'ଛଡ଼ା ଇଂରେଜୀରେ କେତେକ ପ୍ରବଂଧ ଯଥା—'Advent of Aryans' ପରି ପ୍ରବଂଧ ଲେଖିଥିବା ମୋ ମନେ ହେଉଚି ।

## ୯୧। ସ୍କୁଲର ବାର୍ଷିକ ସମ୍ମିଳନୀ

ପ୍ରତିବର୍ଷ ଡିସେଂବର ବା ଜାନୁୟାରୀ ମାସରେ ବିଦ୍ୟାଳୟର ବାର୍ଷିକ ସମ୍ମିଳନୀ ହୁଏ । ବର୍ଷେ ମିଃ ମଧୁସୂଦନ ଦାସଂକୁ ସଭାପତି ମନୋନୀତ କରାଯାଇଥିଲା । ସେ ଆସିବେ ବୋଲି କହିଥିଲେ । ଜରଯୋଗୁ ସେ ଆସିପାରିଲେ ନାଇ । ସ୍କୁଲକୁ ସବୁଆଡୁ ଭଦ୍ରଲୋକ ଡକା ଯାଇଥିଲେ । ଶେଷକୁ ଠିକ୍ ହେଲା ଗଂଜାମର ହରିହର ପଂଡ଼ାଂକୁ ସଭାପତି କରିବାକୁ ହେବ । ସେଦିନ ଗାଡ଼ିନେଇ ହରିହର ପଂଡ଼ାଂକୁ ଷ୍ଟେସନ୍‌ରୁ ପିଲାଏ ଘେନି ଆସିଲେ । ସେ ଦିନଯାକ ଲାଗି ବକ୍ତୃତାଟି ଜଣେ ପିଲାକୁ ଡାକି ଦେଲେ । ଲେଖା ସରିଗଲା ।

ସେଦିନ ତିନିଟା ବେଳକୁ ସଭା କାର୍ଯ୍ୟ ଆରଂଭ ହୋଇଅଛି । ପୁରୀ ମହଂତ ମହାରାଜାଂକ ସହିତ ନିଜେ ମିଃ ଦାସ ଆସି ଅପ୍ରତ୍ୟାଶିତ ଭାବରେ ପହଂଚିଗଲେ । ତାଂକ ଦେହରେ ଜର ଥାଏ । ସେ କହିଲେ—"ପିଲାଂକ କଥା ମନେପଡ଼ିଲା, ଆଉ ସଂଭାଳି ହେଲା ନାହିଁ ।" କାର୍ଯ୍ୟକ୍ରମ ମଧ୍ୟରେ ତାଂକର ଗୋଟିଏ ବକ୍ତୃତା ମଧ୍ୟ ରଖି ଦିଆଗଲା । ସେ ସେଦିନ ଗୋଟିଏ ସୁଂଦର ବକ୍ତୃତା ସେଇ ଜ୍ୱରରେ ଦେଇଥିଲେ । ସେଦିନ ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ପିଲାଂକ ମେଳରେ ବସି ଖାଇଲେ, ଦୁଇଘଂଟା ଠାରୁ ଚାରିଘଂଟା ପର୍ଯ୍ୟଂତ ଶ୍ଳୋକାଂତ ଏବଂ ୪ଟାଠାରୁ ୫/୩୦ ପର୍ଯ୍ୟଂତ ତୁ' ତୁ' ମ୍ୟାଚ ହେଲା । ଶ୍ଳୋକାଂତରେ ମିଃ ଦାସ ନିଜେ ରେଫରି ହୋଇଥିଲେ । ଶେଷକୁ ବହୁ ଛାତ୍ର ଓ ଭଦ୍ରବ୍ୟକ୍ତିମାନଂକ ମଧ୍ୟରେ ବସି ଗପକଲାବେଳେ ମିଃ ଦାସ କହିଲେ—"ଗୋପବଂଧୁ, ନାଳଂଦାଟାଏ ଗଢ଼ିଦେଲୁ ।" ଗୋପବଂଧୁ ମୋତେ ଦେଖାଇ କହିଲେ—"ମୁଁ ନୁହେଁ, ନୀଳକଂଠ ।"

ଏଇ ମିଃ ଦାସଂକ କଥା ଆଉ ଟିକିଏ କହିଦିଏ । ସ୍କୁଲ ଆରଂଭ ହେବା ସମୟରେ ସେକାଳ କନିକା ରାଜାଂକ ପ୍ରଜାସ୍ୱତ୍ୱ ଆଇନ୍ ଘେନି ଗୋଟିଏ ପ୍ରଜାପ୍ରତିନିଧି ସଭା ମଧୁବାବୁ ନିଜ ଘରକୁ ଡାକିଥିଲେ । ସେଥିରେ ପୁରୀ, କଟକ ଓ ବାଲେଶ୍ୱରରୁ ରାଶି ରାଶି ଲୋକଂକୁ ଡାକି ମୋତେ ଓ ଗୋପବଂଧୁବାବୁଂକୁ ସଂପାଦକ କରିଥିଲେ । ଏହାର ଠିକ୍ ପୂର୍ବରୁ ମୁଁ ସ୍କୁଲରେ ଯୋଗଦେଲାବେଳେ ମଧୁବାବୁ ଯେଉଁ ସୁଂଦର ଚିଠିଟି ମୋ ପାଖୁ ଲେଖି ପଠାଇଥିଲେ ତାହା ଆଜି ମୋ ପାଖରେ ନାହିଁ । ହେଲେ ହେଁ ତାହା ଉତ୍ସାହର ଗୋଟିଏ ସ୍ମରଣୀୟ ଆଲୋକରେଖା କହିଲେ ଚଳେ ।

## ୯୨। ବେଠିପ୍ରଥା

ଦୋଳଛୁଟିର ଅଳ୍ପ ପୂର୍ବରୁ ସମସ୍ତ ଶିକ୍ଷକ ଓ ଛାତ୍ର ଖଂଡ଼ପଡ଼ାର ନୀଳମାଧବଂକ ଉଦ୍ଦେଶ୍ୟରେ ପଦଯାତ୍ରା କରିଥିଲୁ । ବାଘମାରୀରେ ପହଂଚି ପରେ ଗୋବିଂଦପୁରରେ କ୍ୟାଂପ

କଲୁ । ସେ ବର୍ଷ ଭାରି ଖରା ହେଉଥାଏ । କେତେକ ଛାତ୍ରଂକୁ ସେଠାରେ ଅଂଧାରକଣା ହେଲା । ସ୍ଥାନୀୟ ଲୋକମାନେ ବହୁ ଆଡ଼ଂବର ଓ ଆୟୋଜନ କରି ସମସ୍ତଂକର ଚର୍ଚ୍ଚା କରିଥିଲେ । ଗୋବର୍ଦ୍ଧନପୁରକୁ ଖଂଡ଼ପଡ଼ା ରାଜାସାହେବ ଚାଳିଶ ଖଂଡ଼ି ଶଗଡ଼ ଆଗରୁ ପଠାଇ ଦେଇଥିଲେ ମୁଁ ଶଗଡ଼ିଆମାନଂକୁ ପଚାରି ବୁଝିଲି ଯେ, ସେମାନେ ବେଠି ଭାବରେ ଶଗଡ଼ ଆଣି ରାଜାଂକ ଭୟରେ ଆସିଚଂତି । ଗଡ଼ଜାତି ଶାସନର ଏଇ ନିର୍ମମ ଅପଚାର ବିରୁଦ୍ଧରେ ମୋର ଆତ୍ମା ବିଦ୍ରୋହ କରି ଉଠିଲା । ଅଧିକଂତୁ ଶଗଡ଼ିଆମାନେ ହାତରୁ ଖାଇବା ଜିନିଷ ଆଣି ଖରାରେ ଆସିଥିଲେ । ମୁଁ କ୍ରୋଧାନ୍ୱିତ ହୋଇପଡ଼ିଲି । ଠାକୁର ମଂଦିର ଆଗରେ ଆମର ଚର୍ଚ୍ଚାକାରୀ ଉତ୍ସାହିତ ଭଦ୍ରଲୋକଂକ ଦ୍ୱାରା ନିର୍ମିତ ବିଶାଳ ଛାମୁଡ଼ିଆ ତଳେ ଏକ ଛାତ୍ର ସଭା କରି ମୁଁ ଗଡ଼ଜାତି ଶାସନର ସ୍ୱରୂପ ସମସ୍ତଂକୁ ବୁଝାଇଦେଲି । ଭୟଭୀତ ଶଗଡ଼ିଆମାନଂକୁ ଫେରିଯାଇ ରାଜାଂକୁ ଜଣାଇବାକୁ କହିଲି ଯେ, ''ସତ୍ୟବାଦୀର ଶିକ୍ଷକ ଓ ଛାତ୍ରମାନଂକ ପାଇଁ ଯେଉଁ ରାଜା ବେଠି ଶଗଡ଼ ପଠାଇଚଂତି, ସେ ରାଜାଂକର ନିମନ୍ତ୍ରଣ ରକ୍ଷା କରିବାକୁ ସତ୍ୟବାଦୀ ବିଦ୍ୟାଳୟ ପ୍ରସ୍ତୁତ ନୁହେଁ ।'' ଶଗଡ଼ିଆମାନେ ବିନୟ କରି କହିଲେ ଯେ ''ସେମାନେ ରାଜାଂକୁ ଏକଥା ଖବର ଦେଲେ ରାଜା ତାଂକର ଧନ, ଜୀବନ ନଷ୍ଟ କରିଦେବେ । ଗଡ଼ଜାତି ଶାସନର ପ୍ରପୀଡ଼ନ ସେମାନଂକ ମୁଖମଂଡ଼ଳରେ ସ୍ପଷ୍ଟ ଦିଶୁଥାଏ । କଥା ହେଲା ଯେ ସରଦାର ଯାଇ କହିବେ, 'ପିଲାମାନେ ବା ଶିକ୍ଷକମାନେ ବେଠି ଶଗଡ଼ ବ୍ୟବହାର କରିବେ ନାଇ ।'' କେତେକ ପିଲାଂକ ପାଇଁ ଶଗଡ଼ ପ୍ରୟୋଜନ ଥିବାରୁ ସେମାନେ ଭଡ଼ା ଦେଇ କେତେ ଖଂଡ଼ି ଶଗଡ଼ ରଖିବେ । ସରଦାର ସେଠାରୁ ଚାଲିଗଲେ । ଆଂଭମାନଂକ ଖାଦ୍ୟ ସାମଗ୍ରୀରୁ ବେଶିକିଛି ସରି ନଥିଲା । ସେଥିରୁ ଶଗଡ଼ିଆମାନଂକୁ ଦେଲାବେଳକୁ ଗୋବିଂଦପୁରର ଭଦ୍ରଲୋକ ଆପତ୍ତି କଲେ ଓ ସେମାନଂକ ପାଇଁ ଖାଦ୍ୟ ପ୍ରସ୍ତୁତ କଲେ । ତହିଁ ଆରଦିନ ସକାଳୁ ଆଂଭେମାନେ କଳାପଥରରେ ପହଂଚିଲୁ । ସ୍ଥାନୀୟ ଧନୀଲୋକମାନେ ଆଂଭମାନଂକର ଚର୍ଚ୍ଚା ପାଇଁ ବିରାଟ ଆୟୋଜନ କରିଥିଲେ । ପ୍ରାୟ ୨୦୦୦ ଲୋକ ଖାଇଲା ଭଳି ଆୟୋଜନ ହୋଇଥିଲା । ଆଂଭେମାନେ ଓଳିଏ ରହିବାରୁ ସେମାନଂକ ମନରେ ଦୁଃଖ ହେଲା । ସନ୍ଧ୍ୟାବେଳେ କଂଟିଲୋ ଯାତ୍ରା କଲାବେଳେ ଖଂଡ଼ପଡ଼ା ରାଜାଂକର ୨୦ଟି ଶଗଡ଼ ଓ ପୂର୍ବ ଶଗଡ଼ିଆ ତଥା ବଳଦମାନଂକ ପାଇଁ ଖାଦ୍ୟ ଓ ମଜୁରୀ ଟଂକା ଆସି ପହଂଚିଲା । ରାଜା ସାହେବ କ୍ଷମା ମାଗି ପତ୍ର ଦେଇଥିଲେ ଏବଂ ଚାହିଁ ବସିଚଂତି ବୋଲି ଲେଖିଥିଲେ; ତେଣୁ ଆଂଭେମାନେ ଆଦରରେ ସେ ସବୁଯାକ ବ୍ୟବହାର କଲୁ । ଶଗଡ଼ିଆମାନଂକର କୌଣସି ସ୍ଥାନରେ ରାଂଧି ଖାଇବାର ପ୍ରୟୋଜନ ନଥିଲା । କଂଟିଲୋଠାରେ ସ୍କୁଲ ଡେପୁଟି ଇନିସ୍‌ପେକ୍ଟର ଶ୍ରୀ ଲୋକନାଥ ପଟ୍ଟନାୟକ ନିଜ କ୍ୟାଂପ ବଂଗଳାରେ ଥିଲେ । ସେ ଆଗରୁ ନିମନ୍ତ୍ରଣ କରିଥିଲେ । ମୁଁ ଓ ଗୋଦାବରୀଶ ତାଂକର ପରିଚିତ ଥିଲୁ । ୭୦୦ ଠାରୁ ୮୦୦ ମଧ୍ୟରେ ଲୋକଂକର ଅତିଥି ସତ୍କାର କରି ସେ ନିଜକୁ କୃତାର୍ଥ ମଣିଲେ । ସନ୍ଧ୍ୟାରେ ସେଠାରେ ଶ୍ଲୋକାଂତ ହୋଇଗଲା ।

## ୯୩। ନୀଳମାଧବ ଦର୍ଶନ

ତହିଁ ଆରଦିନ ସକାଳେ ନୀଳମାଧବ ଦର୍ଶନ । ନୀଳମାଧବଂକର ଓ ଜଗନ୍ନାଥଂକର ଏବଂ ଜଗନ୍ନାଥ ମଂଦିର ଇତିହାସର ଓ ପ୍ରଶସ୍ତି ତଥା ଆର୍ଯ୍ୟଜୀବନ ଓ ଧର୍ମ ସଂବଂଧରେ ମୁଁ

ସମସ୍ତଂକୁ ବିସ୍ତୃତ ଭାବରେ ବୁଝାଇଦେଲି । ସେ ବଡ଼ ଗ୍ରାମଟିରେ କଂସା ବାସନ ତିଆରି ହୁଏ । ସେ ସବୁ ଦେଖିସାରି ସନ୍ଧ୍ୟା ପୂର୍ବରୁ ଖଂଡ଼ପଡ଼ା ଗଡ଼ ଅଭିମୁଖରେ ଯାତ୍ରାକଲୁ ଏବଂ ପ୍ରାୟ ରାତି ଆଠଟା ସରିକି ପହଂଚିଲୁ । ରାଜାସାହେବଂକର ବିଶାଳ ଆୟୋଜନ ଦେଖି ଆମେ ଚମତ୍କୃତ ହୋଇଗଲୁ । ଏତେ ଲୋକଂକ ପାଇଁ ଅସ୍ଥାୟୀ ଘର ତିଆରି ହୋଇଥାଏ । ଶିକ୍ଷକମାନଂକ ପାଇଁ ଘର ଓ ସଭାପାଇଁ ହଲ୍, ଖାଇବା ଓ ରୋଷାଇ ଘର ଆଦି ଅସ୍ଥାୟୀ ଅଥଚ ସୁଂଦର ଭାବରେ ତିଆରି ହୋଇଥାଏ । ସବୁଠାରେ ଗ୍ୟାସ୍ ଲାଇଟ୍ ଓ ପାଣିର ବ୍ୟବସ୍ଥା—କୌଣସି ବିଷୟରେ ଅଭାବ ନଥାଏ । ପହଂଚିବା ମାତ୍ରେ ରାଜାସାହେବ ନିଜେ ଆସି ପ୍ରଥମେ ଜଳଯୋଗର ବଂଦୋବସ୍ତ କରାଇଲେ । ଅୟୋଜନର ଆଡ଼ଂବର ଦେଖି ମୁଁ ରାଜାସାହେବଂକୁ ସତ୍ୟବାଦୀ ବିଦ୍ୟାଳୟର ସଂଯମ ଓ ଶୃଂଖଳା କଥା ବୁଝାଇଦେଲି ଏବଂ ସେଠାରେ ତିନିଦିନ ଅବସ୍ଥାନ ମଧ୍ୟରେ ସରଳତା, ନିୟମ, ଶୃଂଖଳା ଓ ସଂଯମ ନଷ୍ଟ ନହେବା ଭଳି ବ୍ୟବସ୍ଥା କରିବାକୁ ଅନୁରୋଧ କଲି । କେବଳ ରାଜାଂକ ଯୋଗାଡ଼ ଅନୁସାରେ କରାଯାଇଥିବା ଆମୋଦ ପ୍ରମୋଦ ଓ ପାନ ବିଡ଼ି ଗୁଡ଼ାଖୁ ଆଦିର ବ୍ୟବହାର ବଂଦ ରହିଲା । ପରଦିନ ପ୍ରାତଃ କୃତ୍ୟ ଓ ଜଳଯୋଗ ଶେଷରେ ରାଜାସାହେବ ନିଜେ ଆସି ଆଂଭମାନଂକୁ ରାଜବାଟିକୁ ନେଲେ । ରାଜବାଟୀର ସମସ୍ତ ଦର୍ଶନୀୟ ବସ୍ତୁ ଆମେ ବୁଲି ବୁଲି ଦେଖିଲୁ । ଉପରବେଳା ହାତୀ ଘୋଡ଼ା ଓ ବଳଦଗାଡ଼ି ପଠାଇ ଦେଲେ । ଆଂଭେମାନେ ପାହାଡ଼ ଜଂଗଲ ଦେଖିବାକୁ ଗଲୁ । ଜଂଗଲରେ ବାଘ ହେଂଟାଳ ଶୁଣାଯିବାର ଏବେ ମୋର ଅସ୍ପଷ୍ଟ ଭାବରେ ମନେଅଛି ।

ଫେରିଆସି ଜଟଣୀ ଷ୍ଟେସନ୍ ପାଖେ ସାକ୍ଷୀଗୋପାଳଂକର ଖମାର କଚେରି ବାରଂଡ଼ାରେ ଆଂଭେମାନେ ରଂଧାବଢ଼ା ଖିଆପିଆ ସାରି ଦିନ ଚାରିଟାବେଳେ ଗାଡ଼ିରେ ସତ୍ୟବାଦୀ ଫେରିଯିବୁ—ଏହା ସ୍ଥିର ହୋଇଥିଲା; ମାତ୍ର ପ୍ରାୟ ବାରଟା ବେଳେ ଶ୍ରୀ ବ୍ରଜସୁଂଦର ଦାସ ଓ ଗୋପବଂଧୁ ଦାସ ଆସି ପହଂଚିଲେ । ଗୋପବଂଧୁ ବାବୁ ହଠାତ୍ କହିଲେ, "କଟକରେ ଯେଉଁ ଛାତ୍ରମାନେ ଉତ୍କଳ ସମ୍ମିଳନୀରେ ସ୍ୱେଚ୍ଛା ସେବକ ହେବାର ଥିଲା, ମିଃ ଦାସଂକ ସଂଗେ ଅପଡ଼ ହୋଇ ସେମାନେ ସ୍ୱେଚ୍ଛାସେବକ ହେବେନାହିଁ ବୋଲି ଜଣାଇଦେଲେ । ମୋ ପାଖକୁ ବ୍ରଜସୁଂଦର ଏ ଖବର ଘେନି ଆସିଚଂତି; ଆମ ସ୍କୁଲରୁ ସ୍ୱେଚ୍ଛାସେବକ ଯାଇପାରିଲେ କାମ ଚଳିଯିବ ବୋଲି ମିଃ ଦାସ ଚିଠି ଲେଖିଚଂତି । ମୁଁ ଷାଠିଏ ଜଣ ସ୍ୱେଚ୍ଛାସେବକ ନେଇଯିବି ବୋଲି ଆଜି ଟେଲିଗ୍ରାମ୍ କରିଚି ।" ଶେଷରେ ଷାଠିଏ ଜଣ ଛାତ୍ର, ଗୋପବଂଧୁ ବାବୁ, ମୁଁ, ଗୋଦାବରୀଶ ଏବଂ କେତେଜଣ ଆଗ୍ରହୀ ଶିକ୍ଷକ କଟକ ଆସିଲୁ । ଅନ୍ୟମାନେ ସତ୍ୟବାଦୀ ଫେରିଗଲେ ।

ଗାଡ଼ିରୁ ଓହ୍ଲାଇଲା ମାତ୍ରେ ଦେଖିଲୁ ହର୍ଷୋତ୍‌ଫୁଲ୍ଲ ବଦନରେ ମିଃ ଦାସ ଏବଂ ତାଂକର କେତେକ ବଂଧୁଗୁଡ଼ିଏ ଘୋଡ଼ାଗାଡ଼ି ରଖାଇ ପ୍ଲାଟ୍‌ଫର୍ମ ଭିତରେ ଅପେକ୍ଷା କରିଚଂତି । ହଠାତ୍ ଗୋପବଂଧୁଂକୁ ସେ ନିବିଡ଼ ଆଲିଂଗନ କରିସାରି ମୋତେ ଓ ଗୋଦାବରୀଶଂକୁ କୁଂଢ଼ାଇ ପକାଇ କହିଲେ—"ଆସ ନାଳଂଦାର ଗୁରୁ । ଆଉ କର୍ମୀ ଅଭାବ ହେବେନାହିଁ । ମଂଗରାଜ ମଂଗ ମୋଡ଼ି ପାରିବ ନାଇ ।"

## ୯୪। ଉତ୍କଳ ସମ୍ମିଳନୀ ଓ ସତ୍ୟବାଦୀର ସ୍ୱେଚ୍ଛାସେବକ

ସମ୍ମିଳନୀ ଆରଂଭ ହେଲା । ଯେଉଁମାନେ ଆଗରୁ ସ୍ୱେଚ୍ଛାସେବକ ହୋଇଥିଲେ, ସେମାନେ ଦର୍ଶକ ଟିକେଟ ଘେନି ଆସି ସମ୍ମିଳନୀରେ ବସିଥାଂତି; ମାତ୍ର ଆଂଭମାନଂକ ଶାଂତି ଶୃଂଖଳାରକ୍ଷା ଯୋଜନା ଦେଖିବାପରେ ସେମାନଂକ ଆଡୁ ଆଉ କୌଣସି ପ୍ରକାର ଗୋଳମାଳ ହୋଇନଥିଲା । ସଭାସ୍ଥଳକୁ ଲୋକମାନେ ଟିକଟ ଦେଖାଇ ଆସୁଥାଂତି । ସେ ବର୍ଷର ଉତ୍କଳ ସମ୍ମିଳନୀରେ ଏକ ପ୍ରକାର ଉତ୍ସାହ ଓ ଉତ୍ତେଜନା ଥିବାରୁ ବହୁ ଭଦ୍ରବ୍ୟକ୍ତି ଉତ୍କଳର ସବୁ ଅଂଚଳରୁ ଆସିବାର ଥିଲା ।

ମିଃ ଦାସଂକ ଆଦେଶ ଥିଲା ଯେ ଯେକୌଣସି ବ୍ୟକ୍ତି ହେଉପଛକେ, ଟିକେଟ ନ ଦେଖାଇଲେ କାହାରିକି ପ୍ରବେଶ କରିବାକୁ ସ୍ୱେଚ୍ଛାସେବକମାନେ ଦେବେନାହିଁ । ଚାରିଜଣ ସ୍ୱେଚ୍ଛାସେବକ ଦୁଇଟି ସ୍ଥଳରେ ଟିକେଟ୍ ଦେଉଥାଂତି । ଏବଂ ଆଠଜଣ ସ୍ୱେଚ୍ଛାସେବକ ପ୍ରଧାନ ପ୍ରବେଶ ଦ୍ୱାରରେ ଜଗି ରହିଥାଂତି । ଅନ୍ୟ ତିନି ଫାଟକରେ ଦୁଇ ଦୁଇ ଜଣ ନିଯୁକ୍ତ ଥାଂତି । ସେ ବାଟରେ ପ୍ରବେଶ କରିବାକୁ ମନା । ମାତ୍ର ଭିନ୍ନ ଭିନ୍ନ ବାଟରେ ବାହାରକୁ ଯିବାର ବଂଦୋବସ୍ତ ଥାଏ ।

ଜଣେ ଭଦ୍ରବ୍ୟକ୍ତିଂକୁ ସ୍ୱେଚ୍ଛାସେବକମାନେ ବିନା ଟିକଟରେ ଯିବାକୁ ଅନୁମତି ଦେଲେନାହିଁ । ଗୋଦାବରୀଶ ବାବୁ ତାଂକର ପରିଚୟ ଦେବାରୁ ସେ ପ୍ରବେଶ କରିଥିଲେ; କିଂତୁ ବାଟରେ ଆଉ କେତେକ ସ୍ୱେଚ୍ଛାସେବକ ତାଂକୁ ଅଟକେଇ ଦେଲେ । ମିଃ ଦାସ ଆସି ଘଟଣାସ୍ଥଳରେ ପହଂଚି ଗଂଭୀର ଭାବରେ ସ୍ୱେଚ୍ଛାସେବକମାନଂକୁ କହିଲେ—''ତାଂକୁ ଛାଡ଼ିଦିଅ ।'' ତଥାପି ସତ୍ୟବାଦୀର ଛାତ୍ରମାନେ ନିର୍ଦ୍ଧାରିତ ଶୃଂଖଳାକୁ ବ୍ୟତିକ୍ରମ କରି ତାଂକୁ ଅନୁମତି ଦେବାରେ କୁଂଠାପ୍ରକାଶ କଲେ । ଗୋପବଂଧୁ ପହଂଚି କହିଲେ—'ସେ ପରା କବିବର ଗଂଗାଧର ମେହେର, ତାଂକୁ ଛାଡ଼ିଦିଅ ।' ପିଲାମାନେ ତାଂକୁ ଚିହ୍ନି ନଥିଲେ । ତାଂକୁ ବିନୀତ ଅଭିବାଦନ କଲେ, ଗଂଗାଧର ମେହେର ଅଳ୍ପ ଅଳ୍ପ ହସୁଥାଂତି । ଜଣେ ସ୍ୱେଚ୍ଛାସେବକ ସଭାମଂଡ଼ପକୁ ଯାଇ ଗୋଟିଏ ବିଶିଷ୍ଟ ଅତିଥି ଟିକେଟ୍ ଆଣିଲେ । ମିଃ ଦାସ ସତ୍ୟବାଦୀ ଛାତ୍ରଂକ ଶୃଂଖଳା ଜ୍ଞାନ ଦେଖି ଅବାକ୍ ହୋଇଗଲେ ଏବଂ କହିଲେ, ''ଆଉ ଏ ବାଟରେ ଏ ଟୋକାଏ ଛାଡ଼ିବେ ନାଇରେ ବାପା ।'' ତା'ପରେ ମୋତେ କହିଲେ— ''Nilakantha your boys are fine ।'' ସେହିଠାରେ ଠିଆ ହୋଇ ସେ ଗୋଟିଏ କ୍ଷୁଦ୍ର ବକ୍ତୃତା ଦେଲେ । ''ନେପୋଲିଅନ୍ ବୋନାପାର୍ଟଂକ ଜୀବନରେ ଏହିପରି ଏକ ଅନୁଭୂତି ଜଣେ ବିଶ୍ୱସ୍ତ ପ୍ରହରୀଠାରୁ ହୋଇଥିଲା । ନେପୋଲିଅନ୍ ସମ୍ରାଟ୍ ଥିବାରୁ ପ୍ରହରୀକୁ ଯଥେଷ୍ଟ ପୁରସ୍କାର ଦେଇଥିଲେ । ଆମେ ସବୁ କାଂଗାଳ, କି ପୁରସ୍କାର ଦେବି ?'' ଏତିକିବେଳେ ଜନତା ମଧ୍ୟରୁ ଆନଂଦ ଧ୍ୱନି ଉଠିଲା ଏବଂ ମିଃ ଦାସଂକୁ''Uncrowned king of Orissa'' ଧ୍ୱନିରେ ଜନତା ଅଭିବାଦନ ଜଣେଇଲା । ମିଃ ଦାସ କବିବରଂକୁ ମାଲ୍ୟ ଦେଇପୂଜିତ କଲେ ଏବଂ ସେଥିରୁ ଖଂଡ଼ିଏ ସତ୍ୟବାଦୀର ସ୍ୱେଚ୍ଛାସେବକ ଚନ୍ଦ୍ର ଶେଖରଂକ ବେକରେ ପକାଇ ଦେଲେ । ସେହି ସମୟଠାରୁ ସମ୍ମିଳନୀ ଶେଷ ପର୍ଯ୍ୟଂତ ସଭାକୁ ପ୍ରବେଶ ଓ ବହିର୍ଗମନରେ ନିୟମ ସମସ୍ତେ ପାଳନ କରିଥିଲେ ।

ସେଦିନ ଗୋପବଂଧୁ ବାବୁଂକୁ ଦେଶ ମିଶ୍ରଣ ସଂପର୍କରେ ମୁକ୍ତ ବକ୍ତୃତା ଦେବାକୁ ଜନତାର ଅନୁରୋଧ ଶୁଣି ଆଂଭେମାନେ ଅତ୍ୟଂତ ଆହ୍ଲାଦିତ ହୋଇଥିଲୁ । ମିଃ ଦାସ ଗୋପବଂଧୁଂକ କାଂଧରେ ହାତ ପକାଇ ତାଂକୁ ଆଣି ବକ୍ତୃତା ମଂଚରେ ଠିଆ କରାଇ କହିଲେ— "ଗୋପବଂଧୁ ଆଉ ଗୋପ୍ୟ ହୋଇ ରହି ନପାରେ । ଏ ସଂପର୍କରେ ମୋ କହିବା ନଥିଲା । କାରଣ ଲୋକ ପ୍ରାଣରେ ମୋ ଗୋପବଂଧୁ ସ୍ଥାନ ପାଇଚି । ସଭାପତିଂକ ଅନୁମତି ହେଉ ।" ସଭାପତି ମହାଶୟ ଭକ୍ତି ବିନମ୍ର ସ୍ମିତ ବଦନରେ ଗୋପବଂଧୁଂକୁ କେବଳ ଚାହିଁ ଦେଇ ଅନୁମତି ଦିଅଂତେ ଜଳଦଗଂଭୀର ସ୍ୱରରେ ଗୋପବଂଧୁ ଉତ୍କଳର ବିଛିନ୍ନ ଅଂଚଳ ସିଂହଭୂମି, ମେଦିନୀ-ପୁରର ଦୁରାବସ୍ଥା ବର୍ଣ୍ଣନା କରି ଯେଉଁ ବକ୍ତୃତା କରିଥିଲେ, ତାହା ଜନତାଂକୁ କଂଦାଇ ଦେଲା । ଟିକେଟ୍ ବଂଟା ଓ ପ୍ରବେଶ ତଥା ବହିଁଗମନ ବଂଦକରି ଆଂଭେମାନେ ନିବିଷ୍ଟ ମନରେ ଶୁଣିଲୁ । ବ୍ରିଟିଶ୍ ସରକାରଂକର ଅଯୌକ୍ତିକ ଉତ୍କଳର ବିଚ୍ଛେଦରେ ତୀବ୍ର ଓ ନିର୍ଭୀକ ସମାଲୋଚନା ଗୋପବଂଧୁଂକୁ ଅତି ଉଚ୍ଚକୋଟୀର ବକ୍ତା ଓ କର୍ମବୀର ବୋଲି ଲୋକଂକ ମନରେ ଧାରଣା ଜନ୍ମାଇ ଦେଲା ।

ସେଦିନ ରାତିରେ ମିଃ ଦାସ ଗୋଟିଏ ଭୋଜୀର ବଂଦୋବସ୍ତ କରିଥିଲେ । କେତେ ରାଜା ଓ ଏମାର ମଠର ମହଂତ ମହାରାଜ ଆସି ଆମ ବସାଘର ପ୍ରାଂଗଣରେ ବସିଲେ । ମିଃ ଦାସ ଛାଂଦ ଓ ଶ୍ଳୋକାଂତ ଶୁଣିବାକୁ ଆଗ୍ରହ ପ୍ରକାଶ କଲେ । ତାହା ବେଶ୍ ଆମୋଦ ଦାୟକ ହେଲା । ମିଃ ଦାସ, ଗୋପବଂଧୁ, ମୁଁ, ଗୋଦାବରୀଶ ମଧ ସେଥିରେ ଯୋଗଦେଲୁ । ଆମକୁ ସ୍ୱରଧରି ବୋଲି ଆସୁ ନଥାଏ; ତେଣୁ ବେଶ୍ ହସ ଜମୁଥାଏ । ଶ୍ଳୋକାଂତ ବଂଦ କରାଇ ସଂସ୍କୃତ ଭାଷାରେ ଓ ସାହିତ୍ୟର ଗାଂଭୀର୍ଯ୍ୟ ଓ ଗୁରୁତ୍ୱ ବର୍ଣ୍ଣନା କରି ମିଃ ଦାସ ଗୋଟିଏ ଆଲୋଚନାମୂଳକ ଭାଷଣ ଦେଲେ । ମିଃ ଦାସ ମୋତେ ଅନୁରୋଧ କରିବାରୁ ମୁଁ ଆଉଦିନେ ସତ୍ୟବାଦୀ ପିଲାଂକୁ ଛୁଟି ଦେଲି । ଚାରିଜଣଂକ ପାଇଁ ଘୋଡ଼ାଗାଡ଼ିର ଆୟୋଜନ ହେଲା । ମିଃ ଦାସଂକ କଥା ଅନୁସାରେ ଗୋଦାବରୀଶ ଛାତ୍ରମାନଂକୁ କଟକ ସହର ବୁଲେଇ ଦେଖେଇଲେ । ନିଜେ ମିଃ ଦାସ ପିଲାମାନଂକୁ ନେଇ ଐତିହାସିକ ଦୁର୍ଗ ବାରବାଟି ପରିଦର୍ଶନରେ ଗଲେ । ପ୍ରବେଶ କାଳରୁ ବାହାରି ଆସିବା ଯାଏ ସେ ବରାବର ପ୍ରଗଳ୍‌ଭ ଭାବରେ କଥା କହୁଥାଂତି । ମୁହିଁ କାଂଦ କାଂଦ ହୋଇ ଆସୁଥାଏ । ଆଂଭେମାନେ ସତ୍ୟବାଦୀ ଫେରିଆସିଲୁ । ସତ୍ୟବାଦୀର ମର୍ଯ୍ୟାଦା ଓ ଖ୍ୟାତି ଆହୁରି ବଢ଼ିଗଲା ।

## ୯୫। ଗୋଦାବରୀଶଂକ ସ୍କୁଲ ଭାରନେବା ଓ ଫକସ୍ ସାହେବଂକ ସ୍କୁଲ ଦେଖା

ତା'ପରେ ସତ୍ୟବାଦୀ ସ୍କୁଲ ହେଲା, ଆଉ ସେଥିରେ ପଢ଼ା ଚାଲିଲା । ଗୋଦାବରୀଶ କୃପାସିଂଧୁ ପ୍ରଭୃତି ସେଥିରେ ବଡ଼ ଆତ୍ମନିୟୋଗ କଲେ । ଏହିପରି ଅବସ୍ଥାରେ ଦିନେ ସତ୍ୟବାଦୀ ସ୍କୁଲ ଭାଂଗିଗଲା (ସ୍କୁଲର ଇତିକଥା ଦେଖ) । ୧୭-୯-୧୯୧୮ ତାରିଖରେ ଶ୍ରୀଯୁକ୍ତ ଗୋଦାବରୀଶ ମିଶ୍ର ମୋଠାରୁ କାର୍ଯ୍ୟଭାର ନେଲେ । ★

★ Today afternoon as the Headmaster of the School and the Superintendent of the Hostel, I took charge of the School, the

Hostel and the Industrial Department from the former Headmaster and the Superintendent Babu Nilakanth Das, M.A.

Satyabadi School

The 17th, Sep, 1918 Godavaris Misra

ତା'ପରେ ଶିକ୍ଷା ବିଭାଗ ଡିରେକ୍ଟର ଫକ୍ସ ସାହେବ ସ୍କୁଲ ଦେଖିବାକୁ ଆସିଲେ । ମୁଁ ସେତେବେଳେ ସ୍କୁଲରେ ନଥାଇ ଘରେ ଥିଲି । ଘରୁ ଆସି ସ୍କୁଲ ଦେଖାଇଲି । ଫକ୍ସ ସାହେବ ମୋ କ୍ଲାସମାନଙ୍କରେ ନୋଟ ଦେବା ଓ ପାଠ୍ୟ ତିଆରି କରିବା ପ୍ରଭୃତି ଦେଖି ବଡ଼ ପ୍ରୀତ ହେଲେ । ମୋତେ କହିଲେ, "ତମେ ଏଇପରି ଯେତେ ପାଠ୍ୟ ତିଆରି କରିବ, ମୁଁ ତାକୁ ସବୁ ଛପାଇଦେବି ଓ ତାହା ଶିକ୍ଷା ବିଭାଗରେ ଚଳିବ ।" ମୁଁ କୌଣସି ଅସୁବିଧାରୁ ତାହା ଆଉ କରିପାରି ନାହିଁ; କିନ୍ତୁ ମୁଁ ପିଲାମାନଙ୍କ ପାଇଁ ବହୁତ ବହି ଲେଖୁଥିଲି । ତାହା ମଧ ବିଭାଗୀୟ ମଂଜୁର ପାଉଥିଲା । ଏହି ଘଟଣା ପରେ ମୋର ସେ ସବୁ ବହି ବିକ୍ରି ବନ୍ଦ ହୋଇଗଲା । ଶେଷରେ ମୋର ପିଲାଂକ ରାମାୟଣ ଓ ପିଲାଂକ ମହାଭାରତ ନାମରେ ଚଳୁଥିବା ଦୁଇଖଂଡ଼ଯାକ ବହି ସେଇଦିନଠାରୁ ଆଉ ସ୍କୁଲରେ ଚଳି ନାଇ, କିଂତୁ ଏହାର କାର୍ଯ୍ୟ କାରଣ ନିରୂପଣ କରିବା ମୋ ପକ୍ଷରେ ସହଜ ନୁହେଁ ।

## ଆମ ରାଜନୀତି

### ୯୬। ସତ୍ୟବାଦୀର ଇତିକଥା

(କ) ୧୯୧୮ ମସିହା ଅକ୍ଟୋବର ୧୪ ତାରିଖରେ ଯଥାର୍ଥରେ ଏହି ସତ୍ୟବାଦୀ ସ୍କୁଲ ଭାଂଗିଗଲା । ତାର କାରଣ ଆମ ସତ୍ୟବାଦୀ ବହୁକାଳ ପରାଧୀନ ଥିଲା ଓ ସେହି ସୂତ୍ରରେ ଆଂଭମାନଙ୍କର ଏପରି ଗୋଟିଏ ସ୍କୁଲ ରଖିବାର ଓ ସେଥିପାଇଁ ସ୍ଥାୟୀ ଭାବରେ କାମ କରିବାର ଧୈର୍ଯ୍ୟ ଓ ଶକ୍ତି ନଥିଲା । ସତ୍ୟବାଦୀ ସ୍କୁଲ ଭାଂଗିବାର ଅଳ୍ପଦିନ ପୂର୍ବରୁ ଗୋପବଂଧୁ ବାବୁ ଶାଂତି ନିକେତନରେ ରବୀଂଦ୍ର ବିଦ୍ୟାଳୟ ଦେଖିବାକୁ ଯାଇଥିଲେ । ସେ ଆସି ସେ ସ୍କୁଲର ସୁଂଦର ଦୃଶ୍ୟ ବର୍ଣ୍ଣନା କରିବା ସଂଗେ ସଂଗେ ସେଠାରେ ଛାତ୍ରମାନେ କିପରି ସବୁକାର୍ଯ୍ୟ ହାତେ ହାତେ କରଂତି, ସେ କଥା ହସି ହସି କହିଲେ—"ଗାଡ଼ିରେ ଛାତ୍ରମାନେ ବସି ଚାକରକୁ ସାଂଗରେ ଧରି ବଜାରକୁ ପରିବାପତ୍ର କିଣିବାକୁ ଯାଆଂତି ।" ସେ କଥା ଶୁଣି ଆମେମାନେ କ'ଣ ମନେ କରିଥିଲୁ ସେ ଅନୁଭବ ଆଜି କହି ହେବ ନାହିଁ । ତେବେ ଏ ସବୁ ଉଚ୍ଚ ଆକାଂକ୍ଷା ଓ ଅଭିଳାଷ ସତ୍ତ୍ୱେ ୧୯୧୮ ସାଲରେ ସତ୍ୟବାଦୀ ସ୍କୁଲରେ ଯାହା ଯାହା ଘଟିଲା ତାର ସୂଚନା ଦେବା ଉଚିତ ମନେ କରୁଚି । ବି:ଟି: ପଢ଼ିବା ପାଇଁ ତା' ପୂର୍ବବର୍ଷ ଗୋଦାବରୀଶ ବାବୁଂକୁ କଲିକତା ପଠାଗଲା । ସେହିବର୍ଷ ସେ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ଭାବରେ ଉତ୍ତୀର୍ଣ୍ଣ ହୋଇ ସତ୍ୟବାଦୀକୁ ପୁଣି ଆସିଲେ; କିଂତୁ ଆଜି କହିବାକୁ ବଡ଼ କଷ୍ଟ ହେଉଚି—ତାଂକର ପ୍ରଧାନ ଶିକ୍ଷକ ହେବା ପାଇଁ ଆକାଂକ୍ଷା ବଡ଼ ପ୍ରବଳ ହୋଇଉଠିଲା । କାରଣ ସେ ହେଲେ ଏମ୍.ଏ.ବି.ଟି. । ମୁଁ ଖାଲି ଏମ୍.ଏ. । ସେ ସାଂଗେ ସାଂଗେ ଖୋର୍ଦ୍ଧା ସ୍କୁଲକୁ ହେଡ୍‌ମାଷ୍ଟର ହେବା ପାଇଁ ଦରଖାସ୍ତ କରିଦେଲେ । ଗୋପବଂଧୁ

ବାବୁ ଏକଥା ଶୁଣିଲେ । ବହୁ ପରିଶ୍ରମ କରି କଲିକତାରେ ଶଶିଭୂଷଣ ରାୟ ଚୌଧୁରୀ ଓ ଅନ୍ୟାନ୍ୟ ବନ୍ଧୁମାନଙ୍କୁ ଧରି ଗୋଦାବରୀଶଙ୍କୁ ମୂକ ବଧୀର ବିଦ୍ୟାଳୟ ପାଇଁ ବିଲାତ ଯିବା ଛଡ଼ାଇ ଆଣିବା ଘଟଣା ତାଙ୍କର ମନପଡ଼ିଲା । ସେ ଗୋଦାବରୀଶ, କୃପାସିନ୍ଧୁ, ହରିଭାଇନା ଓ ମତେ ସତ୍ୟବାଦୀର ମନ୍ଦିର ବଂଗଳା (ଗୋପବନ୍ଧୁ ବାବୁ ସେତେବେଳେ ମନ୍ଦିର ବଂଗଳାରେ ରହୁଥାନ୍ତି; କାରଣ ସେ ମନ୍ଦିର ଏଣ୍ଡାମେଣ୍ଟ କମିଟିରେ ମଧ ମେମ୍ବର ଥାନ୍ତି)କୁ ଡକାଇ ନେଲେ । ସେଠାରେ ବସି ଏହି ସବୁ କଥା କହୁ କହୁ ନିଜେ ଗୋପବନ୍ଧୁ ବାବୁ ଭୋ' ଭୋ' କାନ୍ଦି ପକେଇଲେ । ଆମେ ସମସ୍ତେ ମଧ କାନ୍ଦିଲୁ । ପ୍ରାୟ ଅଧଘଂଟାଏ ପରେ ସ୍ଥିର ହେଲା—ସତ୍ୟବାଦୀରେ କେହି ସ୍ଥାୟୀ ପ୍ରଧାନ ଶିକ୍ଷକ ହୋଇପାରିବେ ନାହିଁ । କୃପାସିନ୍ଧୁ, ଗୋଦାବରୀଶ ଓ ମୁଁ ପ୍ରତ୍ୟେକ ତିନି ତିନି ବର୍ଷ ପାଇଁ ପ୍ରଧାନ ଶିକ୍ଷକ ହେବୁ । କିନ୍ତୁ ମୁଁ ବୁଝିଲି ଏ ସମାଧାନ ଯଥାର୍ଥ ସମାଧାନ ନୁହେଁ । ବିଶେଷରେ ମୋର ମନ ମଧ ସେହିଠାରୁ ଫାଟିଗଲା । ମୁଁ ଜାଣିଲି ଏ ସ୍କୁଲ ଯେଉଁ ପୀଠରେ ଯେଉଁ ଅଭିଳାଷ ନେଇ ବଢୁଥିଲା ତା' ଆଉ ପୂର୍ଣ୍ଣ ହୋଇପାରିବ ନାହିଁ ।

ସେହିଦିନ ଗୋଦାବରୀଶ ପ୍ରଧାନ ଶିକ୍ଷକ ହେଲେ ଓ ତାର କେତେଦିନ ପରେ ଗୋପବନ୍ଧୁ ବାବୁ ମୋତେ ବୋର୍ଡ଼ିଂରେ ରହିବାକୁ ମନାକରି ଗ୍ରାମକୁ ଯିବାକୁ କହିଲେ । ମୁଁ ସବୁ ଛାଡ଼ି ଗ୍ରାମକୁ ଗଲି । ବୋର୍ଡ଼ିଂରେ ପରିଚାଳକ ହୋଇ ଆଉ କେହି ରହିଲେ ନାହିଁ । ସ୍କୁଲର ହେଡ୍‌ମାଷ୍ଟର ନାମକୁ ମାତ୍ର ବୋର୍ଡ଼ିଂରେ ପରିଚାଳକ ରହିଲେ । ଗୋଦାବରୀଶ ଆଗରୁ ଯେଉଁଠି ରହୁଥିଲେ ସେହିପରି ଅନ୍ୟଠି ରହିଲେ, କିନ୍ତୁ ଏ ବୋର୍ଡ଼ିଂ ତନ୍ନ ତନ୍ନ କରି ଚଳାଇବା ମୋର କାମ ଥିଲା । ପିଲାମାନେ ମୋତେ ଖାତିର କରି ସାଧାରଣ ଶୃଂଖଳାଗତ ନିୟମରେ ବ୍ୟତିକ୍ରମ କରୁ ନଥିଲେ । ମୁଁ ଗ୍ରାମକୁ ଗଲାପରେ ବୋର୍ଡ଼ିଂର ଛାତ୍ରମାନଙ୍କର ମେସ୍‌ଖର୍ଚ୍ଚ ପ୍ରାୟ ଦେଢ଼ହଜାର ଟଙ୍କା ବାକୀ ପଡ଼ିଗଲା ।

ଗୋପବନ୍ଧୁ ବାବୁ ମୋତେ ଡକାଇ ଆଣିଲେ । କହିଲେ—"ଏ ବାକୀସବୁ ଆଦାୟ କରିପାରିବ ?" ମୁଁ କିଛି ନକହି ଦିନତମାମ ଲାଗି ପ୍ରାୟ ସବୁ ବାକୀ ଆଦାୟ କରିଦେବାର ବ୍ୟବସ୍ଥା କଲି, କିନ୍ତୁ ପରେ ବାକୀ ବନ୍ଦ କରିବାର ଆଉ ଉପାୟ ନଥିଲା ।

ବଡ଼ ବାକୀ ଏକକାଳୀନ ପୂରଣ ହୋଇଯିବା ପରେ ଆଗକୁ ମାସିକିଆ ବାକୀ ରୋକି ହେଲାନି । ଏତେ କଉଡ଼ି ଏକାବେଳେକେ ଦେବା ଓଡ଼ିଶାର ଦରିଦ୍ର ଅଭିଭାବକମାନଙ୍କ ପକ୍ଷେ ଅସମ୍ଭବ । ଫଳରେ ବୋର୍ଡ଼ିଂକୁ ଟଙ୍କା ଦିଆଯାଇ ପାରିଲା ନାହିଁ ।

(ଖ) କହିଚି ସତ୍ୟବାଦୀ ସ୍କୁଲ ବସିଥିଲା ୧୯୦୯ରେ ମୁଁ ସେତେବେଳେ ସତ୍ୟବାଦୀ ସ୍କୁଲକୁ ବସାଇ ସେହି ସତ୍ୟବାଦୀ ସ୍କୁଲରେ ରହିବାକୁ ଏକାନ୍ତ ମନସ୍ଥ କରି କଲିକତାକୁ ଏମ୍.ଏ. ପଢ଼ିବାକୁ ଯାଇଥିଲି । ଗୋପବନ୍ଧୁବାବୁ ସେଦିନ ନିଜେ ଥାଇ ଏ ସ୍କୁଲକୁ ୧୯୧୮ ଅକ୍ଟୋବର ମଝିରେ ପ୍ରାୟ ଭାଙ୍ଗିଦେଲେ । କାରଣ ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ସେ ଯେଉଁ ବାଟଟି ଫିଟେଇଲେ ସେଥିରେ କେହି ସନ୍ତୁଷ୍ଟ ହେବାର ନୁହେଁ । ସତ୍ୟବାଦୀ ବିଦ୍ୟାଳୟର ଆଦର୍ଶ କିନ୍ତୁ ତା' ନଥିଲା । ଏଥିରେ ଗୋପବନ୍ଧୁ ବାବୁଙ୍କର ସମସ୍ତ ଆଶା ଓ ଉନ୍ମୁଖତା ଯେପରିକି ଚୂରି ହୋଇଗଲା । କେତେଦିନ ରହି ସେ ସ୍କୁଲକୁ ଚଳାଇଲେ । ମୁଁ ସ୍କୁଲବୋର୍ଡ଼ିଂ ଛାଡ଼ି ଯାଇ

ଗ୍ରାମରେ ରହିଲି । ଅବସ୍ଥା ଯାହା ଦେଖିଲି ସେଥିରେ ମୋ ମନରେ ଅତ୍ୟଂତ ବିରାଗ ହେଲା । ସେତିକିବେଳେ ପୁରୀ ଦୁର୍ଭିକ୍ଷର ରିପୋର୍ଟ ଛାପିବାକୁ ମୁଁ କଲିକତା ଯାଇଥିଲି । ଦୁର୍ଭିକ୍ଷ କଥା ପର ପର୍ଯ୍ୟାୟରେ କହୁଛି । କଲିକତାରେ ସାର୍ ଆଶୁତୋଷ ମୁଖାର୍ଜୀଂକ ସହିତ ମୋର କଥାବାର୍ତ୍ତା ହେଲା । ମୁଁ ଶେଷକୁ ଠିକ୍ କଲି ଦୁଇବର୍ଷ ପାଇଁ କଲିକତା ଆସିବି । ଜଣେ ଛାତ୍ର ଏମ୍.ଏ. ପାସ୍ କରିସାରିଲେ ତାଂକୁ ମୋ ସ୍ଥାନରେ ଛାଡ଼ିଦେଇ ସତ୍ୟବାଦୀ ସ୍କୁଲକୁ ଫେରିଯିବି । ଏତେଦିନ ଗଲା ନାହିଁ । କଲିକତା ବିଶ୍ୱବିଦ୍ୟାଳୟରେ "Oriya Cum Comparative Philology" ଅଧ୍ୟାପକ ଭାବରେ ରହିବାର ପ୍ରାୟ ତିନିମାସ ପରେ ଅସହଯୋଗ ଆଂଦୋଳନ ଆରଂଭ ହୋଇଗଲା । ଏ ଆଂଦୋଳନରେ ସମସ୍ତେ ଝାଂପିପଡ଼ିଲେ । ମୁଁ କଲିକତା ଛାଡ଼ିଦେଇ ସଂବଲପୁର ଆସିଲି । ସେଠାରେ ବର୍ଷେକାଳ ଜୋର ପରିଶ୍ରମ କରି ପିଲାଂକୁ ମଣିଷ କରିବାଠାରୁ ସାଧାରଣରେ କଂଗ୍ରେସ ପରିପ୍ରଚାର ଓ ଖବରକାଗଜ ଛାପିବା ପର୍ଯ୍ୟଂତ ସବୁ କରି ଶେଷରେ ଗାଂଧି ପୁରୀ ଆସିଲାବେଳକୁ ପ୍ରାୟ ସେପ୍ଟେଂବର କିଂବା ଅକ୍ଟୋବରରେ ସଂବଲପୁର ଛାଡ଼ିଆସିଲି । ସେଠାରୁ ଆସି ଗୋପବଂଧୁ ବାବୁ କହିବା ମୁତାବକ ସତ୍ୟବାଦୀ ବିଦ୍ୟାଳୟରେ (ସେତେବେଳକୁ ତାହା କଲେଜ ହୋଇଥିଲା) ଓଡ଼ିଆ ପଢ଼ାଉଥିଲି । କିଂତୁ ଦେଖିଲି ଗୋପବଂଧୁ ବାବୁଂକର ସେପରି ତେଜ କିଂବା ମମତା ଆଉ ନଥିଲା । କେବଳ ସତ୍ୟବାଦୀ ପ୍ରେସ୍‌ଟି ସେ ପୁରୀ ନେଇଯିବାର କଥା କରିଥିଲେ ଓ ପରେ ପୁରୀରୁ କଟକ ଆଣି କଟକରେ ଛାଡ଼ିଗଲେ । କ୍ରମେ କ୍ରମେ ସ୍କୁଲରେ ପାଠପଢ଼ା ବ୍ୟବସ୍ଥା ଭାଂଗିଦେଇ ସେ ସେଠାରେ ବ୍ରହ୍ମଚର୍ଯ୍ୟାଶ୍ରମ କରିବାର ଆୟୋଜନ କଲେ । ସେଥିପାଇଁ ସାଧକ ଛାତ୍ର ଆଣିବାର କଳ୍ପନା କଲେ । ସବୁବେଳେ ବରାବର ଘରୁ ଆସି ତାଂକ ନିଜ ପାଖରେ ସତ୍ୟବାଦୀରେ ରହିବାଂକୁ ମୋତେ ଲୋଡ଼ୁଥିଲେ । ବିଶେଷରେ ତାଂକର ରୋଗ ହେଲେ ମୋତେ ବରାବର କହୁଥିଲେ 'ନୀଳକଂଠ, ମୋ ପାଖରେ ଥାଅ ।' ଏପରିକି ଶେଷରେ ଯେତେବେଳେ କଲିକତାରୁ ଫେରିଆସି ଜ୍ୱର ଲେଉଟିବାରୁ ସେ ଆଶଂକିତ ହେଲେ, ସେତେବେଳେ ସେ ବରାବର ମୋତେ କହୁଥିଲେ, ''ମୋ ପାଖରୁ ଯାଅ ନାହିଁ ।''

ଏଣେ ଗୋଦାବରୀଶ ଖ୍ରୀ:୧୯୧୯ର ପ୍ରଥମ ଭାଗରେ ଗୋପବଂଧୁ ବାବୁଂକ ପ୍ରେରଣାରେ ଚକ୍ରଧରପୁର ଚାଲିଗଲେ । ସେଠି ବିଚ୍ଛିନ୍ନାଂଚଳକୁ ଏକତ୍ରିତ କରିବା ଗୋପବଂଧୁ ବାବୁଂକ ସ୍ୱପ୍ନ ଥିଲା । ଗୋଦାବରୀଶ ସେହି ଗୁରୁ ଦାୟିତ୍ୱରେ ରହି ଜୀବନରେ କେତେ ହୀନସ୍ତା ଭୋଗିଚଂତି—ପ୍ରକାଶ କରିହେବନି । କୃପାସିଂଧୁ ମିଦନାପୁରର ବାହାଡ଼ାଗୋଡ଼ାକୁ ହାଇସ୍କୁଲଟିଏ କରିବାକୁ ଚାଲିଗଲେ । ସତ୍ୟବାଦୀର ସୀମିତ ପରିବେଶ ଭିତରୁ ଓଡ଼ିଶାର ବୃହତ୍ତର କର୍ମଭୂଇଁକୁ ଆମେମାନେ ଗୋଟିକ ପରେ ଗୋଟିଏ ଖସିଲା ପରେ ସ୍କୁଲର ମୂଳ ଉଦ୍ଦେଶ୍ୟ ଦୋହଲିଗଲା । ସତ୍ୟବାଦୀକୁ ଏକ ଆଦର୍ଶ ବନବିଦ୍ୟାଳୟରେ ପ୍ରତିଷ୍ଠିତ କରି ଏ ଦେଶକୁ ଏକ ନୂତନ ଆଭିମୁଖ୍ୟରେ ଗଢ଼ିବାର ଆକାଙ୍କ୍ଷା ଆମ ସମସ୍ତଂକର ଥିଲା । ବସ୍ତୁତଃ ସେଇ ପ୍ରଚ୍ଛନ୍ନ ଅଭିପ୍ରାୟରେ ଆମେମାନେ ଏଠି ତାଲିମ୍ ନେଉଥିଲୁ ଓ ଛାତ୍ରମାନଂକୁ ତାଲିମ୍ ଦେଉଥିଲୁ । କିଂତୁ ପରିସ୍ଥିତି ଆମର ସେଇ ଉଦ୍‌ଯୋଗ ପର୍ବର ଗୌରବାବହ ଉପସଂହାର ଦେଖିପାରିଲାନି । ସ୍କୁଲ ଭାଂଗିଗଲା ।

ଏଇଠାରେ ମୋର ମନେ ଅଛି, ମୋ ଜୀବନର ଗୋଟିଏ ପବିତ୍ର ଓ ବିରାଟ ଅଧ୍ୟାୟର ଶେଷ ହେଲା । ମୁଁ ଚବିଶ ଘଂଟା ସ୍କୁଲର ପିଲାଂକ କାମ ଦେଖୁଥିଲି ଓ କରୁଥିଲି । ଏପରିକି

କୌଣସି ପିଲାଂକୁ ଘେନି ବିଲରେ Arm Chair ପକାଇ ଲଂଠନ ରଖି ଗ୍ରହ ମାନଚିତ୍ର ଧରି ତାରା, ଗ୍ରହମାନଂକର ଗତି, ଗ୍ରହର ଅତିଚାର ପର୍ଯ୍ୟଂତ ବୁଝାଇ ଦେଖାଉଥିଲି ପିଲାମାନଂକୁ ନେଇ ଦୂର ଗ୍ରାମକୁ ନିମନ୍ତ୍ରଣ ଖାଇ ଯାଇ ଆସି ବାଟରେ ବିଲରେ ଢେଙ୍କାରେ ମଧ ବେଳେ ବେଳେ ଶୋଇପଡ଼ିବାର ମନେ ଅଛି । ସ୍କୁଲର ଛୁରିଅନା ଗଛରୁ କେହି ଗୋଟିଏ ପତ୍ର ଛିଂଡ଼ାଇଲେ ଜବତ କରୁଥିଲି । ପିଲାମାନେ ଶୋଇବା ପରେ ରାତିରେ ଲୁଚିଛପି ସେମାନଂକ ଗପ ଶୁଣି ତହିଁଆରଦିନ ସନ୍ଧ୍ୟାବେଳେ ବ୍ଲକ୍ ମିଟିଂରେ ପିଲାମାନଂକ ଆଗେ ତାହା ରହସ୍ୟରେ ପ୍ରକାଶ କରି ସେମାନଂକୁ ଲଜ୍ଜିତ କରୁଥିଲି । ଏହିପରି ବୋର୍ଡ଼ିଂରେ ରହି ଦିନର ଚବିଶ ଘଂଟା କେବଳ ପିଲାଂକ କାର୍ଯ୍ୟରେ ମନ ଦେଉଥିଲି । ଏ ସବୁ ମୋ ଚିରଦିନ ପାଇଁ ବଂଦ ହୋଇଗଲା କହିଲେ ଚଳେ । ଆଂଭେମାନେ ସମସ୍ତେ ରାଜନୀତିରେ ଯୋଗଦେଲୁ । ଏଇଠାରୁ ମୋର ପ୍ରତ୍ୟକ୍ଷ ରାଜନୈତିକ ଜୀବନର ଆରଂଭ ।

## ୯୭। "ରଂଜିତ ଅସିଧାରେ....."

ଏଠି କହିଦିଏଁ, ଏଇ ସତ୍ୟବାଦୀ ସ୍କୁଲର ଶିକ୍ଷକ ଓ ଛାତ୍ରମାନଂକ ସାହିତ୍ୟିକ ଚେତନା ପ୍ରତି ମୁଁ ବରାବର ଜଗି ରହିଥିଲି । ଛାତ୍ରମାନଂକୁ ବରାବର ସାଂଗରେ ରଖି ବିଲରେ ତାରା ମାନଚିତ୍ର ଧରି ଗ୍ରହ ଓ ତାରାଂକର ଗତି ପର୍ଯ୍ୟଂତ ଦେଖାଇବା କଥା କୁହାଯାଇଚି । ଶିକ୍ଷକମାନଂକ କଥା ଟିକିଏ କହିଦିଏଁ । କୃପାସିଂଧୁ ମିଶ୍ରେ ଯେତେବେଳେ କୋଣାର୍କ ଲେଖିଲେ ସେତେବେଳେ ମନେହେଉଚି ସେ ଅର୍କକୋଣ ବା ସୂର୍ଯ୍ୟକୋଣ ଠିକ୍ କରିବାରେ ସୂର୍ଯ୍ୟର ପଶ୍ଚିମରୁ ପୂର୍ବକୁ ଗତି (Law of Precession) ବିଷୟ ଆଲୋଚନା କରୁଥିଲେ, ସେଥିରେ ତାଂକର ବଡ଼ ଅସୁବିଧା ହେଲା । ମୁଁ ଏହି ବିଷୟ ଘରକୁ ଘେନିଯାଇ ଦିନଯାକ ପଢ଼ି ଓ ଆଲୋଚନା କରି ଆସି ତାଂକୁ ବତାଇ ଦେଇଥିଲି । ତା'ପରେ ମନେଅଛି, ଯେତେବେଳେ ସତ୍ୟବାଦୀର ଲିଖିତ ବହି ସବୁ ହରିଭାଇନାଂକ ନାମରେ ପ୍ରେସ୍‌ରେ ଛପା ହେଲା, ସେତେବେଳେ ମୁଁ ଇଂରାଜୀରୁ ଅନୁବାଦ ବହିଟି ଲେଖିଥିଲି । ତା' ଛଡ଼ା 'ପ୍ରବନ୍ଧ ପ୍ରଦେଶ'ର ବହୁତ ଅଂଶ ମୁଁ ମଧ ନିଜେ ଲେଖିଥିଲି ଏବଂ କୃପାସିଂଧୁ ମିଶ୍ରଂକ 'ବାରବାଟୀ ଦୁର୍ଗର'ର ଦ୍ୱିତୀୟ ସଂସ୍କରଣ ମୁଁ ତିଆରି କରିଥିଲି । ସେଥିରେ ଭାଷାର ଯେ ସଂକ୍ଷିପ୍ତିକରଣ ହୋଇଚି ସେ ସବୁ ମୋର । ଏ ସବୁ ଛଡ଼ା ଗୋଦାବରୀଶ ବାବୁଂକ 'ପୁରୁଷୋତ୍ତମ ଦେବ' ନାଟକ ସଂବଂଧରେ କେତେକଥା ମୋର ମନେହେଉଚି । ସେଥିରୁ ପ୍ରଧାନ କଥାଟି ହେଉଚି—

"ରଂଜିତ ଅସିଧାରେ
ଶତ୍ରୁ ରକ୍ତ ଗାରେ ।"

ଥରେ ଗୋଦାବରୀଶଂକ ନାଟକଟି ଅଭିନୟ କଲାବେଳକୁ ସେହି ଅଂଶରେ ମତେ ଲାଗିଲା—ଏହିଠାରେ ସୈନ୍ୟମାନଂକ ଯୁଦ୍ଧକାଳୀନ ଚାଲି (Marching)ର ଗୋଟିଏ ଗୀତ ଯୋଡ଼ିଦେଲେ ଭଲ ହୁଅଂତା । ଗୋଦାବରୀଶ କହିଲେ—"କ'ଣ ତେବେ ଗୋଟିଏ କରିଦିଅ । ମୋ ହାତେ ତ ହେବ ନାଇ ।"

ମୋର ସ୍ପଷ୍ଟ ମନେଅଛି, ମୁଁ ସେଠାରୁ କହିଲି—"ହଉ ତେବେ ବସ ।" ଏହା କହି ତାଳ ଧରି ପାଇଖାନାକୁ ଗଲି ଏହିପରି ଦରକାର ପଡ଼ିଲାବେଳେ ମୁଁ ଟିକିଏ ଚିଂତାରେ ସମୟ ନେବା ପାଇଁ ବରାବର ପାଇଖାନାକୁ ଯାଇଥାଏ ।

ସେଥାନୁ ଆସି ଡାକିଦେଲି—
ରଂଜିତ ଅସିଧାରେ
ଶତ୍ରୁ ରକ୍ତ ଗାରେ—
ଲେଖହେ ଆଜି ବିଜୟ ବିଭବ ଜନ୍ମଭୂମି ଭାଲେ,
ନିର୍ମଳ ଆଜି ଧ୍ୱାଂତ ଗଗନ
ବର୍ଷେ ତପନ ପୁଣ୍ୟ କିରଣ
ଶତ୍ରୁ ଆଜି ଦଳିତ ଚରଣେ
ଛିନ୍ନ ଏ କରବାଳେ ।
ଇତ୍ୟାଦି ।

ଏହି ଗୀତ ବୋଲି ଛାତ୍ରମାନେ ଯେତେବେଳେ ଅଭିନୟ କଲେ ସେତେବେଳେ ଛାତ୍ରମାନଂକ ମଧ୍ୟରେ ଓ ଉପସ୍ଥିତ ଜନତାରେ ଯେ ଭାବ ଖେଳିଯାଇଥିଲା ତାହା ଏବେ ମଧ୍ୟ ମୋ ମନେପଡ଼ୁଚି ।

## ୯୮। ମୋର କାବ୍ୟ ଲେଖା

୧୯୧୮ ଖ୍ରୀଷ୍ଟାବ୍ଦ ଶେଷଆଡ଼କୁ ସତ୍ୟବାଦୀ ସ୍କୁଲ ଓ ଛାତ୍ରାବାସର ଅଧ୍ୟକ୍ଷ ପଦ ଛାଡ଼ିଲା ପରେ ମୋର କାମ ବହୁତ କମିଗଲା । ମୁଁ ଏକପ୍ରକାର ପୂରାପୂରି ଲେଖା ପଢ଼ା ଧରି ବସିଲି ଓ ଭଲକରି ସାହିତ୍ୟ ଚର୍ଚ୍ଚା ଆରଂଭ କଲି । ପୂର୍ବେ ବି.ଏ. ପଢ଼ିଲାବେଳେ ଇଂରେଜ କବି ଟେନିସନ୍‌ଂକ 'The Princess'ର କେତେକ ଅଂଶ ଅମିତ୍ରାକ୍ଷର ପଦ୍ୟରେ ଅନୁବାଦ କରିଥିଲି । ସେତେବେଳର ସତ୍ୟବାଦୀ ସ୍କୁଲର ଅନ୍ୟତମ ଶିକ୍ଷକ ଓ ଆମର ନବ ପ୍ରତିଷ୍ଠିତ ସତ୍ୟବାଦୀ ଛାପାଖାନାର ମ୍ୟାନେଜର ଶ୍ରୀ ସତ୍ୟବାଦୀ ତ୍ରିପାଠୀଂକ ଠାରୁ ଉତ୍ସାହ ପାଇ ମୁଁ 'ପ୍ରଣୟନୀ' ନାମରେ ସେଇ ଅନୁବାଦଟି ପୂର୍ଣ୍ଣକରି ୧୯୧୯ ଫେବୃୟାରୀରେ ପ୍ରକାଶ କରିଦେଲି । ଦେଖିଲି, ତାର ଆଦର ବି ହେଲା । ସଂଗେ ସଂଗେ ମୋର ସାହିତ୍ୟ ଚର୍ଚ୍ଚା ବି ବଢ଼ିଗଲା । ସେଥିରେ ଏବେ ମୋର ପ୍ରଧାନ ସାଥୀ ହେଲେ, ଓଡ଼ିଆ ସାହିତ୍ୟର ଶିକ୍ଷକ ଶ୍ରୀ ବାସୁଦେବ ମହାପାତ୍ର ଓ ସ୍କୁଲର୍ କିରାଣୀ, ଅଥଚ ସୁଦକ୍ଷ ସାହିତ୍ୟ ସେବୀ ସମସରପୁରର ଶ୍ରୀ ରଘୁନାଥ ମିଶ୍ର । ନୂତନ ଓଡ଼ିଆ ସାହିତ୍ୟ ଭିତରେ, ବିଶେଷରେ ରାଧାନାଥଂକ କାବ୍ୟ ଓ କବିତା ଚର୍ଚ୍ଚା ଚାଲିଲା । ମୁଁ ଦେଖିଲି, ରାଧାନାଥଂକ ସଂବଂଧରେ ମୋର ପିଲାଦିନର ଅନେକ ଧାରଣା ବଦଳିଗଲା । ବିଶେଷରେ ଦିନେ ଭୁବନେଶ୍ୱରଠାରେ ଦେଖିଲି, ସେଠା ପଂଡ଼ାମାନେ ଯାତ୍ରୀଂକୁ କେଦାରଗୌରୀ ଦର୍ଶନ କରାଇ ଦେଖାଉଚଂତି । "ଏଇଠାରେ କେଦାର ଜଳାବାଟେ ଗୌରୀ ସାଂଗେ ଗୁପ୍ତ କଥାବାର୍ତ୍ତା କରୁଥିଲା । ଏଇଠାରେ କେଦାର ଗୌରୀର ଲୁଗା ଦେଖିଲା । ଏଇଠାରେ ଗୌରୀ କେଦାର ଦୁହେଁ ମରି ପଡ଼ିଥିଲେ"—ଇତ୍ୟାଦି । ରାଧାନାଥଂକ

କେଦାରଗୌରୀରୁ କଥାଗୁଡ଼ିକ ପୁରାଣ କଥାପରି କହିଯାଉଚଂତି । ଦେଖି ଓ ଶୁଣି ମନରେ ବଡ଼ ପରିତାପ ହେଲା । ଜାଣିଥିଲି ପ୍ରାଚୀନ ରୋମୀୟ କବି ଓଭିଡ଼ଂକ 'ମେଟାମୋରଫସିସ୍' ନାମକ କାବ୍ୟ ସଂଗ୍ରହରେ ଥିବା 'Pyramus and Thysbe' ନାମକ କାବ୍ୟର ମାତ୍ରକ ଓଡ଼ିଆ ସଂସ୍କରଣ ହେଉଚି 'କେଦାରଗୌରୀ' । ତାର ଆଦର୍ଶ ଭାରତୀୟ ନୁହେଁ । ତା' ପୁଣି ଭୁବନେଶ୍ୱର ତୀର୍ଥର ପବିତ୍ର କେଦାରଗୌରୀ ପୀଠର ମୂଳରୂପେ ଏପରି କୁହାଯାଉଚି । ରାଧାନାଥଂକ 'ଚଂଦ୍ରଭାଗା', 'ଉଷା' ପରି କାବ୍ୟମାନ ବି ସେହି ଓଭିଡ୍ଂକ ପୁସ୍ତକରୁ ଗୃହୀତ .। ତେଣିକି ଆମର ଏହିପରି ବିଶ୍ଳେଷଣ, ଆଲୋଚନା, ସମାଲୋଚନା ବରାବର ସତ୍ୟବାଦୀ ସ୍କୁଲରେ ଚାଲୁଥିଲା । ସେଥିରେ ପ୍ରାଚୀନ କବି ଜଗନ୍ନାଥ ଦାସଂକ ଠାରୁ ଉପେନ୍ଦ୍ର ଭଂଜ ପ୍ରଭୃତିଂକ ବାଟେ ସାମଂତ ସିଂହାରଂକ ପର୍ଯ୍ୟଂତ ଓଡ଼ିଆ ସାହିତ୍ୟ, ଭାରତ ଚଂଦ୍ରଂକ ଠାରୁ ନବୀନ ସେନଂକ ପର୍ଯ୍ୟଂତ୍ ବଂଗଳା ସାହିତ୍ୟ, ତଥା ମଧ୍ୟେ ମଧ୍ୟେ ପୋପ୍ଂକଠାରୁ ଟେନିସନ୍ଂକ ପର୍ଯ୍ୟଂତ ଇଂରେଜୀ ସାହିତ୍ୟରୁ ତୁଳନାତ୍ମକ ଉଦାହରଣମାନ ଧରି କାବ୍ୟ କବିତାର ପରିସ୍ଥିତି ପରଂପରା, ପୂରୋଦୃଷ୍ଟି ସହିତ ମାନବ ସମାଜର ପ୍ରଗତିରେ ପୁଣି ନିତ୍ୟତାର ସଂକେତ ଓ କାବ୍ୟ କଳାରେ କବିର ଦ୍ରଷ୍ଟୃସୁଲଭ ଦର୍ଶନ ପ୍ରଭୃତିର ଚର୍ଚ୍ଚା ଖୁବ୍ ହେଲା । ବିଶେଷରେ ମୋ ଆଢୁ ଓଡ଼ିଆ ସାହିତ୍ୟ ପୁଣି ନବୀନ ଓଡ଼ିଆ କାବ୍ୟ କବିତାର ସମାଲୋଚନା ଟିକିଏ ତୀବ୍ର ବି ହେଉଥିଲା ।

ରଘୁନାଥ ଓ ବାସୁଦେବ ସେଥିରେ ମଧ୍ୟେ ମଧ୍ୟେ କମ୍ ପ୍ରତିବାଦ କରୁ ନଥାଂତି । ଦେଖିଲି, ସେମାନଂକ ପ୍ରତିବାଦ ଭିତରେ ଦେଶାତ୍ମବୋଧ ସଂଗେ ନିଜର ପୁରାଣ, ପରଂପରା କିଂବଦଂତୀ ଓ ଲୋକ ବ୍ୟବହାର ଆମ ରଜାପୁଅ ଓ ରଜାଝିଅଂକ ରୀତି ଓ ସାଧବମାନଂକ ବୋଇତବଣିଜ ପ୍ରଭୃତି ପ୍ରତି ମମତା ଯଥେଷ୍ଟ ଅଛି । ''ଲାବଣ୍ୟବତୀ''ର ସିଂହଳର ବର୍ଣ୍ଣନା ତଥା ସିଂହଳ ରାଜବଂଶଗଣ ସହିତ ଉତ୍କଳ ରାଜବଂଶର ବୈବାହିକ ସଂବଂଧ ପ୍ରତିଷ୍ଠା କଥା କହିଲାବେଳେ ଆଉ କାବ୍ୟ କଳାର ସମାଲୋଚନା ପ୍ରତି ସେମାନଂକ ଦୃଷ୍ଟି ସେତେ ଯାଉନାହିଁ । ଏଭଳି ବିଷୟମାନଂକରେ କେବେ ଟିକିଏ ତୀବ୍ର ସମାଲୋଚନା ହେଲେ ତା'ପୁଣି ସେ ସହି ପାରୁ ନାହାଂତି । ନୂତନ ଓଡ଼ିଆ ସାହିତ୍ୟ ପ୍ରତି ସେମାନଂକର ଅନେକ ସମୟରେ ଯୁକ୍ତିଯୁକ୍ତତା-ଠାରୁ ପ୍ରାଣର ପ୍ରତିଷ୍ଠିତ ଭାବ ଅଧିକ ପ୍ରବଳ ଥିବାର ମଧ୍ୟ ଅନୁମାନ କଲି । ଏହା ମୁଁ କେବଳ ସେମାନଂକଠାରେ ଅନୁମାନ କଲି ନୁହେଁ, ବୁଝିଲି, ଆମ ପାଠକେ ସାଧାରଣତଃ ଏହି ଭାବରେ ପ୍ରାଣିତ ଥିବେ ଓ ହେବେ ।

ଆଜି ମୋର ମନେପଡ଼ିଲେ ପ୍ରାଣରେ ସେହି ଯୌବନର ସରସତା ଏବେ ବି ଫୁଟିଉଠେ । ସେସବୁ ସମାଲୋଚନା ସ୍ରୋତ ଭିତରେ କେବେ ମୁଁ ଯେତେବେଳେ ଏକାକୀ ରହେ, କବିତାରେ ମୋର ବେଳେ ବେଳେ ସୃଷ୍ଟି କରିବାର ପ୍ରେରଣା ଜାଗିଉଠେ । ମୁଁ ବେଳେ ବେଳେ ଦିବା ସ୍ୱପ୍ନ ଦେଖେ ।

''ହୃଦଦରପଣେ ନାଚିଯାଏ ଛବି
ପଲକେ ପଲକେ ପରାଣ ପୁରୀ,
ଜାଗରଣେ କେତେ ଦେଖଇ ସ୍ୱପନେ
ସ୍ୱପନେ ଦେଖଇ ପରାଣ ଭରି ।''[1]

ଏହି ଚିଂତା, ପ୍ରେରଣା, ଦିବାସ୍ୱପ୍ନ ଭିତରେ ଏପରି ଏକ ସମୟ ଆସିଲା; ମୋତେ ଆଉ ଯଥାର୍ଥରେ ନିଦ ହେଲାନାହିଁ । ପ୍ରାୟ ଦୁଇଦିନ ଅନିଦ୍ରାରେ କଟିଗଲା । ଶେଷକୁ କାହିଁକି କେଜାଣି ''ରାମଚଂଡ଼ୀରେ ରାତି'' କବିତାଟି ଲେଖିବାରେ ଲାଗିଗଲି । ଦୁଇବର୍ଷ ତଳେ ପିଲାଂକ ସଂଗେ କୋଣାର୍କ ଦେଖି ଆସିବା ପରେ ଏହି ଲେଖାଟି ଆରଂଭ ମାତ୍ର କରିଥିଲି ।

## ୯୯। 'କୋଣାର୍କେ'ର ମୁଖଶାଳା

କୋଣାର୍କ ଦେଖିଯିବାର ପ୍ରାୟ ଦୁଇମାସ ପୂର୍ବରୁ ଗଡ଼ଜାତ ବୁଲିଗଲା ବେଳେ ଆଠଗଡ଼ ଠାରୁ ହାତୀରେ ଚଢ଼ି ହିଂଦୋଳ ଯିବା ସମୟରେ ବାଟରେ ଘୋର ବର୍ଷା ହେଲା । ସଂଗରେ ଥିଲେ ଜଣେମାତ୍ର ବଂଧୁ, ଶାସନ ଦାମୋଦରପୁରର ସ୍ୱର୍ଗତ ନାରାୟଣ ରଥେ ଆଉ ହାତୀ ମାହୁଂତ ଓ ମେଂଟ ବା ଡାଲୁଆ (ଯେ ହାତୀକୁ ଡାଳ ଭାଂଗି ଆଣି ଦିଏ); ସନ୍ଧ୍ୟାକୁ ମେଘ ଛାଡ଼ିଗଲା । ଆମେ ଯାଇ ରହିଲୁ ଢେଂକାନାଳ ରାଜ୍ୟର ସୀମାରେ ଥିବା 'ଭାଥାପୁର' ଡାକବଂଗଳାରେ । ସେହିଠାରେ ଆମେ ପହଂଚିବା ମାତ୍ରେ ଜଣେ ଭିକ୍ଷୁକ ଆସି କିଛି ମାଗିଲା । ପଚାରିବାରେ ଜଣାଗଲା—ସେ ସେକାଳେ ଅନୁଗୁଳରେ ଥିବା ରାଜାଂକର ଭାଟ ବଂଶର ଜଣେ । ଏବେ ତାର ଜମିବାଡ଼ି କିଛି ନାହିଁ । ଇଂରେଜ ମୂଲକ ହୋଇଯିବାରୁ ତା'ବଂଶର ଜାଗିରି ଜମିସବୁ କର ବସି ପରେ ବିକ୍ରି ହୋଇଯାଇଚି । ସେ ଏବେ ଭିଖ ମାଗୁଚି । ତା ଘରେ ବୀଣା ଅଛି । ଦଶହରା ଦିନ ସେ ତା' ପୂଜା କରେ ଓ ରାଜାଂକ ବଂଶରେ ଯେ ଅଛଂତି ତାଂକ ଦ୍ୱାରକୁ ପାରିଲେ ଟିକିଏ ଯାଏ ।

ଏ ଲୋକଟି ସଂଗେ ଏଇ କଥାବାର୍ତ୍ତା ହୋଇ ଯାହା ମୋ ମନରେ ହେଲା ତା' କହିବା ଦରକାର ନାହିଁ । ସେତିକିବେଳେ ଇଂରେଜ କବି ସ୍କଟଂକ 'ଶେଷ ବଂଦୀ ଭାରତୀ' (Lay of the last Ministrel) କଥା ମୋ ମନେ ପଡ଼ିଥିଲା । ମୁଁ ଭାବିଥିଲି ଏହିପରି ଗୋଟିଏ ଭାଟକୁ ଦେଖି ସ୍କଟ୍ ସେ କାବ୍ୟଟି ଲେଖିଥିଲେ । ଏବେ କୋଣାର୍କ ନିର୍ମାଣ କଥା ଲେଖିବାକୁ ବସି ମୋର ସେକଥାଟି ମନେପଡ଼ିଲା । ମୁଁ 'ମାୟାଦେବୀ' କାବ୍ୟ ଆରଂଭ କରି ପ୍ରାୟ ସପ୍ତାହ-କରେ ଶେଷ କରି ପକାଇଲି । ଦେଖିଲି, ସମସ୍ତଂକ ମନକୁ ପାଇଲା ମୋ ଉତ୍ସାହ ବି ବଢ଼ିଗଲା ।

## ୧୦୦। ଉଭାର ଦୁର୍ଭିକ୍ଷ (୧୯୧୯-୨୦)

ସତ୍ୟବାଦୀ ସ୍କୁଲ ଛାଡ଼ିବା ପରେ ମୋର ସ୍କୁଲରେ କିଛି କାମ ନଥିବାରୁ ପ୍ରାଣରୁ ମମତା ବି ଟିକିଏ କମି ଆସିଲା । ଏତିକିବେଳକୁ ସାର ଆଶୁତୋଷ (କଲିକତା ବିଶ୍ୱବିଦ୍ୟାଳୟର କୁଳପତି) କିଛିଦିନ ତଳେ ସ୍କୁଲ ଦେଖିବାକୁ ଆସିଥିଲେ । ମୁଁ ମଧ୍ୟ ସେବର୍ଷ ପୁରୀର ଦୁର୍ଭିକ୍ଷରେ ସ୍କୁଲର ସମସ୍ତ ଶିକ୍ଷକ ଓ ଛାତ୍ରମାନଂକୁ ନେଇ ଗୋପବଂଧୁବାବୁଂକ ପ୍ରେରଣାରେ ଦୁର୍ଭିକ୍ଷ ସେବା ଶୃଂଖଳିତ ଭାବରେ କରିବାରେ ଲାଗିପଡ଼ିଲି । ଗୋପବଂଧୁବାବୁ ସେତେବେଳେ ବିହାର-ଓଡ଼ିଶା କାଉନ୍‌ସିଲ୍‌ର ସଭ୍ୟ ଥିଲେ । ସେଥର ବିହାର-ଓଡ଼ିଶାର ଲାଟ୍ ଦୁର୍ଭିକ୍ଷ ଅଂଚଳ ଦେଖିବାକୁ ଆସିବାର କଥା ହେଲା । ଗୋପବଂଧୁବାବୁ ପାଟଣା ଯିବା ପୂର୍ବରୁ ମୁଁ କହିଥିଲି, ''ଆପଣ ସ୍କୁଲର ଶିକ୍ଷକ ଓ ଛାତ୍ରମାନଂକୁ ମୋ ସହିତ ଛାଡ଼ି ଦିଅଂତୁ । ତା'ହେଲେ ଲାଟ୍ ସାହେବଂକୁ

ଯାହା ଦେଖାଇବାର କଥା ଦେଖାଇ ପାରିବେ ।'' ତାହାହିଁ ହେଲା । ମୁଁ ଦୁର୍ଭିକ୍ଷ ଅଂଚଳର ଯେଉଁ ମାନଚିତ୍ର ଆଂକିଥିଲି ତାହା ସାଧାରଣତଃ ଅଫିସରମାନେ ସେକାଳେ କରୁନଥିଲେ । ମୋର ସେହି ମାନଚିତ୍ର ଦେଖି ଲାଟ୍ ସାହେବ ତାଂକ ଯିବା ବାଟ ସ୍ଥିର କରିଥିଲେ ।

ଲାଟ୍ ସାହେବ ଏ ଦୁର୍ଭିକ୍ଷ ଦେଖି ଇଂରେଜ ରାଜତ୍ୱରେ ମଧ୍ୟ ସେତେବେଳେ କହି ଯାଇଥିଲେ—''What ought to have been done, has not been done'' (ଯାହା କରିବାର ଥିଲା କରାଯାଇ ନାହିଁ) । ଏହାକୁ ଏବେ ବି 'ତଭାର ଦୁର୍ଭିକ୍ଷ' କୁହାଯାଏ । ଏପରି କରାଳ ଦୁର୍ଭିକ୍ଷ ଆଉ କେବେ ହୋଇଥିବାର ମୁଁ ଦେଖିନାଇ । (ଶୁଣିଚି ସମଗ୍ର ଓଡ଼ିଶାରେ ନଅଂକ ଦୁର୍ଭିକ୍ଷ ଏହାଠାରୁ ଆହୁରି ଭୀଷଣ ଥିଲା) । ମୁଁ ସେଥିପାଇଁ ତଭାରରେ ପ୍ରାୟ ଦୁଇମାସ ଥିଲି । ଅନେକ ଲୋକକ୍ଷୟର ଦୃଶ୍ୟ ବି ଦେଖିଚି ।

ଏହି ଦୁର୍ଭିକ୍ଷ ରିପୋର୍ଟ ଛପାଇବା ପାଇଁ ମୁଁ ସେଇବର୍ଷ କଲିକତା ଯାଇଥିଲି । ସେ ଛପା ରିପୋର୍ଟ ଏବେ ମିଳୁନାହିଁ ।

ତଭାର ଦୁର୍ଭିକ୍ଷବେଳେ ମୁଁ ପାଟଣାର ସର୍ଚଲାଇଟ୍‌ରେ ମିଛ ଖବର ଦେଇଚି ବୋଲି କେତେକ ସରକାରୀ କର୍ମଚାରୀଂକ ପ୍ରେରଣାରେ ମୋ ବିରୁଦ୍ଧରେ ଅଭିଯୋଗ ଅଣାଯାଇ ପୁରୀ କଚେରୀରେ ଏକାଧିକ ମକଦ୍ଦମା ହୋଇଥିଲା । ଦାମ ମଲିକ ବୋଲି ତଭାରର ଜଣେ ଚୌକିଦାର ଥିଲେ । ତାଂକୁ ମଧ୍ୟ ସେଥିରେ ସଂପୃକ୍ତ କରାଯାଇ ତାଂକ ଚାକିରି କାଢ଼ି ନିଆ ଯାଇଥିଲା । ସ୍ୱର୍ଗତ ଶ୍ରୀ ହରେକୃଷ୍ଣ ମହାଂତି (ଗୋପଚୌଧୁରୀଂକ ମାମୁଁ) ସେତେବେଳେ ପୁରୀରେ ଡେପୁଟି କଲେକ୍ଟର ଥା'ଂତି । ମୁଁ ବରାବର ତାଂକ କୋର୍ଟକୁ ଯାଉଥାଏ । ସେ ମଧ୍ୟ ଅନ୍ୟ ମକଦ୍ଦମା ନେଉଥା'ଂତି ।

ଦିନେ ମନେଅଛି, ତଭାରର ବୁଦ୍ଧି ବରାଳ ବୋଲି ଜଣେ ଗୃହସ୍ଥକୁ ପୁଲିସ ଧରି ଆଣିଲେ । ସେ ବୁଦ୍ଧି ବରାଳର ଗୋଟିଏ ବଡ଼ କୁଟୁଂବ । ପ୍ରାୟ ୩୦ଏକର ଜମି ଥିଲା କିଂତୁ ତିନିବର୍ଷ ହେଲା ଦୁର୍ଭିକ୍ଷଯୋଗେ ସେଥିରେ କିଛି ଧାନ ଫଳୁ ନଥିଲା । ବୁଦ୍ଧି ବରାଳ ଆଉ ଗୋଟିଏ ଗ୍ରାମର ବିଲରୁ ମୁଗ କରଡ଼ା ଆଣିବାକୁ ଯାଇ ଧରା ହୋଇ ଆସିଥିଲା ।

ହରେକୃଷ୍ଣ ବାବୁ ମକଦ୍ଦମା ବୁଝି ତାକୁ କହିଲେ—''ଆଜି କଚେରୀ ବଂଦ ପର୍ଯ୍ୟଂତ ତତେ ଏଇଘରେ ଜେଲ ଦିଆଗଲା ।'' ବୁଦ୍ଧି ବରାଳ ସବୁ ଟିକିନିଖି କରି ବୁଝିଲା । ଶେଷକୁ କହିଲା—''ବାବୁ କ'ଣ କଲେ, ମତେ ପଂଦରଟି ଦିନ ହେଲେ ଜେଲ ଦେଲେ ନାଇ । ମୁଁ ଜେଲରେ ମୁଠିଏ ଖାଇଥା'ଂତି । ଏକଥା କହିଲାବେଳେ ସେ କାଂଦି ପକାଇଲା ଏବଂ ହରେକୃଷ୍ଣ ବାବୁଂକ ପର୍ଯ୍ୟଂତ ଆଖିରୁ ମଧ୍ୟ ଲୁହ ଗଡ଼ିଲା ।

ଲାଟ୍ ସାହେବଂକୁ ଏଇ 'ତଭାର'ରେ ଦେଖାଇଲାବେଳେ ସିଦ୍ଧି ବରାଳ ବୋଲି ଜଣେ ଖୁବ୍ ଜମିଥିବା କୃଷକ ଘରକୁ ନେଇଥିଲି । ସେ ସେଠାରେ ମୁଠି ସାଂଗରେ କୁଂଡ଼ା ପକାଇ ଚୁଲିରେ ବସାଇ ଘାଂଟୁଥିଲା । ତାକୁ ଲାଟ୍ ସାହେବ ବହୁତ କଥା ପଚାରିଲେ । ସେ କାଂଦି ପକାଇ କହିଲା, ''ତାର ବହୁତ ଜମି ଅଛି । କିଂତୁ ତା' ଜମିରେ ତିନିବର୍ଷ ହେବ କିଛି ନାହିଁ । ତାର ଆଉ ଗୋଟିଏ ଭାଇକୁ ମୁଁ ଦିନେ ନଖାଇଥିବା ଅବସ୍ଥାରେ ମୋ ବସାରେ ଦେଖିଲି । ସେ ବଡ଼ ବ୍ୟାକୁଳ ହୋଇ ମତେ ଖାଇବାକୁ ମାଗିଲା । ମୁଁ ପୂଝାରୀକୁ

କହିଦେଲି—''ଯାକୁ ଖାଇବାକୁ ଦିଅ ।'' ସେ ଖାଇଲା ଓ କିଛିକ୍ଷଣ ପରେ ହାତ ନଧୋଇ ସେଇ ଖାଇବା ଜାଗାରେ ଟଳିପଡ଼ି ମରିଗଲା ।

ସେଇ ଗ୍ରାମରେ ମୋର ଯେଉଁଠି ବସା ଥିଲା ତା'ରି ଆଗରେ ବଉରା ମାଆର ଘର । ତା'ପୂର୍ବରୁ ତା'ପୁଅ ବଉରା ଘରୁ ବାହାରି ବାଂଡ଼କୁ ଯିବା ବାଟରେ ପଡ଼ି ମରି ଯାଇଚି । ବଉରା ମା ସେଦିନ ଘରେ ନଥିଲା; କିଂତୁ ଲାଟ୍ ସାହେବଂକୁ ଦେଖାଇଲି ତାର ଘଡ଼ିରେ ପାଣି ମୁଂଦିଏ ରହିଚି ଓ ସେଥିରେ ଚୁଲି ଲିପା ହୋଇଚି । ଆଉ ଚୁଲିରେ କି ଘରେ କିଛି ନାଇଁ । ଘର ଉପରେ ବି ଚାଳ ନାଇଁ । ଏହି ଦୃଶ୍ୟସବୁ ବର୍ଣ୍ଣନା କରିବାକୁ ଆଉ ଇଚ୍ଛା ହେଉନାଇଁ । ହେଲେହେଁ ମୋର ଖବର ଦେବାରେ ପୁଲିସ ଓ ସରକାର ଏଇ ବଉରା ଗଳ୍ପକୁ ମିଥ୍ୟା ଖବର ବୋଲି ମୋ ବିରୁଦ୍ଧରେ ଗୋଟିଏ ମକଦ୍ଦମାର ବିଷୟ କରିଥିଲେ ।

## ୧୦୧। ସୁତନ

ଏହି ଡଭାର ଦୁର୍ଭିକ୍ଷ ପରି କରାଳ ଦୁର୍ଭିକ୍ଷ ମୁଁ ଆଉ ଦେଖିନାଇଁ । ଘରମାନଂକରେ ମୁଁ ଦେଖୁ ଦେଖୁ ଖାଇବାକୁ ନପାଇ ଲୋକେ ମରିଯାଉଥାଂତି । ଏ ଅନାହାର ମୃତ୍ୟୁ ମୁଁ ଯାହା ଦେଖିଚି, ତା' ଆଉ ଭୁଲିପାରିବି ନାଇ । ସେଇ ଗାଁରେ ଥିବାବେଳେ ଦୋଳପୂର୍ଣ୍ଣମୀ ଦିନ ରାତିରେ ମୁଁ ପିଲାମାନଂକୁ ମୁଢ଼ି ବାଂଟୁଥାଏ । ହଠାତ୍ ଗହଳି ଭିତରୁ ଜଣେ ବାଳିକାକୁ ଧରି ଉଠାଇ କହିଲି, ''ତୁ ବୁଢ଼ୀଟାଏ ଏଥିରେ କାହିଁକି ବସିଚୁ ? ତୁ ଉଠିଯା ।'' ସେ ମୋ ଆଡ଼କୁ କାଂଦି କାଂଦି ଚାହିଁଲା । ଅଳ୍ପ କଅଁଳିଆ ଚଂଦ୍ର ଆଲୁଅ । ସେଥିରେ ମୁଁ ଦେଖିପାରୁ ନଥାଏ । ଗ୍ରାମବାସୀମାନେ ହଠାତ୍ କହିଲେ—''ସେ ତ ପିଲାଟାଏ, ଆପଣ ତାକୁ ବାହାର କରିଦେଉଛଂତି କାହିଁକି ?''

ସେଠାରୁ, ମତେ ଦେଖି କାଂଦ ମାଡ଼ିଲା । ଜାଣିଲି ସେ ଏକ ନବୀନା ତରୁଣୀ । ହେଲେହେଁ ସେ ଏକ ଛୋଟ ବାଳିକା ପରି ଦେଖାଯାଉଚି ଓ ତାର ଅଙ୍ଗସୌଷ୍ଠବ ଆଦୌ ଫୁଟିନାଇ ।

ଏହି ସମୟରେ ଅନ୍ୟ ଏକ ଘଟଣା କହେ । ସେତିକିବେଳେ ଠକ୍କର ବାପା ଆସି ପହଂଚିଲେ । ତାଂକରି ସଂଗେ ମୁଁ ଚୁଡ଼ା ବାଂଟିବାକୁ ପାଖ ଗାଁକୁ ଗଲି । ପାଖରେ ଗୋଟିଏ ଗାଁର ନାଁ ହେଉଚି ସୁତନ । ସେ ଗାଁରେ ଘରୁ ଆସି ଚୁଡ଼ା ନେବାକୁ କାହାର ଶକ୍ତି ନାଇଁ । ଖାଲି ବୁଢ଼ା ବୁଢ଼ୀଯାକ ଘରେ ପଡ଼ିଚଂତି । ଯୁବକ ଯୁବତୀ, ପ୍ରୌଢ଼ ଓ ପିଲାମାନେ କେହି ଘରେ ନାହାଂତି । ସମସ୍ତେ କୌଣସି ପ୍ରକାର କିଛି ରୋଜଗାର କରିବାକୁ ବାହାର ଗ୍ରାମକୁ ବା ଦୂର ଦୂରାଂତକୁ ଚାଲିଯାଇଚଂତି । କେତେଜଣଂକ ଘରେ ଯାଇ ଆମେ ଚୁଡ଼ା ଦେଲୁ । ସେମାନେ ବଡ଼ କଷ୍ଟରେ ଆସି ଚୁଡ଼ା ପାଖରେ ପହଂଚିଲେ ।

ବିଶେଷ ଆଶ୍ଚର୍ଯ୍ୟର କଥା, ସେ ଗାଁ ଛାଡ଼ି ଆମେ ଗାଁମୁଂଡ଼ରେ ଆସି ଦେଖିଲୁ ସେଠାରେ ମୋଟ ବାଇଶଟି ମୁର୍ଦ୍ଦାର ପଡ଼ିଚଂତି । ପରେ ବୁଝିଲୁ ସେ ଗ୍ରାମରେ କେହି ମରିଗଲେ ଶବ ସଂସ୍କାର କରିବାକୁ କାହାରି ବଳ ନାଇଁ, ଅବସ୍ଥା ନାଇଁ । ବଡ଼ କଷ୍ଟରେ ଆଣି ଲୋକଂକୁ ଏଇ ଶ୍ମଶାନରେ ପକାଇ ଦେଇ ଯାଉଚଂତି । ସେ କରାଳ ଦୃଶ୍ୟ ଏବେ ବି ମୋ ମନେପଡୁଚି ।

## ୧୦୨। ଓଡ଼ିଆ ଓ ତୁଳନାତ୍ମକ ଭାଷାତତ୍ତ୍ୱ ଅଧ୍ୟାପକ

ସାର୍ ଆଶୁତୋଷ କଲିକତା ବିଶ୍ୱବିଦ୍ୟାଳୟରେ 'ଓଡ଼ିଆ ଓ ତୁଳନାତ୍ମକ ଭାଷାତତ୍ତ୍ୱ' ପାଇଁ ଡକାଇନେଲେ । ମୁଁ ସେଇ ବିଷୟରେ ଜଣେ ଛାତ୍ରକୁ ଯୋଗ୍ୟ କରିବା ପର୍ଯ୍ୟଂତ କଲିକତା ବିଶ୍ୱବିଦ୍ୟାଳୟରେ ରହିବାର ପ୍ରତିଶ୍ରୁତି ଦେଲି ଓ ୧୯୨୦ ମସିହା ସେପ୍ଟେଂବର ୨୦ ତାରିଖରୁ ସତ୍ୟବାଦୀ ଛାଡ଼ି କଲିକତା ଗଲି ।

ସେହିବର୍ଷ ସେପ୍ଟେଂବର ମାସରେ କଲିକତା ସଭାରେ ଲାଲାଜୀଂକ ଦ୍ୱାରା ଯଥାର୍ଥ ସତ୍ୟାଗ୍ରହର ସୂତ୍ରପାତ ହେଲା । ମୁଁ କଲିକତାରେ ଅଧ୍ୟାପକ ଥାଏ । ଗୋପବଂଧୁ ବାବୁ ସେଦିନ ମୋ ମେସ୍‌ରେ ଥିଲେ । ଶେଷଥର ପାଇଁ ସେଦିନ ସେ ସେଇବାଟେ ପାଟଣା କାଉନ୍‌ସିଲ୍‌କୁ ଯାଉଥାଂତି । ରାତିରେ ଖାଇଲାବେଳେ ମୁଁ ତାଂକୁ ବିଂଚି ଦେଉଥାଏ । ମତେ କହିଲେ—"ଏବେ ତୁମମାନଂକର ଯାହା ଇଛା ତା' କର । ମୁଁ ଯାଉଚି ଏକା ଏକା ଅସହଯୋଗରେ ଯୋଗ ଦେବି ।" ଏହା କହୁ କହୁ କାଂଦ କାଂଦ ହୋଇଗଲେ । ମୁଁ ସେଠାରୁ ଟିକିଏ ରହି କହିଲି—"ଆପଣ ଏପରି କଥା କାହିଁକି କହୁଚଂତି ? ଜୀବନରେ ଆମେ ଏକାଠି କାର୍ଯ୍ୟାରଂଭ କରିଥିଲେ । ଯାହା କରିବା ଏକାଠି କରିବା ।" ତାହାପରେ ପ୍ରାଣର ଯେଉଁ ଭାବାବେଗ ପ୍ରକାଶ ପାଇଥିଲା କହିବା ଦରକାର ନାହିଁ ।

ଏଥିମଧ୍ୟରେ ୧୯୨୧ ଜାନୁୟାରୀରୁ ବିଧିମତେ ମହାତ୍ମା ଗାଂଧିଂକ ଅସହଯୋଗ ଦେଶସାରା ଆରଂଭ ହେଲା । ସେ ଉନ୍ମାଦନା ଓ ଉତ୍ସାହ ଆଜି କହି ହେବ ନାହିଁ । ସେତେବେଳେ ସଂବଲପୁରର ଓକିଲ ଶ୍ରୀଯୁକ୍ତ ଭାଗୀରଥୀ ମିଶ୍ର କଲିକତା କଲେଜରେ ବି.ଏଲ୍. ପଢୁଥାଂତି । ଏଣେ କାଗଜରେ ହୁଲ୍‌ସ୍ଥୁଲ୍ ପଡ଼ିଗଲା । ସଂବଲପୁର ଲୋକେ ତାଂକୁ ଡାକିଲେ— "ଶୀଘ୍ର ଆସ ଅସହଯୋଗରେ କିଛି କରିବା ।"

ସେ ଆସି ମୋତେ ଡାକିଲେ । ମୁଁ ଗୋପବଂଧୁ ବାବୁଂକୁ ଏ କଥା ଲେଖି ଜଣେଇଲି । ସେ ସଂଗେ ସଂଗେ କଲିକତା ଯାଇ ଆମ ଦୁହିଂକୁ ରେଳରେ ଧରି ସଂବଲପୁର ଚାଲିଲେ ।

ଏ ହେଉଚି ୧୯୨୧ ମସିହା ଜାନୁୟାରୀ ୬ ତାରିଖ କଥା । ଏହା ମଧ୍ୟରେ ସତ୍ୟବାଦୀ ସ୍କୁଲରେ ବସି ଗୋପବଂଧୁ ବାବୁ ସତ୍ୟବାଦୀ ସ୍କୁଲର ତତ୍‌କାଳୀନ କର୍ମକର୍ତ୍ତାମାନଂକୁ ଧରି ଏହାକୁ ଜାତୀୟ ବିଦ୍ୟାଳୟରେ ପରିଣତ କରିସାରିଥାଂତି ।

## ୧୦୩। "ସ୍ୱରାଜ ଭୟା ଅଇବତ୍ ହୋଗା"

ତା'ପରେ ସଂବଲପୁର କାର୍ଯ୍ୟ କଥା ଟିକିଏ ସୂଚେଇଦିଏ । ମୁଁ ସଂବଲପୁରରେ ସେ ବର୍ଷ ଜାନୁୟାରୀଠାରୁ ସେପ୍ଟେଂବର ପର୍ଯ୍ୟଂତ ଥିଲି । ପ୍ରଥମେ ସେଠାରେ ସତ୍ୟବାଦୀ ଛାଂଚରେ ଏକ ଜାତୀୟ ବିଦ୍ୟାଳୟ ଆରଂଭ କଲି । ସେଥିରେ ଲୋକଂକର ଖୁବ୍ ଉତ୍ସାହ ଦେଖାଗଲା । ସବୁଠାରୁ ପ୍ରଧାନ ଧନୀ ଓ ଓକିଲ ଶ୍ରୀ ରାମନାରାୟଣ ମିଶ୍ର ଏମ୍.ଏ.ବି.ଏଲ୍. ସେହି ସ୍କୁଲକୁ ତାଂକର ଦ୍ୱିତୀୟ ପୁତ୍ରକୁ ପଠାଇ ଦେଇଥିଲେ, ତଥା ସହରର ଅନେକ ବିଶିଷ୍ଟ ଲୋକ ତାଂକ ପୁତ୍ରମାନଂକୁ ସେହି ସ୍କୁଲକୁ ପଠାଇଲେ । ଏହି ସ୍କୁଲ ଯୋଗେ ସହର ତଥା

ମଫସଲରେ ଏକ ଚାଂଚଲ୍ୟ ଖେଳିଯାଇଥିଲା । ସେହିବର୍ଷ ଏପ୍ରିଲ ମାସ ଛ' ତାରିଖ ଦିନ ହରତାଳ କରିବା ଉଦ୍ଦେଶ୍ୟରେ ନଣବାଲିରେ ସନ୍ଧ୍ୟା ସମୟରେ ଯେଉଁ ବିରାଟ ସଭା ହୋଇଥିଲା—ତାହା ମୋର ଏବେ ମନେପଡୁଚି । ସେଥିରେ ସହରର ବହୁ ପ୍ରଧାନ ଲୋକ ଉପସ୍ଥିତ ହୋଇ ହରତାଳ ବିଷୟ ଶୁଣି ଚମତ୍କୃତ ହୋଇ ଯାଇଥିଲେ ଓ ସମସ୍ତେ ମୋ ସଂଗେ ସଂଗେ ସଭାରୁ ଉଠି ବରାବର ସମସ୍ତ ସହରରେ ବୁଲିଯାଇ ସମସ୍ତଂକୁ ହରତାଳ ବିଷୟରେ ଜଣାଇ ଦେଇ ଯାଇଥିଲେ । ବିଶେଷତଃ ଶ୍ରୀ ଅନଂତରାମ ସୂପକାର ମୋ ସଂଗେ ସଂଗେ ଲୋକଂକୁ ବିଶେଷରେ ଦୋକାନୀମାନଂକୁ ହରତାଳ କଥା କହି କହି ଚାଲିଥାଂତି । ଏପ୍ରିଲ ଛ' ତାରିଖ, ସେଦିନ ଜାଲିଆନାୱାଲାବାଗ୍ ହତ୍ୟାକାଂଡ଼ । ଏପ୍ରିଲ ଛ'ରୁ ତେର ତାରିଖ ପର୍ଯ୍ୟଂତ ସେତେବେଳେ ଜାତୀୟ ସପ୍ତାହରୂପେ ପାଳିତ ହେଉଥିଲା । ସେଦିନ ସଂବଲପୁରରେ ନାହିଁ ନଥିବା ହରତାଳ ହୋଇଥିଲା । ସେହି ସମୟରେ ଛାତ୍ରମାନଂକୁ ଇସ୍କୁଲରୁ ଛଡ଼ାଇବା ପାଇଁ ଓ ଓକିଲମାନଂକୁ କଚେରୀରୁ ଛଡ଼ାଇବା ପାଇଁ ମୁଁ ଗୋଟିଏ ଶୋଭାଯାତ୍ରାର ଗୀତ ଲେଖି ସହରରେ ଶୋଭାଯାତ୍ରା କରାଇଥିଲି । ସେ ଗୀତଟି ସମ୍ପୂର୍ଣ୍ଣ ମନେ ନାହିଁ । ତା'ର ଚାରୋଟି ଧାଡ଼ି ମାତ୍ର ମନେପଡୁଅଛି ।

"ସ୍ୱରାଜ ଭୟା ଅଲବତ୍ ହୋଗା
ଛୋଡ଼କେ ଆଓ ଗୋଲାମୀ
ଭାରତ ଲଡ଼କା ଗୋଲାମ ହୋକେ
କାହେ କରୋ ବଦନାମୀ ।
\+ + + +
ସ୍କୁଲ କଚେରି କାଉନସିଲକୁ ଯାଦରଖୋ ବାବୁଜୀ
ମାୟା ଏ ସବ୍ ଗୋଲାମୀକା ଇସମେ ନାହିଁ ଭୁଲୋଜୀ"

ଏହି ଓଡ଼ିଆମିଶା ହିନ୍ଦୀ ଗୀତଟି ବୋଲି ପ୍ରସେସନ୍ କଲାବେଳେ ସମସ୍ତ ହାଇସ୍କୁଲର ଛାତ୍ରମାନେ ସ୍କୁଲ ଛାଡ଼ି ଅଲଗା ହୋଇ ଆସିଥିଲେ । ସେତେବେଳେ ମୋର ସୁପରିଚିତ ନିମାପଡ଼ାର ମାଷ୍ଟର ମଧୁସୂଦନ ଦାସ ସ୍କୁଲର ହେଡ଼ମାଷ୍ଟର ଥିଲେ । ପିଲାଏ ଛାଡ଼ି ଆସିବାରେ ତାଂକ କରୁଣ ଦୃଶ୍ୟ ଓ ସମବେଦନା ଜ୍ଞାପନ ଆଗ୍ରହ ବ୍ୟଂଜିତ ମୁଖ ଏବେ ବି ମନେପଡୁଚି ।

## ୧୦୪। ସଂବଲପୁର ଜାତୀୟ ସ୍କୁଲ

ସଂବଲପୁର ଜାତୀୟ ସ୍କୁଲର ଛାତ୍ରମାନଂକୁ ଧରି ମଫସଲରେ କଲେରା ପ୍ରଭୃତିରେ ଯାଇ ସେବା କରିବାର ଏବେ ବି ମନେପଡୁଚି । ସେକାଳେ କଲେରା, ବସଂତ ଲାଗିବାର ଜାଣିଲେ ଲୋକେ ଘରୁ ବାହାରି ରୋଗୀ ପାଖକୁ ଯାଉ ନଥିଲେ । ରୋଗୀ ଘରେ ପଡ଼ି ପଡ଼ି ମରିଯାଏ । ବସଂତରେ ଗ୍ରାମମାନଂକରେ ସପ୍ତା ବସେ । ପଣା ଦିଆଯାଏ । ସଂକୀର୍ତ୍ତନ ହୁଏ । ହେଲେ ଠାକୁରାଣୀ ଏ ସବୁରେ ବୁଝଂତିନି । ଅଳ୍ପଦିନକେ ଗ୍ରାମରୁ ଅଧାଲୋକଂକୁ ପଦା କରିଦେଇ ଆଉ କେତେକଂକ ଆଖି ଫୁଟେଇ ଖୁସିରେ ଚାଲିଯାଂତି । ଫକୀରମୋହନ ସେ କଥା ବେଶ୍ ଲେଖିଚଂତି ।

ମୁଁ ଏହି ସ୍କୁଲର ଛାତ୍ରମାନଙ୍କୁ ଧରି 'ମାନପୁର' ପରି ଦୂର ଗ୍ରାମମାନଙ୍କୁ ଯିବାର ଏବେ ମନେଅଛି । ଏହି କାର୍ଯ୍ୟରେ ସଂବଲପୁର ଜିଲ୍ଲାରେ ସେତେବେଳେ ଯେପରି ହୃଦୟବତ୍ତା ଖେଳିଯାଉଥିଲା, ତାହା ଆଜି କହି ହେବ ନାହିଁ—ଦେଶରେ ସେ ଅବସ୍ଥା ବି ଆଜି ନାହିଁ । ଆଜି ଆଉ କଲେରା, ବସଂତ ପ୍ରଭୃତି ମାରାତ୍ମକ ରୋଗ ହୋଇ ନାହିଁ । ଚିକିତ୍ସା ବିଜ୍ଞାନର ଦ୍ରୁତ ଉନ୍ନତିରେ ଏ ସବୁ ପୁରୁଣା ରୋଗ ପ୍ରାୟ ଉଣା ହୋଇଯାଉଚି; କିଂତୁ ଶୁଣା ନଥିବା ବହୁ ନୂଆ ରୋଗ ବି ଜନ୍ମ ନେଉଚି ।

## ୧୦୫। ସେବା

ସଂବଲପୁରରେ ଥିଲାବେଳେ ଆଉ ଗୋଟିଏ ବିଶେଷ କାର୍ଯ୍ୟ ହେଉଚି—ସେତେବେଳେ 'ସେବା' ନାମରେ ଗୋଟିଏ ସାପ୍ତାହିକ ସଂବାଦପତ୍ର ମୁଁ ବାହାର କରିଥିଲି । ଆଜି ସେ କାଗଜ ମୋ ପାଖରେ ନାହିଁ; କିଂତୁ ତାହାର ଲେଖା ଯାହା ଆଜି ମୋର ମନେପଡୁଚି—ସେ କାଳକୁ ଚାହିଁ ସମ୍ପୂର୍ଣ୍ଣ ନୂତନ ଧରଣର । ସେକାଳର ଓଡ଼ିଶାର ବିଖ୍ୟାତ ବ୍ୟବସାୟୀ ପଦ୍ମଲୋଚନ ମହାଂତି କଲିକତାରୁ ମୋର ପ୍ରଥମ କାଗଜ ଖଂଡ଼ି ପାଇ ବିଜ୍ଞାପନ ପାଇଁ ଆଗତୁରା ମୋ ନାମରେ ଶହେକୋଡ଼ିଏ ଟଂକା ପଠାଇ ଦେଇଥିବା ମୋର ମନେଅଛି । ତାହାପରେ ଏହିପରି ଅନେକ ବିଜ୍ଞାପନ ଖର୍ଚ୍ଚା ଦେଇ ସେ ମୋ କାଗଜରେ ଛପାଇଥିଲେ । ଯାହାହେଉ ସେ କାଗଜ ଯୋଗେ ଲୋକଂକ ମଧ୍ୟରେ ବିଶେଷତଃ ଓକିଲ ମହଲରେ ବଡ଼ ଚଂଚଳତା ଖେଳି ଯାଇଥିଲା । ମନୋରଂଜନ ବାନାର୍ଜୀ ବୋଲି ସେ କାଳରେ ସଂବଲପୁରରେ ଜଣେ ଓକିଲ ଥିଲେ । ସେ ଓ ଶଂକର ମିଶ୍ରଂକ ପରି ଲୋକେ ମଧ୍ୟ ସେଥିରେ ପ୍ରତିବାଦମାନ ଛପାଉଥିଲେ । ଯାହାହେଉ ସେ କାଗଜ, ସେ ବିଦ୍ୟାଳୟ ଓ ତହିଁ ସଂଗେ ଜିଲ୍ଲାତମାମ ବୁଲି ସଂଗ୍ରହ କରିଥିବା ଅର୍ଥ ସବୁ ଛାଡ଼ି ମୁଁ ସେପ୍‌ଟେମ୍ବର ବା ଅକ୍ଟୋବର ମାସରେ ସେଠାରୁ ସତ୍ୟବାଦୀକୁ ଫେରିଆସିଥିଲି ।

ସେଠାର କଲେଜ କ୍ଲାସରେ ମୁଁ କିଛିଦିନ ଓଡ଼ିଆ ପଢ଼ାଉଥିଲି ଓ ସେହି ଓଡ଼ିଆ ପାଇଁ ଯେଉଁ ନୋଟ୍ ଦେଇଥିଲି ତାହା ୧୯୩୦ ଖ୍ରୀଷ୍ଟାବ୍ଦରେ ଜେଲରେ ଥିଲାବେଳେ ମୁଁ "ଓଡ଼ିଆ ବ୍ୟାକରଣ" ନାମଦେଇ ସେଇଟିକୁ ବହି ଆକାରରେ ଛପାଇଲି । ତାହା ସେକାଳେ ଶିକ୍ଷକମାନଂକର ଓଡ଼ିଆ ଶିଖେଇବା ପାଇଁ ବିଭାଗୀୟ କର୍ତ୍ତାମାନେ ସ୍ଥିର କରି ଗେଜେଟ କରିଥିଲେ । ସେଥିରେ ଗୋଟିଏ ପ୍ରଧାନ ବିଷୟ ଥିଲା, "ଓଡ଼ିଆ ଭାଷାର କାଳ ନିରୂପଣ ।" ସେଥିରେ କ୍ରିୟାର କାଳଭଂଗୀ ଥିଲା ପାଂଚୋଟି । ଯଥା—ବର୍ତ୍ତମାନ, ଅତୀତ, ଭବିଷ୍ୟତ, ଅନୁଜ୍ଞା ଓ ସଂଭାବନା । ଏହି ପାଂଚୋଟି କାଳର ପ୍ରତ୍ୟେକଟିର ତିନୋଟି ଲେଖାଏଁ ଭାବ (Mood) ବ୍ୟତୀତ ଓଡ଼ିଆରେ ଆଉ ଅଧିକ କାଳ ନାହିଁ ।

| | | |
|---|---|---|
| ବର୍ତ୍ତମାନ | — | ମୁଁ କରେ, ମୁଁ କରୁଥାଏ, ମୁଁ କରିଥାଏ । |
| ଅତୀତ | — | ମୁଁ କଲି, ମୁଁ କରୁଥିଲି, ମୁଁ କରିଥିଲି । |
| ଭବିଷ୍ୟତ | — | ମୁଁ କରିବି, ମୁଁ କରୁଥିବି, ମୁଁ କରିଥିବି । |
| ସମ୍ଭାବନା | — | ମୁଁ କରଂନ୍ତି, ମୁଁ କରୁଥାଂନ୍ତି, ମୁଁ କରିଥାଂନ୍ତି । |
| ଅନୁଜ୍ଞା | — | ମୁଁ କରେ, ମୁଁ କରୁଥାଏ, ମୁଁ କରିଥାଏ । |

ତା'ବାଦ ମୁଁ କର୍ତ୍ତାରେ ଷଷ୍ଠୀ ବିଭକ୍ତିରେ ବ୍ୟବହାରରେ ଲେଖିଥିଲି, ''ମୋର ତାର ଏ କାମ କରିବା'' ଇତ୍ୟାଦି । ଏହିପରି ଅନେକ ନୂଆ ବିଷୟ ଥିଲା । ଏଥିପାଇଁ ମୁଁ ସେକାଳର ଡିରେକ୍ଟରଂକୁ କହି କଟକ ଟ୍ରେନିଂ ସ୍କୁଲରେ ଏହି ବିଷୟରେ ପାଠ ଦେଇଥିଲି । କିଂତୁ ଦୁଃଖର ବିଷୟ ସେ କାଳର ପଢୁଥିବା ଛାତ୍ରମାନେ ଏ ବିଷୟ ଧରି ନପାରି ନାନାପ୍ରକାର ଅବାଂତର ଯୁକ୍ତି ଆରଂଭ କରିଥିଲେ ।

## ୧୦୬। ଲିପିସଂସ୍କାର

ସତ୍ୟବାଦୀ ସ୍କୁଲ ସମୟର ଆଉ ଗୋଟିଏ ବିଶେଷ କଥା ମନେପଡୁଚି; ତା' ହେଉଚି ଲିପିସଂସ୍କାର । ମୁଁ ପ୍ରଥମେ ସେକାଳ 'ଉତ୍କଳ ସାହିତ୍ୟ'ରେ ଓଡ଼ିଆରେ ଅନୁସ୍ୱାର ଦେଇ ସମସ୍ତ ବର୍ଗୀୟ ପଂଚମବର୍ଣ୍ଣ ପ୍ରକାଶ କରିବାର ଲିପି ଆରଂଭ କରିଦେଇଥିଲି । ଏ ବିଷୟରେ କିଂତୁ ସେ କାଳର ପ୍ରସିଦ୍ଧ ଶ୍ରୀ ଗୋପାଳଚଂଦ୍ର ପ୍ରହରାଜ ଓ ମୃତ୍ୟୁଂଜୟ ରଥଂକ ନେତୃତ୍ୱରେ 'ଉତ୍କଳ ସାହିତ୍ୟ' ପ୍ରଭୃତିରେ ଖୁବ୍ ପ୍ରତିବାଦ ଆରଂଭ ହୋଇ ଯାଇଥିଲା । ପରେ ସେଇ ଆଂଦୋଳନ ଫଳରେ ବିହାର ଓଡ଼ିଶାର ଶିକ୍ଷା ବିଭାଗ (ସେତେବେଳେ ବିହାର ଓଡ଼ିଶା ଏକ ପ୍ରଦେଶ ଥିଲା) ମୋ ନୀତିକୁ ଅତି ଆଗ୍ରହର ସହିତ ଶିକ୍ଷା ବିଭାଗ ପାଇଁ ଗ୍ରହଣ କରିଥିଲେ; କିଂତୁ ଏବେ ମଧ ତାହା ପୂରାପୂରି ପ୍ରଚଳିତ ହୋଇ ନାଇଁ । ଏବେ କିଂତୁ ଓଡ଼ିଆରେ ଟାଇପ୍ ରାଇଟର୍ କରିବାର ଖୁବ୍ ଆୟୋଜନ ଚାଲୁଚି । ନୂଆ ଟାଇପ୍ ରାଇଟର୍ ପାଇଁ ସେଇ ନୀତି ପ୍ରୟୋଗ କରି ଲେଖିଲେ ସୁବିଧା ହେବ ବୋଲି ସମସ୍ତେ ଅନୁଭବ କରିଚଂତି । ଟାଇପ୍ ରାଇଟର୍ ନିମଂତେ ଏହି ନୀତି ସଂବଳିତ ଅକ୍ଷର ତିଆରି ହେବା ପାଇଁ କଥା ହେଉଥିବାର ମୁଁ ଶୁଣିଚି । ମୋର ଯେପରି ଧାରଣା ଓଡ଼ିଆ ଲିପିର ଉଚ୍ଚାରଣ ପଦ୍ଧତି ଓ ଲିଖନ ପଦ୍ଧତିରେ ଢେର ତଫାତ୍ ରହିଯାଉଚି । ଆମେ ଉଚ୍ଚାରଣ କଲାବେଳେ 'ନୀଳକଂଠ' କହି ଲେଖିଲାବେଳେ 'ନୀଳକଣ୍ଠ' ଲେଖିବାର ତାତ୍ପର୍ଯ୍ୟ କେଉଁଠି ? ସବୁ ଓଡ଼ିଆ ଯୁକ୍ତାକ୍ଷର ସଂବଂଧରେ ମୋର ଏଇ ମତ । ପୁଣି ଉଚ୍ଚାରଣରେ 'ସ', 'ଶ' ଓ 'ଷ'ର ପାର୍ଥକ୍ୟ ବାରି ନପାରି ମୁଁ ବହୁତ ଦିନୁ 'ନୀଳକଂଠ ଦାସ' ବୋଲି ଲେଖିଆସୁଚି । ମତେ ଜାଣି ନଥିବା ଲୋକେ ମତେ କରଣ ବୋଲି ଏଥିରୁ ଠଉରଉଥିବେ; କିଂତୁ ଲିପିସଂସ୍କାର ଅଂତରାଳରେ ମୁଁ ଜାତିଜାତିର ଅଯଥା ବିଭେଦକୁ ଏଥିରେ ଲୋପ କରିବାର ପ୍ରୟାସ କରିଚି । ବ୍ରାହ୍ମଣ ଜାତିର ବିଶେଷତ୍ୱ ଏଇ ତେଂଗା 'ଶ'ରେ ନାଇ; ଅଥଚ ବ୍ରାହ୍ମଣମାନେ କି ଧାରଣାରେ କେଜାଣି ବହୁକାଳରୁ 'ଦାସ' ନଲେଖି 'ଦାଶ' ଲେଖୁଚଂତି । ଇଂରାଜୀରେ ପୁଣି ଉଚ୍ଚାରଣର କୌଶଳ ସମ୍ପୂର୍ଣ୍ଣ ଅଲଗା ଥିଲାବେଳେ, ଏଇ ପ୍ରତିଷ୍ଠିତ ଧାରଣାକୁ ସେଥିରେ ରୂପଦେଇ 'Das' ସ୍ଥାନରେ 'Dash' ଲେଖି ବସୁଚଂତି । ମୋ ମତରେ ଏ ଗୋଟାଏ ସାମାଜିକ ବ୍ୟାଧି । ସେତିକିବେଳେ ପୁରୀ ସଂସ୍କୃତ କଲେଜ ଅଧକ୍ଷ ପଂଡ଼ିତ ଶ୍ରୀ ବିଶ୍ୱନାଥ ମହାପାତ୍ର ବାହାର କଲେ ବ୍ରାହ୍ମଣ 'ଦାସ' ଏଇ 'ଶ' ହେବ । ଏ ବିଷୟରେ ମୋର ଗୋଟିଏ କୌତୁକପ୍ରଦ କଥା ମନେପଡୁଚି । ପଂଡ଼ିତ ଗୋପବଂଧୁ ଦାସ ଏଇ 'ଶ'କୁ ସବୁବେଳେ 'ସ' ବୋଲି ଲେଖୁଥିଲେ । ଥରେ ସେ ଇସ୍କୁଲ ବାରଂଡ଼ାରେ ବସି ଲେଖୁଥିଲେ । ଆମେ କହିଲୁ ବିଶ୍ୱନାଥ ମହାପାତ୍ରଂକ ପରି ସୁପଂଡ଼ିତ ବ୍ରାହ୍ମଣ 'ଦାସ'କୁ 'ଦାଶ' ଲେଖୁଚଂତି, ଆପଣ କାହିଁକି ସେହିପରି ଲେଖୁ ନାହାଂତି ? ସେଠାରୁ ଦାସେ ଆପଣେ ଟିକିଏ ଅନ୍ୟମନସ୍କ ହେଲାପରି

ଚାହିଁଲେ ଓ କହିଲେ, ''ତେବେ କହୁଚ ଦଂତ୍ୟ 'ସ' ଓ ତାଳବ୍ୟ 'ଶ' ମଧ୍ୟରେ କଣ ? ସେ ତେଣୁ ମୂର୍ଧଣ୍ୟ 'ଷ'ରେ 'ଗୋପବଂଧୁ ଦାସ' ବୋଲି ଦସ୍ତଖତ୍ କଲେ, କିଂତୁ ଯଥାର୍ଥରେ ବ୍ରାହ୍ମଣ 'ଦାସ' ବି 'ସ' ପ୍ରାଚୀନ ହାତଲେଖାମାନଂକରେ ବରାବର ଅଛି । ସ୍ୱର୍ଗୀୟ ପଂଡ଼ିତ ହରିହର ଦାସ ମଧ୍ୟ ନିଜ ନାମ 'ସ'ରେ ଦସ୍ତଖତ୍ କରୁଥିଲେ । ମୋ ନନା ବି ବରାବର 'ଆନଂଦ ଦାସ' ବୋଲି ଲେଖୁଥିଲେ ।

## ୧୦୭। ଶ୍ରୀ ବେନୁଗୋପାଳ ଆଚାରୀ

ଦିନେ ଗୋପବଂଧୁ ବାବୁ ଓଡ଼ିଶା ବାହାରେ ବୁଲି ବୁଲି ବଂଗଦେଶର କୌଣସି ବୈଷ୍ଣବ ସ୍ଥାନରୁ (ମନେ ହେଉ ନାହିଁ) ଜଣେ ତାମିଲ୍ କୃତବିଦ୍ୟ ଲୋକଂକୁ ସତ୍ୟବାଦୀ ଘେନିଆସିଲେ । ତାଂକ ସଂଗେ ତାଂକ ଭାରିଯା ଆଉ ଗୋଟିଏ ଭଉଣୀ ଓ ଛୋଟ ପୁଅଟି ଥିଲେ । ସତ୍ୟବାଦୀର ବିରାଟ ବୋର୍ଡ଼ିଂରେ ସେମାନଂକ ପାଇଁ ସ୍ଥାନ ହୋଇଗଲା । ପିଲାଟି ବଡ଼ ବୁଦ୍ଧିବାନ ଥିଲା । ସେ ଓଡ଼ିଆ ଭଲ ଶିଖିଥିଲା । ପରେ I.C.S. ପରୀକ୍ଷା ଦେବାରେ ଓଡ଼ିଆ ତାର ଦ୍ୱିତୀୟ ଦେଶୀଭାଷା ବୋଲି ସେ ଉଲ୍ଲେଖ କରିଥିଲା । ଲୋକଟି ନାମ ମୂଳତଃ ଥିଲା ଶଂକରନ୍ ଆୟାର୍ । ସେ ବୈଷ୍ଣବ ହୋଇ ନାମ ନେଇଥିଲେ ବେନୁଗୋପାଳ ଆଚାରୀ । ସେ ଆସିବା ପରେ ସତ୍ୟବାଦୀରେ ପଢ଼ାପଢ଼ିରେ ଲାଗିଗଲେ; କିଂତୁ ବୈଷ୍ଣବ ଭାବମୂଳକ ରାଧାକୃଷ୍ଣ ସଂଗୀତରେ ତାଂକର ବଡ଼ ପ୍ରୀତି ଥିଲା । ସେ ନିଜ ଭଉଣୀଂକ ସଂଗେ ତାର ଯଥେଷ୍ଟ ଆଳାପ କରୁଥିଲେ । ଏପରିକି ନିଜ ଭଉଣୀଂକୁ ସେ ରାଧା ବା କୃଷ୍ଣ ବୋଲି ଭାବି ସେଇ ଭାବରେ ତନ୍ମୟ ହୋଇ ଅତ୍ୟଂତ ଭକ୍ତି କରୁଥିଲେ । ଅବଶ୍ୟ ସେ ଭଉଣୀଂକର ସ୍ୱାମୀ ନଥିଲା । ଶୁଣିବାରେ ସେ ସ୍ୱାମୀଟି ପାଗଳ ହୋଇ ବୁଲୁଥିଲା ।

ଦିନେ ମୋର କ୍ଲାସରେ ତତ୍କାଳୀନ ଇଂରେଜ ସାମ୍ରାଜ୍ୟର ଅଷ୍ଟ୍ରେଲିଆ ବିଷୟରେ ପଢ଼ାଇବାର ଥିଲା । ତାହାର ପୂର୍ବରଂଗ ସ୍ୱରୂପ ସେହି ଭୂଗୋଳର ଅଷ୍ଟ୍ରେଲେସିଆ ନାମକ ଗ୍ରଂଥଟି ପଢୁଥିଲି । (ପ୍ରକାଶ ଥାଉକି ସେତେବେଳେ ଇଂରେଜ ସାମ୍ରାଜ୍ୟ ବିଷୟ ଏହିପରି ଅଷ୍ଟ୍ରେଲେସିଆ ପ୍ରଭୃତି ଚଉଦଟି ବଡ଼ ଗ୍ରଂଥରେ ସବିଶେଷ ବର୍ଣ୍ଣିତ ହୋଇଥିଲା ।)

ବେନୁଗୋପାଳଚାରୀ ମୋତେ ଆସି ପଚାରିବାରୁ ମୁଁ ତାଂକୁ ଉତ୍ତର ଦେଲି ଯେ ଅଷ୍ଟ୍ରେଲିଆ ବିଷୟରେ ବିଶେଷ ଜାଣିବା ପାଇଁ ଓ ଜାଣି ପଢ଼ାଇବା ପାଇଁ ମୁଁ ସେ ବହିଟି ପଢୁଚି । ଏହିପରି ଗ୍ରଂଥ ସବୁ ନପଢ଼ିଲେ ସତ୍ୟବାଦୀ ସ୍କୁଲରେ ଛାତ୍ରମାନଂକୁ ପଢ଼ାଇବା ନିହାତି ସହଜ ନୁହେଁ । ମୋ ସହିତ ଆଉ କେତେକ ବିଷୟରେ କଥାଭାଷା ହେବାପରେ ବେନୁଗୋପାଳ ମୋତେ ଅନୁରୋଧ କଲେ—''ଆପଣ ଏ ସ୍କୁଲରେ ଭୂଗୋଳ ପଢ଼ାଇବା ମୋତେ ଛାଡ଼ି ଦିଅଂତୁ ।'' ସେ ବଡ଼ ଉତ୍ସାହୀ ଗ୍ରାଜୁଏଟ୍ ଥିଲେ । ମୁଁ ତାଂକୁ ତାହା ସେହିଦିନଠାରୁ ଛାଡ଼ିଦେଲି । କ୍ରମେ ଲକ୍ଷ୍ୟକଲି ସେ ଅତି ଉଚ୍ଚଦରର ଭୂଗୋଳ ଶିକ୍ଷକରୂପେ ତିଆରି ହୋଇଗଲେ ଓ ଫଳରେ ପିଲାଂକୁ ପଢ଼ାଇବାରେ ଲାଗିଗଲେ । ମୁଁ ତାଂକ ଉପରେ ଭାରି ସଂତୁଷ୍ଟ ହୋଇ ଯାଇଥିଲି । ତାହାପରେ ଯେତେବେଳେ ଡିରେକ୍ଟର ଓ ଇନ୍‌ସପେକ୍ଟର ସ୍କୁଲ ଦେଖିବାକୁ ଆସିଲେ ସେତେବେଳେ ତାଂକ ଭୂଗୋଳ ପଢ଼ା ଓ କ୍ଲାସ୍‌ରେ ସ୍ଥାନେ ସ୍ଥାନେ ରିଲିଫ୍ ମ୍ୟାପ୍ କାଟି ପିଲାଂକୁ

ବୁଝାଇବା କଥା ସବିଶେଷ ବର୍ଣ୍ଣନା କଲି । ଇନ୍‌ସିପେକ୍ଟର ସେହି ଶିକ୍ଷକଙ୍କୁ ଓଡ଼ିଶାର ଭିନ୍ନ ଭିନ୍ନ ହାଇସ୍କୁଲରେ ଦିନେ ଦିନେ ଭୂଗୋଳ ପଢ଼ାଇବା ପାଇଁ ମାଗିଲେ । ମୁଁ ହଁ କଲି । ତାପରେ ପ୍ରାୟ ମାସେ ସମୟ ଧରି ଭିନ୍ନ ଭିନ୍ନ ସ୍କୁଲରେ ବେନୁଗୋପାଳ ଆଚାରୀଂକ ପାଇଁ ଭୂଗୋଳ ପଢ଼ାଇବା ବ୍ୟବସ୍ଥା ଇନ୍‌ସିପେକ୍ଟର କଲେ । ସେ ବ୍ୟବସ୍ଥା ଅତି ମନୋରମ ହୋଇଥିଲା । ହେଲେହେଁ ଏହି ବେନୁଗୋପାଳ ଆଚାରୀ ଓ ତାଂକ ଭଉଣୀଂକ ସଂସ୍ପର୍ଶରେ ଆସି ମୋର କୃଷ୍ଣଂକ ଭକ୍ତି ଧର୍ମ ପ୍ରତି ଟିକିଏ ଆସ୍ଥା ଛାଡ଼ିଆସିଲା । କାରଣ ଉପରେ କୃଷ୍ଣ ଓ ରାଧାଂକୁ ପୂଜା, ପ୍ରଚାର ଓ ଆରାଧନା କରି ବେନୁଗୋପାଳଂକ ଭଉଣୀ ଭିତରେ ପ୍ରକୃତରେ ସେଇଆ କରୁନଥିଲେ ।

ସତକୁ ସତ ପ୍ରାୟ ଦଶବର୍ଷ ପରେ ଦିଲ୍ଲୀରୁ ଫେରିଲାବେଳକୁ କଲିକତାରେ ଏହି ବେନୁଗୋପାଳାଚାରୀଂକ ସଂଗେ ଦେଖାହେଲା । ତାଂକ ସଂଗେ ତାଂକ ସ୍ତ୍ରୀ ବି ଥାଂତି । ତାଂକ ପୁତ୍ର ନରସିଂହ ସେତେବେଳକୁ କୌଣସି ପରୀକ୍ଷା ଦେବାପାଇଁ ଅନ୍ୟତ୍ର ଯାଇଥାଂତି । ଶ୍ରୀ ବେନୁଗୋପାଳାଚାରୀ ବିଚରା ଅତି ଭଦ୍ରଲୋକ ଥିଲେ । ଶେଷକୁ ସେ କହିଲେ—ତାଂକ ପୁଅଂକ ଠାରୁ ବୁଝିଲେ ଯେ ସେ ଭଉଣୀଟି ବ୍ୟଭିଚାର କରିଥିବାରୁ ସେ ତାଂକ ଘରୁ ବାହାର କରିଦେଇ ଦ୍ୱାର ମନା କରି ଦେଇଚଂତି ।

ତାପରେ ମୋର ଗୋପବଂଧୁବାବୁଂକ ସଂଗେ ପଂଡ଼ିତ ଭୁବନେଶ୍ୱର ରଥଂକୁ ଧରି ସଂସ୍କୃତ ମହାଭାରତ ଶୁଣିବା ପ୍ରସଂଗ । ବେନୁଗୋପାଳଂକ ପରିବାର ସହିତ ଜଣାଶୁଣା ହୋଇ କୃଷ୍ଣ ଓ ରାଧା ଭକ୍ତିର ପରିଣତି ଦେଖି ମୋ ମନ କ୍ରମଶଃ ଭକ୍ତିଧର୍ମ ଆଡ଼ୁ ଛାଡ଼ି ଆସୁଥିଲା ।

## ୧୦୮। ଭକ୍ତିକ ମିଥ୍ୟା

ବୋଧହୁଏ ୧୯୧୬ କିଂବା ୧୯୧୭ରେ ହେବ, ଗୋପବଂଧୁବାବୁଂକୁ ସାଂଗରେ ଧରି ମୁଁ ସଂସ୍କୃତ ମହାଭାରତ ଶୁଣିବାର ବ୍ୟବସ୍ଥା କରିଥିଲି । ସ୍ୱର୍ଗତ ପଂଡ଼ିତ ଭୁବନେଶ୍ୱର ରଥ ସତ୍ୟବାଦୀ ସ୍କୁଲର ସଂସ୍କୃତ ପଂଡ଼ିତ ଥିଲେ । ସେ ସଂସ୍କୃତ ମହାଭାରତ ପଢ଼ି ବୁଝାଉଥିଲେ । ଆଂଭେ ଦୁହେଁ ଶୁଣୁଥିଲୁ । ଶୁଣିଲାବେଳେ ହରିଭାଇନା, ବାସୁଦେବ ମହାପାତ୍ର ପ୍ରଭୃତି ବେଳେ ବେଳେ ପାଖରେ ବସୁଥିଲେ । ଦଶ ପଂଦରଦିନ ପଢ଼ା ହେବାପରେ ଦିନେ ବସିଲାବେଳେ ଗୋପବଂଧୁବାବୁ ପଚାରିଲେ—"କିଓ ନୀଳକଂଠ, କିପରି ଲାଗୁଛି ?" ମୁଁ କହିଲି—"ଏ ମହାଭାରତରେ କୃଷ୍ଣଂକ ଚରିତ୍ର ଯେ ଖଂଜି ଦେଇଚି ସେ ବଡ଼ ବିଚକ୍ଷଣ ବୈଷ୍ଣବ । ସେଥିପାଇଁ ଲାଗୁଚି କୃଷ୍ଣ ନଥିଲେ ଯେପରି ମହାଭାରତ ବି ନଥାଂତା; କିଂତୁ ଯଥାର୍ଥରେ ସମସ୍ତ କୃଷ୍ଣ ବିଷୟଟି ମହାଭାରତରୁ କାଢ଼ିଦେଲେ ଯଥାର୍ଥ ମହାଭାରତର ଯେ 'ଜୟ' ବୋଲି ନାମଟି ଅଛି ତାହା ଖଂଡ଼ିତ ହେବନାହିଁ । ମୋତେ ଏଇଆ ଲାଗୁଚି ।"

ଏହିପରି କେତେକ କଥା କହିବାପରେ ଗୋପବଂଧୁବାବୁ ସ୍ଥିର ଭାବରେ ମୋତେ ଟିକିଏ ଚାହିଁ ରହିଲେ । ତାପରେ କହିଲେ—"ନୀଳକଂଠ, ଏପରି ଚିଂତା କରିବ ନାହିଁ । ଏଥିରେ ପାପ ହେବ ।" ମୁଁ ଆଉ କିଛି କହିଲି ନାହିଁ । ତଥାପି ପାପ ହେବା କଥାଟା ଏଠାରେ

ମୋତେ ଭଲ ଲାଗିଲା ନାହିଁ । ସେଇଦିନଠାରୁ ଏହି କୃଷ୍ଣଂକ ଭକ୍ତି ବିଷୟରେ ମୁଁ ପଛକୁ ଚାହିଁଲି ।

ଗୋପବଂଧୁବାବୁ ଅତ୍ୟଂତ କୃଷ୍ଣ ଭକ୍ତ ଥିଲେ । ସେ ମହାଭାରତର ବୈଦିକ କୃଷ୍ଣ ଓ ଭାଗବତର କୃଷ୍ଣଂକ ମଧ୍ୟରେ କୌଣସି ପ୍ରଭେଦ ବୁଝୁ ନଥିଲେ । ସେ ''ସତ୍ୟବାଦୀ ବା ସାକ୍ଷୀଗୋପାଳ'' ବୋଲି 'ସତ୍ୟବାଦୀ' ମାସିକ ପତ୍ରିକାରେ ଧାରାବାହିକ ପ୍ରବଂଧ ଲେଖୁଥିଲେ । ସେଥିରେ କୃଷ୍ଣଂକର କାଳ୍ପନିକ ଭାକ୍ତିକ ମିଥ୍ୟା ପୂର୍ଣ୍ଣ ଭାବରେ ଥିଲା । ସେ ଗଳ୍ପଟି ପୁଣି ଦ୍ୱାରାର ବୈଷ୍ଣବ ଭକ୍ତ ରାମଦାସ ଲେଖି ନଥିଲେ । ଏହା ୧୭୯୯ ଖ୍ରୀଷ୍ଟାବ୍ଦ ପରେ ଦାର୍ଢ୍ୟତା ଭକ୍ତିରେ ''ବଡ଼ ବିପ୍ର ଓ ଛୋଟ ବିପ୍ର'' ବୋଲି ଲେଖା ହୋଇ ଯୋଡ଼ାହୋଇ ଥିଲା । ଅନ୍ୟ ପ୍ରସଂଗରେ ମୁଁ ଏହା କହିଛି; କିଂତୁ ମୋତେ ଏହିପରି ଭାକ୍ତିକ ମିଥ୍ୟା ସୁଖ ଲାଗେନାହିଁ । ବିଶେଷରେ ସେଇଦିନଠାରୁ ମୋ ମନରେ ପ୍ରତିକ୍ରିୟା ହେଲା । ଏହିପରି ଭାକ୍ତିକ ମିଥ୍ୟା ପ୍ରତି ମୋର ଘୃଣା ଆସିଲା । ସେଥିପାଇଁ ମୁଁ ପରେ ନବଭାରତର ୨ୟ ଭାଗ ପ୍ରଥମ ସଂଖ୍ୟାରେ 'ବିଧାତାଂକ ସୃଷ୍ଟି' ବୋଲି ପ୍ରବଂଧ ମଧ୍ୟ ଲେଖିଥିଲି ।

କିଂତୁ ଗୋପବଂଧୁବାବୁଂକ ମହତ୍ତ୍ୱ ମୁଁ ସେ ଭକ୍ତି ବା ଭାକ୍ତିକ ମିଥ୍ୟା ମଧ୍ୟରେ କଦାଚିତ୍ ଦେଖିଚି । ଜନସେବା ତାଂକର ଥିଲା ମୁଖ୍ୟ ଧର୍ମ ଓ ମୁଖ୍ୟ ମାନବିକ ମହତ୍ତ୍ୱ । ଭାକ୍ତିକ ମିଥ୍ୟା ଓ ପୌରାଣିକ ମିଥ୍ୟା ସଂବଂଧରେ ମୁଁ ପରେ ''ଓଡ଼ିଆ ସାହିତ୍ୟର କ୍ରମ ପରିମାଣ'' ୨ୟ ଭାଗରେ ଖୁବ୍ ଲେଖିଚି । ସେଥିପାଇଁ ଭକ୍ତିଧର୍ମକୁ ମୁଁ ସେତେ ପ୍ରସିଦ୍ଧି ଦିଏନାହିଁ । କୃଷ୍ଣ, ଖ୍ରୀଷ୍ଟ ପ୍ରଭୃତି ଈଶ୍ୱର ବା ଈଶ୍ୱରଂକ ପୁତ୍ର ଆଖ୍ୟାନ ସବୁ ମୋତେ ବଡ଼ ଅଳିକ ବୋଧହୁଏ । ସେସବୁ ଭାରତୀୟର ଆତ୍ମଭାବ ପରି ନୁହେଁ । ଆତ୍ମଭାବରେ ଜାତିଭେଦ, ଭାଷାଭେଦ ପ୍ରଭୃତି ମନୁଷ୍ୟ ମଧ୍ୟରେ ଯେ ସବୁ ଭେଦ ଫୁଟିଛି, ତାହା ରହିବା ସଂଭବ ନୁହେଁ । ସେହି ହେଉଚି ଭାରତର ମୌଳିକଧର୍ମରେ ଭକ୍ତିଭାବ ପଶିଲେ ମନୁଷ୍ୟ କ୍ରମେ କ୍ଷୁଦ୍ର ହୁଏ ଓ ଆତ୍ମିକତା ତଥା ଚରିତ୍ରବତ୍ତା ପ୍ରଭୃତି ମନୁଷ୍ୟର ଯେଉଁ ଗୁଣ ବିକଶିତ ହେଲେ ପୃଥିବୀରେ ସାମ୍ୟ ଓ ମୈତ୍ରୀଭାବ ଫୁଟିବ ବୋଲି ଆଜି କଳ୍ପନା କରାଯାଉଚି; ତାହା ବ୍ୟାହତ ହୁଏ । ବିଭିନ୍ନ ଧର୍ମ ଧାରଣା ଓ ପ୍ରତିଷ୍ଠିତ ଈଶ୍ୱର ବିଶ୍ୱାସ ନେଇ ଇତିହାସ କାଳରୁ ଏ ପର୍ଯ୍ୟଂତ ଜାତି ଜାତି ଓ ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ଯୁଦ୍ଧ ହୋଇ ଆସିଚି । ଧର୍ମର ଅହମିକା ଔରଂଗଜେବଂକୁ ଅଂଧ କରିଥିଲା । ଫଳରେ ସେ ଧର୍ମ ନାମରେ ପ୍ରତିଧର୍ମୀ ମଣିଷ ବା ଜାତିକୁ ଅତି ମାତ୍ରାରେ ଘୃଣା କରୁଥିଲେ । ହିଟ୍‌ଲର୍ ଅମାନୁଷିକ ଭାବରେ ସହସ୍ର ସହସ୍ର ଇହୁଦୀଂକୁ Gas Chamber ଭିତରେ ରୁଦ୍ଧକରି ହତ୍ୟା କରିଥିଲେ । ମଣିଷ ଜାତିର ଇତିହାସ ଅଧ୍ୟାୟ ସେଥିରେ କ'ଣ କଳଂକିତ ହୋଇନାହିଁ ? ଆଜି ମଧ୍ୟ ହିଂଦୁ ମୁସଲମାନ ସଂଘର୍ଷ ପଛରେ ଅଛି ସେହି ଧର୍ମର ମୌଳିକ ପାର୍ଥକ୍ୟ । ପୁଣି ଦେଖାଯାଉଚି—ଧର୍ମ ବହୁ ସ୍ଥାନରେ ରାଜନୀତିକୁ ନିୟନ୍ତ୍ରଣ କରୁଚି । ତା'ହେଲେ ମଣିଷ ମନରେ ଯେଉଁଠି ଧର୍ମଧାରଣାରେ ଏତେ ଫରକ୍ ସେଠି ଠାକୁରର ନାମ ଭକ୍ତିଭାବ ଉଦୟ କରିପାରିବ କି ? କୃଷ୍ଣଂକୁ ଯଦି ଆଲ୍ଲା ସହି ନପାରେ, ଆଲ୍ଲାଂକୁ ଯଦି ଯୀଶୁଖ୍ରୀଷ୍ଟ ସହି ନପାରଂତି ତେବେ ଧର୍ମପ୍ରାଣର ଭାବାବେଗ ଏସବୁ ଉପରେ ପ୍ରତିଷ୍ଠିତ ବୋଲି କହିବାର ଯୁକ୍ତି କାହିଁ ? ଭାରତର ମୌଳିକ ଆତ୍ମଭାବ ସହିତ ଏସବୁ ତୁଳନା କରି ଦେଖି ମୁଁ ଏଇ ଭାକ୍ତିକ ଧର୍ମଠାରୁ ଯଥାସଂଭବ ଦୂରରେ ରହିଆସିଚି ।

## ୧୦୯। ଗୋମାହାତ୍ମ୍ୟ

ଏଇଠାରେ ଆଉ ଗୋଟିଏ କଥା ମନେପଡୁଚି । ଏ ସଂପର୍କରେ ତାହା କହିଦିଏ । ୧୯୨୪ରେ ଜେଲରୁ ଆସିବା ପରେ ସତ୍ୟବାଦୀ ବୋର୍ଡ଼ିଂ ବାରଂଡ଼ାରେ ଥରେ ଗୋପବଂଧୁବାବୁ ମୋତେ ଡାକି ତାଂକର ଜେଲରେ ଲେଖିଥିବା କବିତା ଶୁଣାଇଲେ । ସେଥିରୁ ଗୋଟିଏ ହେଉଚି—'କାରାକବିତା' । ଅନ୍ୟଟି 'ଧର୍ମପଦ' ଓ ତୃତୀୟଟି 'ଗୋମାହାତ୍ମ୍ୟ' । ଏଇ ତିନୋଟି ପ୍ରଧାନ ଲେଖା ଭିତରୁ 'ଗୋମାହାତ୍ମ୍ୟ'ଟି 'ଗୋପଦାସକୃତ ଗୋ ମାହାତ୍ମ୍ୟ' ନାମରେ ଛପାଇବାକୁ ସେ କହିଲେ । ମୁଁ ସବୁ ଶୁଣି ଶୁଣି ଶେଷକୁ କହିଲି—''କାରାକବିତାଟି ବଡ଼ ସୁଂଦର ହୋଇଚି । ଏହା ଲୋକଂକ ମନକୁ ଘେନିବ । 'ଧର୍ମପଦ' କବିତାଟି ବହୁତ ପୌରାଣିକ ମିଥ୍ୟାରେ ପୂର୍ଣ୍ଣ । ବିଶୁ ମହାରଣା, ଧରମା ପ୍ରଭୃତି କଥାଗୁଡ଼ିକ ଆପଣ ଭର୍ତ୍ତି କରିଚଂତି । ହେଲେ ହେଁ ଏଥିରେ ନାଟକୀୟତା ଆଦୌ ନାହିଁ । ଧର୍ମପଦ ଦେଉଳରୁ ଆତ୍ମହତ୍ୟା କରିବା ପାଇଁ ଡେଇଁଲାବେଳେ ଯେପରି ''ଜୟ ଜଗଦୀଶ ହରେ'' ବୋଲି ଗାଇଚି—ତାହା ଭଲକରି ପାଠକରିବା ଲୋକ ମନକୁ ଘେନିବ ନାହିଁ । ତାହାଛଡ଼ା 'ଗୋପଦାସ କୃତ ଗୋମାହାତ୍ମ୍ୟ' କଥା ଛାଡ଼ । ଏହାକୁ ଲୋକେ ଘୃଣା କରିବେ । ଆପଣ 'କାରାକବିତା'ଟି ଶୀଘ୍ର ଛପାଇ ଦିଅଂତୁ । ଆଉଗୁଡ଼ିକୁ ବଂଦ କରଂତୁ ପରେ ବିଚାରି ଦେବେ ।''

ଫଳରେ ଏବେ ଦେଖୁଚି ସେଗୁଡ଼ିକ ସବୁ ଛାପା ହୋଇଚି ।

## ୧୧୦। ଗାଂଧିଂକ ଉତ୍କଳ ଭ୍ରମଣ (୧୯୨୩)

ଖ୍ରୀ: ୧୯୨୩ରେ ଗାଂଧି ଓଡ଼ିଶା ଭ୍ରମଣରେ ଆସିଲାବେଳେ ଗୋପବଂଧୁ ଦାସଂକ ପ୍ରତି ଉତ୍କଳ କଂଗ୍ରେସର ବିରୋଧ ଏତେ ବେଶୀ ହୋଇଥିଲା ଯେ ସେହି ସମୟରେ ଗୋଟିଏ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଘଟଣା ଘଟିଥିଲା । 'ଗାଂଧି ସମାଚାର' ବୋଲି ଦୈନିକ ପତ୍ର ଗୋଟିଏ କାଢ଼ି ଗଂଜାମର ସ୍ୱର୍ଗତ ନିରଂଜନ ପଟ୍ଟନାୟକ ନିଜେ ସେଥିରେ ସଂପାଦକ ହୋଇ ଗାଂଧି କିପରି ସତ୍ୟବାଦୀ ନଆସିବେ ସେଥିପାଇଁ ସବୁ ବ୍ୟବସ୍ଥା କରିଥିଲେ । ଗାଂଧି ଆସି ବାଣପୁରଠାରେ ରହିଲେ । ସେଠାରୁ ଗାଂଧିଜୀ ଚଂପାପୁରର ଶ୍ରୀଯୁକ୍ତ ଗୋବିଂଦ ମିଶ୍ରଂକୁ ସତ୍ୟବାଦୀ ପଠାଇଲେ । ଉଦ୍ଦେଶ୍ୟ ଥିଲା ସତ୍ୟବାଦୀ ଆସିବା ପାଇଁ ଗୋପବଂଧୁଂକୁ ପଚାରି ବୁଝିବା । ଗୋପବଂଧୁବାବୁ ଆଗରୁ ସବୁକଥା ଜାଣିଥିଲେ । ସେ ବିରକ୍ତ ହୋଇ ଗୋବିଂଦ ମିଶ୍ରଂକୁ କହିଲେ—''ଆରେ ଯା, ଯେଉଁ ଗାଂଧି 'Young India' କାଗଜରେ ମହୀଶୂର ରାଜାଂକୁ ଭୂୟସୀ ପ୍ରଶଂସା କରି Certificate ଦିଏ ସେ ଗାଂଧି ସତ୍ୟବାଦୀକୁ ଆସେନାହିଁ ।'' ତାଂକ ରାଗ ଓ କ୍ଷୋଭ ଶାଂତ ପଡ଼ିବା ପରେ ଗୋବିଂଦ ମିଶ୍ରେ ବୁଝାଇ ବସିଲେ । ଗୋପବଂଧୁ ବାବୁ ରାଜି ହୋଇ ଗାଂଧିଂକୁ ପାଛୋଟି ଆଣିବାକୁ ମୋତେ ପଠାଇଲେ । ମୁଁ ଯାଇ ଗାଂଧିଂକୁ ଡାକିଲି । ଗାଂଧି ସତ୍ୟବାଦୀ ଆସିବା ସ୍ଥିର ହେଲା ।

ସତ୍ୟବାଦୀରେ ଗାଂଧିଂକ ସହିତ ମୋର ସୂତାକଟା ବିଷୟରେ କଥା ହେଲା । ସତ୍ୟବାଦୀର ପାଠ ବଂଦ କରାଯାଇ କେତେକ ଛାତ୍ରଂକ ପାଇଁ ସୂତାକଟା ପାଠ୍ୟ ରୂପେ ପ୍ରଚଳନ

ହୋଇଥାଏ । ବହୁତ ଆଲୋଚନା ପରେ ସୂତାକଟା ଦ୍ୱାରା ଓଡ଼ିଶାରେ ତଥା ଦେଶରେ ଆର୍ଥିକ ସମସ୍ୟାର ସମାଧାନ ହେବ ବୋଲି ଗାଂଧି ମତ ଦେଲେ; କିଂତୁ ମୁଁ ଏ ମତକୁ ଆଦୌ ଗ୍ରହଣ କରିପାରିଲି ନାହିଁ । ମୋତେ ଗାଂଧିଜୀ ବୁଝାଇ ସଂତୁଷ୍ଟ କରିପାରିଲେ ନାହିଁ । ମୁଁ ସେଠାରେ ଶେଷକୁ କହିଥିଲି ତା'ହେଲେ—

By faith and faith alone we embrace
Believing when we can not prove

ମୁଁ Tennysonଙ୍କ 'In memorium'ରୁ ଏହି ଧାଡ଼ିଟି ବୋଲିବା ପରେ ଗାଂଧିଜୀ କହିଥିଲେ—''Exactly' that is the attitude''; କିଂତୁ ମୋର ସେତେବେଳକୁ ଆଉ ଯୁକ୍ତି ଛାଡ଼ି **belief**ରେ ଭୁଲିବା ପାଇଁ ଅବସ୍ଥା ଟହଲି ଆସିଥିଲା । ମୁଁ ସେଠାରୁ ନମସ୍କାର କରି ଉଠି ଆସିଥିଲି । ସେଠାରୁ ଅଭ୍ୟର୍ଥନା ଶେଷରେ ଗାଂଧିଜୀ ପୁରୀ ଗଲେ ।

ପୁରୀରେ ଯେଉଁଠାରେ ନରେଂଦ୍ର ଆଡୁ ରାସ୍ତା ବଡ଼ଦାଂଡ଼ରେ ମିଶିଚି, ସେହିଠାରେ ସଭା ପାଇଁ ବ୍ୟବସ୍ଥା ହୋଇଥିଲା । କିଂତୁ ଗୋପବଂଧୁ ବାବୁଂକୁ ନଡାକିବା ପ୍ରଚାର ହୋଇ ଯାଇଥିବାରୁ ସେଠାକୁ ଠିକ୍ ସମୟରେ (ଅର୍ଥାତ୍ ଅପରାହ୍ଣ ୫ଟା ବେଳକୁ) କେହି ଆସି ନଥିଲେ । ଗାଂଧି ସେଠାରେ ଘଂଟାଏ ଅପେକ୍ଷା କଲେ । ଶେଷକୁ ଗୋପବଂଧୁ ବାବୁ ଓ ଜଗବଂଧୁ ବାବୁ ପ୍ରଭୃତି ସହରକୁ ଯାଇ ପଚାଶଜଣ ଧରିକି ପ୍ରଧାନ ପ୍ରଧାନ ଲୋକଂକୁ ଡାକି ଆଣିଲେ ମନେରଖିବାର ଅଛି, ଏହି ଗାଂଧି ୧୯୨୧ରେ ଆସିଲାବେଳେ 'ଶରଧାବାଲି'ରେ ପୁରୀରେ ଅତ୍ୟଂତ ଲୋକଗହଳି ହୋଇଥିଲା । ପୁରୀ ଜିଲ୍ଲାରୁ ସବୁଆଡୁ ଲୋକେ ଉପସ୍ଥିତ ଥିଲେ । ସେହି ସହରରେ ନରେଂଦ୍ରଠାରେ ମାତ୍ର ପଚାଶ ଜଣ ଲୋକ ଧରି ଗାଂଧି ପ୍ରଥମେ ସଭା ଆରଂଭ କଲେ । ସଭା ହେବାରୁ ପରେ କିଛିଲୋକ କ୍ରମେ ଆସି ଉପସ୍ଥିତ ହେଲେ; କିଂତୁ ସେ ସଂଖ୍ୟା ସେପରି କିଛି ଉଲ୍ଲେଖଯୋଗ୍ୟ ନୁହେଁ ।

ମୁଁ ସେତେବେଳେ ଗାଂଧିକୁ ଶେଷ ପରାମର୍ଶ ଦେଇଥିଲି—''ଆପଣ ଯିବେ ତ ଚାଲିକରି ଯାଆଂତୁ । ସୁବିଧା ଅନୁସାରେ ଅଧେ ଚାଲି ଅଧେ ରେଳରେ ଯିବା ପରାମର୍ଶ ଯେଉଁ ବଂଧୁମାନେ ଦେଉଛଂତି ସେମାନେ ଠିକ୍ ଦେଉ ନାହାଂତି । ଏ 'ହରିବୁଲ୍' ବ୍ୟବସ୍ଥା ଆପଣ ବଂଦ କରଂତୁ ।'' ଗାଂଧି ନିଜେ ଭାବି ସ୍ଥିର କଲେ ପଦଯାତ୍ରାରେ ସେ ଯିବେ । ମୁଁ ସେଠାରୁ ତାଂକ ସଂଗେ ସଂଗେ କଟକ ପର୍ଯ୍ୟଂତ ଆସିଥିଲି । ସେଥିରେ ତାଂକ ଗହଣରେ ଥିବା ଗୋପ ଚୌଧୁରୀ ପ୍ରଭୃତିଂକ ଥଟ୍ଟା ମୋର ମନେଅଛି । କାରଣ ଗାଂଧିଂକ ଦଳର ଲୋକେ ମାଛ ଖାଉ ନଥିଲେ । ସିଝା ପରିବା ଖାଉଥିଲେ । ମୁଁ ତାହା କରୁ ନଥିଲି । ପୁରୀ ସତ୍ୟଭାମାପୁରଠାରେ ବାଟରେ ଗାଂଧି ଗୋଟିଏ କୁଷ୍ଠରୋଗୀକୁ ଡାକି ନିଜର ନୂଆ ଖଦଡ଼ ଦି'ଖଂଡ଼ି ବଦଳେଇବାକୁ ଦେଇଥିଲେ । ବାଟରେ କଟାସଟିଏ ପୋଡ଼ିକରି ଖାଉଥିବା ପଂଝାଏ କେଳାଂକୁ ଡାକି କଟାସ ପ୍ରଭୃତି ନଖାଇ ନିରାମିଷ ଭୋଜନ କରିବା ପାଇଁ ବହୁତ ବୁଝାଇଥିଲେ; କିଂତୁ ସେଠା କେଳାମାନଂକ ପକ୍ଷେ ନିରାମିଷ ଖାଇବା ସଂଭବ ନଥିଲା । କାରଣ ସେ ଲୋକେ ଦୁଧ ଘିଅ ସ୍ୱପ୍ନରେ ସୁଦ୍ଧା ଦେଖୁ ନଥିଲେ । ମହାତ୍ମା ଗାଂଧି କଥା କହୁ କହୁ ସେ କଥା ନଜାଣି କହି ପକାଇଲେ—''ତୁଂଭେମାନେ ଦୁଧ ଖାଅ, ଘିଅ ଖାଅ । ଏପରି ଜଂତୁ ମାରି ପୋଡ଼ି

ଖାଇବା ଠିକ୍ ନୁହେଁ ।'' ଏହା କହିସାରି ସେ କେଲାମାନଂକୁ ଲୋକଂକ ସଂଗେ ଖାଇବାକୁ ନିମନ୍ତ୍ରଣ କରିଥିଲେ ।

ତା'ପରେ କଟକ ସଭାରେ ଜଣେ ସନାତନୀ ତାଂକ ବିରୁଦ୍ଧରେ ଗୋଟିଏ ଶୋଭାଯାତ୍ରା କରାଇଥିଲେ ।

## ୧୧୧। ''ଉତ୍କଳମଣି ଉପାଧି''

୧୯୨୪ ମସିହାର ଶେଷଭାଗରେ କଟକ ଟାଉନ୍ ହଲ୍‌ରେ Provinicial Congress Conference ହେଉଥିଲା । ସାର୍ ପି: ସି: ରାୟ ସେ ସଭାରେ ସଭାପତି ଥିଲେ । ଗୋପବଂଧୁ ବାବୁ ଦୈବାତ୍ ସେଇଦିନ ଜେଲରୁ ଆସି ପହଂଚିଲେ । ମହାସମ୍ମାନର ସହିତ ଗୋପବଂଧୁ ବାବୁଂକୁ ସଭାମଂଡ଼ପକୁ ପାଛୋଟି ନିଆହେଲା । ପି: ସି: ରାୟ ଗୋପବଂଧୁ ବାବୁଂକୁ ସେଇ ସଭାରେ 'ଉତ୍କଳମଣି' ବୋଲି ସଂବୋଧନ କଲେ । ମତେ ସେତେବେଳେ ଏଇ ଉତ୍କଳମଣି କଥାଟା ଭଲ ଲାଗି ନଥିଲା । ମୁଁ ଗୋପବଂଧୁ ବାବୁଂକୁ କହିଲି, ''ଆପଣ ଏ ଉପାଧି ଗ୍ରହଣ କରଂତୁନି । ଅପେକ୍ଷା କରଂତୁ । ସତ୍ୟବାଦୀକୁ ବହୁତ ବଡ଼ ବଡ଼ ଲୋକେ ଆଗରୁ ଆସିଚଂତି ଓ ଭବିଷ୍ୟତରେ ଆସିବେ ।'' ସେଇଦିନଠାରୁ ଗୋପବଂଧୁ ବାବୁଂକ ନାମ ପଛରେ ଉତ୍କଳମଣି' ଉପାଧି ଲାଗିଲା । ସେଇ ସଂବଂଧରେ ମୋର ଅନେକ କଥା ମନେପଡୁଚି ।

ମୁଁ ଥରେ କେତେକ ବଂଧୁଂକ ପରାମର୍ଶ କ୍ରମେ ପ୍ରଫୁଲଚଂଦ୍ର ରାୟଂକ ପାଖୁ ଗୋଟିଏ ପ୍ରସ୍ତାବ ଘେନି ଯାଇଥିଲି । ସେ ପ୍ରସ୍ତାବଟି ହେଉଚି ଓଡ଼ିଶା ଓ ବଂଗଳାକୁ ଦରକାର ହେଲେ କୌଣସି ସର୍ତ୍ତ ରଖି ଗୋଟିଏ ପ୍ରଦେଶ କରିଦେବା । କାରଣ ସେତେବେଳେ ମୁସଲମାନ-ମାନଂକ ଉପଦ୍ରବ ବଂଗଳାରେ ଲୋକଂକ ଭିତରେ ବଡ଼ ଗଭୀର ଉଦ୍‌ବେଗ ଜନ୍ମାଇଥାଏ । ସେ କଥାଟି ମୁଁ କେଂଦ୍ର ଆସେଂବ୍ଲିରେ ଓଡ଼ିଶାକୁ ଏକ ପ୍ରଦେଶ କରିବାର ଯେଉଁ ପ୍ରସ୍ତାବ ଦେଇଥିଲି ସେତିକିବେଳେ ବଡ଼ ପରିସ୍ଫୁଟ ହୋଇଉଠିଥିଲା । ଇଂରେଜମାନେ ସେତେବେଳେ ସିଂଧୁକୁ ଗୋଟିଏ ମୁସଲମାନ ପ୍ରଦେଶ ରୂପେ ସ୍ୱତନ୍ତ୍ର ପ୍ରଦେଶ କରିବାରେ ଏକ ରକମ ସଙ୍କଳ୍ପ କରିଥିଲେ । ସେଥିପାଇଁ ଓଡ଼ିଶାକୁ ଗୋଟିଏ ହିଂଦୁ ପ୍ରଦେଶ ରୂପେ ସେହିପରି ସ୍ୱତନ୍ତ୍ର ପ୍ରଦେଶ କରିବା ଭାର ସେଇ ଦିଲ୍ଲୀ ଲାଟ ସଭାରେ ଖୁବ୍ ପ୍ରକାଶିତ ହୋଇପଡ଼ିଥିଲା । କିଂତୁ ମୁଁ ଗଲାମାତ୍ରେ ପ୍ରଥମେ ସେ କଥା ଟିକିଏ ଶୁଣିଚଂତି କି ନାଇ ପ୍ରଫୁଲଚଂଦ୍ର ରାୟ ନିଜର ଗୁଡ଼ିଏ ଲେଖା ମୋତେ ପଢ଼ି ଶୁଣାଇଲେ । ସେଥିରେ ପ୍ରଧାନ ବିଷୟଟି ହେଉଚି, ଓଡ଼ିଆ ପୂଝାରୀ ଓ ବିହାରୀ ଚାକରମାନେ କଲିକତାକୁ ଆକ୍ରମଣ କରି ଏକରକମ କଲିକତାର କାହିଁକି ସମସ୍ତ ବଂଗଦେଶର ସ୍ୱାସ୍ଥ୍ୟ ଓ ସଂସ୍କୃତି ଧ୍ୱଂସ କରିବାରେ ଲାଗିଚଂତି । ଏଥିରେ କ୍ରମେ ମୋର ମନର ଭାବ କ'ଣ ହୋଇଥିଲା, ତା କହିବା ଦରକାର ନାଇଁ । ଶେଷକୁ ମୁଁ ପ୍ରସ୍ତାବଟି ଦେବାରୁ ପି: ସି: ରାୟ ସେ ପ୍ରସ୍ତାବ ବିଷୟରେ ନିଜେ କିଛି କାର୍ଯ୍ୟ କରିବା କଥାଟାକୁ ଯେପରିକି ବାଆଁରେଇ ଦେଇ ମତେ ଅନ୍ୟକୌଣସି ନେତାଂକ ପାଖକୁ ଯାଇ ସେ କଥା କହିବା ପାଇଁ ବଳେଇ ଦେଇଥିଲେ । ଆଉ ମୁଁ ମଧ କ୍ରମେ ଜାଣିପାରିଥିଲି ପି: ସି: ରାୟ ଅତ୍ୟଂତ ବଂଗଭକ୍ତ

ଓ ଓଡ଼ିଆଂକୁ ବଡ଼ ଅବହେଳାରେ ଦେଖନ୍ତି । ମୋର ସେତିକିବେଳେ ମନେପଡ଼ିଥିଲା, ବିଦ୍ୟାସାଗରଂକ କଲିକତା 'ଗୋଲଦିଘି'ରେ ଯେଉଁ ମୂର୍ତ୍ତିଟି ଅଛି (ସେତେବେଳେ ଥିଲା, ଏବେ ଅଛି କି ନାହିଁ କହିପାରିବି ନାହିଁ) ତା ତଳେ ଲେଖାଥିବା ଶ୍ଳୋକଟି—

''ଯୋଽଧୀତ୍ୟାଧ୍ୟୟନାଳୟେଽତ୍ର
କୃତଧୀରସ୍ୟୈବ ଜାତଃ ପ୍ରଭୁଃ
ବିଦ୍ୟାସାଗରସଞ୍ଜ୍ଞାୟ । ଚମହିତୋ
ଯୋଭୂଦନାଥାଶ୍ରୟଃ
ନେତା ବଂଗ ଗିରାଂଦୟା ମୃତନିଧି
ତେଜୀୟ ସାମଗ୍ରଣୀ
ସ୍ତସ୍ୟ ଶ୍ରୀଶ୍ୱରଚଂଦ୍ର **ଭାରତମଣେ—**
ମୂର୍ତ୍ତିଃପ୍ରତିଷ୍ଠାପିତା ।''

ଏଠାରେ ଯେଉଁ 'ଭାରତମଣି' କଥାଟି ଅଛି ହୁଏତ ସେ କଥାଟି ସାର୍ ପି: ସି: ରାୟ ବାରଂବାର ପଢ଼ି କରି ସେଇ କଥାଟିରୁ ତାଂକ 'ଉତ୍କଳମଣି' କଥାଟା ମନକୁ ଆସିଥିଲା; ତେଣୁ ମତେ 'ଉତ୍କଳମଣି' ପଦଟା ଭଲ ଲାଗି ନଥିଲା । ଯଥାର୍ଥରେ ମଧ ସେଇଆଡ଼େ (ବଂଗଳାରେ) 'ଦେଶବଂଧୁ' 'ଦେଶପ୍ରିୟ', ମହାରାଷ୍ଟ୍ରରେ 'ଲୋକମାନ୍ୟ' ପ୍ରଭୃତି ଲୋକଂକର ଉପାଧିମାନଂକ ପାଖେ ଆମ ଗୋପବଂଧୁ ବାବୁଂକର 'ଉତ୍କଳମଣି' ଉପାଧିଟା ମତେ ବଡ଼ ହ୍ରସ୍ୱ ବୋଧ ହେଲା ।

## ୧୧୨। ହିଂଦୁ ମହାସଭା

୧୯୨୭ରେ ଗୋପବଂଧୁ ଦାସ ପ୍ରଥମେ ହିଂଦୁ ମହାସଭାର ଓଡ଼ିଶା ଶାଖା ପ୍ରେସିଡ଼େଂଟ ହେଲେ । ସେତେବେଳେ ଲାଲା ଲଜପତ୍ ରାୟ ପୁରୀକୁ ଆସିଥାଂତି । ସେ ଗୋପବଂଧୁ ବାବୁଂକୁ ଦିଲ୍ଲୀକୁ ଡକାଇନେଲେ । ଲାଲା ଲଜପତ୍ ଭାରତ ଲୋକସେବକ ସମାଜର ପ୍ରେସିଡ଼େଂଟ, ଗୋପବଂଧୁ ବାବୁ ଭାଇସ ପ୍ରେସିଡ଼େଂଟ ନିର୍ବାଚିତ ହେଲେ । ସେତିକିବେଳେ ମୁଁ ଦିଲ୍ଲୀରେ କେଂଦ୍ର ଆସେଂବ୍ଲିର ମେଂବର ଥିଲି । ମୋର ଯେପରି ମନେ ହେଉଚି କେଂଦ୍ର ଆସେଂବ୍ଲିରେ ମୁଁ ସେଇଦିନ ତିନୋଟି ବକ୍ତୃତା ଦେଇଥିଲି । କରାଚୀ ତଥା ଓଡ଼ିଶାର Separation ବିଷୟରେ 'Hindustan Times'ରେ ମୋର ଗୋଟିଏ ଲେଖା ପ୍ରକାଶ ପାଇଥିଲା । ଗୋପବଂଧୁ ବାବୁ ସେଇଟିକୁ ପଢ଼ି ଭାରି ଖୁସି ହେଲେ । ସେତେବେଳେ Hindustan Timesର ସଂପାଦକ ଥିଲେ କରାଚୀର ଶ୍ରୀ ଜୟରାମ ଦାସ ଦୌଲତ ରାମ । ତାଂକର ମୋର ଆତ୍ମୀୟତା ଥିଲା ଓ ଏହାପରେ ଆତ୍ମୀୟତା ଆହୁରି ବଢ଼ିଗଲା । ସେତିକିବେଳେ ଗୋପବଂଧୁ ବାବୁ ମୋତେ କହିଲେ, ''ଚାଲ ଓଡ଼ିଶାକୁ, ସେଠାରୁ ଆମେ ଗୋଟିଏ ଇଂରାଜୀ ଦୈନିକପତ୍ର, ଗୋଟିଏ ଓଡ଼ିଆ ଦୈନିକପତ୍ର 'ସମାଜ', ଗୋଟିଏ ଓଡ଼ିଆ ମାସିକ 'ସତ୍ୟବାଦୀ' ଓ ଗୋଟିଏ ପଲ୍ଲୀପାଠ—ଏ ଚାରୋଟି କାଗଜ କାଢ଼ିବା । ମୁଁ ଏଥିରୁ ହେବି 'ସମାଜ' ଓ 'ପଲ୍ଲୀପାଠ'ର ସଂପାଦକ । ତୁମେ ହେବ 'ଇଂରାଜୀ ସାପ୍ତାହିକ' କାଗଜ (ସେତେବେଳେ ଦୈନିକ ଇଂରେଜି ପତ୍ର କଳ୍ପନାରେ ନଥିଲା) ଓ 'ସତ୍ୟବାଦୀ' ମାସିକ—ଏ ଦୁଇଟିର

ସଂପାଦକ ।'' କିଂତୁ ମୁଁ ସତ୍ୟବାଦୀ ଆସିବା ପରେ ତହିଁଆର ବର୍ଷ ୧୯୨୮ ଜୁନରେ ତାଂକର ମୃତ୍ୟୁ ହେଲା । ଆଉ ଏ କଳ୍ପନା କାର୍ଯ୍ୟରେ ପରିଣତ କରିବାକୁ କାଳ ରହି ନାହିଁ ।

ସେହିବର୍ଷ, ତା' ପୂର୍ବରୁ ଲାଲା ଲଜପତ୍ ରାୟ ପୁରୀ ଆସିଥିଲେ । ମୁଁ ତାଂକୁ ପୁରୀରେ ଥିବା ତତ୍କାଳୀନ 'ସମାଜ' ପ୍ରେସକୁ ନେଇ ଯାଇଥିଲି । ଗୋପବଂଧୁ ବାବୁଂକ ମୃତ୍ୟୁ ପୂର୍ବର କଥା । ସେଠାରେ ଗୋପବଂଧୁ ବାବୁଂକୁ ସେ ହିଂଦୁ ମହାସଭାର (ବୋଧହୁଏ ଦକ୍ଷିଣ ଓ ପୂର୍ବଭାରତର) ପ୍ରେସିଡ଼େଂଟ କରିଥିଲେ । ଲାଲାଜୀଂକ ପୂର୍ବରୁ କିଂତୁ ଉତ୍କଳର ଉଜ୍ଜ୍ୱଳତମ ଜ୍ୟୋତିଷଂକୁ ଲୁଚିଯିବାକୁ ହେଲା । ହିଂଦୁଧର୍ମ ପ୍ରତି ଗୋପବଂଧୁଂକର ଯେଉଁ ଅଖଂଡ଼ ନିଷ୍ଠା ଓ ଧର୍ମବିଶ୍ୱାସ ଥିଲା, ସେପରି ବିଶ୍ୱାସ ମୁଁ ଆଉ କାହିଁ ଦେଖି ନାଇ ।

୧୯୩୦ରେ କରାଚୀରେ ନିଖିଳ ଭାରତ କଂଗ୍ରେସ କମିଟି ବସିଲା । ଓଡ଼ିଶାରୁ ମୁଁ ସଭାରେ ଉପସ୍ଥିତ ଥିଲି । ଓଡ଼ିଶାରୁ ଆହୁରି କେତେକଂକ ସହିତ ଶ୍ରୀ ଗୋପବଂଧୁ ଚୌଧୁରୀ ନେତୃତ୍ୱ ନେଇ ସେ ମିଟିଂରେ ଥାଂତି । ମୋତେ ଅଭିନଂଦନ ଜଣାଇ ଦୌଲତ ରାମଜୀ କହିଲେ, ''The President of the Reception Committee of the coming Puri Conrgress ।'' ବସ୍ତୁତଃ ମୁଁ ଓଡ଼ିଶା ଶାଖାର ପ୍ରେସିଡ଼େଂଟ ଭାବରେ ଗୋପବଂଧୁଂକ ମୃତ୍ୟୁ ପରେ କଂଗ୍ରେସର ନେତୃତ୍ୱ ଓଡ଼ିଶାରେ ନେଲି ।

## ୧୧୩। ସ୍ୱତନ୍ତ୍ର ଓଡ଼ିଶା ପ୍ରସ୍ତାବ—(୧୯୨୭)

ସତ୍ୟବାଦୀ ସ୍କୁଲ ଭାଂଗିଗଲା ପରେ ଓ ମୁଁ ୧୯୨୪ରେ କେଂଦ୍ର ଆସେଂବ୍ଲି ଗଲା ପରେ ଯୋଡ଼ିଏ ଓଡ଼ିଶା ସଂବଂଧୀୟ ବିଶିଷ୍ଟ ଘଟଣା ମୋର ମନେପଡ଼ୁଚି । ଗୋଟିଏ ହେଉଚି—ଉତ୍କଳକୁ ସ୍ୱତନ୍ତ୍ର ପ୍ରଦେଶ କରିବା ବିଷୟରେ ୧୯୨୭ ସାଲ ଫେବୃୟାରୀ ୮ ତାରିଖରେ ମୁଁ ବ୍ୟବସ୍ଥା ସଭାରେ ଗୋଟିଏ ବଡ଼ ଭଲ ବକ୍ତୃତା ଦେଇ ପ୍ରସ୍ତାବଟି ଆଗତ କରିଥିଲି । ତା' ପରଦିନ କଲିକତା 'Statesman'ରେ ଏ ବିଷୟରେ ଗୋଟିଏ ସୁଂଦର ଅଗ୍ରଲେଖା ବାହାରିଥିଲା । ଗୋପବଂଧୁ ଦାସ ସେ ଅଗ୍ରଲେଖାଟି କଟକରେ ପାଇ ବରାବର ବୁଲି ବୁଲି ନଈକୂଳେ ଓ ବାହାରେ ସେ ଲେଖାଟି ପଢ଼ି ଲୋକଂକୁ ବଡ଼ ଉତ୍ସାହରେ କହୁଥାଂତି । ଅବଶ୍ୟ ସେ ଲେଖାରେ ସେତେବେଳେ ଘରୋଇ ବ୍ୟବସ୍ଥାପକ Muddyman ମତେ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ଖଂଡ଼ିଏ ଚିଠି ଲେଖିଥିଲେ ଓ ମତେ ସେଇ ଦିଗରେ ପରିଶ୍ରମ କରିବା ପାଇଁ ବୁଝାଇ ଲେଖିଥିଲେ । ମୋର Muddymanଙ୍କ ସଂଗେ କେତେକ କଥାବାର୍ତ୍ତା ବି ହୋଇଥିଲା । ଅବଶ୍ୟ ସେତିକିବେଳକୁ ଶାସକମାନଂକ ମୁଂଡ଼ରେ ପଶିଲା ସିଂଧୁ ପ୍ରଦେଶକୁ ଗୋଟିଏ ମୁସଲମାନ ପ୍ରଦେଶରୂପେ ଗଢ଼ିଦେଇ ହିଂଦୁଂକୁ ସଂତୁଷ୍ଟ କରିବା ପାଇଁ ଓଡ଼ିଶାକୁ ହିଂଦୁପ୍ରଦେଶ ରୂପେ ଗଢ଼ିଦେବା । କାର୍ଯ୍ୟରେ ତାହାହିଁ ହେଲା । କେଂଦ୍ରର ଅର୍ଥମେଂବର ଏଥିପାଇଁ ମତେ ବହୁତ ବୁଝାଇ ମୋ ସଂଗେ ପରାମର୍ଶ କରି ମତେ କେଂଦ୍ରରୁ ଚାଳିଶଲକ୍ଷ ଟଂକା ଦେବାର ବ୍ୟବସ୍ଥା ଶୁଣାଇଥିଲେ । ଏହି ପ୍ରଦେଶ ୧୯୩୬ ମସିହା ଏପ୍ରିଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା ।

ଏହାଛଡ଼ା ମୋର ରାଜନୀତିକ ପ୍ରବଂଧ ପ୍ରତି ଗୋପବଂଧୁ ଦାସଂକର ଆଂତରିକ ଆଗ୍ରହ ଥିଲା । ସେହି ୧୯୨୭ ମସିହାରେ ମୁଁ 'ବଂବେ ସମାଚାର'ର କଂଗ୍ରେସ ସଂଖ୍ୟାରେ "Our Linguistic Provinces" ବୋଲି ଗୋଟିଏ ପ୍ରବଂଧ ଦେଇଥିଲି । ତାହା କଂଗ୍ରେସ ନେତାମାନେ ବହୁଆଡ଼େ ବାଂଟିଥିଲେ । ସେ ପ୍ରବଂଧଟି ମଧ ଗୋପବଂଧୁ ବାବୁ କଟକରେ ବୁଲି ବୁଲି ଲୋକଂକୁ ଶୁଣାଇ ଅତ୍ୟଂତ ଆନଂଦ ଓ ଉତ୍ସାହ ପ୍ରକାଶ କରୁଥିବାର ମୁଁ ଜାଣେ । ଏହିପରି ମୃତ୍ୟୁ ପୂର୍ବରୁ ସେ ମୋ କାର୍ଯ୍ୟରେ ବଡ଼ ଆଗ୍ରହ ଓ ଆଦର ପ୍ରକାଶ କରୁଥିବାର ମୁଁ ଜାଣେ ।

## ୧୧୪। ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା କଥା

ମୁଁ କେଂଦ୍ର ଆସେଂବ୍ଲିକୁ ୧୯୨୪ରେ ଗଲା ପରେ ଏଇ ସ୍ୱତନ୍ତ୍ର ପ୍ରଦେଶ କଥାରେ ଇଂରେଜ ସରକାରଂକ ମତି ଖେଳିଲା । ଏପରିକି ୧୯୨୪ରେ ଆସାମ ସିଭିଲିଆନ୍ ମିଃ ହଡ୍‌ସନ୍ (ସେ କେଂଦ୍ର ସଭାରେ ଥିଲେ, ପରେ ଜଣାଗଲା, ସେ ଇଂରେଜ ସରକାରଂକ ତରଫରୁ ହ୍ୱିପ୍ ଥିଲେ) ମୋର ସାଧାରଣ ବେଶ ଦେଖି ମୋ ଘରକୁ ଦୁଇଥର ଆସିଥିଲେ । ବହୁତ ଆଳାପ ମଧରେ ମୋତେ ପ୍ରଥମେ ରାଜାଂକ ଉପାଧିଠାରୁ ଆରଂଭ କରି କ୍ରମେ Kinghthood ସହିତ ସେଇ ଉପାଧିର ଇଂଗିତ ଦେଲେ । ମୋର ବେଶ ସେତେବେଳେ ରୁକ୍ଷ ଖଦଡ଼ । ସେଥିରେ ପୁଣି ଦୋପଟା ସିଆଁ ଚାଦରରେ ଶୀତ ନିବାରଣ । ଏଇପରି ରୁକ୍ଷ ବେଶରେ ସେ ମୋତେ ଭେଟି ଆଳାପ କରୁଥିଲେ । ସେଥିରୁ ମୁଁ କହିଲି, "Mr Hudson in this respect, I must tell you that you have come to a wrong door"—ଅର୍ଥାତ୍, ''ମୋ କଥା ଶୁଣ, ତମେ ଯେଉଁ ଦୁଆରକୁ ଯେଉଁ ଭିକ ପାଇଁ ଆସିଚ, ସେ ଦୁଆରେ ସେ ଭିକ ମିଳିବ ନାହିଁ ।'' ସେଠାରୁ ତାଂକ ମନରେ କ'ଣ ହେଲା, ମୁଁ କହିପାରିବି ନାହିଁ; କିଂତୁ ସେ କ୍ଷୁଣ୍ଣ ଦେଖାଗଲେ ଏବଂ ସେଇଠାରୁ ମୋ ଘର ଛାଡ଼ି ଚାଲିଗଲେ ଓ ଆଉ ଆସି ନଥିଲେ ।

ସେଇଦିନଠାରୁ ଆମ ମନକୁ ସ୍ପଷ୍ଟ ଭାବରେ ଆସିଲା ଭାଷା ସୂତ୍ରରେ ପ୍ରଦେଶ ଗଠନ । ଏ ବିଷୟରେ ଗୋପବଂଧୁ ଦାସଂକର ଧାରଣା ବଡ଼ ଦୃଢ଼ ଥିଲା । ମୁଁ ଭାଷାସୂତ୍ରରେ ପ୍ରଦେଶ ଗଠନ ପ୍ରବଂଧ ଓ ସେହିଭଳି ଅନ୍ୟାନ୍ୟ ପ୍ରବଂଧମାନ ବଂବେ ସମାଚାର 'Bombay Cronicle', ମାଂଦ୍ରାଜର 'ସ୍ୱଦେଶ ମିତ୍ରନ୍' ଓ ବିଶେଷରେ ଦିଲ୍ଲୀରେ 'ହିଂଦୁସ୍ଥାନ ଟାଇମସ୍'ରେ କରାଚୀ ବିଷୟରେ କେତେକ ବଡ଼ ପ୍ରବଂଧ ୧୯୨୭ରେ ଲେଖିଥିଲି । ଏଇ ସ୍ୱତନ୍ତ୍ର ପ୍ରଦେଶ ପ୍ରବଂଧ ବାହାରିଲାବେଳେ ଓଡ଼ିଶାରେ ଏକ ପ୍ରକାର ଚହଳ ପଡ଼ିଯାଇଥିଲା । ବୋଧହୁଏ ଏଥିରେ ସରକାରଂକର ଦୃଷ୍ଟି ଆକୃଷ୍ଟ ହୋଇଥିଲା ।

ଏଠାରେ କହିରଖେ, ମୁଁ ଆସେଂବ୍ଲିରେ ୧୯୨୭ ଜୁଲାଇ ୮ ତାରିଖ ଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ସଂବଂଧରେ ବକ୍ତୃତା ଦେଲାବେଳେ ମୋରି ନିର୍ବାଚନ ମଂଡ଼ଳିରୁ ନିର୍ବାଚିତ ହୋଇଥିବା ଭୁବନାନଂଦ ଦାସ ଦୃଢ଼ ପ୍ରତିରୋଧ କରିଥିଲେ । ସେ ଗୋଟିଏ ସଂଶୋଧନ ପ୍ରସ୍ତାବରେ କହିଥିଲେ, ସମସ୍ତ ଓଡ଼ିଆଭାଷୀ ଅଂଚଳଗୁଡ଼ିକୁ ଆଣି ବିହାର ପ୍ରଦେଶ ସଂଗେ ରଖାଯାଉ । ଏଥିରେ ବହୁ ବାଦବିବାଦ ହେଲା, କେତେକ ମୁସଲମାନ ବଂଧୁ ଏଥିରେ ଟିକିଏ ଢଳିଲା ପରି ଜଣାଗଲା । ଏଇପରି ସେ ପ୍ରସ୍ତାବଟିରେ ସଭାଗୃହରେ ଭୋଟ ନିଆ ଯାଇପାରି ନଥିଲା ।

ଏଇ ଖବର ଯେତେବେଳେ ଷ୍ଟେଟ୍‌ସମ୍ୟାନରେ ବାହାରିଥିଲା ତାକୁ ଓଡ଼ିଶାର ବିଶିଷ୍ଟ ଲୋକେ ବିଶେଷରେ ପଂଡ଼ିତ ଗୋପବଂଧୁ ଦାସ ବଡ଼ ଆଗ୍ରହରେ ପଢୁଥିଲେ ।

ଏହାପରେ O'denell Committee (ଓଡ଼େନେଲ କମିଟି) କଥା କହେ । ଏହି କମିଟି ୧୯୩୨ ବୈଠକରେ ମୋ ମେମୋରେଂଡ଼ମଟି ପଢ଼ି ବିଚାର କରି ନଥିଲେ । ରାଜେଂଦ୍ର ପ୍ରସାଦ ସେତେବେଳେ ବିହାର ଓଡ଼ିଶାର ନେତାଲମୁଖ୍ୟ ଥିଲେ । ସେ ଆମକୁ ଓଡ଼େନେଲ କମିଟିକୁ ବୟକଟ୍ କରିବାକୁ ଜାନୁୟାରୀ ୫ ତାରିଖରେ ଆଦେଶ ଦେଲେ; ଜାନୁୟାରୀ ୧୦ ତାରିଖରେ ଏହି କମିଟିରେ ମୋର ମୌଖିକ ସାକ୍ଷ୍ୟ ଦେବାର ଥିଲା । ମୁଁ ମେମୋରାଂଡ଼ମଟିକୁ ଦେଇଥିଲେ ମଧ୍, ରାଜେଂଦ୍ର ପ୍ରସାଦଂକ ଆଦେଶରେ କମିଟି ଆଗରେ ସାକ୍ଷ୍ୟ ନଦେଇ ଜାମସେଦପୁରରୁ ଫେରିଆସିଲି; ଓଡ଼େନେଲ କମିଟି ତାଂକ ରିପୋର୍ଟରେ ଓଡ଼ିଶା କଂଗ୍ରେସ କମିଟି ପକ୍ଷରୁ ଦିଆଯାଇଥିବା ମୋର ଛାପା ମେମୋରେଂଡ଼ମଟିର କୌଣସି ଉଲ୍ଲେଖ କରି ନଥିଲେ । ସେଠାରେ ଏହି କମିଟିରେ ବିହାରର ସଚ୍ଚିଦାନଂଦ ସିଂହ ଥିଲେ; କିଂତୁ ଓଡ଼ିଶାରୁ ବିଶେଷ ସେପରି କେହି ନଥିଲେ । ଏହିଠାରେ ଲକ୍ଷ୍ୟ କରିବାର ଅଛି, ରାଜେଂଦ୍ର ପ୍ରସାଦଂକ ପରି ବଡ଼ ଲୋକମାନେ ସେକାଳେ ମଧ କିପରି ପ୍ରାଦେଶିକ ଭାବରେ ନିଜ ମହାଜାତୀୟ କର୍ତ୍ତବ୍ୟରୁ ଓହରି ଯାଉଥିଲେ । ସେହିଯୋଗୁ ସିଂହଭୂମି, ଧଳଭୂମି ପ୍ରଭୃତି ଓଡ଼ିଆ ଅଂଚଳ ଓଡ଼ିଶାରୁ ବାଦ୍ ପଡ଼ିଯାଇଥିଲା । ମେଦିନୀପୁର ଲୋକେ ତାଂକ ମେମୋରେଂଡ଼ମରେ କହିଥିଲେ, ''ଆମକୁ ହିଜିଲ୍‌ରେ ସ୍ୱତଂତ୍ର ଜିଲ୍ଲା ନଦେଲେ ଆମେ ବଂଗଳାକୁ ଛାଡ଼ିବାକୁ ଚାହୁ ନାହିଁ ।'' ଏଥିରେ ବଂଗଳାରୁ ଏକ ଅଂଶ ଓଡ଼ିଶାରେ ମିଶିବା ପ୍ରସ୍ତାବ ଗଲା ।

ତଥାପି ସରକାରଂକର ମନରୁ ଓଡ଼ିଶା ସ୍ୱତଂତ୍ର ପ୍ରଦେଶ ହେବା କଥା ଅତୀତ ହୋଇ ନଥିଲା । ସେହି ଯୋଗେ ୧୯୨୯ରେ ବୋଧହୁଏ କ୍ୟାବିନେଟ୍‌ରେ ବିଚାର କରି ମୁଡ଼ିମ୍ୟାନ୍ ସାହେବ ମୋ ସଂଗେ ଉପପ୍ରଦେଶ ପାଇଁ ପତ୍ରାଳାପ କରିଥିଲେ ଓ ସେଇ ଆଲୋଚନା ଫଳରେ ଭାରତ ସରକାରଂକର ସେତେବେଳର ଅର୍ଥସଭ୍ୟ ମତେ କହିଥିଲେ ଯେ, ଓଡ଼ିଶା କେଂଦ୍ର ସରକାରଂକଠାରୁ ବର୍ଷକୁ ୪୦ ଲକ୍ଷ ଟଂକା ପାଇ ଗୋଟିଏ ସ୍ୱତଂତ୍ର ପ୍ରଦେଶ ହେଉ । ଏଇ ସର୍ତ୍ତରେ ସେ ମୋତେ ଓଡ଼ିଶା ପ୍ରଦେଶ ଗଢ଼ିବାକୁ ରାଜି ହେବା ପାଇଁ ପ୍ରବର୍ତ୍ତାଇ ଥିଲେ । ମାତ୍ର ଓଡ଼ିଶାର ଉନ୍ନତି ପାଇଁ କେଂଦ୍ରସରକାର ବର୍ଷକୁ ୮୦ ଲକ୍ଷ କରି ଟଂକା ଦିଅଂତୁ ବୋଲି ମୁଁ ଜିଦ୍ ଧରିଥିଲି । କିଂତୁ ଭୁବନାନଂଦ ବାବୁ ଏଥିପାଇଁ ମୋତେ ଆସେଂବ୍ଲି ଭିତରେ ବହୁତ ମତାଇଲେ ଏବଂ ଏଇ ସର୍ତ୍ତରେ ରାଜି ହେବା ପାଇଁ କହିଲେ; ମୁଁ ବାଧ ହୋଇ ଅର୍ଥସଦସ୍ୟଂକ ଆଗେ ହଁ କଲି । ଏହା ହେବ ୧୯୩୩-୩୪ ସାଲର କଥା । ସେଥିରେ ହିଁ ଓଡ଼େନେଲ କମିଟିର ରିପୋର୍ଟ ଅନୁସାରେ ପୁରୀ, କଟକ, ବାଲେଶ୍ୱର, ସଂବଲପୁର, ଗଂଜାମ ସଂଗେ ଜୟପୁରକୁ ମିଶାଇ ଓଡ଼ିଶା ପ୍ରଦେଶ ଗଢ଼ାହେବାର ଇଂରେଜ ସରକାର ସ୍ଥିର କଲେ ଓ ୧୯୩୬ ଏପ୍ରିଲ ପହିଲାରେ ତାହା କାର୍ଯ୍ୟକାରୀ ହେଲା ।

ଏଥିମଧ୍ୟରେ ୧୯୨୯ ସିମଳା ଅଧିବେଶନରେ ମୁଁ ଜାମସେଦପୁରର ଟିନ୍-ପ୍ଲେଟ୍ ଷ୍ଟ୍ରାଇକ୍ ବିଷୟରେ ପ୍ରସ୍ତାବ ଆଣିଥିଲି । ସେଇ ପ୍ରସ୍ତାବ ଆଲୋଚନା ବେଳେ ଜହରଲାଲ ପ୍ରଭୃତି ଗ୍ୟାଲେରିରେ ବସିଥିଲେ । ମୁଁ ନାନା ଭାବରେ ସେଇ ଜହରଲାଲଂକ କଥା ସହିତ

ସୁଭାଷ ବୋଷଂକ କଥାକୁ ମିଶାଇ ସେଇ ଟିନ୍-ପ୍ଲେଟ୍ ସଂବଂଧରେ ବକ୍ତୃତା ଦେଇଥିଲି । ଏଇ ପ୍ରସ୍ତାବ ବିରୁଦ୍ଧରେ ସୁଖର କଥା ତିନୋଟି ଭୋଟରେ ସରକାର ପରାସ୍ତ ହୋଇଥିଲେ । ବୁଝିବାର ଅଛି, ସେତେବେଳେ ସରକାରଂକ ପକ୍ଷର ବହୁ ପକ୍ଷ ସେଇ ସଭାରେ ଥିଲେ । ବୋଧହୁଏ ଏଇ ଷ୍ଟ୍ରାଇକରେ କୃତକାର୍ଯ୍ୟ ହେବା ଏହା ସେପରି ଆସେଂବ୍ଲିରେ ପ୍ରଥମ ଘଟଣା ।

ଏଇ ସମୟରେ ଆଉ ଗୋଟିଏ ଘଟଣା ମନେ ରଖିବାର ଅଛି । ସେତିକିବେଳେ ବଡ଼ଲାଟ ଲର୍ଡ଼ ଏରଉଇନ୍ ମୋ ସଂଗେ ଦେଖା କରିବାକୁ ବଡ଼ ପ୍ରୟାସୀ ହେଲେ; କିଂତୁ ଆଂଭେମାନେ କୌଣସି ଇଉରୋପୀୟଂକ ଘରକୁ ନିମନ୍ତ୍ରଣରେ ସୁଦ୍ଧା ଯାଉ ନଥିଲୁ । ଥରେ ସଭ୍ୟ ସାର୍ ବି: ଏନ୍: ମିତ୍ର ପୋଷ୍ଟକାର୍ଡ଼ ଲଫାପାର ଦାମ ବଢ଼ାଇବା ପାଇଁ ଲବିରେ ମୋ ସଂଗେ ବହୁ ଯୁକ୍ତି କରିଥିଲେ । ଫଳରେ ସେ ଗୋଟିଏ ଚା ଭୋଜିରେ ଆଂଭମାନଂକୁ ଡାକି ସଂବର୍ଦ୍ଧନା ଜଣାଇଥିଲେ ଓ ଗୋପନରେ ସେଇ ସଭାକୁ ଅନ୍ୟ ଦ୍ୱାର ବାଟେ ବଡ଼ଲାଟ୍ ଲର୍ଡ଼ ଏରଉଇନ୍ ନିଜେ ଆସି ମୋ ସଂଗେ କରମର୍ଦ୍ଦନ କରି କହିଲେ, Well, we have heard much of you, but we never saw you (ଆମେ ତମ କଥା ବହୁତ ଶୁଣିଚୁ, କିଂତୁ ଆମର କେବେ ଦେଖା ହୋଇ ନଥିଲା) । ଏହା କହିସାରି ଅନ୍ୟକଥା ଆରଂଭ କଲେ । ତାହା ବଡ଼ ମାମୁଲି; କିଂତୁ ମୁଁ ବଡ଼ଲାଟ୍ଂକ ସଂଗେ ଦେଖା କରୁଚି ବୋଲି ଟିକିଏ ଲଜ୍ଜିତ ହୋଇଥିଲି । ଏହା ୧୯୨୯ ସାଲର କଥା । ସେଇଠାରୁ ୧୯୩୦ରୁ ଆମେ କେଂଦ୍ର ଆସେଂବ୍ଲିକୁ ବୟକଟ୍ କରି ଛାଡ଼ିଲୁ । ତା'ପରେ ୧୯୩୫ରେ ନିର୍ବାଚନ ଲଢ଼ି ପୁଣି କେଂଦ୍ର ଆସେଂବ୍ଲିକୁ ଗଲୁ । ତା'ରି ପରବର୍ଷ ଅପ୍ରେଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ।

## ୧୧୫। ରେଲୱେର ଲୁହାଜିନିଷ କ୍ରୟ ଓ ଟାଟାରୁ ଗୋରା କର୍ମଚାରୀଂକୁ ବହିଷ୍କାର

ଏହାଛଡ଼ା ଆଉ ଦୁଇଗୋଟି ପ୍ରଧାନ ଘଟଣା ମୋର ମନେପଡୁଚି । ସେତେବେଳେ ଭାରତ ସରକାର ରେଳ ବିଭାଗ ପାଇଁ ସମସ୍ତ ଲୁହାଜିନିଷ ବିଲାତରୁ କିଣୁଥିଲେ; ମାତ୍ର ମୁଁ ବରାବର ଉଦ୍ୟମ କରୁଥିଲି ଯେ ସରକାର ବିଲାତରୁ ନକିଣି ଯାହା ଭାରତରେ ତିଆରି ହେଉଚି ତା କିଣଂତୁ । ଏହି ରେଳ କମିଟିରେ ମୁଁ ସଭ୍ୟ ଥିଲି ଓ ସାର୍ ଏଲେନ୍ ପାରସନ୍ ସଭାପତି ଥିଲେ । ସେଥିରେ ଥରେ ମନେ ଅଛି, ମୋର କମିଟିକୁ ଯିବାରେ ବିଳଂବ ହେବାରୁ ସାର୍ ଏଲେନ୍ ପାରସନ୍ ପଂଦର ମିନିଟ୍ ପାଇଁ କମିଟିକୁ ମୁଲତବୀ ରଖିଦେଲେ । ମୁଁ ଯାଇ ପହଂଚିବାରୁ ଯାମିନ୍ ଖାଁ ପ୍ରଭୃତି ସଭ୍ୟମାନେ ବଡ଼ ଖୁସି ହେଲେ ଓ କହିଲେ, ''ରେଲୱେ ଖରିଦ କମିଟିରେ ନୀଳକଂଠ ଦାସ ନଥିଲେ କିଛି ହୋଇ ନପାରେ ।''

ମୁଁ ଯାଇ କହିଲି, ''ଆପଣମାନେ ଦେଖଂତୁ, ଲୁହା Sleeper ସବୁ କିଣା ହେଉଚି । ଏଥିରୁ ଭାରତର ଟାଟା କଂପାନୀ ଯେତିକି ଦେଇପାରିବେ, ତା'ଛଡ଼ା ବାକି ସବୁ ଢଳାଲୁହା Sleeper କିଣିଲେ ସବୁ ଭାରତରୁ ହୋଇପାରିବ । ଅଥଚ ଢଳାଲୁହା Sleeper ବେଶି ସ୍ଥାୟୀ ଓ ମୂଲ୍ୟ ହିସାବରେ ଅଳ୍ପ ।'' ସେଠାରୁ ନିଷ୍ପତ୍ତି ସେଦିନ ବଂଦ ରହି ଟାଟା କଂପାନୀକୁ ଟେଲିଗ୍ରାମ ଗଲା । ଉତ୍ତରରେ ଯେତିକି ଲୁହା Sleeper ଦେଇ ପାରିବେ ବୋଲି କହିଲେ ସେତିକି ଏ ଦେଶ ପାଇଁ ରଖି ବାକି ସବୁ ଢଳା ଲୁହାର Sleeper ଖରିଦ୍‌ର ବ୍ୟବସ୍ଥା ହେଲା ।

ସେଇଥିରେ Bengal Iron Company, Indian Iron Company of Tata Nagar foundry, ଏଇ ତିନିହେଁ ସମସ୍ତ ଅର୍ଡ଼ର ପାଇଲେ ଓ କ୍ରମେ ଏଇ ତିନିହେଁ ଲୁହା Sleeper ପାଇଁ ଭାରତରେ ବିଖ୍ୟାତ ହେବାକୁ ଆରଂଭ କଲେ । ଏଇ ସଂପର୍କରେ କହିଦିଏ, ରେଳ ଚକ କିଣିବାରେ ମୁଁ ଇଂରେଜଙ୍କର ଚଳ ଏ ଦେଶରେ ବିକିବା କୌଶଳ ଧରି ଦେଇଥିଲି । କାରଣ ଦେଖାଇଥିଲି, ଯଦି ବିଲାତରେ ୪.୮ ଚକଟି ଭାରତ ପାଇଁ ୫.୬ କରା ହୋଇପାରିଲା ତେବେ ଭାରତରେ ଯେକୌଣସି ଆକାରର ଚକକୁ ବଦଳାଇ ୫.୬ କରାଯାଇ ପାରିବ ନାହିଁ କାହିଁକି ? ଏଇ ବିଷୟରେ ଯୁକ୍ତି ହୋଇ ସ୍ଥିର ହେଲା, ସବୁ ଲୁହା ରେଳ ପାଇଁ ଏହି ଭାରତରେ ତିଆରି ହୋଇପାରିବ ।

ତା'ପରେ ଆଉ ଗୋଟିଏ କଥା, ଟାଟାର ବଡ଼ ବଡ଼ ଇଂରେଜୀ କର୍ମଚାରୀମାନେ ଏହାର ପରବର୍ଷ; ଅର୍ଥାତ୍ ୧୯୩୦ରେ ମୋର ଗୋଟିଏ ବକ୍ତୃତା ଫଳରେ (Speeches & Remarks ଦେଖ) ବରଖାସ୍ତ ହେଲେ । ଏଇ ବରଖାସ୍ତର କିଛିଦିନ ପରେ ଟାଟା କଂପାନୀରୁ ବରଖାସ୍ତ ହୋଇଥିବା ଅଫିସର ମିଷ୍ଟର ସ-ଡ଼େ ମୋତେ କେତେମାସ ପରେ କଲିକତାରେ ଗୋଟିଏ ବିବାହ ଭୋଜରେ ଦେଖି କହିଥିଲେ, "Well, you are still alive !" (ଏବେ ବି ବଂଚିଛ ?) । ଟାଟା କଂପାନୀରୁ ସେଇ ସ-ଡ଼େ ଏଇ ବରଖାସ୍ତ ହେବାରେ ଅନେକ ଅର୍ଥ ଓ ପ୍ରତିପତ୍ତି ହରାଇଥିଲେ । ଯାହାହେଉ, ସେଇଦିନଠାରୁ ଟାଟାରେ ଇଂରେଜୀ କର୍ମଚାରୀ ବରାବର କମିଯିବାକୁ ଲାଗିଲେ ।

## ୧୧୬। ଅନୁଗୁଳ—ହସ୍ତମୁଦି ମାହାଲ

ଏଇ କାଳର ଆଉ ଗୋଟିଏ କଥା କହେ । ସେତେବେଳେ ଅନୁଗୁଳ ସରକାରଂକ 'ହସ୍ତମୁଦି' ମାହାଲ ଥିଲା । ସେଠାରେ ଡେପୁଟି କମିଶନରମାନେ ସର୍ବେସର୍ବା ଥିଲେ । ଦିନେ କେଂଦ୍ର ଆସେଂବ୍ଲିରେ ସେଇ ଡେପୁଟି କମିଶନରମାନଂକ ସାର୍କୁଲାର୍‌ଗୁଡ଼ିକ ମୁଁ ପଢ଼ି ଆଲୋଚନା କରିଥିଲି । ଏହା ଓଡ଼ିଶା ପ୍ରଦେଶ ଗଠନର ଅବ୍ୟବହିତ ପୂର୍ବକଥା ପରି ମନେ ହୁଏ ତା'ରି ଫଳରେ ବୋଧହୁଏ, ପ୍ରଦେଶ ଗଠନ ବେଳକୁ ଓ ତା'ପରେ ଆସ୍ତେ ଆସ୍ତେ ସେ ସବୁ ସାର୍କୁଲାର୍‌ଗୁଡ଼ିକର କ୍ରିୟା ଶିଥିଳ ହୋଇଗଲା ।

ଏହିଭଳି ନିର୍ଦ୍ଦିଷ୍ଟ ବସ୍ତୁ ସବୁ ଦେଖି ଜାଣିବା ବ୍ୟତୀତ ଓଡ଼ିଶାର ଦୁର୍ଭିକ୍ଷ ପ୍ରଭୃତି ଅନ୍ୟାନ୍ୟ ବହୁ ବିଷୟରେ ମୋର ପ୍ରତିପତ୍ତି ଓ ପ୍ରତିଷ୍ଠା କେଂଦ୍ର ଆସେଂବ୍ଲିରେ ଖୁବ୍ ବଢ଼ି ଯାଇଥିଲା । ବୋଧହୁଏ ଏହି ସବୁକୁ ଦେଖି ଆମ ଉତ୍କଳ ଗୌରବ ମଧୁସୂଦନ ମୃତ୍ୟୁଶଯ୍ୟାରେ ମତେ, ବ୍ରଜବାବୁ ଓ ବିଚିତ୍ରାନଂଦ ବାବୁଂକୁ ପାଖକୁ ଡାକି ଯାହା କହିଥିଲେ, ତାହାର ସାର୍ଥକତା ଥିଲା ।

## ୧୧୭। ଗୋପବଂଧୁ ବାବୁଂକ ଅଂତିମ ଜୀବନ (୧୯୨୭-୨୮)

୧୯୨୭ରେ ଦୁର୍ଭିକ୍ଷ ପଡ଼ିଲା । ଓଡ଼ିଶାର ବହୁ ନଦୀରେ ପ୍ରବଳ ବନ୍ୟା ଫଳରେ ସାଧାରଣ ଜୀବନ ଦୁର୍ବହ ହୋଇଉଠିଲା । ୧୯୫୫ର ବଢ଼ି ଆଖିରେ ଦେଖି ୧୯୨୭ କଥା

ମନେପଡ଼େ । ଏ ଦେଶରେ ଉନ୍ନତି ଲାଗିଆସିଲା ବେଳକୁ ବାରଂବାର ବଢ଼ି ପୁଣି ପ୍ରଗତିକୁ ପଛେଇ ଦେଉଛି । ଧନଜୀବନ ନଷ୍ଟ ହୋଇଛି । ସତେଯେପରି ଏ ଦୁର୍ଦ୍ଦଶାର ଅଂତ ନାହିଁ । ହୀରାକୁଦ ବଂଧ ହେବା ପରେ ଲୋକଂକର ଧାରଣା ହେଲା ହୁଏତ ବଢ଼ି ସବୁଦିନ ପାଇଁ ବଂଦ ହୋଇଯିବ । କିଂତୁ ତାହା ଧାରଣା ମାତ୍ର । ୧୯୨୭ରେ କ'ଣ କ୍ଷୟ କ୍ଷତି ହେଲା ତା'ର ହିସାବ ମୁଁ ଦେବାକୁ ଯାଉନି । ସରକାର ତାର ହିସାବ ରଖିଥିବେ । ସରକାରୀ ରିପୋର୍ଟରେ ସେତେବେଳେ ଯାହା ପ୍ରକାଶ ପାଇଥିଲା, ତାହା ପ୍ରକୃତ ଅବସ୍ଥାର ଛଦ୍ମପ୍ରକାଶ । ସତ କହିବାକୁ ସରକାର ସବୁବେଳେ ପଛାଂତି । କାରଣ ଲୋକମାନଂକ ପ୍ରତିକ୍ରିୟା ପ୍ରତି ଭୟ ଥାଏ । ଗୋପବଂଧୁ ବାବୁ ସେତେବେଳେ କଟକରେ ଥାଂତି । ବଢ଼ି କମିଟି ଗଢ଼ାଗଲା । ବୋଧହୁଏ ଗୋପବଂଧୁ ବାବୁ ସେ କମିଟିର ମୁଖ୍ୟ ଥାଂତି । ଭୁବନାନଂଦ ବାବୁ 'Young Utkal' ପତ୍ରିକାରେ ଲେଖିଲେ, ''ଗୋପବଂଧୁ ଦାସ ବଢ଼ି କଉଡ଼ି ଖାଇଗଲେ ।'' ସେତେବେଳେ ଭୁବନାନଂଦ ବାବୁ 'Young Utkal' ର ସଂପାଦକ ଥାଂତି । ସେଥିରେ ଗୋପବଂଧୁ ବାବୁଂକ ବିରୁଦ୍ଧରେ ୪୨,୦୦୦ ଟଂକା ଆତ୍ମସାତ୍‌ର ଏକ ଅଭିଯୋଗ ଅଣା ହୋଇଥାଏ । ଗୋପବଂଧୁ ବାବୁ ଏହା ପଢ଼ି କାଂଦିଲେ ।

ମୋତେ ଟେଲିଗ୍ରାମ ଯୋଗେ ଗୋପବଂଧୁ ବାବୁ ଡାକିନେଲେ । ମୁଁ ପହଂଚିଲାରୁ ଭୋ' ଭୋ' କାଂଦି କହିଲେ—''ଦେଖ ଭୁବନାନଂଦ ଲେଖିଛି, ମୁଁ ବଢ଼ି କଉଡ଼ି ଖାଇଗଲି । ମୁଁ ତାଂକୁ ଅନେକ ବୁଝାସୁଝା କଲାରୁ ସେ ତୁନି ହେଲେ । ମୁଁ ସେଦିନ ଲକ୍ଷ୍ୟ କରିଚି, ଦୋଷରହିତ ମଣିଷ କିପରି ଅଂତରକୁ ଆବେଗ ସହକାରେ ଅଜାଡ଼ି ଦିଏ ।

୧୯୨୮ରେ ଗୋପବଂଧୁ ବାବୁ କଲିକତାରେ ଶ୍ରମିକମାନଂକର ଏକ ସଭାକୁ ଯାଇଥିଲେ । ତାଂକୁ କଲିକତାରେ ମଟରରେ ଦିନ ଦୁଇଟା ପର୍ଯ୍ୟଂତ ବୁଲେଇଲେ, ଟାଇଫଏଡ୍ ଲେଉଟେଇଲା । ସେ ମୋତେ ଓ ପୁରୀରୁ ବନମାଳୀ ଦାସ ପ୍ରଭୃତିଂକୁ ଡକାଇଲେ । ସେଇଥର ତାଂକର ମୃତ୍ୟୁ ହେଲା । ପ୍ରାଣ ଛାଡ଼ିବାବେଳେ ମୁଁ ପ୍ରାୟ ୧୦/୧୫ ମିନିଟ୍ କାଳ ତାଂକୁ ଚାହିଁ ନିର୍ବାକ ଓ ନିଷ୍ପଂଦ ହୋଇ ଠିଆ ହୋଇରହିଲି ।

ମରିବା ପୂର୍ବରୁ ସେ ନିଜର ଉଇଲ୍ ଡାକିଦେଇଥିଲେ । ରାଧାନାଥ ରଥ ସେ ଉଇଲ୍ ହାତରେ ଲେଖୁଥାଂତି ତାଂକ ଜ୍ୱାଇଁ ରତ୍ନାକର ପତିଂକୁ ସେ କାଂଦି କାଂଦି କହିଥିଲେ—"I am dectating my last will and testament." ଶେଷରେ ସେ ଦସ୍ତଖତ୍ କରି ଉଇଲ୍‌ଟାକୁ ଫିଂଗିଦେଲେ । ଭାରତ ଲୋକସେବକ ସମାଜକୁ ସେ ପ୍ରେସ୍‌ଟା ଦାନ କରି ଦେଇଗଲେ ।

ତହିଁଆରଦିନ ସକାଳୁ ତାଂକ ଶବ ନେଇ ସତ୍ୟବାଦୀର ଦ୍ୱାରେ ଦ୍ୱାରେ ବୁଲି ତା'ପରେ ସତ୍ୟବାଦୀ ସ୍କୁଲ ପାଖ ଶ୍ମଶାନରେ ତାଂକର ଶବଦାହ କ୍ରିୟା କରାଯାଇଥିଲା । ସେଦିନ ହୋଇଥାଏ ଗୁଂଡ଼ିଚାର ପୂର୍ବଦିନ । ପୁରୀ ଜଗନ୍ନାଥଂକର ନବଯୌବନ ଦର୍ଶନ ତିଥି । ଓଡ଼ିଶାରୁ ଜଣେ ଭାଗ୍ୟବାନ ମହାପୁରୁଷ ଚାଲିଗଲେ । ଆମେ ସମସ୍ତେ ଅଂଧାରରେ ଅଂଡ଼ାଳି ହେଲାପରି ଲାଗୁଥାଏ । ଅମାରି ବଂଧୁ, ସଖା ପୁଣି କର୍ଣ୍ଣଧାର ଆମକୁ ଚଲାବାଟର ଅସରଂତି ରାସ୍ତାରେ ଛାଡ଼ି ସବୁଦିନ ପାଇଁ ଲୁଚିଗଲେ ।

## ୧୧୮। ଜେଲଜୀବନ (୧୯୨୩, ୧୯୩୨-୧୯୩୩)

ପ୍ରଥମ ଜେଲବେଳେ ମତେ ଛ'ମାସ ଜେଲ୍ ହୋଇଥିଲା । ମୁଁ ପୁରୀରୁ ହଜାରୀବାଗ ଯାଉଥିଲି; ସେତେବେଳେ ଗୋଟିଏ ଘଟଣା ଘଟିଥିଲା । ତା ପୂର୍ବରୁ ଗୋପବନ୍ଧୁ ବାବୁ ଶ୍ରୀଯୁକ୍ତ ଭାଗୀରଥୀ ମହାପାତ୍ରଙ୍କ ସହିତ ହାତକଡ଼ି ଓ ଦଉଡ଼ି ଦିଆହୋଇ ବାଲେଶ୍ୱରରୁ କଟକ ଆସିଥିଲେ । ସେଥିପାଇଁ ମତେ ସେହିପରି ହଜାରୀବାଗ ଜେଲ୍‌କୁ ନେବା ପାଇଁ କନେଷ୍ଟବଲଙ୍କୁ ପଠାଇ ଦିଆଯାଇଥିଲା । ସେତେବେଳେ ରାଜନୀତିକ ବନ୍ଦୀମାନଙ୍କୁ 1st Class Misdemeanants କରାଯାଉଥିଲା; ଅର୍ଥାତ୍ ଭଦ୍ରଲୋକ ପରି ବ୍ୟବହାର କରାଯାଉଥିଲା । ହାତକଡ଼ି ଓ ଦଉଡ଼ି ଧରି କନେଷ୍ଟବଲ ଆସି ପହଂଚିବାରୁ ପୁରୀର ଜେଲର୍ ଓ ଆସିଷ୍ଟାଂଟ୍ ଜେଲର୍‌ଙ୍କୁ କହିଲି—"ଆପଣ ମୋତେ ଭଦ୍ରଲୋକ ପରି ବ୍ୟବହାର କରିବାର କଥା । ଏ କ'ଣ କରୁଚଂତି ? ମତେ ହାତକଡ଼ି ଦେବାକୁ ହାତ ଦେଖା ବୋଇଲେ ଦେଖାଇବି ନାହିଁ । ବାଂଡ଼ରେ ଚାଲ ବୋଇଲେ ଚାଲିବିନି । ମତେ ହାତକଡ଼ି ଦେଇ ଷ୍ଟେସନକୁ ଘୋଷାରି ଘୋଷାରି ନିଅଂତୁ ।"

ଜେଲର୍ କାଂଦି ପକାଇଲେ । ସେତେବେଳେ ଗାଇସ୍ ସାହେବ ପୋଲିସ୍ ସୁପରିଂଟେଂଡେଂଟ୍ ଥିଲେ । ସାଂଗେ ସାଂଗେ ଜେଲର୍ ପୋଲିସ୍ ସୁପରିଂଟେଂଡେଂଟ୍‌ଙ୍କ ପାଖୁ ଦୌଡ଼ିଲେ । ମୁଁ ଶୁଣିଲି, ସେ କହିଲେ—"ତାଂକୁ ଆଜି ବଂଦ କର । ମୁଁ ହଜାରୀବାଗକୁ ଟେଲିଗ୍ରାମ୍ କରିଦେଉଚି, କାଲି ସେ ଯିବେ ।"

ତହିଁଆରଦିନ ଘୋଡ଼ାଗାଡ଼ି ସହିତ ଜଣେ ସବ୍‌ଇନ୍‌ସପେକ୍ଟର ଓ ଦୁଇଜଣ କନେଷ୍ଟବଲଙ୍କୁ ପଠାଇଦେଲେ । ମୋତେ ଖୁବ୍ ଭଲଭାବରେ ବୋଧହୁଏ ସେକେଂଡ଼କ୍ଲାସରେ ରେଲଯୋଗେ ହଜାରିବାଗ ପଠାଇ ଦିଆଗଲା ।

ଆଉ ଗୋଟିଏ କଥା ମନେ ହେଉଚି—ବାଟରେ ହରିଭାଇନା ସତ୍ୟବାଦୀ ଷ୍ଟେସନରେ ଦେଖାକରି କହିଲେ—"ତୋ ଦ୍ୱିତୀୟ ଝିଅ ବାସଂତୀଟି ମରିଗଲା ।" ମୁଁ ପଚାରିଲି—"ସବୁ ଚିକିତ୍ସା ହୋଇଥିଲା ତ ?" ସେ ଉତ୍ତର ଦେଲେ—"ଯାହା ସୁବିଧା ଥିଲା ତା' ହୋଇଥିଲା ।" ମୁଁ କହିଲି—"ହଉ, ଆଉ କ'ଣ କରଂତ ।" ଏତିକିରେ ତାଂକୁ ବିଦାୟ ଦେଇ ଫେର୍ ସବ୍‌ଇନ୍‌ସପେକ୍ଟର ହାତୀଂକ ଆଡ଼କୁ ମୁହଁ ବୁଲାଇ କଥାବାର୍ତ୍ତା କଲି । ମୁଁ ଯେପରି ମୋର କନ୍ୟା ମୃତ୍ୟୁର ଦୁଃଖକୁ ପରିସ୍ଥିତିର ପରିହାସ ଭିତରେ ଭୁଲିଯିବା ପାଇଁ ଚେଷ୍ଟା କରୁଥିଲି ।

ଜଟଣୀ ଷ୍ଟେସନଠାରେ ହାତୀବାବୁ ଓ କନେଷ୍ଟବଲ ମୋତେ ପଚାରିଲେ—"ତୁମେ ଦେବତା ନା ମଣିଷ । ଝିଅ ମରିବା କଥା ବି ଭୁଲିଯାଉଚ ।"

ତା'ପରେ ମୁଁ ଯାଇ କଲିକତାରେ ରାମେଶ୍ୱର ଅଗ୍ରୱାଲାଂକ ଘରେ ହାତୀଂକ ସହିତ ରହିଲି । ସେଦିନ ତମାମ କଲିକତାରେ ବୁଲି ଫୁଲମାଳ ଓ ବହୁ ବଂଧୁଂକୁ ସଂଗରେ ଘେନି ରେଲରେ ବସିଲୁ ଓ ହଜାରିବାଗ ଗଲୁ । ସେହି ହଜାରିବାଗରେ କ'ଣ କରିବାକୁ ହେବ ବୋଲି ମୁଁ ରଘୁବଂଶର ଗୋଟିଏ ଓଡ଼ିଆ ଅନୁବାଦ ଆରଂଭ କଲି । ସେଠାରେ ମଧ ସେହି ଛ'ମାସ ଯାକ ଅନ୍ୟ ଏକ କଏଦୀ ରାଜେନ୍ଦ୍ର ପ୍ରସାଦଂକ ସଂଗେ ପ୍ରାୟ ଏକା ଜେଲରେ ରହିଲୁ ।

ପ୍ରତିଦିନ ରାତି ଦଶଟା ଯାଏ କଥାବାର୍ତ୍ତା ହୋଇସାରି ଶୋଉ । ଶୋଇଲାବେଳକୁ ରାଜେନ୍ଦ୍ର ପ୍ରସାଦ ଅମୃତଭଂଡ଼ା ରଖିଥାଂତି, କାଟି ଖାଇବାକୁ ଦିଅଂତି ।

ଏତିକିବେଳେ ରାଜେନ୍ଦ୍ର ପ୍ରସାଦ ମୋତେ ଗାଂଧିଂକ ଗୀତା ପଢ଼ିବାକୁ ଦେଲେ । ମୁଁ ପଢ଼ି ତହିଁ ଆରଦିନ ଫେରାଇ ଦେଲି । ମୁଁ କହିଲି, ''ଏ ଗୀତା ପରେ ଆଉ କ'ଣ 'ବ୍ରହ୍ମସୂତ୍ର' ଓ 'ଉପନିଷଦ' ଟୀକା କରି ଗାଂଧି 'ପ୍ରସ୍ଥାନତ୍ରୈଃ' ଧରି ନୂଆମତ ପ୍ରଚାର କରିବେ କି ? ତାଂକୁ ମନା କର । ସେ ଏପରି ନକରଂତୁ ।'' ବସ୍ତୁତଃ ଗାଂଧିଂକର ବ୍ରହ୍ମସୂତ୍ର ଓ ଉପନିଷଦ ଉପରେ ଆଉ ଟୀକା ରଚିତ ହୋଇନାହିଁ ।

ଆଉ ଜଣେ କଏଦୀ ରହିଥାଂତି—ଶ୍ରୀ ଜେ. ବି. କୃପାଳିନୀ(କ୍ରିପ୍ଲାନୀ) । ମୁଁ ଏଣେ ଦିନରେ ରଘୁବଂଶ ଅନୁବାଦ କରୁଥାଏ, ରାତିରେ ସୁବିଧା ହେଲେ ତାଂକୁ ପଢ଼ି ଶୁଣାଏ ।

ମୁଁ ପ୍ରଥମେ ହଜାରିବାଗ ଜେଲ୍‌ରେ ଥିଲାବେଳେ ପ୍ରତିଦିନ ସକାଳେ ଓଡ଼ିଆ ବ୍ୟାକରଣ ଶିକ୍ଷା ଦେବାପାଇଁ ଗୋଟିଏ ବିଦ୍ୟାଳୟ କରୁଥିଲି । ତାହା ଏକପ୍ରକାର ସତ୍ୟବାଦୀରେ ଚାଲୁଥିବା ବିଦ୍ୟାଳୟର ଅନୁକୃତି ଥିଲା । ମୁଁ ଯେଉଁ ବ୍ୟାକରଣ ଲେଖିଥିଲି ତାହାପରେ ''ଓଡ଼ିଆ ବ୍ୟାକରଣ'' ନାମରେ ଛପାଇ ଦେଲି ଓ ତାହା ଶିକ୍ଷକମାନଂକ ବ୍ୟବହାର (Reference) ପାଇଁ ବିଭାଗୀୟ ମଂଜୁରୀ ପାଇଥିଲା ।

ତା'ପରେ ଶେଷଥର ଜେଲ୍ ଗଲି ୧୯୩୨ କିଂବା ୧୯୩୩ରେ ଦେଢ଼ବର୍ଷ ପାଇଁ । ଦିନବେଳା ଗୀତା ବିଷୟରେ ମୋ ସାଂଗରେ ଥିବା କଏଦୀମାନଂକୁ ଏକାଠି କରି ବକ୍ତୃତା ଦେଉଥିଲି । ମତେ ବଂଧୁମାନେ ଗୀତା ଉପରେ ଭାଷ୍ୟ ଲେଖିବାକୁ କହିଲେ । ମୁଁ ତା'ପରେ ପ୍ରତିଦିନ ଗୀତା ଉପରେ ଅଭ୍ୟାସ କରି ଭାଷ୍ୟ ଲେଖିଲି । ୧୯୩୪ ମସିହା ପୂଜାବେଳେ ସେହି ଗୀତା ଭାଷ୍ୟକୁ ଗୀତା ସଂଗେ ଛପାଇ ଦେଲି ।

୧୯୩୩ରେ ଜେଲ୍‌ରୁ ବାହାରିଯିବା ପରେ ମୋର ଭୟଂକର ସ୍ୱାସ୍ଥ୍ୟଭଂଗ ହେଲା, ମୋର ପ୍ରସାରେ Oxalate stone ଥିବାରୁ ପ୍ରସାକଲାବେଳେ ଅତି କଷ୍ଟ ହେଉଥିଲା । ଏପରିକି ଦିନେ ରାତିରେ ଡାକ୍ତର ମୋତେ ମର୍ଫିଆ ଦେଇ ଶୁଆଇ ପକାଇଲେ । ପରଦିନ ତିନିଟାବେଳକୁ ନିଦ ଭାଂଗିଲା । ଗୋଟାଏ ପ୍ରସା ହୋଇଗଲା । ସେଥିରେ ଆଉ ରକ୍ତ ପଡ଼ିଲା ନାଇ, କିଂତୁ ଅନେକଗୁଡ଼ାଏ ଛୋଟ ଛୋଟ Oxalate ପଥର ମିଶି ଗହମ ପରି ଗୋଟାଏ ଗୁଳା ପଡ଼ିଗଲା । ପ୍ରସା ଦୋଷ ବଂଦ ହୋଇଗଲା । ସେତିକିବେଳେ ଓଡ଼ିଶାରେ ଏ ଖବର ପ୍ରଚାରିତ ହେବାରୁ ଆମଘରେ ଓ ବଂଧୁମାନଂକ ମହଲରେ ବଡ଼ ଚିଂତା ପଡ଼ିଯାଇଥିଲା ।

ଆଉ ଗୋଟିଏ ଘଟଣା କହିଦିଏ । ମୁଁ ଥିଲି 'A' Class କଏଦୀ । ଓଡ଼ିଶାରୁ ମୁଁ ଏକମାତ୍ର 'A' Class କଏଦୀ ଥାଏ । ସେତିକିବେଳେ ମୋ ଭାରିଯା ଶ୍ରୀମତୀ ରାଧାରାଣୀ ଦେବୀ ମଧ 'A' Class କଏଦୀ ଭାବରେ ପୁରୀ ଜେଲ୍‌ରେ ଥିଲେ । ମୋର ପିଲାଝିଅ ରମା ଜେଲ୍‌ରେ ତା' ବୋଉକୁ ଦେଖି କାଂଦି ଅସ୍ଥିର ହେବା କଥା ପରେ ଶୁଣିଲି ।

ମୁଁ 'A' Class କଏଦୀ ଥିବାରୁ ଅନ୍ୟାନ୍ୟ କଏଦୀମାନେ ଧୂଆଁ ପତ୍ର ଆଣି ମୋ' ପାଖରେ ରଖଂତି । ମୁଁ ତାକୁ ମୁଂଡ଼ତଳେ ମାଂଡ଼ି ଭିତରେ ରଖିଥାଏ । ସେହି ବାସନା ବାଜି

ବାଜି ପ୍ରାୟ ପଂଦରଦିନ ଭିତରେ ମୋର ମୁଂଡ଼ ବୁଲାଇବା ରୋଗ ବାହାରିଲା । ଡାକ୍ତର ଦେଖିଲେ । କିଛି ଠଉରେଇ ପାରିଲେନି । ପରେ ମୁଁ ସେଇ ଧୂଆଁପତ୍ର ସବୁ କାଢ଼ି ଫିଂଗିଦେଲି । ସେହି ଯେଉଁ ମୁଂଡ଼ ବୁଲାଇବା ତାହା ମୋ ପାଇଁ ଗୋଟିଏ ନୂଆରୋଗ ହେଲା । ସେଥିପାଇଁ ପାଟଣା ଜେଲ୍‌କୁ ଚିକିତ୍ସା ପାଇଁ ମୁଁ ଯାଇଥିଲି; କିଂତୁ ପାଟଣା ଜେଲ୍‌ରୁ ଫେରିଲା ବେଳକୁ ମୋର ରୋଗ ଆଉ ବିଶେଷ ନଥିଲା । ସେହି Oxalateର ପଥର ପଡ଼ିବା ପରେ ଏବେ Oxalateର ଆଶଂକା ହେଲେ ମୁଁ କୋଳଥ ସିଝେଇ ପାଣି ପିଏ । ସେଥିରେ ଭଲ ହୋଇଯାଏ । ଏହି ଦବେଇ ସ୍ୱର୍ଗତ ଡାକ୍ତର ନୀଳରତ୍ନ ସରକାର, ସ୍ୱର୍ଗତ ନିର୍ମଳଚଂଦ୍ରଂକୁ ଏହି ରୋଗର ପ୍ରତିକାର ରୂପେ ବତାଇଥିଲେ ।

## ୧୧୯। ଓଡ଼ିଶା ରାଜନୀତିରେ ମୋର ଭାଗ
## (୧ମ ପର୍ଯ୍ୟାୟ)

ତା'ପରେ ଆଉ ଗୋଟିଏ କଥା ଏଠାରେ କହିଦେବା ଉଚିତ୍ । ମୁଁ ଏ ମଧ୍ୟରେ ବରାବର ୧୯୨୪ରୁ ଆରଂଭ କରି ୧୯୪୫ ପର୍ଯ୍ୟଂତ କେଂଦ୍ର ଆସେଂବ୍ଲିରେ ଥିଲି । ସେଥିରେ ଯାହା କାର୍ଯ୍ୟ କରିଚି ତାହା ଅଳ୍ପକେ ଟିକିଏ କହେ । ୧୯୨୩ରେ ହଜାରିବାଗ୍ ଜେଲ୍‌ରେ ଗୋପବଂଧୁ ବାବୁଂକ ସାଂଗରେ ଥିଲାବେଳେ ଏହି ଆସେଂବ୍ଲିକୁ ଯିବାପାଇଁ ତାଂକ ଅନୁମତି ନେଇଥିଲି । ସେ ସ୍ପଷ୍ଟ କହିଲେ—''ତୁମେ ଏଇ Pro-changer ରାଜନୀତିକ ଦଳ ସହିତ ସି. ଆର. ଦାସଂକ ସଂଗେ ଯୋଗଦିଅ ।'' କାରଣ ସେତେବେଳେ କଂଗ୍ରେସରେ ଦୁଇପ୍ରକାର ମତ ଫିଟି ପଡ଼ିଥାଏ । ଗୋଟିଏ ହେଉଚଂତି ମୋତିଲାଲ, ଚିତ୍ତରଂଜନ ଦାସ, ଭି. ଜେ. ପଟେଲ ପ୍ରଭୃତିଂକ ଦଳ । ସେମାନଂକର ମତ ଥିଲା ଆସେଂବ୍ଲି କାଉନ୍‌ସିଲ୍‌ରେ ପଶି ସେହି ସୂତ୍ରରେ ସ୍ୱରାଜ ପାଇଁ ଲଢ଼ିବା । ସେମାନଂକୁ Pro-changer କୁହାଯାଉଥିଲା । ଗାଂଧିଂକର ମତ ଥିଲା ଅଲଗା । ତାଂକ ମତ ଥିଲା—କାଉନ୍‌ସିଲ୍ ପ୍ରଭୃତିକୁ ବର୍ଜନ କରିବାକୁ ହେବ । ତାଂକୁ କହୁଥିଲେ No-changer ଗୋପବଂଧୁ ବାବୁଂକ ମତ ଏଇ Pro-changer ଦଳରେ ଥିଲା; ତଥାପି ତାଂକର ଦୁଇବର୍ଷ ଜେଲ୍ କାର୍ଯ୍ୟକାଳ ଆହୁରି ବର୍ଷକରୁ ଅଧିକ ବାକି ଥିଲା; କିଂତୁ ଜେଲ୍‌ରେ ଅନେକ ଓଡ଼ିଶାର ନେତା ସେତେବେଳେ ଇଂରେଜ ସରକାରଂକ ବଂଦୀ ଭାବରେ ଥିଲେ । ବହୁତ ବିଚାର ହେଲା । ସେଥିରେ ଅନ୍ୟମାନେ ଥିଲେ—ପ୍ରଚାରକ ସ୍ୱର୍ଗତ ଅନଂତ ମିଶ୍ର, ଶ୍ରୀ ଯଦୁମଣି ମଂଗରାଜ, ଶ୍ରୀ ଭାଗୀରଥୀ ମହାପାତ୍ର ପ୍ରଭୃତି । ଏହି ବିଚାରର ଶେଷରେ ସ୍ଥିର ହେଲା ମୁଁ Pro-changerଙ୍କ ସହିତ ଯୋଗଦେଇ କେନ୍ଦ୍ର ଆସେଂବ୍ଲିକୁ ଯିବି । ମୁଁ ଜେଲ୍‌ରୁ ଆସି ସେହି ବିଷୟ ପ୍ରଚାର କରିଦେଲି ।

ସେତେବେଳେ ଆମର ନିର୍ବାଚନମଂଡ଼ଳୀ ଥିଲା ପୁରୀ, କଟକ, ବାଲେଶ୍ୱର ଓ ସଂବଲପୁର । ମୁଁ ଏହି ଚାରି ଜିଲାରେ 'ନାଇଁ ନଥିବା' ଭୋଟ ପାଇ ନିର୍ବାଚିତ ହେଲି । ଗୋଦାବରୀଶ ମଧ ତା' ପୂର୍ବରୁ ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ଥିଲେ । ସେ ମଧ ସେଇଠାକୁ ବାଣପୁର ନିର୍ବାଚନମଂଡ଼ଳୀରୁ ନିର୍ବାଚିତ ହେଲେ । ମୁଁ ସେତେବେଳେ କେଂଦ୍ର ନିର୍ବାଚନ-ମଂଡ଼ଳୀରୁ ସେହି Pro-changerଙ୍କ ସ୍ୱରାଜ୍ୟ ପାର୍ଟି ବା ଦଳରେ ଅନ୍ୟତମ ସେକ୍ରେଟାରୀ

ରୂପେ ନିର୍ବାଚିତ ହେଲି, ଆଉ ଜଣେ ସେକ୍ରେଟାରୀ ଶ୍ରୀ ରାମସ୍ୱାମୀ ଆୟାଂଗାର । ନେତା ଥିଲେ ଶ୍ରୀ ମୋତିଲାଲ ନେହେରୁ । ପୁଣି ତିନିବର୍ଷ ପରେ Pro-changer ଓ No-changer ମିଶିଯାଇ ଗୋଟିଏ କଂଗ୍ରେସ ଦଳ ହେଲା । ଦ୍ୱିତୀୟ ଥର ନିର୍ବାଚନରେ ମୁଁ ସେଇ କଂଗ୍ରେସ ଦଳରେ ନିର୍ବାଚିତ ହୋଇ ପୁଣି ସେକ୍ରେଟାରୀ ହେଲି । ତା'ପରେ ପୁଣି ୧୯୩୦ ଖ୍ରୀଷ୍ଟାବ୍ଦରେ କଂଗ୍ରେସରେ ସମସ୍ତେ ଛାଡ଼ିବାର ହେଲା । ଏଥର ଛାଡ଼ି ପୁଣି ମାଳବୀୟଂକ ଦଳରେ ମୁଁ ଆଉ ବାରଦିନ ପାଇଁ ଯାଇଥିଲି ଓ ଦାଂଡ଼ି ଲୁଣମାର୍ଚ୍ଚ ଦିନ ମାଳବୀୟ, ପଟେଲ ଓ ଅନ୍ୟାନ୍ୟ ସମସ୍ତଂକ ସଂଗେ ମୁଁ ଛାଡ଼ିଦେଲି । ସେଦିନ ଛାଡ଼ିଲା ପରେ ଦିଲ୍ଲୀ ସଭାରେ ଯେଉଁ ବକ୍ତୃତା ଦେଇଥିଲି ତାହା ଆଜି ପାଖରେ ନାହିଁ । ତଥାପି ସେହି ସମୟର ଗୋଟିଏ ବକ୍ତୃତା (କିଂଚିତ ପୂର୍ବର) ଟାଟା କଂପାନୀର ଇଂରେଜ କର୍ମଚାରୀମାନଂକ ସଂବଂଧରେ ଅନ୍ୟତ୍ର ଛପା ହୋଇଅଛି ।

ଏହି ସମୟରେ ମୁଁ ଓଡ଼ିଶା କଂଗ୍ରେସର ସଭାପତି ବରାବର ଥିଲି । ଓଡ଼ିଶାରେ ଏକ କଂଗ୍ରେସ କମିଟିର ଆୟୋଜନ ଏହି ସମୟରେ ୧୯୩୨ମସିହା ଏପ୍ରିଲ ମାସରେ ହୋଇଥିଲା; କିଂତୁ କଂଗ୍ରେସ ବସିବାରେ ତିନିମାସ ପୂର୍ବରୁ ଜାନୁୟାରୀ ମାସରେ ଏହା ବେଆଇନ୍ ଘୋଷଣା ହେଲା । ଫଳରେ କଂଗ୍ରେସ ଅଧିବେଶନ ବସିପାରି ନଥିଲା ।

ଓଡ଼ିଶା କଂଗ୍ରେସର ସଭାପତି ଭାବରେ ୧୯୩୨ରେ ମୁଁ ଦେଢ଼ବର୍ଷ ପାଇଁ ଜେଲ୍ ଗଲି । ଏଥର ଗୋପବଂଧୁ ବାବୁ ଆଉ ଇହଜଗତରେ ନଥିଲେ । ଜେଲ୍‌ରୁ ଆସି ପୁଣି କେଂଦ୍ର ଆସେଂବ୍ଲିକୁ ନିର୍ବାଚିତ ହେଲି । ଏଥର ନେତା ଥିଲେ ବଂବେର ଶ୍ରୀ ଭୋଲାଭାଇ ଦେଶାଇ । ଏଥର ମଧ୍ୟ ମୁଁ ସେକ୍ରେଟାରୀ ଭାବରେ ନିର୍ବାଚିତ ହେଲି । ଅବଶ୍ୟ ସବୁକଥାରେ କଂଗ୍ରେସରୁ mandates ବା ଆଦେଶନାମାମାନ କେଂଦ୍ର ଆସେଂବ୍ଲିର ସଭ୍ୟମାନଂକ ପାଖୁ ଆସୁଥାଏ । ତଥାପି ମୁଁ ସେତେବେଳକୁ ଚାହିଁ ବାରଂବାର କେଂଦ୍ର ଆସେଂବ୍ଲି ଓ Princess-chamberକୁ ଏକତ୍ର କରି ଗଢ଼ିବାର ପ୍ରସ୍ତାବ ବିଧାନସଭାରେ ଆଗତ କରୁଥିଲି । ଏ ପ୍ରସ୍ତାବ ବିରୁଦ୍ଧରେ ବାରଂବାର କଂଗ୍ରେସର ଆଦେଶ ପାଇବାର ମନେ ହେଉଚି ।

ଆଉ ଗୋଟିଏ ବଡ଼ କଥା ହେଉଚି—ଏତିକିବେଳେ କେତେଜଣ ମହିଳା ସଭାକରି କଂଗ୍ରେସ ନେତାମାନଂକୁ ଧରି ଝିଅଂକୁ ପୈତୃକ ସଂପତ୍ତିରେ ଭାଗ ନେବା ବିଷୟରେ ଆଇନ୍ କରିଦେବାକୁ ବସିଲେ । କିଂତୁ ମୁଁ ବାରଂବାର ଏହାକୁ ବାଧାଦେଇ କହୁଥିଲି ଯେ, ''ମହିଳାଂକୁ ଭାଗଦେବା ଦରକାର ହେଲେ (ବୋହୂ, ପୁତ୍ରବଧୂ)କୁ ଭାଗଦେବା ବ୍ୟବସ୍ଥା କରାଯାଉ । ତା' ନହେଲେ ପରିବାର ଛିନ୍‌ଭିନ୍ ହୋଇଯିବ ଓ କାଳକ୍ରମେ କୌଣସି ସଂପତ୍ତି ବିକ୍ରି ହୋଇପାରିବ ନାହିଁ;'' କିଂତୁ ପରେ ଜାଣିଲି କଂଗ୍ରେସ ନେତାମାନେ ଝିଅଂକୁ ଭାଗ ଦେବାରେ ବଦ୍ଧପରିକର ଥିଲେ । ଅବଶ୍ୟ ମୋର ଏ ବିଷୟରେ କମିଟିରେ ବହୁ ବିରୋଧୀମତ (Note of dissent) ଛପା ହୋଇ ବଂଟା ହୋଇଥିଲା । ତା' ହୁଏତ ଏବେ ଆସେଂବ୍ଲି ରିପୋର୍ଟ ରେକର୍ଡ଼ରେ ଥାଇପାରେ । ଯା'ହେଉ ମୁଁ ଆସେଂବ୍ଲିରେ ଥିବା ଭିତରେ ତାର କୌଣସି ନିଷ୍ପତ୍ତି ହୋଇ ନଥିଲା । ଯାହା ହେଲା ତାହା ସ୍ୱାଧୀନ ଭାରତରେ (୧୯୪୭ ପରେ) ହୋଇଚି । ସେତେବେଳେ ମୁଁ ଆଉ ଆସେଂବ୍ଲି ଗଲି ନାହିଁ । କାରଣ କ୍ରମେ ଗୋପବଂଧୁ ବାବୁଂକ ପରେ ସତ୍ୟବାଦୀର ଯେତେ ବିରୋଧୀଦଳ ଥିଲେ, ସେମାନେ ନାନାପ୍ରକାର ଉପାୟରେ ମୋର ନେତୃତ୍ୱରେ ବାଧା ଦେବାରେ ଲାଗି ଯାଇଥିଲେ ।

ଗୋଟିଏ କଥା କହେ । ୧୯୪୭ରେ ମୁଁ ପୁଣି କେଂଦ୍ର ଆସେଂବ୍ଲିକୁ ଯିବାପାଇଁ ଶହେଟଂକାର ଚେକ୍ ଫିସ୍ ଆକାରରେ ଦେଇ ଦରଖାସ୍ତ ପଠାଇ ଦେଇଥିଲି । କେତେଦିନ ପରେ ସେହି ଦରଖାସ୍ତର ଉତ୍ତର ଶ୍ରୀ ହରେକୃଷ୍ଣ ମହତାବ ଲେଖିଥିଲେ—"ଆପଣ ଆସେଂବ୍ଲିକୁ ଆସିଲେ ମୁଁ ବଡ଼ ଖୁସି ହେବି ସଂଦେହ ନାହିଁ । କିଂତୁ ଦୁଃଖର କଥା ବଲ୍ଲଭ ଭାଇ ପଟେଲ୍ ସଫା ମନାକରି ଲେଖିଚଂତି ଆପଣଂକୁ କୌଣସି ଆସେଂବ୍ଲି କାଉନ୍‌ସିଲ୍‌କୁ ଆସିବାକୁ ମନାକରି ଲେଖିବା ପାଇଁ । ମୋର ଚାରା କ'ଣ ! ଏଇଥିରୁ ମୋ ଅସୁବିଧା ବୁଝିବେ ।" ସେ ଚିଠି ଏବେ ମଧ ମୋ ପାଖରେ ଅଛି । ସଂଗେ ସଂଗେ ଅବଶ୍ୟ ଶ୍ରୀ ମହତାବ ମୋ ଶହେଟଂକିଆ ଚେକ୍‌ଟି ଫେରାଇ ଦେଇଥିଲେ ।

ଏହିମଧରେ ଫୈଜପୁରା କଂଗ୍ରେସରେ ଯେତେବେଳେ ଓଡ଼ିଶାରୁ ସଭ୍ୟନେଇ All India Congress Working Committee ଗଢ଼ିବାର ବ୍ୟବସ୍ଥା ହେଲା, ସେତେବେଳେ ମହାତ୍ମାଗାଂଧି ମୋ ନାମ ପ୍ରସ୍ତାବ ଦେଇଥିଲେ; କିଂତୁ ଅନ୍ୟ କେହି ଶ୍ରୀ ହରେକୃଷ୍ଣ ମହତାବଂକ ନାମ ପ୍ରସ୍ତାବ କଲେ । ସେଠାରେ ସୁଭାଷ ବାବୁଂକ ବଡ଼ଭାଇ କଟକର ଓକିଲ ସତୀଶ ବାବୁ ଉପସ୍ଥିତ ଥାଂତି । ସେ ଫେରି ମତେ ଏକଥା କହିଲେ । ସେହିଠାରୁ ହରେକୃଷ୍ଣ ମହତାବ କାର୍ଯ୍ୟକାରୀ କମିଟିକୁ ଯାଇ ପରେ ଜହରଲାଲ ପ୍ରଭୃତିଂକ ସଂଗରେ ଯାରବାଡ଼ା ଜେଲ୍‌କୁ ଗଲେ ।

## ୧୨୦। ପୁରୀ-କଂଗ୍ରେସ

ଗୋପବଂଧୁ ଦାସ ମରିବା ପୂର୍ବରୁ ସତ୍ୟବାଦୀ ସ୍କୁଲରୁ ତାଂକ ମମତା ଛାଡ଼ି ଯାଇଥିଲା । ବ୍ରହ୍ମଚର୍ଯ୍ୟାଶ୍ରମ କରି ସତ୍ୟବାଦୀ ସ୍କୁଲକୁ ସେ ରଖିବାକୁ ବିଚାରିଲେ; କିଂତୁ ସେପରି ରଖିପାରିବା ଭଳି କୌଣସି ପ୍ରେରଣା ଥିବାପରି ଲାଗିଲା ନାହିଁ । ହେଲେହେଁ ତାଂକ ମୃତ୍ୟୁ ପରେ ଅନେକ ନେତାଂକର ନେତୃତ୍ୱ ନେବାପାଇଁ କେବଳ ବାସନା ହେଲା ନାହିଁ; ବରଂ ଉଦ୍ୟୋଗ ବି ଆରଂଭ ହୋଇଗଲା । ଅନେକ ଘଟଣା ଭିତରୁ ମୁଁ ଗୋଟିଏ ଘଟଣା କହେ ।

ଏବେ ଯେଉଁ କଂଗ୍ରେସ ଭୁବନେଶ୍ୱରରେ ହେବାକୁ ଯାଉଚି, ସେହି କଂଗ୍ରେସ ୧୯୩୧ କରାଚି କଂଗ୍ରେସ ପରେ ୧୯୩୨ରେ ପୁରୀରେ ହେବାର ହେଲା । ଅବଶ୍ୟ ଜାନୁୟାରୀ ପାଞ୍ଚ ତାରିଖରେ ଇଂରେଜ ସରକାର କଂଗ୍ରେସକୁ ବେଆଇନ୍ ଘୋଷଣା କରିବାରୁ ତାହା ହୋଇ ପାରି ନଥିଲା । ତଥାପି ଜାନୁୟାରୀ ୫ତାରିଖ ପର୍ଯ୍ୟଂତ କଂଗ୍ରେସ କରିବାର କୌଣସି ଉଦ୍‌ଯୋଗର ହେଲା ହୋଇ ନଥିଲା । ମନେଅଛି, ସେହି ଜାନୁୟାରୀ ମାସ ଦଶ ତାରିଖରେ ଓଡ୍ରେନେଲ୍ କମିଟିରେ କଂଗ୍ରେସ ତରଫରୁ ମୁଁ ଏକ ବିସ୍ତୃତ ମେମୋରାଂଡ଼ମ୍ ଦେଇଥିଲି, ଏହା ଅନ୍ୟତ୍ର ପ୍ରକାଶ ପାଇଚି । ଜାନୁୟାରୀ ୧୦ତାରିଖ ଦିନ ମୋର ମୌଖିକ ସେ ବିଷୟରେ ଓଡ୍ରେନେଲ୍ କମିଟି ପାଖରେ ଜାମ୍‌ସେଦ୍‌ପୁରରେ କହିବାର ଥିଲା । ସେତେବେଳେ ଆମ ଓଡ଼ିଶା ଯେଉଁ ଜୋନ୍‌ରେ ଥିଲା ତାର ଜୋନାଲ୍ ହେଡ୍ ଥିଲେ ବାବୁ ରାଜେଂଦ୍ର ପ୍ରସାଦ । ମୁଁ ୧୦ତାରିଖ ଦିନ ଯାଇ ଓଡ୍ରେନେଲ୍ କମିଟି ସକାଶେ ଜାମ୍‌ସେଦ୍‌ପୁରରେ ପହଂଚିଲି । କିଂତୁ ସେହିଦିନ ସକାଳେ ବାବୁ ରାଜେଂଦ୍ର ପ୍ରସାଦଂକ ଆଦେଶ ମତେ ମୋତେ ଆଦେଶ ମିଳିଲା— ସେ ମେମୋରାଂଡ଼ମ୍ ଉପରେ ମୋତେ ସାକ୍ଷ୍ୟ ଦେବାକୁ ହେବନାହିଁ । ଓଡ୍ରେନେଲ୍ କମିଟିକୁ

ବ୍ୟକଟ୍ କରିବାକୁ ହେବ । ସେଥିପାଇଁ ମୁଁ ସାକ୍ଷୀ ଦେଲି ନାହିଁ । ମୋର ବିରାଟ ମେମୋରାଂଡ୍‌ମ୍ ଓଡ଼େନେଲ୍ କମିଟିରେ ସ୍ଥାନ ପାଇ ନଥିଲା । ସେହି ୫ତାରିଖରେ କଟକ ଛାଡ଼ିବା ପୂର୍ବରୁ ମୁଁ ପ୍ରେସିଡେଂଟ ଥାଇ ଗୋପବଂଧୁ ଚୌଧୁରୀ, ସେକ୍ରେଟାରୀଂକ ସଂଗେ ସମସ୍ତ ଟଂକା, ତୋଳାଘର, ଓ 'ବଳିଆ ପଂଡ଼ା' (ପୁରୀ)ରେ ଆଉ ବହୁତ ଅନୁଷ୍ଠାନ ଛାଡ଼ି, ସେ ସମସ୍ତ ଆଦାୟ କରି ରଖିବାର ଭାର ପୁରୀର ଶ୍ରୀ ଜଗନ୍ନାଥ ମିଶ୍ରଂକ (ଖାଂଜେଂଚି) ହାତରେ ଦେଇ ଜାମ୍‌ସେଦ୍‌ପୁର ଯାଇଥିଲି । ତାପରେ ମୁଁ ଜେଲ୍ ଗଲି । ଜେଲ୍‌ରୁ ଆସିବା ପରେ ସେସବୁ ଟଂକାରୁ, ଯାହା କିଛି ନଗଦ ଓ ହ୍ୟାଂଡ୍‌ନୋଟ୍ ଆକାରରେ ଆଦାୟ ହୋଇଥିଲା ସେସବୁ ଆଣି ମୁଁ, ଗୋପବଂଧୁ ଚୌଧୁରୀ ଓ ଜଗନ୍ନାଥ ମିଶ୍ର କଂଗ୍ରେସ କମିଟି ଆଗରେ ରଖିଦେଲୁ । ଶୁଣିଲି ସେ ଟଂକା କଟକ ଇଂପିରିଆଲ୍ ବ୍ୟାଂକ୍‌ରେ ଜଗନ୍ନାଥ ମିଶ୍ରଂକ ଦ୍ୱାରା ରହିଲା । ସେ ଟଂକା ଓ ସେହି ବାବଦରେ ଅନ୍ୟାନ୍ୟ ଆଦାୟ ଟଂକା ପରେ କ'ଣ ହେଲା ମୁଁ ଜାଣେନାହିଁ ।

ତେବେ ଏ କଂଗ୍ରେସ ସଂପର୍କରେ ଆଉ ଗୋଟିଏ କଥା ଏଠାରେ କହିଦିଏ । ଗୋପବଂଧୁବାବୁଂକ ପରେ ସତ୍ୟବାଦୀ ଅନୁଷ୍ଠାନକୁ କ୍ରମେ ମାରିଦେବା ପାଇଁ ନେତାମାନଂକର ଗୋଟିଏ ଉଦ୍ୟମ ଚାଲିଲା । ପୁରୀରେ କିଂବା ଆଉ କେଉଁଠାରେ କଂଗ୍ରେସ ହେବ ସେଥିପାଇଁ ବ୍ରହ୍ମପୁରର ଶ୍ରୀ ଶଶୀଭୂଷଣ ରଥ, ଗୋପବଂଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ, ନଂଦକିଶୋର ଦାସ (ଭଦ୍ରଖ) ଓ ମୁଁ ଏଇ ପାଂଚଜଣଂକୁ ଘେନି ଓଡ଼ିଶା କଂଗ୍ରେସ ୱାର୍କିଂ କମିଟି ଅଧୀନରେ ଗୋଟିଏ ସବ୍‌କମିଟି ଗଢ଼ାହେଲା । ମୁଁ ଦେଖିଲି ପୁରୀରେ ନକରିବା ପାଇଁ ସେତେବେଳେ ଅନେକ କଟକ ମୁଖ୍ୟଂକର ଏକାଂତ ଇଚ୍ଛା । ପାଂଚଜଣିଆ କମିଟିରୁ ଚାରିଜଣ ପୁରୀରେ କରିବାର ସ୍ଥିର କଲେ । ମୁଁ ନାହିଁକରି ଭିନ୍ନ ମତ ଦେଲି । କଟକରେ କଂଗ୍ରେସ ହେବାପାଇଁ ମୋର ମତ ଦେଲି । ତା'ପରେ ଚାରିଜଣଯାକ ମୋ ଘରକୁ ଆସି ମୋତେ ବହୁତ ଅନୁରୋଧ କଲେ । ମୁଁ ଶେଷରେ ପୁରୀ ପାଇଁ ମତ ଦେଲି । ତା'ପରେ ଅଗଷ୍ଟ ୩୧ରେ ବାଲେଶ୍ୱରଠାରେ ବସିଥିବା ପ୍ରାଦେଶିକ କଂଗ୍ରେସ କମିଟିରେ କଂଗ୍ରେସ ପୁରୀରେ ହେବାର ସ୍ଥିର ହେଲେ ମଧ୍ୟ କେଉଁଠାରେ କଂଗ୍ରେସ ଆବାହକ କମିଟି ଓ କାର୍ଯ୍ୟକାରୀ କମିଟି ଗଢ଼ାହେବ, ସେଥିପାଇଁ ସେଠାରେ ଥିବା ନବକୃଷ୍ଣ ଚୌଧୁରୀ ଗୋଟିଏ ପ୍ରସ୍ତାବ ଆଣିଲେ । ସେ ପ୍ରସ୍ତାବଟି ହେଉଚି—ଯେଉଁ ଜିଲାରେ ୨୦ ତାରିଖ ରାତି ବାରଟା ଭିତରେ ବେଶି ମେଂବର ସଂଗ୍ରହ କରାଯାଇ ପାରିବେ, ସେହିଠାରେ ଆବାହକ କମିଟି ଓ କଂଗ୍ରେସ କାର୍ଯ୍ୟକାରୀ କମିଟି ଗଢ଼ାହେବ । କଂଗ୍ରେସ ଯେଉଁଠାରେ ହେଉ, ସେଥିରେ କିଛି ଯାଏଆସେ ନାହିଁ ।

ମତେ ବଡ଼ ଖରାପ ଲାଗିଲା । ଦଳର ସମସ୍ତ ବିଭସତା ପ୍ରକାଶ ପାଇଲା । ମୁଁ କହିଲି—''କଟକ ଜିଲାର ଲୋକ ବାଇଶ ଲକ୍ଷ । ସେତେବେଳେ ପୁରୀର ଲୋକସଂଖ୍ୟା ଦଶ ଲକ୍ଷ ଓ ବାଲେଶ୍ୱର ନଅଲକ୍ଷ । କଟକରେ ସାମୟିକ ହାଇକୋର୍ଟ, ଏକମାତ୍ର କଲେଜ, ସର୍ଭେ ସ୍କୁଲ ଆଦି ଅଛି । କଟକ ଓଡ଼ିଶାର ରାଜଧାନୀ । କଟକରେ ବହୁତ ମୁଖ୍ୟ ମୁଖ୍ୟ କଂଗ୍ରେସ କର୍ମୀ । ଧନୀ କର୍ମୀଂକର ପରିବାରରେ ସେତେବେଳକୁ ବହୁତ ଉତ୍ସାହ । ସେମାନେ ବି କଂଗ୍ରେସ ପାଇଁ ଲାଗିବାର ବହୁତ ସଂଭାବନା ଥାଏ । ଏପରି ଅବସ୍ଥାରେ କଟକରେ Reception Committe ଗଢ଼ାହେବ ବୋଲି ସ୍ଥିର ହେବା ଉଚିତ । କଟକଠାରୁ ବେଶି ମେଂବର ଆଉ ବା କେଉଁଠି ହେବେ ।'' କିଂତୁ ମୋ କଥା ଶୁଣାଗଲା ନାହିଁ । ନବ ଚୌଧୁରୀଂକ

ପ୍ରସ୍ତାବ ଧାର୍ଯ୍ୟ ହୋଇଗଲା । ମୁଁ ଏକପ୍ରକାରେ ନିରାଶ ହୋଇ ଫେରିଲି । ମୋତେ ସେତେବେଳେ ବରାବର ମେଲେରିଆ ଜର ହେଉଥାଏ । ପାଂଚଜଣିଆ କମିଟି ଗୋଟିଏ ଘର ଭଡ଼ା ନେଇଥିଲେ । ଯେତେଦୂର ମନେହେଉଚି ତାହା Anglo bengali school (ଏବେ ସେଉଟି ଅନ୍ୟସ୍ଥାନକୁ ଯାଇ ହୋଇଛି ବିଶ୍ବଂଭର ବିଦ୍ୟାପୀଠ) । ସେପ୍ଟେମ୍ବର ୮ତାରିଖ ଦିନ ମୁଁ ଗୋପବଂଧୁ ଚୌଧୁରୀ, ହରିଭାଇନା ଓ ସ୍ୱର୍ଗତ ଗୁଣନିଧି ମହାଂତି—ଏମାନେ ବସିଥାଉ । ହଠାତ୍ ଗୁଣନିଧି ମହାଂତି କହିଲେ—'ପୁରୀରେ କଂଗ୍ରେସ ହେବ । ଗୟା ପ୍ରଭୃତିରେ ପଂଡ଼ାମାନେ କଂଗ୍ରେସରେ ଯୋଗ ଦିଅଂତି ନାହିଁ ବୋଲି ଦୁର୍ନାମ ଅଛି । ପୁରୀର ପଂଡ଼ାଂକ ଭିତରୁ ମେଂବର ହେବେନାଇ ?' ତାପରେ ଗୁଣନିଧି ବାବୁ ଗୋଟାଏ ପ୍ରସ୍ତାବ କଲେ—"ଚାଲ ଆମେ ତିନିହେଁଯାକ (ଗୋପବଂଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ ଓ ଗୁଣନିଧି ମହାଂତି) ପଂଡ଼ାଂକ ସାଂଗେ ଲାଗିବା । ପଚାଶ ଟଂକା ଦେଲେ ତ ଜଣେ Reception Committee ମେଂବର ହେବ । ଆମେ ଜଣେ ଜଣେ ଲାଗି ତିନିଜଣଂକଠାରୁ ପଚିଶଟଂକା ମାତ୍ର ଆଦାୟ କରିବାର ବ୍ୟବସ୍ଥା କରିବା ଓ ଜଣେ ମେଂବର କରିଦେବା । ଏ କଥା ମୋତେ ଆକାଶରୁ ପଡ଼ିବା ପରି ଲାଗିଲା । ମୁଁ ନିରାଶ ହୋଇ ବସୁଥିଲି । ମୋର ମନେ ହେଲା ଏମାନଂକ ଦେହି କିଛି ହେବ ନାହିଁ । ମୁଁ ତା'ପରେ କହିଲି, "ଆପଣମାନେ ଗୋଟିଏ ପଂଡ଼ାକୁ ମେଂବର କରିବେ ବୋଲି ଲୋଡ଼ୁଚଂତି । ଜବାବ ଦିଅଂତୁ ଆଜିଠାରୁ ଆଉ ପଂଡ଼ାଂକ ପାଖୁ Reception Committee ପାଇଁ ଆପଣମାନେ ଯିବା ନାହିଁ । ମୁଁ କ'ଣ କରୁଚି ଦେଖଂତୁ ।" ମୁଁ ସେଠାରୁ ବଡ଼ଂବାର ବୃଂଦାବନ ସାହୁଂକ ଘରକୁ ଆସିଲି । ସେ ଭଡ଼ାରେ ଲଗାଇବା ପାଇଁ ଗୋଟାଏ ନୂଆ ଚେଭରଲେଟ୍ ଛ' ସିଲେଂଡ଼ରସ ମଟର କିଣିଥାଂତି । ମୁଁ ତାକୁ ଭଡ଼ାକଲି । ସତ୍ୟବାଦୀର ଜଗନ୍ନାଥ ରଥ ସେତେବେଳକୁ ପୁରୀରେ ଥାଂତି । ମୁଁ ତାଂକୁ ଡାକି ପ୍ରଥମେ ପଂଡ଼ାଂକ ପାଖୁ ଗଲି । ସେମାନଂକୁ ଉଦ୍‌ବୋଧନ ଦେଇ ତା'ପରେ ପୁରୀ ଜିଲ୍ଲାର ଅନ୍ୟ ସ୍ଥାନକୁ ଗଲି । ବିଶେଷରେ ଗୋଟିଏ ସ୍ଥାନ ହେଉଚି—ପୁରୀର ବାଲକାଟି । ସେତେବେଳେ ବାଲକାଟିରେ ବହୁତ ବ୍ୟବସାୟୀ ଓ ଧନୀ ଥାଂତି । ବାଲକାଟିରେ ଅନ୍ୟତମ ମକଦମ ଥାଂତି, ତାଂକ ନାମ ହେଉଚି ସ୍ୱର୍ଗତ ଶ୍ରୀ ଦୁର୍ଯ୍ୟୋଧନ ମହାଂତି । ମୋର ସେ ପାଠସାଥୀ । ବାଲକାଟିରେ ପ୍ରାୟ ଏକ ସପ୍ତାହ ରହି ମଟରରେ ମଝିରେ ମଝିରେ କୁଇନାଇନ୍ ପିଇ ବର୍ଷା ମାଡ଼ ଭିତରେ ମଟରକୁ ସରଦେଇପୁର ବଂଗଳାରେ ରଖି ପ୍ରାୟ ୭୪ ମେଂବର କରି ଟଂକା ଘେନି ପୁରୀ ଫେରିଲି । ପୁରୀରେ ସମସ୍ତେ ଯେପରି ଶୁଣିଲେ ତାଂକ ଉତ୍ସାହ ଯେପରିକି ଶତଗୁଣିତ ହେଲା । ସମସ୍ତେ ଭାବିଲେ ଆମର ପୁରୀରେ ମେଂବର ସଂଖ୍ୟା ବେଶି ହୋଇଯିବ । ଏହିପରି ୨୦ ତାରିଖ ରାତି ବାରଟା ଯାଏ ସଂଗ୍ରହ ହୋଇଥିବା ମେଂବର ଫିସ୍ କଂଗ୍ରେସ ଆଦେଶମତେ ପୁରୀ ବ୍ୟାଂକ୍‌ରେ ଜମା ହେଲା । ସେ ସମସ୍ତ ଟଂକାର ରସିଦ ଧରି ଶ୍ରୀ ଜଗନ୍ନାଥ ରଥ ଓ ସତ୍ୟବାଦୀ ତ୍ରିପାଠୀ କଟକକୁ ଗୋପବଂଧୁ ଚୌଧୁରୀଂକ ପାଖୁ ଆସିଲେ । ଏବେ ଦେଖାଗଲା ପୁରୀର ମେଂବର ସଂଖ୍ୟା ହେଉଛି ୩୦୦ । ତା' ଭିତରୁ ତାଲିକାରେ ତିନୋଟି ସଭ୍ୟ ଅସିଦ୍ଧ ଥିବାରୁ କଟିଗଲେ । ବାକି ପକ୍‌କା ମେଂବର ହେଲେ ୨୯୭ । କଟକରୁ ସମସ୍ତେ ଲାଗି କରିଥିଲେ ୨୩୦ । ଏବେ ପୁରୀରେ ଆସି ଦେଖାଗଲା ଏହି ୨୯୭ ମେଂବରଂକ ମଧ୍ୟରୁ ପଂଡ଼ାଂକ ସଂଖ୍ୟା ଥିଲା ୧୬୬ । ତା'ପରେ ମତେ ଆସି ଅଭ୍ୟର୍ଥନା ସମିତିର ସଭାପତି ହେବା ପାଇଁ କହିଲେ । ମୁଁ ମନା କଲି । ପୁରୀରେ ଭାରି

ଚାଂଚଲ୍ୟ ଖେଳିଗଲା ସମସ୍ତେ ଧରିବସିଲେ ମତେ ସଭାପତି ହେବାକୁ ହେବ । ମୁଁ ସେଠାରୁ କହିଲି, "ତେବେ ଗୋପବଂଧୁ ଚୌଧୁରୀ ସଂପାଦକ ରହଂତୁ ।" ତାହା ହିଁ ହେଲା ।

ଏହି Reception Committee ରେ 'ବଳିଆପଂଡ଼ା'ଠାରେ ଯେଉଁ କଂଗ୍ରେସ ବ୍ୟବସ୍ଥାମାନ ହୋଇଥିଲା ସେ ସବୁ ୧୯୩୨ ଜାନୁୟାରୀ ୫ ତାରିଖରେ ଇଂରେଜ ସରକାର ବେଆଇନ୍ ଘୋଷଣା କରିଦେଲେ ।

ଆମ ଭିତରୁ ମୁଁ ଜେଲ୍ ଗଲାପରେ ଗଚ୍ଛିତ ଥିବା ଟଂକା ବ୍ୟାଂକ୍‌ରୁ ଆଣିବା ପାଇଁ କେବଳ ଜଗନ୍ନାଥ ମିଶ୍ର ଓ ଗୋପବଂଧୁ ଚୌଧୁରୀଂକର ଅଧିକାର ଥିଲା । ଆମେ ଆଦାୟ କରିଥିବା ଟଂକାରୁ ପ୍ରାୟ ପଚାଶ ହଜାର ବଳିଆପଂଡ଼ାଠାରେ ଖର୍ଚ୍ଚ ହୋଇଥିଲା । ଅବଶିଷ୍ଟ ଟଂକା ବ୍ୟାଂକ୍‌ରୁ କିଏ ଆଣିଲା ଓ କି ଖର୍ଚ୍ଚ ହେଲା ତାର କୌଣସି ହିସାବ ବା ତଥ୍ୟ ନାହିଁ । ମୁଁ ପରେ ଖବରକାଗଜରେ ଏ କଥାର ସୂଚନା ଦେଇଥିଲି । ଅନ୍ୟତ୍ର ମୁଁ ମଧ ଏ ସଂପର୍କରେ ସୂଚନା ଦେଇଚି ।

## ୧୨୧। ଇନ୍‌ହେରେଂଟ୍ ପାୱାର—(୧୯୩୨)

୧୯୩୨ ଏପ୍ରିଲ ମାସରେ ପୁରୀରେ କଂଗ୍ରେସ କମିଟି ବସିବାର ହେଲା । ସେଥିରେ ମୁଁ ଅଭ୍ୟର୍ଥନା ସମିତିର ସଭାପତି ନିର୍ବାଚିତ ହୋଇଥିଲି । ଗୋପବଂଧୁ ଚୌଧୁରୀ ସେଥିପାଇଁ ବିରୋଧ କରିଥିଲେ, କିଂତୁ କଂଗ୍ରେସ ଡାକିଲାବେଳେ ୧୭୬ ଜଣ ପୁରୀ ପଂଡ଼ା ବ୍ରହ୍ମପୁରାପାଟ ପିଂଧି କଂଗ୍ରେସ କମିଟିକୁ ଆସିଥିଲେ । ଗୋପବଂଧୁ ଚୌଧୁରୀଂକର ଆଉ ସାହସ ହେଲାନି । ମୋତେ ସଭାପତି କରାଗଲା । ସେଇଦିନ କିଂବା ତା' ପରଦିନ ସଭାରେ ତାଂକ ଭିତରୁ ପ୍ରଶ୍ନ ହେଲା—"ନୀଳକଂଠ ଦାସ କେତେ ଗସ୍ତ ଖର୍ଚ୍ଚ ନେଇଚଂତି ?" ଗୋପବଂଧୁ ଚୌଧୁରୀ କାଗଜପତ୍ର ଦେଖି ଉତ୍ତର ଦେଲେ, "ସେ ଆଦୌ ଖର୍ଚ୍ଚ ନେଇ ନାହାଂତି ।" ସେ କଥା ଶୁଣି ବିରୋଧୀମାନେ ସ୍ତଂଭିତ ହୋଇଯାଇଥିଲେ ।

ସଭାପତିରୂପେ ନିର୍ବାଚିତ ହେବା ପୂର୍ବରୁ ମୁଁ ସସ୍ତ୍ରିକ ଗୟାଶ୍ରାଦ୍ଧ କରିବାକୁ ପିତୃପକ୍ଷରେ ଚାଲିଗଲି । ଗଲାବେଳେ କଂଗ୍ରେସ କମିଟି ବସି ସ୍ଥିର ହୋଇଥିଲା ଗୋଟିଏ Rule making Committee ରହିବ, ସେ ନିୟମଗୁଡ଼ିକ ଅଦଳ ବଦଳ କରିପାରିବେ । ମୁଁ ଗୟାଶ୍ରାଦ୍ଧରୁ ଫେରିଲାବେଳକୁ କଲିକତାରେ ଜଗନ୍ନାଥ ରଥଂକଠାରୁ ଚିଠି ପାଇଲି ସେମାନେ ପ୍ରସ୍ତାବିତ ରୁଲ୍‌ରେ କଂଗ୍ରେସ ସଭାପତିଂକର Inherent Power କାଟି ଦେଇଚଂତି । ମୁଁ ବଡ଼ ବିସ୍ମିତ ହେଲି । ତା'ପରେ ପୁରୀରେ ସଭା ବସିଲା । ସେଥର ଆଲାହାବାଦ, ଲାହୋର ଓ କରାଚୀ ଆଦିରୁ ବହୁତ ସଭ୍ୟ ପୁରୀକୁ ସଭା ଦେଖିବାକୁ ଆସିଥାଂତି ।

ସଭା ବସିବା ପୂର୍ବରୁ ମୁଁ ସଭାକୁ ଆସିଥିବା ବ୍ରହ୍ମପୁର ଓକିଲ ଶ୍ରୀଯୁକ୍ତ ଲିଂଗରାଜ ପାଣିଗ୍ରାହୀଂକୁ ଏହି Inherent Power ସେହି Rule ରେ ଯୋଡ଼ିବାକୁ ପରାମର୍ଶ ଦେଲି । ସେ ହେଉଚି ଏହି Rule making Committee ର ସମସ୍ତ କ୍ଷମତା ଚେୟାରମ୍ୟାନଂକ Inherent କ୍ଷମତା ରଖି ତା'ପରେ କାର୍ଯ୍ୟକାରୀ ହେବ ।

ଶ୍ରୀଯୁକ୍ତ ଲିଂଗରାଜ ପାଣିଗ୍ରାହୀ ବଡ଼ ଉତ୍ସାହରେ ଏ କଥାଟି ପ୍ରସ୍ତାବ କଲେ । ସେଥିରେ ବିରୋଧୀଦଳ ବହୁତ ପାଟିକଲେ । ସେମାନେ ବହୁସଂଖ୍ୟାରେ ସେ ସଭାକୁ ଆସିଥିଲେ । ସେମାନଂକ ପାଟି ଶୁଣି ମୁଁ କହିଲି, ''ଇଏ କି ଆଶ୍ଚର୍ଯ୍ୟ କଥା Inherent Power ସଭାପତିଂକର ଥିବାରେ ଏତେ ଆପତ୍ତି କାହିଁକି ?'' ଗୋପବଂଧୁ ଚୌଧୁରୀ ଚୁପ୍ ହୋଇ ବସିଥାଂତି । ସେଠାରୁ ବିଚାର ପ୍ରାୟ ରାତି ଏଗାରଟାଯାଏ ହେଲା । ଶେଷକୁ ମୁଁ କହିଲି—''Reception Committee ବସି ମୋତେ ଚେୟାରମ୍ୟାନ୍ ବାଛିଚଂତି । ଚେୟାରମ୍ୟାନ୍ ବାଛିବାରେ ମୋତେ Inherent Power ଦିଆଯାଇଛି ବୋଲି ବୁଝିବାକୁ ହେବ । ଯଦି ଦିଆ ନଯାଇଚି ବୋଲି ଆପଣମାନଂକର ମତ ହୁଏ, ତେବେ ଆଉଥରେ Reception Committee ଡାକି ବସାଇ ବୁଝିବାକୁ ହେବ, ଏଥିରେ Rule making Committee ର ହସ୍ତକ୍ଷେପ କରିଲା ଭଳି କୌଣସି ଅଧିକାର ନାହିଁ । ତେବେ ମୁଁ ଆଉଥରେ Reception Committee ଡାକିଲେ ନିୟମାନୁସାରେ ୨୨ ଦିନ ଯିବ ତେଣୁ କଂଗ୍ରେସ ଠିକ୍ ସମୟରେ ବସିପାରିବା ସଂଭବ ନୁହେ ।'' ସେଠାରେ ଲିଂଗରାଜ ପାଣିଗ୍ରାହୀଂକର ସେହି Inherent Rule ଆଗ ପାଶ୍ ହେଲା । ଅନ୍ୟାନ୍ୟ ନିୟମାବଳୀ ପରେ ପାଶ୍ ହେଲା; କିଂତୁ ୧୯୩୨ ଜାନୁୟାରୀ ୫ ତାରିଖରେ କଂଗ୍ରେସ ବେଆଇନ୍ ଘୋଷଣା ହେବାରୁ ଆଉ କଂଗ୍ରେସ କମିଟି ବସିପାରି ନଥିଲା ।

## ୧୨୨। କୁଳବୃଦ୍ଧ ମଧୁବାବୁଂକ ମୃତ୍ୟୁ

ମଧୁବାବୁଂକ ମରିବାର ଦି' ତିନି ଦିନ ପୂର୍ବରୁ ମଧୁବାବୁ ବ୍ରଜ ବାବୁଂକୁ (ବ୍ରଜସୁନ୍ଦର ଦାସ) କହିଲେ, ''ନୀଳକଂଠ କାହିଁ ?'' ବ୍ରଜବାବୁ ଘୋଡ଼ାଗାଡ଼ିରେ ଯାଇ ସହରତମାମ ମତେ ଖୋଜି ଚଂଦ୍ରଶେଖର ମିଶ୍ରଂକ ବସାରେ ପାଇଲେ । ତା'ପରେ ବିଚିତ୍ରାନଂଦ ବାବୁଂକୁ ମଧ ଡକେଇଲେ । ବିଚିତ୍ରାନଂଦ ବାବୁ ଆସିଲେ । ସେତିକିବେଳେ ମଧୁବାବୁ ବଡ଼ ବ୍ୟସ୍ତ ହେଉଥାଂତି । ତାଂକ ଘରର ବାହାର ଓ ଭିତର ବଡ଼ ଅପରିଷ୍କାର ହୋଇ ପଡ଼ିଥାଏ । ସେ ବଡ଼ ଦୁଃଖିତ ହୋଇ କହିଲେ, ''ଲୋକେ ବାହାର ତ ସଫା କରୁ ନାହାଂତି, ଭିତର କ'ଣ ସଫା କରିବେ ?'' ତାଂକୁ ବୋଧହୁଏ ଝାଡ଼ା ଲାଗୁଥାଏ; କିଂତୁ ହେଉ ନଥାଏ । କଷ୍ଟ ହେଉଥାଏ । ତା'ପରେ ବଡ଼ ବ୍ୟାକୁଳ ହୋଇ ବିଚିତ୍ରାନଂଦଂକୁ କହିଲେ—''ତୋତେ ପରା କହୁଥିଲି, ମୁଁ ଗଲାପରେ ଲୋକେ କ'ଣ କରିବେ ? ଏବେ ଏ ନୀଳକଂଠକୁ ଦେଖ୍ । ମୁଁ ମଲା ପରେ ସେ ରହିବ । ସେ ଓଡ଼ିଶାର ସବୁ କାର୍ଯ୍ୟ କରିବ । ତାକୁ ଧରି ତୁମେ ସମସ୍ତେ ଚଳିବ ।'' ଏ କଥା ଖୁବ୍ ଜୋର୍‌ରେ କହିଲେ ।

ବିଚିତ୍ରାନଂଦ ବାବୁ କହିଲେ, ''ସେକଥା ପଡ଼ିଚି କିଆଁ । ଆପଣ ତ ଅଛଂତି । ଆପଣ ରହିବେ । ଦେହ ଖୁବ୍ ଶୀଘ୍ର ଭଲ ହୋଇଯିବ ଯେ । କିଏ କାହିଁକି ଆପଣଂକ ସ୍ଥାନରେ ରହିବ ।''

ମଧୁବାବୁ ଦୁଇଥର ଏକଥା କହି କହିଲେ—''ହଇରେ ବ୍ରଜ ! ଏ କ'ଣ ବୁଝିଲା ?'' ବ୍ରଜବାବୁ ଆଉ କିଛି କହିଲେ ନାଇ । ମଧୁବାବୁ ସେଠୁ ମୁହଁ ଘୋଡ଼େଇ ହୋଇ ଶୋଇଲେ ।

ଏସବୁ କଥା ଭଲଭାବରେ ସେଦିନ ଆଡ଼ଭୋକେଟ ନବକିଶୋର ଦାସ ଆମପାଖରେ ବସିଥାଇଁ ଶୁଣିଲେ ଓ ସମାଜରେ ରିପୋର୍ଟ କଲେ । ତହିଁ ଆରଦିନ ମଧୁବାବୁ ପୁଣି ମୋତେ ଡକେଇଲେ ଓ ବିଚିତ୍ରାନଂଦ ବାବୁଂକୁ ପାଖକୁ ଡକାଇ ଏଇକଥା କହିଲେ । ଖୁବ୍ ଉତ୍ସାହ ଥିବାପରି ଭାଷାରେ କହିଲେ । ବିଚିତ୍ରାନଂଦ ବାବୁ ଠିକ୍ ପୂର୍ବପରି ଉତ୍ତର ଦେଲେ । ଦି' ତିନିବାର କହିସାରି ମଧୁବାବୁ ଆଉ କିଛି କହିଲେ ନାହିଁ । ଆଡ଼ଭୋକେଟ ନବକିଶୋର ଦାସ ମଧ୍ୟ ସେଦିନ ପାଖରେ ଥିଲେ । କିଂତୁ ସେଦିନ କଥା ଆଉ 'ସମାଜ'ରେ ବାହାରି ନାହିଁ । ପଛରେ ଶୁଣାଗଲା ତାକୁ 'ସମାଜ'ରେ ବାହାର କରିବା ପାଇଁ ନବକିଶୋର ଦାସଂକୁ ମନା କରାଯାଇଥିଲା । (ସନିର୍ବଂଧ ଅନୁରୋଧ କରାଯାଇଥିଲା)

ପ୍ରଥମ ଦିନ ଏକା ଥିଲାବେଳେ ମଧୁବାବୁ ମୋତେ କହିଥିଲେ—"ଓଡ଼ିଶା ସଂଗେ ପାରଳାଖେମୁଂଡ଼ି ସହିତ ଜୟପୁର ମିଶୁଚି ଇତ୍ୟାଦି..." ଓଡ଼ିଶାର ଭବିଷ୍ୟତ ସଂବଂଧରେ ଆଉ କେତେକ କଥା ମଧ୍ୟ କହିଲେ । ଏହାର ପ୍ରାୟ ଦିନକ ପରେ ଦେହଦୁଃଖ ହେବାର ତୃତୀୟ ଦିନ ତାଂକର ତିରୋଧାନ ହୋଇଗଲା । ଆମେ ସବୁ ମନେକଲୁ—ଯେପରି ଓଡ଼ିଶା ଆକାଶରୁ ଉଜ୍ଜ୍ୱଳତମ ନକ୍ଷତ୍ରଟି ଖସିପଡ଼ିଲା ।

## ୧୨୩। ସତ୍ୟବାଦୀ ପ୍ରେସ

ଗୋପବଂଧୁ ବାବୁଂକ ମୃତ୍ୟୁ ପରେ ଆଉ ଗୋଟିଏ କଥା ହେଉଚି ସତ୍ୟବାଦୀ ପ୍ରେସ । ଆଂଭେମାନେ ସରକାରଂକର ଅନେକ ଉଦ୍ୟମ ପରେ ସତ୍ୟବାଦୀ ସ୍କୁଲକୁ ସରକାରୀ ସାହାଯ୍ୟ ନେଉ ନଥିଲୁ । ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟ ଥିଲା ଓ ସରକାରୀ ଶିକ୍ଷା ବିଭାଗ ଛଡ଼ା ସେହି ବିଶ୍ୱବିଦ୍ୟାଳୟ ମଧ୍ୟ ସ୍ୱତଂତ୍ର ଭାବରେ ହାଇସ୍କୁଲ ସବୁ ମଂଜୁର କରିବାର କ୍ଷମତାରେ ଥିଲା; ତେଣୁ ହାଇସ୍କୁଲମାନଂକର ଶିକ୍ଷା ପ୍ରଭୃତିରେ ବହୁ ସ୍ୱାଧୀନତା ଥିଲା । ସେ ସ୍ୱାଧୀନତା ବଳରେ ଆମେ ଘର ନକରି ଖୋଲା ଜାଗାରେ ସ୍କୁଲ କରିବାର ବ୍ୟବସ୍ଥା କରିଥିଲୁ । ସେଥିରେ ବିଭାଗୀୟ ଇନ୍‌ସପେକ୍ଟରମାନେ, ସେଥିମଧ୍ୟରୁ ଅନେକ ୟୁରୋପୀୟାନ୍, ବଡ଼ ଭଲ ମଂତବ୍ୟ ଦେଇଥିଲେ । ସେମାନଂକ ସଂଗେ ଏଥିପାଇଁ ସ୍କୁଲରେ ତଥା ଡାକବଂଗଳାରେ ବହୁତ ଯୁକ୍ତିତର୍କ ଓ ଝଗଡ଼ା ମୋର ହୋଇଯାଇଚି; ମାତ୍ର ଶେଷକୁ ସେଇ ପଦ୍ଧତିରେ ସ୍କୁଲ ଚଳିବା ସିଦ୍ଧ ହେଲା । କେବଳ ବର୍ଷାଦିନ ପାଇଁ ଗୋଟିଏ ବଡ଼ ଚାଳିଆ କରାହେଲେ ବଣରେ ସ୍କୁଲ କରିବାର କୌଣସି ଅସୁବିଧା ନାହିଁ ବୋଲି ସ୍ଥିର ହେଲା ।

୧୯୧୮ ମସିହା ବେଳକୁ, କହିଚି, ସ୍କୁଲ ବସ୍ତୁତଃ ଭାଂଗିଗଲା । ଠିକ୍ ସେତିକି-ବେଳକୁ ବା ତାହାର କିଛିଦିନ ପୂର୍ବରୁ ଗୋପବଂଧୁ ବାବୁଂକ ସଂଗେ ପରାମର୍ଶ କରି ପୁରୀରୁ 'ନୀଳାଚଳ ସମାଚାର' ପ୍ରେସ୍ ସମସ୍ତଟା ସତ୍ୟବାଦୀ ସ୍କୁଲକୁ କିଣିଆଣିଲି । ଗୋପବଂଧୁ ବାବୁଂକ ପାଇଁ ସେଥିନିମଂତେ ଗୋଟିଏ ଘର କିଣିଲି । ସେହିଠାରେ ସେ ଛାପାଖାନାଟି ରହିଲା ।

ସେ ଛାପାଖାନା କିଣାହେବାର ମୂଳରେ ଟିକିଏ ରହସ୍ୟ ଅଛି । ମୁଁ ମାସକୁ ଟ୪୦/ ଗୋଦାବରୀଶ ଟ୧୨୦/ ଓ କୃପାସିଂଧୁ ଟ୫୦/ ଦରମା ନେଉଥିଲୁ । ଯେତେବେଳେ ଇନ୍‌ସପେକ୍ଟର କହିଲେ କୌଣସି ଏକ ନିର୍ଦ୍ଦିଷ୍ଟ ପରିମାଣରେ ଗ୍ରାଜୁଏଟ୍ ଶିକ୍ଷକମାନଂକୁ ଦରମା

ଦେବାକୁ ହେବ (ମନେ ହେଉଛି ତାର ସୀମା ଥିଲା ସେତେବେଳେ ମାସକୁ ପଚାଶରୁ ଅଧିକ) । କେତେବର୍ଷ ପର୍ଯ୍ୟଂତ ଆମମାନଂକ ନାମରେ ମାସକୁ ସେହି ହାରରେ ଖାତାପତ୍ରରେ ପଡ଼ିଲା । କେତେବର୍ଷ ତଳୁ ଏହିପରି ପଡୁଥିଲା, ୧୯୨୦ର ସତ୍ୟବାଦୀ ସ୍କୁଲରୁ ବାହାରିଥିବା ଦୁର୍ଭିକ୍ଷ ରିପୋର୍ଟରେ ପ୍ରକାଶ ପାଇଥିଲା । ଏବେ ସେ ରିପୋର୍ଟ ମୋ ପାଖରେ ନାହିଁ । ୧୯୧୯ରେ ଯେତେବେଳେ 'ସମାଜ' କାଢ଼ିବାର କଳ୍ପନା ହେଲା—ସେତେବେଳେ ଗୋପବଂଧୁ ବାବୁ କଥାକଲେ ଯେ, ପ୍ରେସ୍ ହିସାବ ସ୍କୁଲ ହିସାବରୁ ଅଲଗା କରାଯିବ । କାରଣ ଖବରକାଗଜ ବାହାରିଲେ ସରକାର ଏଥିରେ ଆଖିଦେବେ। ଏସବୁ ବିଚାର କରି ଶେଷକୁ ଗୋପବଂଧୁ ବାବୁଂକ ନାମରେ ପ୍ରେସ୍ ରହିବାର ହେଲା । ତା'ପରେ ଗୋପବଂଧୁ ବାବୁ ଯେତେବେଳେ ୧୯୨୪ର ମଧ୍ୟଭାଗରେ ଜେଲ୍‌ରୁ ଫେରିଲେ ସେତେବେଳକୁ କଟକ ସହରରେ 'ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି'ର ଅଧିବେଶନ ହେଉଥିଲା । ସେଥିରେ ସଭାପତି ହୋଇଥିଲେ ଡକ୍ଟର ପ୍ରଫୁଲ୍ଲଚଂଦ୍ର ରାୟ । ସେ ସଭାପତି ଥାଇ ସେଇଦିନ ଗୋପବଂଧୁ ବାବୁ ଜେଲ୍‌ରୁ ଆସି ପହଂଚିଲେ । ସାର୍ ପି: ସି: ରାୟ ତାଂକୁ ସଂବର୍ଦ୍ଧନା ଜଣେଇବା ଏବେ ମୋର ମନେପଡୁଛି ।

ସେତେବେଳକୁ ସତ୍ୟବାଦୀ ସ୍କୁଲ ନାମକୁ ମାତ୍ର କେତେକ ଛାତ୍ରଂକୁ ଧରି ବ୍ରହ୍ମଚର୍ଯ୍ୟ ଆଶ୍ରମ ପରି ଥାଏ । ସେହିଠାରେ ଅଭ୍ୟର୍ଥନାରେ ସାର୍ ପି: ସି: ରାୟ ଗୋପବଂଧୁ ବାବୁଂକୁ 'ଉତ୍କଳମଣି' ବୋଲି ଡାକିଲେ । ତାହାହିଁ ହେଲା ଗୋପବଂଧୁଂକ 'ଉତ୍କଳମଣି' ଉପାଧିର ଭୂମିକା । ଅବଶ୍ୟ ମତେ ସେତେବେଳେ 'ଉତ୍କଳମଣି' କଥାଟା ସେତେ ଭଲ ଲାଗି ନଥିଲା । ତା' ପୂର୍ବରୁ ଲୋକମାନ୍ୟ ତିଳକ ପ୍ରଭୃତି ନାମ ପାଖେ ଏହି 'ଉତ୍କଳମଣି' କଥାଟା ମତେ ଟିକିଏ ଖରାପ ଲାଗିଥିଲା । ମୁଁ ସେକଥା ଗୋପବଂଧୁ ବାବୁଂକୁ କହିଥିଲି, ''ଆପଣ ଏ ଉପାଧି ନିଅଂତୁ ନାହିଁ । ଏହା ପୂର୍ବରୁ ସତ୍ୟବାଦୀ ସ୍କୁଲକୁ ବହୁତ ବଡ଼ଲୋକ ଆସିଚଂତି । ସାର୍ ଆଶୁତୋଷ, ସାର୍ କୃଷ୍ଣଗୋବିଂଦ ଗୁପ୍ତ ଓ କେତେକ ୟୁରୋପୀୟଂକ ସମେତ ବହୁ ବଡ଼ଲୋକ ଆସିଚଂତି । ଆପଣ ଏ ଉପାଧି ନନେଇ ଅପେକ୍ଷା କରଂତୁ ।'' ସେତେବେଳକୁ ଅବଶ୍ୟ ସତ୍ୟବାଦୀ ସ୍କୁଲରୁ ଆମମାନଂକର ମମତା ଛାଡ଼ିଯାଇଥିଲା । ମୁଁ ସେଇ ମାସ ଚବିଶରେ ହଜାରିବାଗ ଜେଲ୍‌ରେ ଗୋପବଂଧୁ ବାବୁଂକ ସଂଗେ ପରାମର୍ଶ କରିସାରି ଦିଲ୍ଲୀ ଆସେଂବ୍ଲି ପାଇଁ ନିର୍ବାଚିତ ହୋଇସାରିଥିଲି । କାରଣ ଗୋପବଂଧୁ ବାବୁଂକର ମଧ୍ୟ ଜେଲ୍ ଗଲାବେଳକୁ ସତ୍ୟବାଦୀ ସ୍କୁଲରେ ବ୍ରହ୍ମଚର୍ଯ୍ୟ ଆଶ୍ରମ ସେ ନିଜେ ଖୋଲି ମଧ୍ୟ ଏହା ପ୍ରତି ତାଂକର ମମତା ଛାଡ଼ିଯାଇଥିଲା । ଲିଂଗରାଜ ମିଶ୍ର ଏହା ପୂର୍ବରୁ ୧୯୨୧ ସେପ୍‌ଟେଂବରରେ ସରକାରୀ ଚାକିରି ଛାଡ଼ି ସତ୍ୟବାଦୀ ସ୍କୁଲରେ ଯୋଗ ଦେଇଥିଲେ । ତାଂକ ସହିତ ପରାମର୍ଶ କରି ସତ୍ୟବାଦୀ ସ୍କୁଲକୁ ପୁଣି ସରକାରୀ ମଂଜୁରୀପ୍ରାପ୍ତ ସ୍କୁଲରେ ପରିଣତ କରିବା ପାଇଁ ଆମେ ଦୁହେଁ ଲାଗିଥିଲୁ । ସେହି ଉଦ୍ୟମ ଫଳରେ ଏବର ସତ୍ୟବାଦୀ ସ୍କୁଲ ଯାହା ଅଛି ତାହା ଡିରେକ୍ଟର ସି: ଫକ୍‌ସଂକ କାଳରେ ପ୍ରତିଷ୍ଠିତ ହୋଇଥିଲା ।

ଏ ମଧ୍ୟରେ ସେହି ଉତ୍କଳ କଂଗ୍ରେସ କମିଟିର କଟକ ଅଧିବେଶନ ପରେ ଗୋପବଂଧୁ ବାବୁ ହରିଭାଇନାଂକୁ ପଠାଇ ପ୍ରେସ୍‌କୁ ପୁରୀ ନେଇ ଗୋଟିଏ ଭଡ଼ାଘରେ ରଖିଲେ, ତାହାପରେ ପ୍ରେସ୍ କଟକକୁ ଆସିଲା । ଗୋପବଂଧୁ ବାବୁଂକ ମୃତ୍ୟୁବେଳକୁ ପ୍ରେସ୍ କଟକରେ ଥିଲା । ସାପ୍ତାହିକପତ୍ର 'ସମାଜ' ସେଥିରୁ ପ୍ରକାଶ ପାଉଥିଲା । କହିଦିଏଁ—ସେହିଠାରୁ ଗୋପବଂଧୁ

ବାବୁଂକ ମଲା ଉତ୍ତାରୁ କେତେଦିନ ମୁଁ ସମାଜର ସଂପାଦକରୂପେ ସମାଜ ପ୍ରେସ୍‌ରୁ ଅତି ଗୂଢ଼ଭାବରେ ବାହାର କରିଦିଆ ହୋଇଥିଲି । ଗୋପବଂଧୁ ଚୌଧୁରୀ ସେତେବେଳେ ଥାଇ ମଧ କିଛି କହିଲେ ନାଇଁ ।

ମୁଁ ସତ୍ୟବାଦୀ ପ୍ରେସ୍ ପାଇଁ ସତ୍ୟବାଦୀରେ ଯେଉଁ ଘର କିଣିଥିଲି ତାହା କେତେବେଳେ ଗୋପବଂଧୁ ବାବୁ ଏମାରମଠ ମହଂତକୁ ବିକି ଦେଇଥିଲେ—ମୁଁ ଜାଣେ ନାଇଁ ।

## ୧୨୪। 'ନବଭାରତ'—୧୯୩୩

ନବଭାରତ ପ୍ରେସ୍ ମୋ ଜୀବନରେ ଗୋଟିଏ ପ୍ରଧାନ ଘଟଣା । ସତ୍ୟବାଦୀ ସ୍କୁଲରୁ 'ସତ୍ୟବାଦୀ' ମାସିକ ପତ୍ରିକା ବାହାରିଥିଲା । ସେଥିରେ ସମସ୍ତ ସମାଲୋଚନା ଓ କେତେକ ଦୀର୍ଘ ଦୀର୍ଘ ପ୍ରବଂଧ ମୁଁ ଲେଖୁଥିଲି । ଅନେକ ବିଷୟରେ ମଧ୍ୟେ ମଧ୍ୟେ କାଗଜର ସ୍ତଂଭ ପୂରଣ କରିବା ପାଇଁ କବିତା ମଧ ଲେଖୁଥିଲି । ଏହି ମାସିକ ପତ୍ରରୁ ମୋର କେତେଗୁଡ଼ିଏ ପ୍ରବଂଧ ପରେ ସଂକଳନ କରି ସଂବଲପୁରରେ ଥିଲାବେଳେ 'ଆର୍ଯ୍ୟଜୀବନ' ଗ୍ରଂଥଟି ଲେଖିଥିଲି; କିଂତୁ ବିଶେଷରେ ଯେଉଁଦିନ ଗୋପବଂଧୁ ବାବୁଂକ ସଂଗେ ମହାଭାରତ ବିଷୟକ କଥାବାର୍ତ୍ତାରେ ମହାଭାରତରେ କୃଷ୍ଣଂକ କଥା ନଥିଲେ ଚଳିଥାଂତା ବୋଲି କହିଲି ଓ ତା'ପରେ ଗୋପବଂଧୁ ବାବୁ ଟିକିଏ ବିସ୍ମିତ ହୋଇ ରହିଯାଇ ମତେ କହିଲେ, ''ଏପରି କଥା ଆଉ କହିବ ନାଇଁ, ଏଥିରେ ପାପ ହେବ''—ସେହିଦିନଠାରୁ ମୋର ଭକ୍ତି ଧର୍ମ ପ୍ରତି ଆସ୍ଥା ଟିକିଏ କମିଗଲା । ମୁଁ ମନେ ମନେ ଭାବିଲି କୌଣସିମତେ ଜଗତରେ 'ଆତ୍ମା ଅନାତ୍ମା ଧର୍ମ' ପ୍ରଚାର ପାଇଲେ ବ୍ୟକ୍ତିବିଶେଷଂକ ଦ୍ୱାରା ପ୍ରଚାରିତ ଧର୍ମ ଅର୍ଥାତ୍—ଖ୍ରୀଷ୍ଟଧର୍ମ, ବୁଦ୍ଧଧର୍ମ, କୃଷ୍ଣଧର୍ମ ଆଦିରେ ଯଥାର୍ଥ ପ୍ରତିକାର ହୁଅଂତା; କାରଣ ସେଇଦିନ ମୁଁ ଭାବିଲି—କୃଷ୍ଣ, ବୁଦ୍ଧ, ଖ୍ରୀଷ୍ଟ ପ୍ରଭୃତିଂକ ନାମରେ ଧର୍ମ ଠିଆକଲେ ସେ ଧର୍ମ ସମସ୍ତ ମାନବର ଧର୍ମ କଦାପି ହୋଇପାରିବ ନାଇଁ । ସେଥିରେ ଯେଉଁ ଭେଦ ଅଛି, ସେହି ଭେଦ ହିଁ ସର୍ବଦା ବିନାଶରେ ଫୁଟିବ । ଏହାହିଁ ଭାବି ସେହିଦିନଠାରୁ ମନେକଲି ମୁଁ ନିଜେ ଗୋଟିଏ ମାସିକପତ୍ର କାଢ଼ିଲେ ଭଲ ହୁଅଂତା । ଏହି ଭାବ ମନରେ ଥାଏ । ଦିନେ ଦିଲ୍ଲୀରୁ ଆସି କଲିକତାରେ ୧୯୩୩ରେ ପହଂଚିଲି । କଲିକତାରେ ମୋର ଜଣେ ଛାତ୍ର ସେ କାଳର ଯୁବକ ଥିଲେ । ସେ ସତ୍ୟବାଦୀର ପ୍ରଥମ ଶ୍ରେଣୀରୁ (ଏକାଦଶ ଶ୍ରେଣୀ) ଅସହଯୋଗ ଆଂଦୋଳନ ଯୋଗେ ପାଠ ଛାଡ଼ି ଦେଇଥିଲେ । ପରେ ସିଏ ବି.ଏ. ପର୍ଯ୍ୟଂତ ପାଶ୍ କରିଥିଲେ । କଲିକତାରେ ସେ ଭୂୟାଁ ଭାସ୍କର ମହାପାତ୍ରଂକ ପିଲାମାନଂକ ଗୃହଶିକ୍ଷକ ହୋଇଥାଂତି । ମୁଁ କଲିକତାରେ ଆସି ପହଂଚିବାମାତ୍ରେ ସେ ଆଗରୁ ଜାଣି ଆସି ପହଂଚିଲେ । ସେହିଠାରେ ବିଚାର ହୋଇ ଠିକ୍ ହେଲା । ମୁଁ ଗୋଟିଏ ମାସିକପତ୍ର କାଢ଼ିବି ଓ ସେ ସେଥିପାଇଁ କଟକରେ ଆସି ରହିବେ । ସେହି ପତ୍ରଟି ହେଲା ମାସିକ 'ନବଭାରତ' ।

ଏହାପୂର୍ବରୁ ମତେ ସେ କାଳର ଜୟପୁର ମହାରାଜ ବିକ୍ରମ ଦେଓ, ମହାରାଜା ହୋଇ ନଥିଲାବେଳେ ଡାକି ଗୋଟିଏ ମାସିକପତ୍ର କାଢ଼ିବାକୁ କହିଥିଲେ । ମୁଁ ତାଂକ ପାଖରେ ପହଂଚିଲି । ସେ ମୋତେ ପାଂଚହଜାର ଟଂକା ଦେବେ ବୋଲି କହି ତିନିହଜାର ଟଂକା ସାଂଗେ

ସାଂଗେ ଦେଲେ । ସେ ପାଂଚହଜାର ଟଂକା ଦେଇଚଂତି ବୋଲି କାଗଜରେ ପ୍ରାପ୍ତିସ୍ୱୀକାର କରି ଆଉ ଦୁଇହଜାର ଟଂକା କରଜ କରି ମୁଁ କାଗଜ ବାହାର କଲି । ସେ କାଗଜ କଥା କହିବା ଆଉ ଦରକାର ନାହିଁ ।

ଏହି 'ନବଭାରତ' ବାହାରିଥିଲା ୧୯୩୩ ସାଲରେ । ମଝିରେ ମଝିରେ ବ୍ୟତିକ୍ରମ ସହିତ ପ୍ରାୟ ୧୯୪୬ ପର୍ଯ୍ୟଂତ ଏହା ଚଳୁଥିଲା । ୧୯୩୫ ସାଲର ପ୍ରଥମ ସଂଖ୍ୟାରେ ଅର୍ଥାତ୍ ୨ୟ ବର୍ଷର ପ୍ରଥମ ସଂଖ୍ୟାରେ ମୋ ଲିଖିତ 'ବିଧାତାଂକ ସୃଷ୍ଟି' ପ୍ରବଂଧଟି ଅନ୍ୟତ୍ର ଦିଆଯାଇଚି ସେଥିରୁ 'ନବଭାରତ'ର ନୈତିକ ଓ ଆଧାତ୍ମିକ ଆଭିମୁଖ୍ୟ ପ୍ରକାଶ ପାଇବ ।

ଅବଶ୍ୟ ସେତେବେଳେ 'ନବଭାରତ'ର ପ୍ରଥମ ଅବସ୍ଥାରେ ଏ ଯେଉଁ ପ୍ରବଂଧଟି ଦିଆଯାଇଚି ଏଥିରେ ସୂଚନାରେ ମାତ୍ର କଥାଟି କୁହାଯାଇଚି । ପଢ଼ିଲେ ମନେହେବ—ଏ କେବଳ ବିଧାତାଂକ ସଂବଂଧରେ ଧାର୍ମିକମାନେ ଯାହା କହଂତି ତା'ର ଗୋଟିଏ ସମାଲୋଚନା । ଏଥିରେ ଯଥାର୍ଥ ଗଠନମୂଳକ ତତ୍ତ୍ୱଟି ପ୍ରକାଶ ପାଇ ନାହିଁ; ଅର୍ଥାତ୍ ସେହି ଗଠନମୂଳକ (Positive) ତତ୍ତ୍ୱଟି ଏଇ ଭାରତବର୍ଷରେ ଦିନେ ପ୍ରକାଶ ପାଇଥିଲା । ତାହା ଉପନିଷଦରେ ସୂକ୍ଷ୍ମଭାବରେ ଅଛି, ''ଆତ୍ମା ବା ଅରେ, ଶ୍ରୋତବ୍ୟଃ, ମଂତବ୍ୟଃ, ନୀଦିଧାସିତବ୍ୟଃ ।'' ଅର୍ଥାତ୍ ଏହି ସମସ୍ତ ବିଧାତାଂକ ରୂପ ଭିତରେ ଉପନିଷଦ୍ କାଳରେ ଆମ ପୂର୍ବପୁରୁଷମାନେ ଯେଉଁ ଆତ୍ମାକୁ ଉଠି ସେଇ ଆତ୍ମବସ୍ତୁ ବିଷୟରେ ଏହି କଥାଟି କହିଚଂତି—ତାହାର ତୁଳନା ପୃଥିବୀର ଧର୍ମଜଗତରେ ଆଉ ନାହିଁ । ଏହା ଯେପରି ମନେହୁଏ ପ୍ରଥମେ ମିଥିଳାରାଜା ଜନକଂକ ସଭାରେ ଏ ବିଷୟ ନେଇ ଯୁକ୍ତିତର୍କ ହୋଇଥିଲା । ଏହାର ଅର୍ଥ ହେଉଚି—''ଅରେ—ଆତ୍ମା ହେଉଚି ଆଗ ଶୁଣିବାର ଜିନିଷ, ଚିଂତା କରିବାର ଜିନିଷ ଓ ବେଶି କରି ଚିଂତା କରି ବୁଝିବାର ଜିନିଷ ।'' ଏହି ଆତ୍ମାରେ ସ୍ତ୍ରୀ ନାହିଁ, ପୁରୁଷ ନାହିଁ, ଶ୍ରମିକ ନାହିଁ, ମାଲିକ ନାହିଁ, ଧନୀ ନାହିଁ, ଦରିଦ୍ର ନାହିଁ, ଭିକ୍ଷୁକ ନାହିଁ, ଭୃତ୍ତ ନାହିଁ—ଏହିପରି ଜଗତରେ ଯେଉଁସବୁ ବିରୋଧଭାବ ସବୁ ଅଛି—ସେ ସବୁ କିଛି ନାହିଁ । ଏହି ଆତ୍ମାରେ ମନୁଷ୍ୟ ମଧ୍ୟରେ ଭେଦ ନାହିଁ । ଏହି ଆତ୍ମଧର୍ମକୁ ଉଠିଲେ ସମସ୍ତେ ସମାନ ।

ଏବେ ସବୁକ୍ଷେତ୍ରରେ ଯାହା କୁହାଯାଇଚି—ସମସ୍ତ ଉନ୍ନତି ଓ ଅଭିବୃଦ୍ଧି ମଧ୍ୟରେ ନୈତିକ ଓ ଆଧାତ୍ମିକ ଭାବ ଠିକ୍ ରଖ । ତାହା ଏହିପରି ବ୍ୟକ୍ତିପ୍ରଚାରିତ ବା ବ୍ୟକ୍ତିଧର୍ମାତ୍ମକ ଅନୁଷ୍ଠାନରେ କଦାପି ଫୁଟିବ ନାହିଁ । 'ନବଭାରତ' ଏହି ଭାବ ସମସ୍ତ ମାସିକପତ୍ରଟିରେ ଭିନ୍ନ ଭିନ୍ନ ଭାବରେ ସ୍ପଷ୍ଟ ପ୍ରକାଶ କରୁଥିଲା । ଏହି ଚିଂତାଧାରା ମୋର 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ'ରେ ସ୍ପଷ୍ଟ ହୋଇଚି ଓ ତାହା ଅନ୍ୟତ୍ର ଦିଆଯାଇଚି ।

ନାନା ଅଭାବ ଅସୁବିଧାରେ ମାସିକ 'ନବଭାରତ' ଶେଷକୁ ବଂଦ ହୋଇଗଲା । ଗଛଟିଏ ଲଗେଇ ବଢ଼େଇବା କେତେ କଷ୍ଟର କଥା । ବଢ଼ିଲା ଗଛରେ ଚୋଟ ବସିଲେ ଭାରି କଷ୍ଟ ଲାଗେ । ଭେଂଡ଼ିଆ ପୁଅ ମରିଗଲେ ଯେତେ କଷ୍ଟ ତା'ଠାରୁ କୌଣସି ଗୁଣରେ ଏ କଷ୍ଟ କମ୍ ନୁହେଁ । ମୁଁ ଏବେ ବୁଝୁଚି ସାହିତ୍ୟ ପ୍ରୀତି ଓ ନିଷ୍ଠା ନଥିବା ଲୋକଂକୁ ମୁଁ ଗୁରୁଦାୟିତ୍ୱ ଦେଉଥିଲି । ସରସ ସାହିତ୍ୟିକତା ଅଭାବରୁ ଦାୟିତ୍ୱର ଭାର ଗ୍ରହଣ କରୁଥିବା ବହୁଲୋକଂକ ହାତରେ ପତ୍ରପତ୍ରିକାର ଜନ୍ମ ମୃତ୍ୟୁ ମୁଁ ଏବେ ଦେଖି ଦୁଃଖରେ ଦୀର୍ଘଶ୍ୱାସ ପକାଉଚି ।

## ୧୨୫। ମୋର ସାହିତ୍ୟ ସାଧନା (୧୯୩୯-୪୦)

'ଉତ୍କଳ-ସାହିତ୍ୟ-ସମାଜ', କଟକକୁ ଆସିଲାଦିନୁ ଉତ୍କଳ ସାହିତ୍ୟ ସମାଜର ମୁଁ ଜଣେ ବର୍ଷିକିଆ ମେଂବର ହେଉଥିଲି । ମଧ୍ୟେ ମଧ୍ୟେ ସାହିତ୍ୟ ସମାଜର ଆମଂତ୍ରଣକ୍ରମେ ପ୍ରବଂଧମାନ ପଢୁଥାଏ । ପ୍ରାୟ ୧୯୩୯-୪୦ ପର୍ଯ୍ୟଂତ ଏହିପରି ଚାଲିଲା । ସେତିକିବେଳେ ମୁଁ ଗୋଟିଏ ପ୍ରବଂଧ ପଢ଼ିଲି । ସେଉଟି ହେଉଚି 'ସତୀତ୍ୱ ଓ ନାରୀ' । ସେ ପ୍ରବଂଧଟି ବଡ଼ ଦୀର୍ଘ ହୋଇଥିଲା ଓ ଅନେକ ଲୋକଂକ ମନକୁ ଖୁବ୍ ଘେନିଲା । ସେହି ସମୟରେ ମତେ ସାହିତ୍ୟ ସମାଜର ବରେଣ୍ୟ ମେଂବର କରିଦେଲେ । ବରେଣ୍ୟ ମେଂବର ହେବାର ଅର୍ଥ ଆଉ ବର୍ଷକୁ ବର୍ଷ ଦୁଇଟଂକା ମେଂବର ଫିସ୍ ଦେବାକୁ ହୁଏ ନାହିଁ ଓ ଚିରକାଳ ମେଂବର ହୋଇ ରହଂତି । ମୋ ସଂଗେ ଆଉ ଜଣେ ବରେଣ୍ୟ ମେଂବର ହୋଇଥିଲେ । ସେ ହେଉଟଂତି ଶ୍ରୀ ଯୋଗେଶ-ଚଂଦ୍ର ରାୟ ବିଦ୍ୟାନିଧି । ଆଉ ଜଣେ ଜୟପୁରର ମହାରାଜା ବିକ୍ରମଦେବ ।

ତା'ପରେ ମୁଁ ଆଉ ନିମଂତ୍ରଣମାନଂକରେ ପ୍ରାୟ ସାହିତ୍ୟ ସମାଜକୁ ଯାଇ ନାହିଁ । ୧୯୫୮ ମସିହା ବେଳକୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ବୋଲି ଗୋଟିଏ ଅନୁଷ୍ଠାନ ଭୁବନେଶ୍ୱରରେ ଖୋଲାଗଲା । ସେଥିରେ ବର୍ଷକୁ ଲକ୍ଷେ ଟଂକା ସାହିତ୍ୟ ପାଇଁ ଖର୍ଚ୍ଚ ହେବାର କଥା ହେଲା । ମୁଁ ସେତେବେଳକୁ ନୂଆ ହୋଇ ବିଧାନସଭାର ବାଚସ୍ପତି ହୋଇଥାଏ । ଶ୍ରୀଯୁକ୍ତ ଲିଂଗରାଜ ପାଣିଗ୍ରାହୀ ସେତେବେଳେ ଘରୋଇ ମଂତ୍ରୀ ଥାଂତି । ସେ ପ୍ରଥମେ ବଡ଼ ଉତ୍ସାହରେ ମତେ ଡାକି ପାଂଚବର୍ଷ ପାଇଁ ସାହିତ୍ୟ ଏକାଡ଼େମୀର ସଭାପତି କରିବେ ବୋଲି କହିଥିଲେ ଓ ପ୍ରଥମ ବର୍ଷ କରିଦେଲେ । ମାତ୍ର କିଛିଦିନ ପରେ କାହିଁକି କେଜାଣି ତାଂକ ମନରେ ହେଲା—ସେ ବର୍ଷକରୁ ଜଣକୁ ଆଉ ଅଧିକ ସମୟ ସଭାପତି କରିବେ ନାହିଁ । ସେ ବର୍ଷକ ପାଇଁ ମୁଁ ସଭାପତି ରହିଲି । ତା'ପରେ ସେଇ ସାହିତ୍ୟ ଏକାଡ଼େମୀ ସଂବଂଧରେ ମୁଁ ଆଉ କିଛି ଖବର ରଖି ନାହିଁ ।

## ୧୨୬। ମୋର ରାଜନୈତିକ ଜୀବନ (୨ୟ ପର୍ଯ୍ୟାୟ)

**ଗୋଦାବରୀଶ**—ଗୋଟିଏ ବିଶିଷ୍ଟ କଥା ଲେଖିବାକୁ ମନ ନହେଲେ ମଧ ଲେଖିବାକୁ ବାଧ ହେଉଚି । ସେ ବିଷୟଟି ସ୍ୱର୍ଗତ ପଂଡ଼ିତ ଗୋଦାବରୀଶ ଓ ମୋ ସଂପର୍କ ବିଷୟରେ । ତାଂକ ସଂଗେ ମୋର ଜୀବନରେ ଅଂତରଂଗ ସଂପର୍କ ଥିଲା । ପୁରୀ ଜିଲା ସ୍କୁଲରେ (ହେଡ୍‌ମାଷ୍ଟର) ଚଂଦ୍ରମୋହନବାବୁ ମୋତେ ଯେତେବେଳେ ବୋଡ଼ିଂର ମନିଟର୍ କରିଦେଲେ ଗୋଦାବରୀଶ ସେତେବେଳେ ମୋର ତଳ କ୍ଲାସ୍‌ରେ ପଢୁଥିଲେ । ଚଂଦ୍ରମୋହନ ବାବୁ ଗୋଦାବରୀଶଂକୁ ମୋର ସାକ୍ଷାତ ତତ୍ତ୍ୱାବଧାନରେ ରଖି ଦେଇଥିଲେ । ସେତିକିବେଳର ବହୁ ସ୍ମୃତି ମୋର ମନେଅଛି । କଲିକତାର ଶ୍ରୀ ଶଶିଭୂଷଣ ରାୟ ଚୌଧୁରୀଂକ ସହିତ ମୋର ପରିଚୟ ଥିଲା । ମୁଁ ଗୋଦାବରୀଶଂକୁ ସେହି ମହାଶୟଂକ ସହିତ ପରିଚୟ କରାଇ ବଡ଼

କୃତିତ୍ୱ ଅର୍ଜନ କରିଥିଲି ବୋଲି ମୋର ଆଜି ମନେହେଉଚି । ଶଶିଭୂଷଣ ବାବୁ ଜଣେ ପ୍ରଧାନ ବିପ୍ଲବୀ ନେତା ଥିଲେ; କିଂତୁ ବିପ୍ଲବୀ ନେତାଂକ କ୍ରିୟାକଳାପ ମଧ୍ୟରେ ଛାତ୍ରମାନଂକ ଆଚରଣ ପ୍ରତି ଦୃଷ୍ଟି ରଖିବା ତାଂକର ପ୍ରଧାନ କାର୍ଯ୍ୟ ଥିଲା । ସେହି ହିସାବରେ ଗୋଦାବରୀଶଂକୁ ତାଂକ ମାର୍ଫତରେ ଦେଇ ମୁଁ ବହୁ ପରିମାଣରେ ନିଶ୍ଚିଂତ ହୋଇଥିଲି । ଏଣେ ଚଂଦ୍ରମୋହନ ବାବୁ ମୋତେ ଅତ୍ୟଂତ ଶ୍ରଦ୍ଧା ଓ ବିଶ୍ୱାସ କରୁଥିଲେ । ପୁରୀ ସତ୍ୟବାଦୀ ସ୍କୁଲ ପରିକଳ୍ପନା ସେକାଳକୁ ମଧ୍ୟ ଆମମାନଂକ ମଧ୍ୟରେ ଖେଳୁଥିଲା । ସେହି ଗୋଦାବରୀଶଂକୁ ସତ୍ୟବାଦୀ ସ୍କୁଲର ଜଣେ ଶିକ୍ଷକ ରୂପେ ତିଆରି କରିବା ପାଇଁ ବଡ଼ ଆଗ୍ରହ ବି ଥିଲା । କେବଳ ସେତିକି ନୁହେଁ, ପିଲାଦିନୁ ଏଇ ସତ୍ୟବାଦୀ ସ୍କୁଲପାଇଁ ମୁଁ ମୋର ବାଲ୍ୟବଂଧୁମାନଂକୁ ବାଛି ବାଛି ସେମାନଂକ ଘରକୁ ଯାଇ ନିମନ୍ତ୍ରଣ କରୁଥିଲି । ସେମାନଂକ ମଧ୍ୟରୁ ଜଣେ ଥିଲେ ସ୍ୱର୍ଗତ କୃପାସିଂଧୁ ମିଶ୍ର । ସେ ଏମ୍.ଏ. ପାସ୍ କରି ପ୍ରାୟ ୧୯୧୬ରେ ସତ୍ୟବାଦୀରେ ଶିକ୍ଷକ ରୂପେ ଯୋଗ ଦେଇଥିଲେ । ଆଉ ଜଣେ ଥିଲେ ସ୍ୱର୍ଗତ କବି ପଦ୍ମଚରଣ ପଟ୍ଟନାୟକ । ପଦ୍ମଚରଣ ଓ ସ୍ୱର୍ଗତ ଜଗନ୍ନାଥ ମହାପାତ୍ର ମୋର ସହପାଠୀ ଥିଲେ । ସେ ଦୁହିଂକୁ ବହୁତ ବୁଝାଇବା ପରେ ମଧ୍ୟ ସେ ସତ୍ୟବାଦୀ ସ୍କୁଲକୁ ଆସିବାକୁ ମନାକଲେ । ଏହିପରି କେତେ ଲୋକଂକ ପାଖକୁ ଯିବାକୁ ହୋଇଥିଲା । ସେ ସବୁଥିରେ ଗୋପବଂଧୁ ବାବୁଂକର ପ୍ରେରଣା ଥାଏ, କିଂତୁ ସାକ୍ଷାତ ପ୍ରେରଣା ଏସବୁ ବ୍ୟକ୍ତିଗତ କ୍ଷେତ୍ରରେ ଥିବାର ମନେ ହେଉନାହିଁ ।

ଗୋଦାବରୀଶ ନିଜ ଜୀବନରେ ମୋତେ ବହୁ ଭଲ ଭାବରେ ଲେଖିଚଂତି, କିଂତୁ ତାଂକ ଜୀବନୀ ବାହାରିବାରୁ ମୁଁ ଗୋଟିଏ କଥା ଜାଣି ବଡ଼ ବିସ୍ମିତ ହେଲି । ସେହି ସଂବଂଧରେ ବହୁତ କଥା ଏବେ ମୋର ମନେ ପଡୁଚି । ମୋଟକଥା, ସେ ଚକ୍ରଧରପୁର ଯିବାପରେ ସତ୍ୟବାଦୀ ସ୍କୁଲରୁ ଏକରକମ ସବୁ ସଂପର୍କ ତୁଟାଇ ଦେଲେ । ଏଥିଯୋଗେ ସେ ବରାବର ଲେଖିଚଂତି ମାସିକ ତିରିଶ ଟଂକାରେ ସତ୍ୟବାଦୀରେ ସେ ଅତି ଦୀନ ଭାବରେ ଚାକିରି କରୁଥିଲେ । ବସ୍ତୁତଃ ଏଇ ଟଂକା ପଇସା ପ୍ରଶ୍ନ ସତ୍ୟବାଦୀରେ ଆଦୌ ନଥିଲା । ସେଥିପାଇଁ ମୋର ମନେହେଉଚି ଗୋପବଂଧୁ ବାବୁ ଥରେ ଦୁଃଖିତ ହୋଇ କହିଥିଲେ—''ତୁଂଭେମାନେ ଟଂକା ବେଶି ନିଅ କି କମ୍ ନିଅ, କିଂତୁ ସତ୍ୟବାଦୀ ସ୍କୁଲରେ ରହି ଗୋଟିଏ ଭାବିବାର କଥା, ତୁମମାନଂକର ମାନସିକ ଦୀନତା ଜମିନାଇ । ଟଂକା ଅଳ୍ପ ପାଇଲେ କିଂବା ଭଲ କରି ନଖାଇଲେ ଦୀନତା ଆସି ନଥାଏ । ତାହା ଏକ ମନୋବୃତ୍ତି ।''

ପୁରୀ ଜିଲାବୋର୍ଡ଼ର ଚେୟାରମ୍ୟାନ ହେବାକୁ ଗୋଦାବରୀଶ ସେତେବେଳେ ଚେଷ୍ଟା କରୁଥାଂତି । ଗୋପବଂଧୁବାବୁ ମୋତେ, ବନମାଳୀ ଦାସଂକୁ ଓ ଅନ୍ୟ କେତେକଂକୁ ଡାକି ଥରେ କହିଥିଲେ—''ଯେଉଁଠାରେ ଟଂକା ପଇସାର ସଂପର୍କ ଥିବ, ସେଠାରେ ଗୋଦାବରୀଶକୁ ରଖିବ ନାହିଁ ।'' ଏକଥା ବଡ଼ ବିରକ୍ତ ହୋଇ ସେ କହିଥିଲେ । ଏବେ ଜୀବନୀ ପଢ଼ି ମୁଁ ଜାଣୁଛି ଗୋଦାବରୀଶ ଚକ୍ରଧରପୁରରୁ ଫେରିବା ପରେ ସତ୍ୟବାଦୀରୁ ସମସ୍ତ ସଂପର୍କ ତୁଟାଇ ଭୁବନାନଂଦ ଓ ବିଚିତ୍ରାନଂଦବାବୁଂକୁ ଧରି ସେକାଳର ସରକାରଂକ ସଂଗେ ସହଯୋଗ କରି ବାଣପୁରରେ Co-operative Bank ତିଆରି କଲେ । ସେଠାରେ ସେ ଭୁବନାନଂଦ ବାବୁଂକ ସହିତ ରହି ଅତି ବଡ଼ଲୋକ ପରି ଖର୍ଚ୍ଚକରି ଚଳିବାରେ ଲାଗିଲେ । ଅଥଚ ଭୁବନାନଂଦବାବୁ ପ୍ରଭୃତିଂକର ସେତେବେଳେ ଅତି ମୂଳରୁ ସତ୍ୟବାଦୀ ବିଦ୍ୟାଳୟ ସଂବଂଧରେ ଯେଉଁ ମତ ଓ

ପ୍ରତିକ୍ରିୟା ତାହା କହିବା ଦରକାର ନାହିଁ । ବିଶେଷତଃ ମୋ ପ୍ରତି ଭୁବନାନନ୍ଦ ବାବୁଙ୍କର ମନୋବୃତ୍ତି ଥରେ ସ୍ପଷ୍ଟ ଫୁଟି ପଡ଼ିଥିଲା । ମୁଁ ଏବଂ ମୋ ଭାରିଯା ୧୯୩୩-୩୪ରେ ଜେଲ୍‌ରେ ପ୍ରଥମଶ୍ରେଣୀ କଏଦୀ ଥିବାରୁ ଭୁବନାନନ୍ଦ ବାବୁ Central Assemblyରେ ମୋ ଅନୁପସ୍ଥିତିରେ ଘୋର ଆପତ୍ତି କରିଥିଲେ । କାରଣ ଆମ ବ୍ୟତୀତ ଅନ୍ୟମାନେ 'ବି' ଓ 'ସି' କ୍ଲାସ୍ କଏଦୀ ଥିଲେ । ବର୍ତ୍ତମାନ ମେମ୍ବର ଅମରନାଥ ଦତ୍ତ କହିଲେ—''ତୁମର ଓ ନୀଳକଣ୍ଠ ବାବୁଙ୍କ ସମ୍ପର୍କ ବିଷୟରେ ଆମେ କ'ଣ ଜାଣିନୁ ?'' ଭୁବନାନନ୍ଦବାବୁ ଆଉ କିଛି କହିଲେନି । ଆସେମ୍ବ୍ଲି ବିବରଣୀ ଦେଖିଲେ ସେସବୁ ମିଳିବ । ଏହି ଟଙ୍କା କରିବା ଓ ଖର୍ଚ୍ଚ କରିବା ଫଳରେ ଗୋପବନ୍ଧୁ ବାବୁ ବଞ୍ଚିଥାଇ ମଧ୍ୟ ଗୋଦାବରୀଶ ହାଇକୋର୍ଟ ପର୍ଯ୍ୟନ୍ତ ଓକିଲ ବିଚିତ୍ରାନନ୍ଦ ବାବୁଙ୍କୁ ଧରି ଫୌଜଦାରୀ ମକଦ୍ଦମାରେ ଲଢ଼ି ହଇରାଣ ହୋଇଥିଲେ । ୧୯୨୯ ବେଳକୁ ଗୋପବନ୍ଧୁବାବୁ ଜୀବନରେ ନଥିଲେ । ତା'ପରେ ଗୋଦାବରୀଶ ମତେ ରାଜନୀତିରେ ବଡ଼ କରି ଧରିଲେ; କିନ୍ତୁ ମୁଁ ଆଜି ଭାବୁଚି ମୋର ଗୋଦାବରୀଶଙ୍କ ପ୍ରତି ଯେଉଁ ସ୍ନେହ ଓ ଆନ୍ତରିକତା ଥିଲା ଗୋଦାବରୀଶଙ୍କର ବୋଧହୁଏ ମୋ ପ୍ରତି ସେତିକି ନଥିଲା । ଗୋପବନ୍ଧୁବାବୁଙ୍କ ପରେ ମୁଁ ସତ୍ୟବାଦୀ ଦଳରେ ମୁଖ୍ୟ ହୋଇ ରହିଲି । ସେଥିପାଇଁ ଯାହାସବୁ ବିରୋଧ ଓ ନିର୍ଯ୍ୟାତନା ମତେ ସହିବାକୁ ପଡ଼ିଚି, ତାହା ଆଉ ବିଶେଷ କହିବା ଦରକାର ନାହିଁ । ଏହି ସମୟଗୁଡ଼ିକରେ ରାଜନୈତିକ ଆନ୍ଦୋଳନ ସହିତ ସମାନ୍ତର ଭାବରେ ସାହିତ୍ୟ ଲେଖାଲେଖିରେ ମନୋନିବେଶ କଲି । ଏହିପରି ଲେଖା ମୁଁ ପ୍ରଥମ ଜେଲ୍ କାଳରୁ ଆରମ୍ଭ କରିଥିଲି । Tennyson—Enoch Ardenର ସରଳ ଓଡ଼ିଆ ଅନୁବାଦ ହଜାରିବାଗ୍ ଜେଲ୍‌ରେ ଥିଲାବେଳେ କରି—'ଦାସନାଏକ' ନାମରେ ଛପାଇଥିଲି । ଜେଲ୍‌ର ନୀରସ ଦିନଗୁଡ଼ିକ କଟେଇବା ପାଇଁ ଏହାଠାରୁ ବଳି ଆଉ ସୁଖକର କାମ ଆଉ କିଛି ଅଛି ବୋଲି ମୋର ମନେ ହେଉନି ।

## ୧୨୭। ମନ୍ତ୍ରିମଣ୍ଡଳ

ଗୋପବନ୍ଧୁବାବୁ ମଲାପରେ ମୁଁ ଗୋଦାବରୀଶଙ୍କୁ ବଡ଼ ସ୍ନେହ କରୁଥିଲି । ତାଙ୍କ ପାଇଁ ଯେତେ ଯେତେ କାର୍ଯ୍ୟ କରିଚି, ତାହା ଆଜି ମନେକରି କହିବା ଦୁଷ୍କର । ତେବେ ଟିକେ ଟିକେ ସେସବୁ କଥା କହିଦିଏ । ସୁଭାଷ ବୋଷ ଓଡ଼ିଶାକୁ ଆସିବା କଥା । ସେତେବେଳେ ମୁଁ ଥିଲି ଉତ୍କଳ କଂଗ୍ରେସର ସଭାପତି । ଏହା ୧୯୩୯ ମସିହାର କଥା, ଠିକ୍ ଦ୍ୱିତୀୟ ପୃଥିବୀ ମହାଯୁଦ୍ଧର ଆସନ୍ନ କାଳ । ସୁଭାଷ ବୋଷ ନିଜ ୩୮/୨ ଏଲିଗିନ୍‌ରୋଡ୍ ଘରକୁ ଆମକୁ ଡକାଇଥିଲେ । ଯଦୁମଣି ମଙ୍ଗରାଜ, ମୁଁ ଓ ଗୋଦାବରୀଶ ଯାଇଥିଲୁ । ଅନେକ ସମୟ କଥାବାର୍ତ୍ତା ହେବାପରେ ସେ କହିଲେ—''ଏ ମହାଯୁଦ୍ଧରେ ଜାପାନ ଜିଣିବାର ଖୁବ୍ ସମ୍ଭାବନା ଅଛି । ସେତେବେଳକୁ ଅନ୍ତତଃ ବଙ୍ଗ, ଓଡ଼ିଶା, ବିହାର ଓ ଆସାମ—ଏହି ଚାରିପ୍ରଦେଶର ରାଜତ୍ୱ ଆମ ଲୋକଙ୍କ ହାତରେ ଥିବା ଦରକାର । ମୁଁ ସେଥିପାଇଁ ଆସାମରେ ଶ୍ରୀଯୁକ୍ତ ବର୍ଦ୍ଦୋଲାଇ ଓ ମୁସଲମାନ ନେତାଙ୍କୁ (ବୋଧହୁଏ ଫକ୍‌ରୁଦ୍ଦିନ୍) ଧରି ମନ୍ତ୍ରିମଣ୍ଡଳ ଗଢ଼ିବାର ବ୍ୟବସ୍ଥା କରିଚି । ବଙ୍ଗଳାରେ ଶରତ ବୋଷ ଓ ଫଜଲ୍‌ହକ୍—ଏ ଦୁହିଁଙ୍କୁ ଧରି ମନ୍ତ୍ରିମଣ୍ଡଳ ଗଢ଼ାହେବ । ମୁଁ ବିହାରରେ ମଧ୍ୟ ଏହିପରି ଗୋଟିଏ ମନ୍ତ୍ରିମଣ୍ଡଳ ଗଢ଼ିବାକୁ ଯାଉଚି ।

ଓଡ଼ିଶାରେ ତୁମେମାନେ ଯାଇ ମଂତ୍ରିମଂଡ଼ଳ ଗଢ଼ । ସେଥିପାଇଁ ଗୋଦାବରୀଶ ଓ ଯଦୁମଣି ମଂଗରାଜ ଯାଆଂତୁ । ନୀଳକଂଠ ଦାସ ଫରୱାର୍ଡ଼ ବ୍ଲକ୍ ତରଫରୁ କାର୍ଯ୍ୟକାରୀ କମିଟିକୁ ଯାଆଂତୁ ।'' ଶେଷକୁ ଗୋଦାବରୀଶ ଓ ଯଦୁମଣି ଉତ୍ତର ଦେଲେ—''ନୀଳକଂଠ ବାବୁ ନଗଲେ ଆମେ ଏ କାମ ତୁଲାଇ ପାରିବୁ ନାଇ ।'' ସେହି ଏଲିଗିନ୍‌ରୋଡ୍‌ର ଘରୁ ଗଂଜାମର ଦିବାକର ପଟ୍ଟନାୟକଂକ ପାଖୁ ଟେଲିଗ୍ରାମ୍ କରାଗଲା । ସେ ଦୁଇଦିନ ପରେ କଲିକତାରେ ପହଂଚି ଫରୱାର୍ଡ଼ ବ୍ଲକ୍‌ର କାର୍ଯ୍ୟକାରୀ କମିଟିକୁ ଗଲେ ଓ ଆଂଭେମାନେ ମଂତ୍ରିମଂଡ଼ଳ ଗଢ଼ିବାକୁ ଓଡ଼ିଶାକୁ ଆସିଲୁ ।

ଏହି ମଂତ୍ରିମଂଡ଼ଳରେ ଗୋଦାବରୀଶ, ପାରଳାଖେମଂଡ଼ିର ମହାରାଜା ଓ ଓଡ଼ିଶା ମୁସ୍‌ଲିମ୍ ଲିଗ୍‌ର ପ୍ରେସିଡ଼େଂଟ ଶୋଭାନ ଖାଁ ଥିଲେ । ଏଠାରେ କହିରଖେ, ଗୋଦାବରୀଶଂକୁ ଲୁଇସ୍ ସାହେବ ମଂତ୍ରିମଂଡ଼ଳରେ ରଖିବାରେ ଅନିଚ୍ଛା ପ୍ରକାଶ କରିଥିଲେ; କିଂତୁ ମୁଁ ମହାରାଜାଂକ ହାତରେ କୁହାଇଦେଲି, ଆପଣ ଏପରି କଲେ ମଂତ୍ରିମଂଡ଼ଳ ଗଠିତ ହେଇପାରିବନି ।'' ତେଣୁ ଲୁଇସ୍ ସାହେବ ବାଧହୋଇ ମଂତ୍ରିମଂଡ଼ଳ ଗଢ଼ିଦେଲେ ।

ତା'ପରେ ଗୋଦାବରୀଶ ୧୯୫୧ ନିର୍ବାଚନରେ ବାଣପୁରରୁ ଆସେଂବ୍ଲିକୁ ନିର୍ବାଚିତ ହେଲେ । ମୁଁ ମଧ ‘ସ୍ୱାଧୀନ ଜନସଂଘ’ ସଭ୍ୟ ଭାବରେ ଆସେଂବ୍ଲିକୁ ଆସିଲି । କିଂତୁ ସେ ପ୍ରଥମେ ‘କୃଷକ’ କାଗଜରେ ନିଜକୁ ‘ପ୍ରଜା ସୋସାଲିଷ୍ଟ’ ଦଳର ନେତା ବୋଲି ପ୍ରଚାର କରାଇଲେ । ମୁଁ ପଚାରିଲି—''ଏ କି କଥା ?'' ସେ ହସି ହସି କହିଲେ—''ମୁଁ ଏସବୁ କିଛି ଜାଣେନାଇଁ ।''

ମୋତେ କଂଗ୍ରେସରେ ଯୋଗଦେବାକୁ ଜହରଲାଲ ଚିଠି ଦେବେ ବୋଲି ନବକୃଷ୍ଣ ଚୌଧୁରୀଂକଠାରୁ ଜାଣି ଗୋଦାବରୀଶଂକୁ ତାଂକ ମତ ପଚାରିଲି । ସେ ମଧ କଂଗ୍ରେସରେ ଯୋଗଦେବେ ବୋଲି କଥା କଲେ; କିଂତୁ ମୁଁ ଯେଉଁଦିନ ଜହରଲାଲଂକ ଠାରୁ ଚିଠିପାଇ କଂଗ୍ରେସରେ ଯୋଗଦେଲି, ସେ ଆଉ କଂଗ୍ରେସରେ ଯୋଗ ନଦେଇ ଗଣତନ୍ତ୍ର ଦଳରେ ଯୋଗଦେଲେ ।

ତା'ପରେ ଗୋଦାବରୀଶ ଗଣତନ୍ତ୍ର ଦଳର ସଭାପତି ହେଲେ । ମୁଁ କାଗଜରୁ ଏହା ପଢ଼ି ଆଉ କିଛି କହିଲି ନାଇଁ ।

ତଥାପି କହିରଖେ—ଏ ସବୁ ସତ୍ତ୍ୱେ ଗୋଦାବରୀଶଂକ ସଂଗେ ମୋର ଯେଉଁ ଅଂତରଂଗ ସଂପର୍କ ଥିଲା, ସେଥିରେ କୌଣସି ବାଧା ପଡ଼ି ନଥିଲା । ସେ ମରିବା ପର୍ଯ୍ୟଂତ ତାଂକ ରୋଗଶଯ୍ୟା ପାଖେ ମୁଁ ମଧେ ମଧେ ଯାଇ ବରାବର ଦେଖାଚାହାଁ କରୁଥିଲି । ଯେଉଁମାନେ ଦେଖିଚଂତି ସେମାନେ ସେତେବେଳେ ମୋର ଦୁର୍ବଳତା ଦେଖିଥିବେ । ଗୋଦାବରୀଶ ଗୋଟିଏ ଲୋକ ଯାହାଂକୁ କି ମୁଁ ଆଂତରିକ ସୁଖ ପାଉଥିଲି । ମୁଁ ତାଂକ ପ୍ରତି ଅତି ଆସକ୍ତ ଓ ଅନୁରକ୍ତ ଥିଲି । ସେ ମଧ ମରିବା ପୂର୍ବରୁ କୌଣସି କୌଣସି ବଂଧୁଂକୁ କହିଥିଲେ—''ନୀଳକଂଠ ଦାସଂକର ମୋ ପ୍ରତି କରୁଣା ତ ସେହିପରି ଅଛି ।''

## ୧୨୮। ପ୍ରଥମ ନିର୍ବାଚନ (୧୯୩୭)

ଯେତେବେଳେ ଓଡ଼ିଶାରେ ପ୍ରଥମେ ମଂତ୍ରିମଂଡ଼ଳ ଗଠିତ ହେଲା ସେ ହେବ ୧୯୩୮ ମସିହା କଥା । ମୁଁ ସେତେବେଳେ ଉତ୍କଳ ପ୍ରାଦେଶିକ କଂଗ୍ରେସର ସଭାପତି ଥିଲି । ମୋରି ଉଦ୍ୟମରେ ଓଡ଼ିଶାରେ କଂଗ୍ରେସ ଅଧିକ ସଂଖ୍ୟାରେ ବିଧାନସଭାକୁ ନିର୍ବାଚିତ ହେଲା । ୬୦ଟି ଆସନରୁ ୩୬ଟି କଂଗ୍ରେସ ପାଇଲେ । ଏହି ୩୬ଜଣ କଂଗ୍ରେସ ସଭ୍ୟଂକ ମଧ୍ୟରୁ ୨୦ଜଣ ମତେ ଦଳର ନେତା ନିର୍ବାଚିତ କରିବାର ଇଚ୍ଛା ପ୍ରକାଶ କରିଥିଲେ । ମୁଁ ନିଜେ ଆସେଂବ୍ଲିକୁ ଠିଆହେଲେ, ଅନ୍ୟମାନଂକୁ ନିର୍ବାଚିତ କରାଇବାର ଅସୁବିଧା ହେବ ବୋଲି ମୁଁ ଠିଆ ହୋଇ ନଥିଲି । ଦଳର ନେତା ନିର୍ବାଚିତ ହୋଇ ମୁଁ କେଂଦ୍ରରୁ ଇସ୍ତଫାଦେଇ ପ୍ରଦେଶ ଆସେଂବ୍ଲିକୁ ପୁଣି ଠିଆହେବା କଥା ହେଲା । ମାତ୍ର ଏଇ ସମୟରେ ନିର୍ବାଚିତ ସଭ୍ୟମାନଂକ ମଧ୍ୟରୁ କେତେ ଜଣ ଗୋଟିଏ ଚକ୍ରାଂତ ଆରଂଭ କରିଦେଲେ । ସ୍ୱାମୀ ବିଚିତ୍ରାନଂଦଂକୁ ଧରି ଆସେଂବ୍ଲି ଦଳର ଗୋଟିଏ ରୁଲ୍ କମିଟି ହେଲା । ସେଇ କମିଟିରେ ରୁଲ୍ କରିଦିଆଗଲା ଯେ ଆସେଂବ୍ଲି ଦଳ ବାହାରୁ କେହି ଦଳର ନେତା ହୋଇ ପାରିବେ ନାଇ । ସେ ଚକ୍ରାଂତ ଓଡ଼ିଶା ରାଜନୀତିରେ ଗୋଟିଏ ଅଂଶ; ତେଣୁ ସେ ବିଷୟ ଅଧିକ କହିବା ଦରକାର ନାହିଁ । ୩୬ଜଣ କଂଗ୍ରେସ ସଭ୍ୟରୁ ୨୧ଜଣଂକ ସମର୍ଥନ ଥାଇ ମଧ୍ୟ ମୁଁ ନେତା ନିର୍ବାଚିତ ହୋଇପାରିଲି ନାହିଁ । ମୋର ସମର୍ଥକମାନେ କିଂକର୍ତ୍ତବ୍ୟବିମୂଢ଼ ହୋଇ ଏଇ ୨୦ଟି ଭୋଟ ବିଶ୍ୱନାଥ ଦାସଂକୁ ଦେଇଦେଲେ । ସେ ନେତା ହେଲେ; କିଂତୁ ତାଂକ ସହିତ କଥା ହେଲା ଯେ ସେ ରୁଲ୍ ବଦଳାଇ ମୋତେ ପ୍ରଧାନମନ୍ତ୍ରୀ କରି ଆଣିବେ ଓ ନିଜେ ଜଣେ ମନ୍ତ୍ରୀ ହେବେ ମାତ୍ର ନିର୍ବାଚିତ ହେଲାପରେ ଏପରି କଥା ତାଂକର ମନେ ରହିଲା ନାହିଁ । ଯେଉଁ ଚକ୍ରାଂତ ଫଳରେ ମୁଁ ପ୍ରଧାନମନ୍ତ୍ରୀ ହୋଇପାରିଲି ନାହିଁ, ବିଶ୍ୱନାଥ ଦାସ ନିର୍ବାଚିତ ହେବା ପରେ ପରେ, ସେଇ ଚକ୍ରାଂତର ଗୋଟିଏ ଅଂଶ ହୋଇଗଲେ । ମୁଁ ଏକଥା ସେତେବେଳର ପାର୍ଲାମେଂଟାରୀ କମିଟିର ସଭାପତି ବଲ୍ଲଭଭାଇ ପଟେଲଂକୁ କହିବାରୁ ସେ କହିଲେ, ''ତୁମେ କେଡ଼େ ବୋକା, ତୁମେ କଣ ଜାଣି ନଥିଲ ଯେ ପ୍ରଦେଶରେ ମନ୍ତ୍ରୀତ୍ୱ ନେବାପାଇଁ ଏ ନିର୍ବାଚନ ହେଉଚି ।''

ଖାଲି ସେତିକି ନୁହେଁ ବିଶ୍ୱନାଥ ମଂତ୍ରିମଂଡ଼ଳ ହେବା ପରେ ପରେ ସେ ମଂତ୍ରିମଂଡ଼ଳର ମୋ ଉପରେ କୋପ ଦୃଷ୍ଟି ପଡ଼ିଲା ଓ ମୋ ଉପରେ ନାନା ନିର୍ଯ୍ୟାତନା ଆରଂଭ ହେଲା । ଅନ୍ୟାନ୍ୟ କଥା ମଧ୍ୟରେ ସେତିକିବେଳେ ଓଡ଼ିଶାର ପୋଲିସ୍ ମଂନ୍ତ୍ରୀଂକ ଇଂଗିତରେ ମୋର କେତେକ ଲୋକଂକ ନାମରେ ମିଥ୍ୟାରେ ଏକ Rioting Case କରି ମୋ ଲୋକମାନଂକୁ ପୋଲିସ୍ ଷ୍ଟେସନ୍‌କୁ ଡାକି ପୁରୀକୁ ଚାଲାଣ କରାଗଲା । ମୋ ଭାରିଜା ଘରେ ଏହା ଶୁଣିପାରି ପୋଲିସ୍ ଷ୍ଟେସନ୍‌କୁ ଆସିଲେ । ସେ ପୋଲିସ୍ ଇନିସ୍‌ପେକ୍ଟରଂକୁ କହିଲେ—''ମୋଠାରୁ ଖର୍ଚ୍ଚ ନେଇ ଏମାନଂକୁ ଖାଇବାକୁ ଦିଅ ଓ ରେଳରେ ପଠାଅ ।'' ସେ କଥା ଶୁଣାଗଲା ନାହିଁ । ୧୯ଟା ଯାକ ଲୋକଂକୁ ଖରାରେ ଚଲାଇ ପୁରୀ ପଠାଗଲା । ଆହୁରି ମଧ୍ୟ ଅନେକ ଅତ୍ୟାଚାର ସତ୍ୟବାଦୀରେ କରାଗଲା । ମୁଁ ଦିଲ୍ଲୀରୁ ଆସି ସେତେବେଳର ଜଣେ ପାର୍ଲିଆମେଂଟାରୀ ସେକ୍ରେଟାରୀଂକୁ ବଡ଼ ଦୁଃଖିତ ହୋଇ ଏହା ଜଣାଇଲି । ସେ ଏ ବିଷୟରେ ବହୁତ ଅନୁସଂଧାନ କରିବେ ବୋଲି କହିଲେ; କିଂତୁ କିଛି କଲେ ନାହିଁ ।

ତା'ପରେ ସ୍ୱୟଂ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସଂକୁ ଘରକୁ ଡକାଇଲି । ସେ ମୋଠାରୁ ସବୁ ଶୁଣିସାରି କହିଲେ ଯେ, ସେ ନିଜେ ଶ୍ରୀମତୀ ଦାସଂକ ଠାରୁ ସବୁ ଶୁଣିବାକୁ ଚାହାଂତି । ସେସବୁ ଶୁଣି ଲୁହ ଛଳଛଳ ହୋଇ ଆସି କହିଲେ—''ଓହୋ, ଏ ରାଜ୍ୟରେ ଏତେ High handed Proceedings ହେଉଚି ।'' ସେଥିରେ ମଧ କିଛି ଫଳ ହେଲାନାହିଁ । ଶେଷକୁ ମକଦ୍ଦମା ବିଚାରବେଳେ ଡେପୁଟି ସତୀଶବାବୁ କହିଲେ, ''ଏଇ Evidenceରେ ମୁଁ କିପରି ଦଂଡ଼ ଦେବି ?'' ପୁରୀର ରାୟ ବାହାଦୁର ଲୋକନାଥ ମିଶ୍ର ସରକାରୀ ଓକିଲ ଥିଲେ । ସେ ଟିକିଏ ସ୍ୱାଧୀନଚେତା ଲୋକ । ସେ ହସି ହସି କହିଲେ—''ଆପଣଂକୁ ଯଦି ଦଂଡ଼ ଦେବାକୁ କିଛି ପ୍ରମାଣ ମିଳୁନାହିଁ, ଆପଣଂକୁ ଦଂଡ଼ ଦେବାକୁ କିଏ କହୁଚି ?'' ଫଳରେ ମୋର ସମସ୍ତ ଲୋକ ସେ ମକଦ୍ଦମାରୁ ଛାଡ଼ ପାଇଲେ ।

## ୧୨୯। ଉତ୍କଳ ବିଶ୍ୱବିଦ୍ୟାଳୟ

ଆଉ ଗୋଟିଏ କଥା ହେଉଚି ଉତ୍କଳ ବିଶ୍ୱବିଦ୍ୟାଳୟ । ପ୍ରଥମେ ବ୍ରହ୍ମପୁରଠାରେ ୟୁନିଭରସିଟି କରିବା ପାଇଁ ଗୋଟିଏ ସଭା ହେଲା । ସେଥିରେ ମୋତେ ସଭାପତି କରି ଲୋକେ ଗୋଟିଏ କମିଟି ଗଢ଼ିଦେଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବାର କଥା ହେଲା । ବିଶ୍ୱନାଥ ଦାସଂକ ମୁଖ୍ୟମନ୍ତ୍ରୀତ୍ୱ ଭିତରେ କଟକରେ ସେହି ବିଶ୍ୱବିଦ୍ୟାଳୟ ଗଢ଼ିବା ପାଇଁ ପୁଣି ଆଉ ଏକ ସଭା ହେଲା । ସେହି ଯେଉଁ ବିଶ୍ୱବିଦ୍ୟାଳୟ କଟକରେ ବସିବାର ହେଲା ସେଥିପାଇଁ ସେତେବେଳର ଟ୍ରେନିଂ କଲେଜ ପ୍ରିନ୍‌ସପାଲ୍ ଶ୍ରୀଯୁକ୍ତ ମହେଶଚଂଦ୍ର ପ୍ରଧାନ ସେକ୍ରେଟାରୀ ମନୋନୀତ ହେଲେ । ମୁଁ ସେଇ ବିଶ୍ୱବିଦ୍ୟାଳୟ ହେବାପାଇଁ ଗୋଟିଏ ରିପୋର୍ଟ ଲେଖିଥିଲି ।

ଏହାପରେ ପାରଳାଖେମଂଡ଼ି ମହାରାଜା ମୁଖ୍ୟମନ୍ତ୍ରୀ ହେଲେ । ଗୋଦାବରୀଶ ସେହି ମନ୍ତ୍ରୀମଂଡ଼ଳରେ ଅର୍ଥ ଓ ଶିକ୍ଷା ଦାୟିତ୍ୱ ନେଲେ । ଗୋଦାବରୀଶ ଆସି ସେ ରିପୋର୍ଟଟି ଅତିଶୀଘ୍ର ଲେଖିବା ପାଇଁ ମୋତେ ଅନୁରୋଧ କଲେ । ଯେ କୌଣସିମତେ ବିଶ୍ୱବିଦ୍ୟାଳୟ ଆରଂଭ କରିଦେବା ତାଂକର ଇଚ୍ଛା ଥିଲା । ତାଂକ ପାରିବାରିକ ବଂଧୁ ଓଡ଼ିଶାର ଶିକ୍ଷାବିଭାଗ ଡିରେକ୍ଟର ଶ୍ରୀ ଶ୍ୟାମଚଂଦ୍ର ତ୍ରିପାଠୀ ସେତେବେଳେ ତାଂକ ସଂଗେ ଥିଲେ । ସେ ଦୁହେଁ ଅତ୍ୟଂତ ବ୍ୟାକୁଳ ହୋଇ ମତେ ଅନୁରୋଧ କଲେ । ଅଧ୍ୟାପକ ବିପିନିବିହାରୀ ରାୟ ସେହି ବିଶ୍ୱବିଦ୍ୟାଳୟ କମିଟିର ସଭ୍ୟ ଥାଂତି । ମୁଁ ତାଂକୁ ଡାକି ଏ ବିଷୟରେ ପରାମର୍ଶ କରି ଯେପରି ବିଶ୍ୱବିଦ୍ୟାଳୟ ବସାଇବା ଅତିଶୀଘ୍ର ସଂଭବ ହେବ ସେହିପରି ରିପୋର୍ଟଟିଏ ଲେଖିଦେଲି । ସେହି ରିପୋର୍ଟ ଅନୁସାରେ ଶ୍ୟାମଚଂଦ୍ର ବାବୁଂକୁ ଧରି ଗୋଦାବରୀଶ ବିଶ୍ୱବିଦ୍ୟାଳୟ ଯୋଜନା ପ୍ରସ୍ତୁତ କଲେ ।

ବିଶ୍ୱବିଦ୍ୟାଳୟ ତ ଆରଂଭ ହୋଇଥିଲା । ମୋ ରିପୋର୍ଟ ଆଉ ମିଳିଲାନି । ପରେ ଅଧ୍ୟାପକ ଡକ୍ଟର ଶ୍ରୀରାମଚଂଦ୍ର ଦାସ କୌଣସି ଘଟଣାରେ ସେଉଟିକୁ ବହୁତ ଖୋଜାଖୋଜି କରିଥିଲେ; କିଂତୁ ସେ ଅଫିସ୍‌ରୁ ଖୋଜି ଖୋଜି ତାର କୌଣସି ସଂଧାନ ପାଇଲେ ନାହିଁ । ଏବେ ବି ସେ ରିପୋର୍ଟ ନାହିଁ । ପୁଣି ସ୍ୱର୍ଗତ ଚିଂତାମଣି ଆଚାର୍ଯ୍ୟ କୁଳପତି ଥିଲାବେଳେ ବିଶ୍ୱବିଦ୍ୟାଳୟର କୌଣସି ଗୋଟିଏ ସାମୟିକ ଶୋଭେନିଅର୍ (ସ୍ମୃତିପତ୍ର) କାଢ଼ିବାପାଇଁ ମୋତେ ପ୍ରବଂଧ ଲେଖିବାକୁ କହିଲେ । ସେତେବେଳେ ମଧ ସେ ରିପୋର୍ଟ ମିଳିଲା ନାହିଁ ।

ବିଶ୍ୱବିଦ୍ୟାଳୟର ଆଉ କୌଣସି ଘଟଣାରେ ଏପରି କିଛି କାର୍ଯ୍ୟ ହୋଇନାହିଁ ଯେଉଁଥିରେ କି ସେ ରିପୋର୍ଟ ଖୋଜା ଯାଇଚି ।

## ୧୩୦। ସୁଭାଷ ବୋଷ

ସୁଭାଷ ବୋଷ ୧୯୩୯ ସେପ୍‌ଟେଂବରରେ ଓଡ଼ିଶାକୁ ବୁଲିବାକୁ ଆସିଥିଲେ । ପ୍ରଦେଶ କଂଗ୍ରେସର ସଭାପତି ଭାବରେ ମୁଁ ତାଂକୁ ହାତୀ ଉପରେ ଧରି କଟକ ସହର ତମାମ ବୁଲିଥିଲି । ସେ ଯେଉଁଠାରେ ଥିଲେ ମୁଁ ସେଠାରେ ବସା କରି ରହିଲି । ସେ ପ୍ରତ୍ୟେକ କଥା ମୋତେ ପଚାରି କରୁଥିଲେ । ବଂଗଳାରେ ବକ୍ତୃତା ଦେବାପାଇଁ ତାଂକୁ ତାଂକର ବହୁ ସାଂଗ ସାଥୀ ପ୍ରବର୍ତ୍ତାଇଲେ । ମୋତେ ସେ ପଚାରିବାରୁ ମୁଁ କହିଲି—''ଆପଣ ହିଂଦି କିଂବା ଇଂରାଜୀ କିଂବା ଓଡ଼ିଆରେ ବକ୍ତୃତା ଦେବେ । ବଂଗଳାରେ କଦାପି ଓଡ଼ିଶାରେ ବକ୍ତୃତା ହୋଇପାରିବ ନାହିଁ ।'' ମୁଁ ତାଂକ ସହିତ ସମଗ୍ର ଓଡ଼ିଶା ପରିକ୍ରମା କରିଥିଲି । ସତ୍ୟବାଦୀର ବିରୋଧ ପକ୍ଷମାନେ ସୁଯୋଗ ଉଂଡ଼ି ଶ୍ରୀଯୁକ୍ତ ବଲ୍ଲଭଭାଇଂକ ଆଗରେ ମୋ ବିରୁଦ୍ଧରେ ନାନାକଥା କହି ତାଂକୁ ମୋ ପାଇଁ ବି ମନା କରି ଦେଇଥିଲେ । ଏହିପରି ବଡ଼ ବଡ଼ ଲୋକଂକୁ ବି ମନା କରିବା ବହୁ ଆଗରୁ ସଂଭବତଃ ଗୋପବଂଧୁ ବାବୁଂକ ମୃତ୍ୟୁ ପୂର୍ବରୁ ଆରଂଭ ହୋଇ ଯାଇଥିଲା । ଗୋପବଂଧୁ ବାବୁ ମରିବା ପରେ ଲାଲା ଲଜ୍‌ପତରାୟ ମଧ୍ୟ ମୋତେ ସିମଳାରେ ଏହିପରି ବହୁତ କଥା କହିବାର ମନେଅଛି । ଏହି ସଂବଂଧରେ କହିଦିଏ, ଆମ ସତ୍ୟବାଦୀ ଦଳଂକୁ କୌଣସି କାର୍ଯ୍ୟରେ ପ୍ରତିପତ୍ତି ନଦେବାକୁ ଇଂଚୁଡ଼ି ଲୁଣସତ୍ୟାଗ୍ରହ କାଳରେ ଓଡ଼ିଶା ନେତାମାନେ ଗୋପବଂଧୁ ଚୌଧୁରୀଂକୁ ସେଠାକୁ ପଠାଇଦେଲେ । ମୁଁ ସେତେବେଳେ ଦିଲ୍ଲୀରେ କେଂଦ୍ର ଆସେଂବ୍ଲି ମେଂବର ଥାଏ । ସେଠାରୁ ଆସି ଲୁଣ ସତ୍ୟାଗ୍ରହରେ ଯୋଗଦେବି ବୋଲି କଟକ କାଠଯୋଡ଼ି ନଈବାଲିରେ ଗୋଟିଏ ବଡ଼ ବକ୍ତୃତା ଦେଇ ଫେରି ଆସିଲାବେଳକୁ, ମନେଅଛି ପୁରୀର ଜଗନ୍ନାଥ ରଥେ (ସେ ସତ୍ୟବାଦୀର ଛାତ୍ର) ମୋତେ ଜଟଣୀଠାରେ ଦେଖି କାଂଦ କାଂଦ ହୋଇଗଲେ । ସେ ମୋତେ ଯାହା କହିଲେ, ତାର ସାରମର୍ମ ହେଉଚି, ସେ ନିଜେ ସେକାଳର ଶ୍ରୀଯୁକ୍ତ କୃପାସିଂଧୁ ହୋତାଂକ ପରାମର୍ଶରେ ଶ୍ରୀ ମୋହନ୍ ଲାଲ୍‌ଂକୁ (ତାଂକୁ ଲାଲା ଲଜପତ୍ ରାୟ ଗୋପବଂଧୁ ବାବୁ ମଲାପରେ ସତ୍ୟବାଦୀକୁ ପଠାଇଥିଲେ । ସେ ପିଲାଦିନୁ ମୋ ସଂଗେ ଦୁର୍ଭିକ୍ଷ କାମ କରିବାରେ ଅଭ୍ୟସ୍ତ ଥିଲେ ଓ ତାଂକ ସହିତ ମୋର ଘୋର ବଂଧୁତ୍ୱ ଥିଲା) ଚାରିଦିନ ଚାରିରାତି ମୋ ବିରୁଦ୍ଧରେ ବୁଝାଇ ତାଂକ ମନକୁ ମୋ ସଂବଂଧରେ ବିଗାଡ଼ି ଦେଇଥିଲେ । ସେଥିପାଇଁ ମୁଁ କେତେଦିନ ଗୋପବଂଧୁବାବୁଂକ ମୃତ୍ୟୁ ପରେ 'ସମାଜ'ର ସଂପାଦକ ହୋଇ ତା'ପରେ ଅବହେଳିତ ହୋଇଥିଲି । କାହିଁକି ସେପରି ହୋଇଥିଲା, ତାର କାରଣ ଜଗନ୍ନାଥ ରଥଂକ କଥାରୁ ବୁଝିଲି ।

## ୧୩୧। କେତେକ ସହକର୍ମୀ

ଜଗନ୍ନାଥ ରଥଂକ କଥା କହୁଥିଲି । ସେହିଠାରେ ତାଂକ ସହିତ ବିଚାର କରି ଠିକ୍ କଲି ମୁଁ କାକଟପୁରରେ ଜଗନ୍ନାଥ ରଥ ପ୍ରଭୃତିଂକୁ ସାଂଗରେ ଧରି ଏକ ଲବଣ ସତ୍ୟାଗ୍ରହ

ଆରଂଭ କରିବି । ସେଥିପାଇଁ ଜଗନ୍ନାଥ ରଥଂକୁ ସାଂଗରେ ଧରି ମୁଁ ପଂଦରଶହ ଟଂକା ଚାଂଦା ଆଣିଲି ଓ ସେଥିରେ କାକଟପୁର ଲୁଣସତ୍ୟାଗ୍ରହ ଚାଲିଲା ।

ରହିଯାଇଥିଲେ ଲିଂଗରାଜ ମିଶ୍ରେ । ୧୯୨୧ ସେପ୍ଟେଂବର ପରେ ସରକାରୀ ଚାକିରି ଛାଡ଼ି ସେ ସତ୍ୟବାଦୀ ସ୍କୁଲକୁ ଶିକ୍ଷକ ଭାବରେ ଆସିଥିଲେ । ସେ ୧୯୪୬ରେ ପ୍ରାଦେଶିକ ବ୍ୟବସ୍ଥାପକ ସଭାକୁ ସଭ୍ୟ ନିର୍ବାଚିତ ହୋଇଥିଲେ; କିଂତୁ ତାଂକୁ ମନ୍ତ୍ରୀ କରିବାକୁ ମହତାବ ରାଜି ହେଲେ ନାହିଁ । ମତେ 'ନବଭାରତ ପ୍ରେସ୍'ରେ ଲିଂଗରାଜ ମିଶ୍ରେ ଦୁଃଖ କରି ଏକଥା କହିଲେ, ମୁଁ ଗୋଟିଏ ପରାମର୍ଶ ଦେଲି । କହିଲି—''ତୁ ଯାଇ ମହତାବଂକୁ କହ ମୁଁ ମେଂବର ପଦରୁ ଇସ୍ତଫା ଦେବି । ମୁଁ ତୋତେ ମେଂବର ପଦରେ ପୁଣି ସ୍ୱାଧୀନଭାବରେ ନିର୍ବାଚିତ କରାଇଦେବି । କିଛି ଚିଂତା କରନା ।'' ତା'ପରେ ସେ 'ଶିକ୍ଷା ଓ ସ୍ୱାସ୍ଥ୍ୟ'ରେ ମନ୍ତ୍ରୀ ହେଲେ । ସ୍ୱାଧୀନଭାବରେ ପୁଣି ଭୋଟ୍ ଲଢ଼େଇ କରିବାକୁ ତାଂକୁ ଆଉ ପଡ଼ି ନଥିଲା ।

ଏହି ସମୟରେ ସତ୍ୟବାଦୀରେ ଗୋଟିଏ ବଡ଼ ଡାକ୍ତରଖାନା କରିବା ପାଇଁ ମୁଁ ଥରେ ରଣପୁର ରାଣୀଂକୁ ଡାକି ଗୋପବଂଧୁ ବାବୁଂକ ଶ୍ମଶାନଭୂଇଁରେ ଗୋଟିଏ ବଡ଼ ଜନସଭା କଲି । ଏ ସଭାରେ ରାଣୀଂକୁ ମୋ ନିଜ ବକ୍ତୃତାରେ ଏପରି ପ୍ରୀତ କରିଥିଲି ଯେ ସେ ସଂଗେ ସଂଗେ ସତ୍ୟବାଦୀ ଡାକ୍ତରଖାନାକୁ ବଡ଼ କରିବା ପାଇଁ ଅଢ଼େଇଲକ୍ଷ ଟଂକା ମଂଜୁର କରିଦେଲେ । ଲିଂଗରାଜ ମିଶ୍ରେ ସ୍ୱାସ୍ଥ୍ୟମନ୍ତ୍ରୀ ଥିବାରୁ ଏହି ମଂଜୁରୀରେ ମୋ ପାଖେ ବଡ଼ ପ୍ରୀତିଲାଭ କରିଥିଲେ ।

ମୁଁ କିଂତୁ ସେତେବେଳେ କଂଗ୍ରେସରେ ନଥିଲି । ସତ୍ୟବାଦୀରୁ ପଂଡ଼ିତ ଲିଂଗରାଜ ଆସେଂବ୍ଲିକୁ ନିର୍ବାଚିତ ହୋଇ ଆସିଥିଲେ ଓ ମନ୍ତ୍ରୀ ହୋଇଥିଲେ । ମୁଁ ସ୍ୱାଧୀନ ଭାବରେ ସେଇଠାରେ ଠିଆ ହେବାର କଥା । ମୋ ଠିଆ ହେବା କଥା ଶୁଣି ଲିଂଗରାଜ ବାବୁଂକର କେତେ ସମର୍ଥକ ମୋ ବିରୁଦ୍ଧରେ ଗୋଟିଏ କଂଗ୍ରେସଦଳ ଗଢ଼ିବାର ଉଦ୍ୟମ କଲେ । ମୁଁ ପୂର୍ବରୁ ସତ୍ୟବାଦୀ ସ୍କୁଲ ପରିଚାଳନା କମିଟିର ସଭାପତି ଥିଲି । ସେଇ ଉଦ୍ୟମ ଫଳରେ ମୋ ଅଜ୍ଞାତରେ ମୁଁ ସଭାପତି ପଦରୁ କଟିଯାଇ ଶ୍ରୀଯୁକ୍ତ ହରିହର ମହାପାତ୍ର ସେଥିରେ ସଭାପତି ହେଲେ । ପରେ ଲିଂଗରାଜ ବାବୁ ସେ ପଦକୁ ଗଲେ । ଏ ସବୁ ସତ୍ତ୍ୱେ ନିର୍ବାଚନ ବେଳକୁ ଲିଂଗରାଜ ବାବୁ ଆଉ ରାଜ୍ୟ ବିଧାନସଭାକୁ ସତ୍ୟବାଦୀରୁ ଠିଆ ହେଲେ ନାହିଁ । ସେ ଖୋର୍ଦ୍ଧାରୁ ପାର୍ଲାମେଂଟକୁ ପାର୍ଥୀ ହେଲେ । ମୁଁ ସତ୍ୟବାଦୀରେ କଂଗ୍ରେସ ପାର୍ଥୀଂକ ବିରୁଦ୍ଧରେ ୧୯୫୧ ନିର୍ବାଚନରେ ଠିଆ ହେଲି । କଂଗ୍ରେସ ବିରୁଦ୍ଧରେ ସ୍ୱାଧୀନ ସଭ୍ୟ ଭାବରେ ଠିଆ ହେବା ଯେ କି କଷ୍ଟ, ତା' କହିବା ଦରକାର ନାହିଁ । ମଟରଗାଡ଼ି ମୋର ନଥିଲା । ଗୋଟିଏ ବଳଦଗାଡ଼ିରେ ମତେ ଗାଁ ଗାଁ ବୁଲିବାକୁ ପଡ଼ିଥିଲା । ମାତ୍ର ସତ୍ୟବାଦୀର ଲୋକେ ସେ ନିର୍ବାଚନରେ ମୋ ପାଇଁ ଯାହା କରିଥିଲେ ତା ଭୁଲିହେବ ନାହିଁ । ନିଜ ହାତରୁ ଖାଇ ଓ ନିଜ ଖର୍ଚ୍ଚରେ ଯାଇ ସତ୍ୟବାଦୀର ସବୁ ଶ୍ରେଣୀର ଲୋକେ ମୋ ପାଇଁ ପ୍ରଚାର ଚଳାଇଥିଲେ । ସେ ନିର୍ବାଚନରେ ମୁଁ ଜିଣିଲି । ତା'ପରେ ୧୯୫୭ ନିର୍ବାଚନରେ ସତ୍ୟବାଦୀ ନିର୍ବାଚନ ମଂଡ଼ଳୀରୁ ମୁଁ ଅପ୍ରତିଦ୍ୱଂଦ୍ୱୀ ସଭ୍ୟଭାବରେ ନିର୍ବାଚିତ ହେଲି ।

## ୧୩୨। ଗୋପବଂଧୁଂକ ପରେ କଂଗ୍ରେସ

ଗୋପବଂଧୁ ଦାସଂକ ମୃତ୍ୟୁ ପରେ ପଂଡ଼ିତ କୃପାସିଂଧୁ ହୋତାଂକୁ ଆଣି ମହତାବ ଓଡ଼ିଶା ଶାଖା କଂଗ୍ରେସ ସଭାପତି ହେବାକୁ ବସିଲେ । ଖୁବ୍ କମ୍ ଲୋକଂକ ଉପସ୍ଥିତିରେ ମହତାବ ମଧ୍ୟ ସଭାପତି ନିର୍ବାଚିତ ହୋଇଗଲେ । ସଂଭବତଃ ୧୯୩୧ ମସିହା କଥା । ମହତାବ ଏହି ସମୟରେ ବା ଏହାର ଅବ୍ୟବହିତ ପରେ 'ଦଶବର୍ଷର ଓଡ଼ିଶା' ନାମରେ ଖଂଡ଼େ ବହି ଛପେଇଦେଲେ । 'ପୁରୀ କଂଗ୍ରେସ କମିଟି' ପାଇଁ ମୁଁ ଅଭ୍ୟର୍ଥନା ସମିତିର ସଭାପତି ନିର୍ବାଚିତ ହୋଇଥିବା କଥା ଆଗୁର କହିଚି । ପୁରୀ କଂଗ୍ରେସ କମିଟି ତ ବେଆଇନ୍ ଘୋଷଣା ହେଲା । ରାଜେଂଦ୍ର ପ୍ରସାଦ ଜୋନାଲ୍ ହେଡ୍ ଥାଇ ସିଂହଭୂମି ଓ ଷଢ଼େଇକଳାର ମିଶ୍ରଣ ନେଇ ଯେଉଁ କମିଟି ଗଠିତ ହୋଇଥିଲା, ସେ କମିଟିରେ ମୁଁ ମୋର ମେମୋରାଂଡ଼ମ ଦେଇ ମଧ୍ୟ ଠିକ୍ ସମୟରେ ସାକ୍ଷ୍ୟ ଦେଇ ପାରିଲିନି କାରଣ ପ୍ରଦେଶ କମିଟି ବସିପାରିଲାନି ।

୧୯୪୬ରେ ମୁଁ ଦିଲ୍ଲୀ ଲୋକସଭା ପାଇଁ ପ୍ରାର୍ଥୀ ହେବାକୁ ସ୍ଥିର କରି ମୋର ପ୍ରାର୍ଥୀପତ୍ର ଆବଶ୍ୟକ ଅମାନତ ସହିତ ପଠାଇଦେଲି । ଏ ସଂବଂଧରେ ମହତାବ ମୋ ପାଖୁ ଯେଉଁ ପତ୍ରଟିଏ ଲେଖିଥିଲେ, ତାହା ପୂର୍ବରୁ କୁହାଯାଇଚି ।

ଘଟଣାଟା ବୁଝିବାକୁ ମୋତେ ବାକି ରହିଲାନି । ରାଜନୀତିକୁ କୂଟନୀତି ବୋଲି ଅନେକ କହିଥାଂତି । ଛଳନା, କପଟତା, ଯେ ଏଥିରେ ନ ମିଳେ ତା' ନୁହେଁ । ରୁଦ୍ଧଶ୍ୱାସ ହୋଇ ଧୈର୍ଯ୍ୟର ସହିତ ଧାଇଁବା ଲୋକ ଅଲଗା ଧାତୁରେ ଗଢ଼ା । ମୁଁ ତେଣୁ ଦିକ୍‌ଦାର ହୋଇ ସେଥର ଆଉ କୌଣସି ଆସେଂବ୍ଲିକୁ ଠିଆ ହେଲିନି । ମୋ ପ୍ରତି ଯଥେଷ୍ଟ ଆସ୍ଥା ଓ ମୋର ପ୍ରିୟ ଦେଶବାସୀଂକ ପ୍ରତି ଗଭୀର ବିଶ୍ୱାସ ଥିଲା । ମୁଁ ଠିଆ ହୋଇଥିଲେ ଭୋଟ୍‌ରେ ସହଜେ ଭାଂଗି ନଥାଂତି, ତଥାପି କୌଣସି କୌଶଳକୁ ସାମ୍ନା କରି ନିଜକୁ ପ୍ରତିଦ୍ୱଂଦୀ କରେଇବାର ଆଗ୍ରହ ମୋର ମରିଗଲା, ମୁଁ ଚୁପ୍ ରହିଲି ।

## ୧୩୩। ସ୍ୱର୍ଗତ ରାଜେଂଦ୍ର ବାବୁ

ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ହେବାର ସଂଭାବନା ପରେ ଆମେମାନେ ଦିଲ୍ଲୀ All India Congress Committeeକୁ ଯାଇଥିଲୁ । ବିଶ୍ୱନାଥ ଦାସଂକ ସଂଗେ ଆଗରୁ କଥା ଥିଲା, ସେ ମୁଖ୍ୟମନ୍ତ୍ରୀ ପାଇଁ ନିର୍ବାଚିତ ହୋଇଗଲେ, ପରେ ସେ ସ୍ଥାନଟି ଛାଡ଼ିଦେବେ ଓ ମୁଁ ପ୍ରାର୍ଥୀ ହେବି । ମୁଁ ଦିଲ୍ଲୀରେ ରାଜେଂଦ୍ର ପ୍ରସାଦ ଓ ଜବାହରଲାଲଂକ ସଂଗେ ଏଇ ପ୍ରସ୍ତାବ କରି ବିଶ୍ୱନାଥ ଦାସଂକୁ ଛାଡ଼ିବାକୁ ଅନୁମତି ଦିଅଂତୁ ବୋଲି ଅନୁରୋଧ କଲି । ସେଠାରେ ଓଡ଼ିଶାର ଅନ୍ୟାନ୍ୟ ମୁଖ୍ୟମାନେ ମଧ୍ୟ ଥିଲେ, କିଂତୁ କାର୍ଯ୍ୟଗତିରେ ରାଜେଂଦ୍ର ପ୍ରସାଦ ଓ ଜବାହରଲାଲ ନେହେରୁଂକର ଏ ପ୍ରସଂଗରେ ଯେଉଁ ବ୍ୟବହାର ଦେଖିଲି, ତାହା ଏବେ ମଧ୍ୟ ମୋର ମନେଅଛି । ସେଇଦିନଠାରୁ ମଧ୍ୟ ମୁଁ ଘରୋଇ ବିଚାରରେ ଆଉ ରାଜନୀତିରେ ସଂପର୍କ ରଖିବାକୁ ବରାବର ବିମୁଖ ହେଲି ।

ତା'ପରେ ୧୯୪୧ ବେଳକୁ ମାନବେଂଦ୍ର ନାଥ ରାୟ କଟକ ଆସିଥିଲେ । ତାଂକ

ଆସିବା ପାଇଁ ଯେଉଁ ସଭା ହୋଇଥିଲା ସେଥିରେ ମୁଁ ସଭାପତି ହୋଇଥିଲି । ଏମ୍: ଏନ୍: ରାୟ ସେତେବେଳକୁ ଗାଂଧି ମତର କେତେକ ବିରୋଧ କରୁଥିଲେ । ମୁଁ ସଭାପତି ହୋଇଥିବା କଥା ଦିଲ୍ଲୀକୁ ରିପୋର୍ଟ ହେଲା । ସେତେବେଳର କଂଗ୍ରେସ ସେକ୍ରେଟାରୀ ଆଚାର୍ଯ୍ୟ କୃପାଳିନୀ ଏଇ ବିଷୟ ଘେନି ମୋତେ କଂଗ୍ରେସରୁ ବହିଷ୍କାର କରିବା ପାଇଁ ପ୍ରସ୍ତାବ ଦେଲେ; କିଂତୁ ଏ ପ୍ରସ୍ତାବ ସଭାରେ ପକାଇବା ପାଇଁ ରାଜେଂଦ୍ର ପ୍ରସାଦ ଖୁବ୍ ଆପତ୍ତି କରି ପକାଇ ଦେଇ ନଥିଲେ । ଏହା ମଧ ମୋର ମନେଅଛି ।

ତା'ପରେ ୧୯୫୪-୫୫ ବେଳକୁ ରାଜେଂଦ୍ର ପ୍ରସାଦ ଭୁବନେଶ୍ୱର ଆସିଥିଲେ । ସେତେବେଳେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତଥା ଅନ୍ୟାନ୍ୟ ଅଭିନଂଦନ ପତ୍ର ତାଂକୁ ଦିଆଯାଇଥିଲା । ମୁଁ ନିଜେ ନିଜେ ସଭାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଅଭିନଂଦନ ପତ୍ର ପଢ଼ିଥିଲି । ସେତିକିବେଳେ ମୋର ବହୁମୂତ୍ର ରୋଗରେ କେତେଗୁଡ଼ିଏ ଘା' ହୋଇଥିଲା । ଡାକ୍ତରମାନଂକ ପରାମର୍ଶ କ୍ରମେ ମୁଁ ଆଉ ରାଜେଂଦ୍ର ପ୍ରସାଦଂକ ବସାକୁ ଯାଇପାରିବି ନାଇଁ ବୋଲି ତାଂକୁ କହିଲି; କିଂତୁ ବଡ଼ ବ୍ୟାକୁଳ ହୋଇ ସେ କହିଲେ—"ଆପଣଂକର ଆସିବା ଦରକାର ନାଇଁ, ମୁଁ ଯିବି ।" ସେଇ ଅନୁକ୍ରମରେ ସେ ମୋ ବସାକୁ ଆସି ଘଂଟାଏ କାଳ ରହିଥିଲେ । ସେ ଦିନର ଆଳାପରେ ତାଂକର ହୃଦ୍ୟତା ମୁଁ ଭୁଲିପାରିବି ନାଇଁ । ଆଜି ରାଜେଂଦ୍ର ବାବୁ ନାହାଂତି । ଏଇଭଳି ଅନେକ ଘଟଣା ମୋର ଆଂଶିକ ଓ ପୂର୍ଣ୍ଣ ଭାବରେ ତାଂକ ସଂବଂଧରେ ମନେପଡୁଚି; ଆଉ ସେ କଥା କହିବା ଦରକାର ନାଇଁ । ତାଂକ ପରି ସୁହୃଦ୍ ବଡ଼ ଅଳ୍ପ ମିଳଂତି ।

## ୧୩୪। ବିଭିନ୍ନ ସଭାସମିତିରେ ବକ୍ତୃତା ଦାନ

ଖ୍ରୀ: ୧୯୫୪ ବେଳକୁ ଶାଂତିନିକେତନ ମୋତେ ଡାକି ଜଗନ୍ନାଥ ଧର୍ମ ବିଷୟରେ ଗୋଟିଏ ବକ୍ତୃତା ଦିଆଇଥିଲେ । ସେଇ ବକ୍ତୃତାଟି ଚୀନ୍ ଭବନରେ ହୋଇଥିଲା । ସେଥିରେ ପ୍ରଥମେ ସଭାପତି ଥିଲେ ଡକ୍ଟର କ୍ଷିତିମୋହନ ସେନ୍; କେତେ ସମୟ ପରେ ଅସୁବିଧା ହେବାରୁ ସେ ଉଠିଯାଇ ସେଇ ସଭାପତି ଆସନରେ ଅନ୍ନଦାଶଂକର ରାୟକୁ ବସାଇଥିଲେ । ଏହା ପୂର୍ବରୁ ସେଇ କ୍ଷିତିମୋହନ ସେନଂକ ସଭାପତିତ୍ୱରେ ପୁରୀ କଲେଜର ଗୋଟିଏ ସଭାରେ ବକ୍ତୃତାର ବିଷୟ ଥିଲା, 'ଭାରତର ଶିଷ୍ଟପରଂପରା' । ସେଥିରେ ସେତେବେଳର ଅଧକ୍ଷ ଗିରିଜା ଶଂକର ରାୟ ମୋତେ ପ୍ରଧାନ ବକ୍ତା କରି ଲୋଡ଼ିଥିଲେ । ମୁଁ ଛିଡ଼ାହେବା ପୂର୍ବରୁ କ୍ଷିତିମୋହନ ହସି ହସି ରହସ୍ୟ କରି କହିଥିଲେ, "ସେ ତ ଓଡ଼ିଶାର ଇନ୍‌ସାଇକ୍ଲୋପେଡ଼ିଆ ।"

## ୧୩୫। ଉତ୍କଳ ବିଶ୍ୱବିଦ୍ୟାଳୟରେ ପରୀକ୍ଷକ

ତା'ପରେ ମୋତେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଏମ୍.ଏ. ଏବଂ ପି.ଏଚ୍.ଡ଼ି.ରେ ପରୀକ୍ଷକ କରାଗଲା । ସେଥିରେ ପରୀକ୍ଷକ ବୋର୍ଡ଼ରେ ମୁଁ ସଭାପତି ହୋଇଥିଲି; ଥରେ ଗୋଟିଏ ଛାତ୍ରକୁ ଜଣେ ପରୀକ୍ଷକ ଅଧିକ ନଂବର ଦେବାକୁ ଚାହୁଥିଲେ । ମାତ୍ର ମୁଁ ପରୀକ୍ଷକ ହିସାବରେ ତାଂକୁ ଅଳ୍ପ ନଂବର ଦେଇଥିଲି; ସେଇ କାରଣରୁ ଉତ୍କଳ ବିଶ୍ୱବିଦ୍ୟାଳୟରେ ସେତେବେଳର କୁଳପତି ଚିଂତାମଣି ଆଚାର୍ଯ୍ୟଂକ ଉପସ୍ଥିତିରେ ମୋତେ ଗୋଟିଏ ଈର୍ଷାମୂଳକ

ଦୁର୍ବ୍ୟବହାର କରାଯାଇଥିଲା । ସେଇଦିନଠାରୁ ମୁଁ ଆଉ ଉତ୍କଳ ବିଶ୍ୱବିଦ୍ୟାଳୟର ପରୀକ୍ଷକ ହେବା ପାଇଁ ଖାତା ନେବାକୁ ନାରାଜ ହେଲି । ତା'ପରେ ମୋର ଶେଷ ହେଉଚି ଗୋଟିଏ ପି.ଏଚ୍.ଡ଼ି.ରେ ପରୀକ୍ଷକ ହେବା । ଶାଂତିନିକେତନରେ ମଧ ମୁଁ ପି.ଏଚ୍.ଡ଼ି.ରେ ପରୀକ୍ଷକ ଥିଲି ।

୧୯୫୫ରେ ଉତ୍କଳ ବିଶ୍ୱବିଦ୍ୟାଳୟ ମୋତେ Pro-chancellor ନିଯୁକ୍ତ କଲେ । ସେହିଦିନଠାରୁ ୧୯୬୨ ପର୍ଯ୍ୟଂତ ମୁଁ ସେଇ ଦାୟିତ୍ୱରେ ଥିଲି ।

## ୧୩୬। ଓଡ଼ିଶା ବିଧାନସଭା ଓ ତହିଁରେ ମୋର ସ୍ଥାନ

୧୯୫୧ରେ ଭାରତ ସାରା ପ୍ରଥମ ଗଣତାନ୍ତ୍ରିକ ନିର୍ବାଚନ ଆରଂଭ ହେଲା । ମୁଁ 'ସ୍ୱାଧୀନ ଜନସଂଘ' ନାମରେ ଏକ ଦଳ ଗଠନକରି ପ୍ରାର୍ଥୀ ଭାବରେ ଓଡ଼ିଶା ବିଧାନସଭାକୁ ଠିଆହେଲି । କଂଗ୍ରେସ ପ୍ରାର୍ଥୀ ମୋ ବିରୁଦ୍ଧରେ ଠିଆ ହୋଇ ବହୁସଂଖ୍ୟକ ଅଧିକ ଭୋଟ୍‌ରେ ପରାସ୍ତ ହେଲେ । ମତେ ଜିତେଇବା ପାଇଁ ସତ୍ୟବାଦୀ ଲୋକମାନଂକର ବିପୁଳ ଆଗ୍ରହ ଓ ଉତ୍ସାହ କଥା କହିଚି । ଗୋଦାବରୀଶଂକ ପାଇଁ ବାଣପୁରରେ ବୁଲି ବୁଲି ନିର୍ବାଚନ ପ୍ରଚାର କରୁଥିଲି । ସେ ମଧ ଅଧିକ ଭୋଟ୍‌ରେ ଓଡ଼ିଶା ବିଧାନସଭାକୁ ଆସିଲେ । ପରେ ମୁଁ କଂଗ୍ରେସରେ ଓ ସେ ଗଣତନ୍ତ୍ରରେ ଯୋଗଦେଲୁ । ସେ କଥା ପୂର୍ବରୁ କହିଚି ।

୧୯୫୭ର ଦ୍ୱିତୀୟ ସାଧାରଣ ନିର୍ବାଚନରେ ମୁଁ କଂଗ୍ରେସ ତରଫରୁ ଅପ୍ରତିଦ୍ୱଂଦ୍ୱୀ ଭାବରେ ପୁଣି ବିଧାନ ସଭାକୁ ଆସିଲି । ମହତାବଂକ ଅନୁରୋଧକ୍ରମେ କଂଗ୍ରେସ ସଭ୍ୟମାନଂକ ଅନୁମୋଦନ ପାଇ ଏଥର ମୁଁ ବିଧାନ ସଭାର ଅଧକ୍ଷ (ବାଚସ୍ପତି) ନିର୍ବାଚିତ ହେଲି । ମୁଁ ଆସିଲାବେଳକୁ ଦେଖିଲି ବିଧାନ ସଭାର କୌଣସି ସ୍ୱାତନ୍ତ୍ର୍ୟ ନାଇଁ; କିଂତୁ ଆଇନ୍ ଅନୁସାରେ ତାହା ହେବାର କଥା । ମୁଁ ଏ ସଂବଂଧରେ ଯାହା କରିଥିଲି ତାହା ପ୍ରକାଶିତ ହୋଇ ପ୍ରଚାରିତ ହୋଇଥିଲା ।

ମହତାବଂକ ମିଳିତ ମନ୍ତ୍ରୀମଂଡ଼ଳ ଭାଂଗିଯିବା ପରେ ଓଡ଼ିଶାରେ ଛ' ମାସପାଇଁ ରାଷ୍ଟ୍ରପତି ଶାସନ ଆଇନତଃ ଜାରିହେଲା । ସେହି ସମୟ ଭିତରେ (୧୯୬୦ ମସିହାର ଶେଷ ଭାଗ) ମୁଁ ବାଚସ୍ପତି ରହିବାର କଥା; କିଂତୁ ଓଡ଼ିଶା ସରକାର ଏ ବିଷୟରେ ଭିନ୍ନ ମତ ଦେବାରୁ ମୁଁ ଭାରତ ସଂବିଧାନର ୧୬୯ଧାରା ଦ୍ୱିତୀୟ ଉପଧାରା ଅନୁଯାୟୀ ରାଜ୍ୟପାଳ ସୁକ୍‌ଥଂକରଂକ ଦୃଷ୍ଟି ଆକର୍ଷଣ କରିଥିଲି । ଏହାର ଅବ୍ୟବହିତ ପୂର୍ବରୁ କେରଳ ଓ ପଂଜାବର ମନ୍ତ୍ରିମଂଡ଼ଳ ମଧ ଭାଂଗି ଯାଇଥିଲା ଓ ସେଠାରେ ବାଚସ୍ପତିମାନେ ନୂତନ ମନ୍ତ୍ରିମଂଡ଼ଳ ଗଠିତ ହେବା ପର୍ଯ୍ୟଂତ ଆଉ କାର୍ଯ୍ୟରେ ନରହିବା କଥା ସ୍ଥିର ହୋଇଥିଲା । ଫଳରେ ମୁଁ ଓଡ଼ିଶା ସରକାରଂକ ବାଚସ୍ପତି ଗୃହ ଛାଡ଼ିଲି; କିଂତୁ ପରେ କେଂଦ୍ର ସରକାର ସିଦ୍ଧାଂତ କରିବାରୁ ଏହି କାଳରେ ବାଚସ୍ପତି କାର୍ଯ୍ୟରେ ରହିବା କାଏମ ହେଲା । ★

---

★ (ମୁଁ ଏଇ ସଂକ୍ରାଂତରେ ଭାରତ ସରକାରଂକ ସହିତ ଯେଉଁସବୁ ଚିଠି ଆଦାନ ପ୍ରଦାନ କରିଥିଲି ତାହା କଲିକତାର 'Statesman' ଓ ମାନ୍ଦ୍ରାସର 'Hindu' କାଗଜରେ ବାହାରିଥିଲା ।)

## ୧୩୭। ବହୁ ମାନ ଓ ଉପାଧି ଲାଭ

୧୯୫୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ବୈଠକରେ ମୁଁ ଉପାଚାର୍ଯ୍ୟ (Pro-chancellor)ରୂପେ ନିର୍ବାଚିତ ହୋଇଗଲି । ସେହିବର୍ଷ ସମାବର୍ତ୍ତନ ଉତ୍ସବରେ ମତେ ଓ ଗୋଦାବରୀଶଂକୁ ବିଶ୍ୱବିଦ୍ୟାଳୟ ତରଫରୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ପ୍ରଦାନ କରାଯାଇଥିଲା । ସେବର୍ଷ ଶ୍ରୀ କୃଷ୍ଣମେନନ୍ ସମାବର୍ତ୍ତନ ଉତ୍ସବରେ ଦୀକ୍ଷାଂତ ଭାଷଣ ଦେବାକୁ ନିମନ୍ତ୍ରିତ ହୋଇ ଆସିଥିଲେ । ତାଂକ ବକ୍ତୃତାରେ ସେ ଉପସ୍ଥିତ ଜନତାକୁ ଅତି ମୁଗ୍‌ଧ କରି ଦେଇଥିବା କଥା ମନେ ହେଉଚି ।

ଏହାପରେ ୧୯୫୭ମସିହାରେ ଭାରତ ସରକାରଂକ ତରଫରୁ ମୁଁ ପଦ୍ମଭୂଷଣ ଉପାଧି ପାଇବା ସ୍ଥିର ହେଲା । ରାଷ୍ଟ୍ରପତି ରାଜେଂଦ୍ର ପ୍ରସାଦ ମୋତେ ଏହି ଉପାଧି ପ୍ରଦାନ କରି ଅତି ଆନଂଦରେ ପୂର୍ବ ସ୍ମୃତି ମନେ ପକେଇଥିଲେ ।

## ୧୩୮। ଶ୍ରୀ ବିଜୟାନଂଦ ପଟ୍ଟନାୟକ

ତା'ପରେ ୧୯୬୧ ସାଧାରଣ ନିର୍ବାଚନ କଥା । ତୃତୀୟ ନିର୍ବାଚନ ୧୯୬୨ରେ ଆସିବା ପୂର୍ବରୁ ମଧ୍ୟବର୍ତ୍ତୀ କାଳୀନ ନିର୍ବାଚନ କେରଳ ପରି ଓଡ଼ିଶାରେ ସୁରୁ ହୋଇଗଲା । କଂଗ୍ରେସ ଗଣତନ୍ତ୍ର ମିଳିତ ମଂତ୍ରିମଂଡଳର ଫଟାଫଟି ପରେ ଓଡ଼ିଶାରେ ଛ'ମାସ ରାଜ୍ୟପାଳଂକ ଶାସନ ଚାଲିଲା । ତାପରେ ୧୯୬୧ ମେ ମାସରେ ପୁଣି ପ୍ରଦେଶବ୍ୟାପୀ ସାଧାରଣ ନିର୍ବାଚନ ଆରଂଭ ହୋଇଗଲା । ଏ ନିର୍ବାଚନରେ କିଂତୁ ପୂର୍ବତନ କଂଗ୍ରେସ ମୁଖ୍ୟମଂନ୍ତ୍ରୀ ମହତାବ ନେତୃତ୍ୱ ନେଲେ ନି । ତାଂକ ସ୍ଥାନରେ ନେତୃତ୍ୱ ନେଲେ ଶ୍ରୀ ବିଜୟାନଂଦ ପଟ୍ଟନାୟକ । ଓଡ଼ିଶାର ସାଧାରଣ ନାଗରିକ ମନରେ ଏହି ଅଦଳ ବଦଳ ପାଇଁ କେତେ ଆଶା ଆଶଂକା ଯୁଗପତ୍ ଦେଖାଗଲା । ମହତାବ ଭୁବନେଶ୍ୱରରେ ଥାଇ ହୁଏତ ଅଭିମାନରେ ନିର୍ବାଚନରୁ ଦୂରେଇ ରହିଲେ । କଂଗ୍ରେସ ଏତେ ସଂଖ୍ୟା ଗରିଷ୍ଠ ଦଳ ରୂପେ ବିଜୟ ହାସଲ କରିପାରିବ ବୋଲି ତାଂକର ପ୍ରଥମେ ବିଶ୍ୱାସ ପାଉ ନଥିଲା । ଯାହାହେଉ ଓଡ଼ିଶାର ରାଜନୈତିକ ଆକାଶରେ ଏଇ ଯେଉଁ ଅଦଳ ବଦଳ ଚାଲିଲା; ଏଇ ଯେଉଁ ମୁହଁ ଫଟାଫଟି, ମାନ ଅଭିମାନ ଓ ଛକାପଂଝା ଚାଲିଲା ସେଥିରେ ସାଧାରଣ ଦେଶବାସୀଂକ ବିସ୍ମୟର ସୀମା ରହିଲାନି ।

ଏଥର ପ୍ରଦେଶ କଂଗ୍ରେସ କମିଟି ତରଫରୁ ଗୋଟିଏ ମଂଡ଼ଳ କଂଗ୍ରେସ କମିଟି କେତେକ ଅଂଚଳକୁ ନେଇ ଗଢ଼ା ଯାଇଥିଲା । ମୁଁ ନିର୍ବାଚନରେ ପ୍ରତିଦ୍ୱଂଦ୍ୱୀତା କରିବାକୁ ମଂଡ଼ଳ କଂଗ୍ରେସ କମିଟିମାନଂକର ସୁପାରିଶ ପାଇଥିଲି । ଲୋକମାନଂକର ମଧ୍ୟ ମୋତେ ଜିତେଇବା ପାଇଁ ପୁଣି ଆଗ୍ରହ ଥିଲା; କିଂତୁ ଏଥର କଂଗ୍ରେସ ନେତା ବିଜୁବାବୁ କେଜାଣି କାହିଁକି ମୋ ପ୍ରସ୍ତାବ ବି ଉଠେଇଲେ ନାଇଁ । ମୁଁ କାଟ ଖାଇଗଲି । କେଂଦ୍ର କଂଗ୍ରେସ କମିଟିରୁ ଯେଉଁ ନିର୍ବାଚନ ତଦଂତ ଆସିଥିଲା ସେଥିରେ ମୋ ଦରଖାସ୍ତର କୌଣସି ଆଲୋଚନା ନହୋଇଥିବା ଶୁଣିଲି । ଏ ବୃଦ୍ଧ ବୟସରେ ସ୍ୱାଧୀନ ଭାରତର ନାଗରିକ ହିସାବରେ ମୋ ଦାବି ସାବ୍ୟସ୍ତ କରିବାକୁ ମୋର ଶକ୍ତି ନାଇଁ । ଉତ୍ସାହ ବି କ୍ରମେ ଊଣା ପଡୁଚି; ତେଣୁ ଏସବୁ ଅବିଚାରକୁ ନୀରବରେ

ସହି ଚୁପ୍ ରହିବା ସାର ହେଲା । ଗତ ନିର୍ବାଚନରେ ମୁଁ ଅପ୍ରତିଦ୍ୱଂଦ୍ୱୀ (Uncontested)ହୋଇ ନିର୍ବାଚିତ ହୋଇଥିବା ସ୍ଥଳେ ଏ ନିର୍ବାଚନରେ ମୋର ପ୍ରାର୍ଥୀପତ୍ର କାହିଁକି ଓ କିପରି ନାକଚ ହେଲା—ମୁଁ ଭାବି ପାରୁନି । ବୃଦ୍ଧ ହେଲେ ଅବାଂଛିତ ହୋଇପଡ଼ିବା ଦୁନିଆର ନୀତି । ପିଲାଦିନେ ହଡ଼ା ବଳଦର ଆତ୍ମକାହାଣୀ ଲେଖିଲାବେଳେ ମାଷ୍ଟରଂକଠାରୁ ଶୁଣି କିଂବା ଅନୁମାନରେ ଉଦ୍ଭାବନ କରି ବଳଦର ଅଂତିମ ଜୀବନର ଅସହାୟତା ବିଷୟରେ ଲେଖିବାକୁ ହେଉଥିଲା । ବର୍ତ୍ତମାନ ରାଜନୀତିରେ ହୁଏତ ମୁଁ ସେଇପରି ଅନାବଶ୍ୟକ ହୋଇ ପଡ଼ିଥିବା ଯୁବକ ନେତାମାନେ ଅନୁଭବ କଲେ, ତେବେ ଏସବୁ ଭାବିବାକୁ ଆଉ ଅବସର ନାହିଁ । ବେଳ ଆଖର ହେଲାଣି ।

## ୧୩୯। ଶ୍ରୀମତୀ ରାଧାମଣି ଦେବୀ

ମୋର ପତ୍ନୀ ଶ୍ରୀମତୀ ରାଧାମଣି ଦେବୀଂକ କଥା ଏଠାରେ ଟିକିଏ ସୂଚାଇ ଦେବା ଉଚିତ । ନନାଂକର କାଳ ହେଲା ୧୯୨୮ ମସିହା ଅକ୍ଟୋବର ମାସରେ, ଗୋପବଂଧୁବାବୁଂକ ତିରୋଧାନର କିଛିଦିନ ପରେ । ନନାଂକୁ ସେତେବେଳକୁ ବୟସ ହୋଇଥିଲା ୮୯ । ସେତେବେଳ ପର୍ଯ୍ୟଂତ ରାଧାମଣି ତାଂକ ସେବାରେ ଅତ୍ୟଂତ ନିବିଷ୍ଟ ଥିଲେ । ତାଂକ ପରେ ୧୯୩୧ରେ ମୁଁ ପ୍ରସ୍ତାବିତ କଂଗ୍ରେସ ବୈଠକର ଅଭ୍ୟର୍ଥନା ସମିତିର ସଭାପତି ହେବାର ଠିକ୍ ପରେ ସସ୍ତ୍ରିକ ଗୟାଶ୍ରାଦ୍ଧ କରିବାକୁ ଗଲି । ସେଠାରେ ପୂଜାରେ ପଂଦରଦିନ ମୁଁ ପତ୍ନୀଂକ ସହିତ ଅତି ନିଷ୍ଠାରେ ଗୟାର ସମସ୍ତ କ୍ଷେତ୍ରରେ ଶ୍ରାଦ୍ଧ କରିଚି । କାରଣ ନନାଂକର ସେଥିରେ ବିଶ୍ୱାସ ଥିଲା ।

ତା'ପରେ ମୋର ଯାହା ରାଜନୀତିରେ କାର୍ଯ୍ୟ ସେଥିରେ ସେଇକାଳୁ ମୋର ପତ୍ନୀ ମଧ ଅତି ନିଷ୍ଠା ସହିତ କାର୍ଯ୍ୟ କରିଚଂତି । ଏବେ ସେ ସତ୍ୟବାଦୀର ନାରୀମଂଗଳ ସମିତିର ବରାବର ସଭାପତି ରହି ଆସିଚଂତି । ତା'ଛଡ଼ା ସତ୍ୟବାଦୀର ବାଳିକା ସ୍କୁଲର ମଧ ସଭାପତି ଅଛଂତି । ସେ ବାଳିକାସ୍କୁଲଟି ଏବେ ଉଚ୍ଚ ଇଂରାଜୀ ବିଦ୍ୟାଳୟ (High School) ହେବାକୁ ଯାଉଚି ।

ସେ ୧୯୩୧ରେ ଜେଲ୍ ଯାଇଥିଲେ । ତା ପୂର୍ବରୁ ଓ ପରେ ସେ ବରାବର ଲୋକଂକ ପାଇଁ କାମକରି ଆସୁଚଂତି ।

## ପରିଶିଷ୍ଟ (ସ୍ମୃତି ଚାରଣା)

## (୧) ମୋ ଜୀବନ ଦର୍ଶନ

ଖୁଂଟି-ନାଟି ଘଟଣାର ସ୍ମରଣ ମୋର କେବେ ତୀକ୍ଷ୍ଣ ନଥିଲା ବଡ଼ ଶୀଘ୍ର ଘଟଣାମାନ ଭୁଲିଯାଏ । ମୋ ଜୀବନରେ ମୁଁ ଜାଣେ ସେ ମୋର ସୌଭାଗ୍ୟ । ସେଥିରେ ମୁଁ କାହାପ୍ରତି ତିକ୍ତତା ବା ଶତ୍ରୁତା ପୋଷିପାରେ ନାଇ । ମିତ୍ରତାରେ ହୁଏତ ସେଇଆ ହୋଇଥିବ । କିଂତୁ ମୁଁ ତା କିପରି କହିବି ଅନ୍ୟମାନେ କହିବେ । ମୁଁ ଏତିକି କହିପାରେ ବହୁ କ୍ଷେତ୍ରରେ ପ୍ରାଣର

ପ୍ରତିଷ୍ଠିତ ଭାବ ମତେ ବହୁକାଳ ଘାରେ ନାଇ । କିଂବା ଭାବାବେଶରେ ଯେଉଁ ସ୍ପଂଦନ ଉଠେ ତାହା ମୋର ହୁଏତ ବଡ଼ ତୀବ୍ର ନୁହେଁ । କିଂବା ଯେତେ ତୀବ୍ର ହେଲେ ମଧ ଖୁବ୍ ସ୍ଥାୟୀ ହୁଏ ନାଇ ।

ଅନ୍ୟଥା ମଧ ମୁଁ ଯୁକ୍ତିକୁ ଭାବଠାରୁ ବେଶୀ ଆଦର ଓ ସମ୍ମାନ କରେ । ମୋ ବିଚାରରେ ଯୁକ୍ତି ହେଉଚି ମାନବର ବିଶେଷ । ଭାବାବେଶ ପଶୁପକ୍ଷୀଂକର ମଧ ହୁଏ । ବିଶେଷରେ ପୋଷା ଜଂତୁମାନେ ଯୁକ୍ତିରେ ପୋଷକକୁ ମାନଂତି ନାଇଁ । ତାଂକ ପ୍ରାଣରେ ଭାବ ଉଠାଇ ତାକୁଇ ସ୍ଥାୟୀ କରିବାର ଉଦ୍ୟମ ହେଉଚି ପୋଷା ମନାଇବା । ଯୁକ୍ତି ଛାଡ଼ି ଭାବାବେଶ ଧଇଲେ ମାନବ ବେଳେବେଳେ ପଶୁପରି ହୁଏ, ମତାଂଧ ହୁଏ । କ୍ରମେ ଯେପରି ମୋର ବୟସ ଓ ବିଚାର ପରିଣତ ହେଲା, ମୁଁ ଏଇ କଥା ଖୁବ୍ ଅନୁଭବ କଲି । ମାନବ ସଭ୍ୟତାର ସମସ୍ତ ବିକାଶ ଭିତରେ ମୋତେ ଦିଶିଲା ମାନବର ଭକ୍ତିଧର୍ମ ଗୋଟିଏ ପଶୁଧର୍ମ । ପଶୁ ବୋଇଲେ ମୁଁ କହୁଚି ମାନବେତର ଜଂତୁ । ମାନବକୁ ପଶୁପରି ମନାଇ ସଂଘବଦ୍ଧ ଭାବରେ ରଖି ଚଳାଇବା ବରାବର ଏଇ ଭକ୍ତିଧର୍ମ ସୂତ୍ରରେ କରାହୋଇ ଆସିଛି । ଯଥାର୍ଥ ମାନବର ଏହା ଧର୍ମ ହେବା ଉଚିତ ନୁହେଁ, ମାନବ ଧର୍ମ ବିଚାରର ବିଶେଷତ୍ୱ ହେଉଚି ଯୁକ୍ତି ଓ ସେହି ଯୁକ୍ତିରୁ ବାହାରୁଥିବା ମାନବର ଦାର୍ଶନିକ ଧର୍ମ ଓ ସେହି ସୂତ୍ରରେ ଆଦିମ ଜୈନଧର୍ମ ପ୍ରତି ମୋର ପ୍ରଗାଢ଼ ଅନୁରାଗ ଜନ୍ମିଲା । ମୁଁ ଦେଖିଲି ଜଗନ୍ନାଥ ଯଥାର୍ଥରେ ଜୈନ ଉପାସ୍ୟର ସଂକେତ ମୈତ୍ରୀରେ । ଭକ୍ତମାନେ ତାଂକୁ କେତେଶ ବର୍ଷହେଲା ପତିତ ପାବନ କରି ଲୋକଂକୁ ଆଚାରଭ୍ରଷ୍ଟ କରିଚଂତି । ଏହି ସବୁ ବିଚାର ବୁଦ୍ଧି ହୁଏତ ମୋର ପିଲାଦିନର ସେଇ ଯୁକ୍ତି ପଂଥିତ୍ୱର ଭୂୟୋବିକାଶ ।

ମନେପଡୁଚି ପୁରୀର ସ୍ୱକର୍ମ ଧନ୍ୟ ପୁଣ୍ୟଶ୍ଳୋକ ସେକାଳର ମୁକ୍ତାର ରାମଚଂଦ୍ର ଦାସଂକ କଥା । ସେପରି ମନସ୍ୱୀ ଉଦାରଚେତା ପ୍ରାଣବଂତ ପୁରୁଷ ମୁଁ କମ୍ ଦେଖିଛି । ସେତେବେଳେ ଅବଶ୍ୟ ଓଡ଼ିଶା ଥିଲା ଆମର ଚିଂତାର ବିଷୟ । ଓଡ଼ିଶାର ଦୁର୍ଗତି ପ୍ରତି ପ୍ରୀତି, ଓଡ଼ିଶାର ଭବିଷ୍ୟତରେ ଆଦର ଓ ବିଶ୍ୱାସ ତହିଁ ସଂଗେ ଭାରତ ଓ ସେହି ସୂତ୍ରରେ ମାନବ ସେବାର ମାର୍ଗ । ନାନା ଭାବରେ ବାରଂବାର ସେ ଆମକୁ କହିଥିବା ଆଜି ମୋର କାହିଁ କେବେ ଚଳଚ୍ଚିତ୍ର ଦେଖିଲା ପରି ମନେପଡୁଚି ।

ଚଳଚ୍ଚିତ୍ର କଥାଟା କହିଲି । କିଂତୁ ମୁଁ ତାହା ଦେଖେ ନାଇଁ । ରଂଗମଂଚରେ ଅଭିନୟ ବି ଦେଖେ ନାଇଁ । ପିଲାଦିନେ ନୂଆକରି ଇଂରେଜୀ ପଢ଼ିଲାବେଳେ ସେ କାଳର କେଶବ ସେନଂକ ପ୍ରଭାବିତ ନବ ବିଧାନ ପଂଥୀ ପ୍ରତାପ ଚଂଦ୍ର ମଜୁମଦାର ଲେଖିଥିବା "Aids to moral character" ନାମକ ଖଂଡ଼େ ପୁସ୍ତକ ପଢ଼ିଥିଲି । ସେଥିରେ ପଢ଼ିଥିଲି Novels and dramas raise passions and pervert the use of them. ବାଲୁତ ମନରେ ଛାପ ପଡ଼ିଯାଏ, ରହିଯାଏ । ପଂଚତଂତ୍ରରେ ଯଥାର୍ଥ କୁହାଯାଇଚି, ''ଯନ୍ନବେ ଭାଜନେ ଲଗ୍ନ ସଂସ୍କାରେ ନାନ୍ୟଥା ଭବେତ୍ । କଥା ଛଲେନ ବାଲାନାଂ ନିତିଃ ସ୍ତଦୀୟ କଥ୍ୟତେ'' ମାଟିପାତ୍ର କଂଚା ଥିଲାବେଳେ ସେଥିରେ ଯାହା ଚିହ୍ନ ଲାଂଛନ ବା ଚିତ୍ର ଅଂକା ହୋଇଥାଏ ପୋଡ଼ିଦେଲେ ତାହା ଚିରଂତନ ଭାବରେ ସେହିପରି ରହିଯାଏ । ବହୁ ଘଟଣା ଘଟିଗଲାଣି, ମୋ ଉପରେ ବହୁ ଯୁକ୍ତିତର୍କର ସ୍ରୋତ, ବିଚକ୍ଷଣତାର ବିଚାରଣା ଓ ଶିକ୍ଷାବିଧାନ ଚର୍ଚ୍ଚାର ସ୍ରୋତ ବହିଗଲାଣି । କିଂତୁ ପ୍ରତାପଚଂଦ୍ର ମଜୁମଦାରଂକର ସେହି ଧାଡ଼ିକର ଛାଂଚ ମୋ ପ୍ରାଣରୁ

ଲିଭି ନାହିଁ । ଜୀବନରେ ଜଣେ ଦୁଇଜଣ ବଂଧୁଂକର ନିମଂନ୍ତ୍ରଣରେ ଅତି ବାଧ ବାଧକତାରେ ପଡ଼ି ବୋଧହୁଏ ଥରେ ଦିଲ୍ଲୀରେ ଆଉଥରେ କଲିକତାରେ ଦୁଇଥର ସିନେମା ଦେଖିଚି ଓ ନାଟ୍ୟମଂଦିରରେ ଥରେ ମାତ୍ର ଭାଦୁଡ଼ିଂକର ନାଟ୍ୟ ନାୟକତ୍ୱରେ ଶରତ ଚାଟାର୍ଜୀଂକର ଷୋଡ଼ଶୀର ଅଭିନୟ ଦେଖିଛି । ଆଉ ଦେଖିବାର ମନେ ହେଉ ନାଇ । ତେବେ କେହି କେହି ବ୍ୟବସ୍ଥାପକମାନଂକୁ କାଚ କାରଖାନାରେ କାଚ ତିଆରିଠାରୁ ଲୁହା ଓ ଲୁଗାକଲର କାମ ଚଳଚ୍ଚିତ୍ରରେ ଦେଖାଇବାର ବ୍ୟବସ୍ଥା କରି ଭୋଜୀକୁ ଡାକିବାରେ ତାହା ସବୁ କେତେ ଦେଖିଚି ।

ମାତ୍ର ଏବେ ମଧ ମୁଁ କହିପାରେ ବର୍ତ୍ତମାନ ଦେଶରେ ଯେଉଁ ସିନେମା ଦେଖିବା ଓ ଦେଖାଇବାର ବାତ୍ୟା ଛୁଟିଛି ତା'ର ଯଥା ନିୟଂନ୍ତ୍ରଣ ନହେଲେ ଭାରତ ଭାରତ ହୋଇ ରହିବ ନାହିଁ । ଭାରତୀୟ ବାଳକ ବଢ଼ି ଭାରତୀୟ ମନୁଷ୍ୟ ଆଉ ହେବ ବୋଲି ମୋର ମନେ ହେଉ ନାହିଁ । ଶୀଘ୍ର ଭାରତୀୟ ସଂସ୍କୃତିରେ ପରିପ୍ରାଣୀତ ଆମ ଧୁରଂଧରମାନେ ଏ ସବୁର ଯଥାଯଥ ନିୟଂନ୍ତ୍ରଣ ପାଇଁ ସୁଚିଂତିତ ଓ ଦୃଢ଼ ବ୍ୟବସ୍ଥା କରିବା ଦରକାର ।

ସେ କଥା ଛାଡ଼ କହୁଥିଲି ମୋର ଯୁକ୍ତି ପ୍ରୀତି ଓ ସେହି ସଂପର୍କରେ ସ୍ୱର୍ଗତ ରାମଚଂନ୍ଦ୍ର ଦାସଂକ କଥା । ରାମଚଂନ୍ଦ୍ରଂକ ପରି କଥୋପକଥନରେ ଯୁକ୍ତି ବାଢ଼ିବା ଲୋକ ଆଉ ମୁଁ ଦେଖି ନାଇ । ସେଥିରେ ସେକାଳ ମୁକ୍ତାର, ଇଂରେଜୀ ଜାଣି ନଥିଲେ । ମୁଁ ଯେଉଁକାଳ କଥା କହୁଛି ସେତେବେଳେ ଓଡ଼ିଆଂକ ଭିତରେ ଇଂରେଜୀ ପଢୁଆ ବଡ଼ ବେଶୀ ନଥିଲେ । କେହି ଯଦି Entrance ପାସ୍ କଲା ତେବେ ସେକାଳେ ସ୍ୱର ଉଠୁଥିଲା ସେ ଭାରି ଭଲ ଇଂରେଜୀ ଲେଖେ । କାହିଁକିନା ଆଉ ସବୁ ସେତେବେଳର ଓଡ଼ିଆ କିରାନୀ କର୍ମଚାରୀମାନେ ସେକାଳ High School 3rd. class, 4th କ୍ଲାସ ପାସ୍ ବା ଫେଲ୍‌ବାଲା । ମନେଅଛି ସମସ୍ତେ କହଂତି ସେକାଳ ପୁରୀର ସିରସ୍ତାଦାର (ମଧୁସୂଦନ ମହାଂତି) ଭାରି ଭଲ ଇଂରେଜୀ ଜାଣୁଥିଲେ । ପରେ ଜାଣିଲି ସେ ଗୋଟିଏ ସେ କାଳର ବହୁତ କର୍ମଚାରୀଂକ ପରି ସାଧୁଲୋକ ଥିଲେ ଓ ସବୁ କିରାନି କର୍ମଚାରୀଂକୁ ଯଥାଶକ୍ତି ସାହାଯ୍ୟ କରୁଥିଲେ । ସେ ସାହାଯ୍ୟ କରିବାର ପ୍ରଧାନ କ୍ଷେତ୍ର ଥିଲା ସେ ଦରପାଠୁଆ କିରାନି କର୍ମଚାରୀଂକର ଇଂରେଜୀ ଲେଖା ସବୁ ସଂଶୋଧନ କରିଦେବା । ତା'ପରେ ଭଲ ଇଂରେଜୀ ଜାଣିବା କଥାଟା ସେତେବେଳେ ଗୋଟାଏ ବଡ଼ ଆଦରର ବସ୍ତୁ ଓ ଗୁଣ ଥିଲା । ଇଂରେଜୀ ଅଧାନରେ ଆମର ମନୋବୃତ୍ତି ଯାହା ଥିଲା ସେତେବେଳେ ସେଇଆ ହବାର କଥା । ସେ କଥା ସ୍ୱାଧୀନ ଭାରତରେ ଆଜି କେହି କଳ୍ପନା କରିପାରିବେ ନାହିଁ, ବୁଝିବା ଦୂରର କଥା । ସେଇଥିପାଇଁ କହୁଥିଲି ରାମଚଂନ୍ଦ୍ର ମୁକ୍ତାରେ ଖୁବ୍ ଅଳ୍ପ ଇଂରେଜୀ ପଢ଼ିଥିଲେ ମଧ, ଇଂରେଜୀ ବହି ଓ ସାହେବ ଇଂରେଜୀରେ କହିଲେ ସେ ସବୁର ସେ ମର୍ମ୍ମାର୍ଥ ବୁଝିଯାଉଥିଲେ । ସେ ମଧ ନିଜେ ଓଡ଼ିଆରେ ସୁବକ୍ତା ଥିଲେ । ସେତେବେଳର ସଭାସମିତି କଥା ଏବେ ଅନେକ ହୁଏତ ପସଂଦକୁ ଆଣିବେ ନାଇ । ମୋ ଜୀବନରେ ବୋଧହୁଏ ପୁରୀରେ ସାହି ଓ କଂଦିରେ ପ୍ରାୟ ୧୦/୧୨ ଜାଗା ଓ କଟକରେ ୫/୬ ଜାଗାରେ ମୁଁ ସଭାମାନ କରି ସେଥିରେ କ୍ରମାନ୍ୱୟରେ ସଭାପତି ଓ ସଂପାଦକ ହୋଇଥିଲି । ସର୍ବତ୍ର ଆଲୋଚନା ସଭା । ସର୍ବତ୍ର ସ୍କୁଲ କଲେଜ ପାଠ୍ୟ ବାହାରେ ଥିବା ଅନ୍ୟ ପୁସ୍ତକ ପଢ଼ି ଧର୍ମ, ସମାଜଠାରୁ କୃଷି, ଶିଳ୍ପ ପର୍ଯ୍ୟଂତ, ଜନସେବାଠାରୁ ଧନ ଦାନ ପର୍ଯ୍ୟଂତ ସବୁ ବିଷୟରେ ବିଚାର ଓ ବାଦ ପ୍ରତିବାଦ (Debate) ଚଳାଇବାର ମୋର ମନେଅଛି, ଏଇସବୁ କାର୍ଯ୍ୟରେ

ଛାତ୍ରମାନଙ୍କୁ ପ୍ରେରଣା ଦେବା ପାଇଁ ପୁରୀରେ ସେତେବେଳେ ଏକମାତ୍ର ବ୍ୟକ୍ତି ଥିଲେ ରାମଚଂଦ୍ର ମୁକ୍ତିଆର । ହାଇସ୍କୁଲ ବା ପୁରୀ ଜିଲ୍ଲାସ୍କୁଲ ପିଲାମାନଂକ ସଂଗେ ସେତେବେଳେ ସେ ବହୁତ ମିଶୁଥିଲେ, ତାଂକର ବିଶେଷତ୍ୱ ଥିଲା ପିଲାମାନଂକ ସଂଗେ କଥାବାର୍ତ୍ତା କରି ଯୁକ୍ତିତର୍କ ସୂତ୍ରରେ ତାଂକୁ ପ୍ରଭାବିତ କରିବା । ସେ କଥାବାର୍ତ୍ତାର ପ୍ରଣାଳୀ କି ସୁଂଦର ! ମୁକ୍ତିଆରେ କାହାକୁ କୌଣସି ସାକ୍ଷାତ ଉପଦେଶ ଦେବାର ମୋ ମନେ ହେଉ ନାଇ । ସେ ଆରଂଭ କରଂତି, କଥାବାର୍ତ୍ତା ତୀବ୍ରମତ ପ୍ରକାଶ କରିବା ପାଇଁ ପିଲାମାନଂକୁ ଖୁବ୍ ସୁବିଧା ଦିଅଂତି । କିଂତୁ ନିଜ କଥାବାର୍ତ୍ତାରେ ସେ କୌଣସି ମତର ସାକ୍ଷାତ ପ୍ରତିବାଦ କରଂତି ନାଇ । ଯେପରିକି ପିଲାଂକ କଥାଟା ମାନିଗଲା ପରି ଯୁକ୍ତିର ଧାରା ଧରି ଚାଲଂତି । ଆଶ୍ଚର୍ଯ୍ୟ କଥା କେତେକ କଥାବାର୍ତ୍ତା ପରେ ପିଲାଟି ଯାହା କହୁନା କାହିଁକି ସେ ମୁକ୍ତିଆରଂକ କଥାଟି କେତେବେଳେ ଜାଣି ନପାରି ମାନିଯାଏ । ହୁଏତ ଏପରି ହୁଏ ପିଲାଟି ପ୍ରଥମରୁ ଠିକ୍ ଭାବରେ ଯେଉଁ ମତ ପ୍ରକାଶ କରିଥାଏ ତାର ଠିକ୍ ବିପରୀତ କଥାଟି ନିଜର କରିନିଏ । ସ୍ତ୍ରୀ ଶିକ୍ଷା, ସ୍ତ୍ରୀ ସ୍ୱାଧୀନତା, ବାଲ୍ୟ ବିବାହ, ଜାତିଭେଦ ଏସବୁ ସେତେବେଳର ପ୍ରଧାନ ବିଚାରବସ୍ତୁ । ତା'ଛଡ଼ା କବିତା କିପରି ଲେଖିବ, ଗଦ୍ୟର ଉପଯୋଗୀତା କ'ଣ, ଜନସେବା କାହିଁକି, କିପରି କରିବ । ଇଂରେଜ ଶାସନର ମୂଲ୍ୟ ଓ ଗତି କ'ଣ, ଭାଂଗ ଖାଇବା ଦରକାର କି ନୁହେଁ, ପାଚିଲା ଗାମୁଛାର ଉପଯୋଗିତା ପ୍ରଭୃତି ଛୋଟ ବଡ଼ କେତେ ବିଷୟ ତାଂକ ସଂଗେ ଦିନ ପରେ ଦିନ ଏପରିକି ବାରଂବାର ପଡ଼ିଥିବା ଆଜି ମନେ ହେଉଚି । ମହୁମାଛି ଯେପରି ଦିନଯାକ କାହିଁ କୁଆଡ଼େ ବୁଲି ଫୁଲରୁ ମହୁ ସଂଗ୍ରହ କରିସାରି ଆକାଶର ସଂକୁ ସଂକେତହୀନ ମାର୍ଗରେ ପୁଣି ଠିକ୍ ସନ୍ଧ୍ୟାକୁ ସେହି ମଧୁଚକ୍ରକୁ ଫେରିଥାଏ, ଆମେ ପିଲାଏ ସେହିପରି ସ୍କୁଲ ସରିଲାମାତ୍ରେ ଅପରାହ୍ନ କୃତ୍ୟ ଯଥାଶୀଘ୍ର ସାରି କି ଆକର୍ଷଣରେ କେଜାଣି ମୁକ୍ତିଆରଂକ ଘରବାଟେ କୌଣସି ବାହାନା ଧରି ଗଲା ପରି ଯାଉଁ । ତାଂକ ବସାଘରଟା ଥାଏ ପଥୁରିଆ ସାହିମୁଂଡ଼ରେ, କୁଂଡ଼ାଇବେଂଟ ସାହିର ଗଳିଟା ମିଶିବାଠାରେ, ଡାହାଣପଟ କଣ ଘରଟା । ସେହିଠାରେ ସେ ଯେପରି ପିଲାଂକୁ ଅପେକ୍ଷା କରି ବସିଥାଆଂତି । ବିଶେଷରେ ଶନିବାର ଓ ଛୁଟି ପୂର୍ବଦିନ କଥାବାର୍ତ୍ତାରେ ରାତି ୧୨ଟା ବାଜିଯାଏ । (ସ୍ୱର୍ଗତ ପେନ୍‌ସନ୍ ପ୍ରାପ୍ତ ହେଡ଼ମାଷ୍ଟର) ଜଗନ୍ନାଥ ମହାପାତ୍ର (ଓକିଲ) ପଦ୍ମଚରଣ ପଟ୍ଟନାୟକ ଆମେ ତିନିସଂଗୀ ଅନେକ ସମୟରେ ସେଠି ଏକତ୍ର ହେଉ ।

ମୁକ୍ତିଆରେ ଗୋଟିଏ କିଛି ବିଷୟ ଧରି କଥା ଉଠାଇବା ପାଇଁ ପ୍ରସ୍ତୁତ ହୋଇ ଯେପରି ବସିଥାଆଂତି । ଆଜି ମନେ ପଡ଼ିଯାଉଚି, ଗୋଟିଏ ଶନିବାରରେ ଗଲାବେଳକୁ ସେ ମଧୁବାବୁଂକ ବସଂତ ଗାଥାଟି ଧରି ବସିଥିଲେ । ସେ ରାତିଯାକ ସେଇ ବସଂତ ଗାଥା ପଢ଼ା ଚର୍ଚ୍ଚା । ପୁରୀଟା ସେତେବେଳେ ଥିଲା ଭାଂଗ ଖାଇବାର ଜାଗା । ଜଗନ୍ନାଥ ମହାପାତ୍ରେ ଓ ମୁଁ ଦୁହେଁ ସେ ଦିନ ଟିକିଏ ଟିକିଏ ଭାଂଗ ଖାଇଥିଲୁ । ଅବଶ୍ୟ ୧୯୦୧ ମସିହା ଶେଷଠାରୁ ମୁଁ ଭାଂଗ କେବେ ଛୁଇଁ ନାଇ । କିଂତୁ ସେଦିନ ମନେ ଅଛି ଆମ ଦୁହିଁକୁ ନିଶା ଲାଗିଥିଲା । ଆଲୋଚନାରେ କୌଣସିମତେ ହସ ଉଠିଲେ ଆମେ ଦୁହେଁ ନିଶାଗ୍ରସ୍ତ ହୋଇ ଖାଲି ହସୁଥିଲୁ । ମୁକ୍ତିଆରେ ନିଶ୍ଚୟ ଜାଣିପାରିଥିବେ । କିଂତୁ ଜାଣିଛଂତି ବୋଲି ଆମେ କଦାପି ଜାଣି ନାହୁଁ । ପରେ ଆମେ ଆପଣା ଭିତରେ ବିଚାର କରି ସେ କଥା ମନେପକାଇ ସକାଳୁ ବଡ଼ ଲଜ୍ଜିତ ହୋଇ ପରେ ମୁକ୍ତିଆରଂକ ପାଖକୁ ଯିବାରେ ଟିକିଏ ସଂକୋଚ ମଧ ଆମର ହେଲା । କିଂତୁ ଫେରେ ମୁକ୍ତିଆରଂକ ସଂଗେ ମିଳନ ହେଲା । ହେଲେହେଁ ସେ ସଂକୋଚର ଉଲ୍ଲେଖ ସେ

କରି ନାହାଂତି । ଆମକୁ ମଧ ସେ ସଂକୋଚର ଉଲ୍ଲେଖ କରିବା କୌଣସି ଅବକାଶ ପର୍ଯ୍ୟଂତ ସେ ଦେଇ ନାହାଂତି ।

ଏବେ ମନେ ହେଉଛି ସେହିକାଳୁ ସେ ମୋର ଯୁକ୍ତିପରତାକୁ ଖୁବ୍ ଲକ୍ଷ୍ୟ କରିଥିଲେ । କାହିଁକି ନା, ପଦ୍ମଚରଣ ପଟ୍ଟନାୟକଙ୍କୁ ସେ ଡାକୁଥିଲେ 'କବି' । ଜଗନ୍ନାଥ ମହାପାତ୍ରଂକୁ ଡାକୁଥିଲେ ସାଆଂତେ ( ସେ ହେଉଚଂତି ସାମଂତ ବ୍ରାହ୍ମଣ) ମତେ ଡାକୁଥିଲେ ଦରଶନୀ । ଏହି ଆମୋଦକର ନାମଟି ଭିତରେ ସଂକେତ ଥିଲା ଦର୍ଶନପଂଥୀ । ଅନ୍ୟମାନଂକୁ ସେ ଚିହ୍ନାଇ ଦେଉଥିଲେ, ଏହି ଦରଶନୀ ନୀଳକଂଠଂକ ସଂଗେ କଥାବାର୍ତ୍ତା ହୁଅ । ପଂଡ଼ିତ ଗୋପବଂଧୁ ସେତେବେଳକୁ ପୁରୀ ଜିଲ୍ଲାସ୍କୁଲରୁ ପାସ୍ କରିସାରି ପୁରୀ ଛାଡ଼ିଥିଲେ । କିଂତୁ ସେତେବେଳେ ମୁକ୍ତିଆରେ ଯେପରିକି ତାଂକର ଥିଲେ ଶ୍ରେଷ୍ଠ ଗୁରୁ । ସେ ଆସି ମୁକ୍ତିଆରଃକ ଘରେ ରହୁଥିଲେ । ଏହିପରି ରହିବାବେଳେ ମୁକ୍ତିଆରେ ମତେ ଚିହ୍ନାଇ ଦେଇଥିଲେ । 'ଗୋପବଂଧୁ ଏ ନୀଳକଂଠଂକୁ ଜାଣ ? ଏ ଏକ ଦର୍ଶନୀ । ମୋର ଆଉ ଗୋପବଂଧୁଂକ ଭିତରେ ପର ଜୀବନରେ ଯେଉଁ ପୁଣ୍ୟ ପାବନ ଆଦାନ ପ୍ରଦାନର ସଂପର୍କ ଫୁଟିଥିଲା ତାର ଆଜି ସ୍ଥାନ ଖୁବ୍ ସଂଭବ ଏଇଠାରେ ।

କିଂତୁ ମୁଁ କହୁଥିଲି ମୁଁ ପିଲାଦିନୁ ଯଥାର୍ଥରେ ହୋଇଥିଲି ଯୁକ୍ତିପଂଥୀ । ଭାବରାଜ୍ୟରେ ପ୍ରବେଶ କରି ଆତ୍ମବିସ୍ମୃତ ହେବା ମୁଁ ପସଂଦ କରୁ ନଥିଲି । ପିଲାଦିନୁ ମୋର ବ୍ୟକ୍ତିତ୍ୱର ପ୍ରଧାନ ବିଚାର ହେଉଛି କର୍ତ୍ତବ୍ୟ କରିବାକୁ ହେବ । କର୍ତ୍ତବ୍ୟ ଆଗେ ଅଯଥା ଭାବାବେଗର ସ୍ଥାନ ନାହିଁ । Tennyson ରେ ପରେ ପଢ଼ିଥିଲି, "Duty, duty clear of consequences." ସେ ଏହା କୌଣସି ସଂପର୍କରେ ଅଟ୍ଟା କରି ଲେଖିଛଂତି ।

କିଂତୁ ଗୋଟିଏ କଥା ମନେ ହେଉଛି ମୁଁ ଏହି ଅଟ୍ଟା ପାଇଁ Tennyson କୁ ସମାଲୋଚନା କରି ତାଂକର ଭକ୍ତିଭାବକୁ ଦେଖାଇବା ପାଇଁ ତାଂକରି କଥା ଉଦ୍ଧାର କରି ଲେଖିଥିଲି । ଯେଉଁ Tennyson ଈଶ୍ୱରଂକ ସଂବଂଧରେ ଲେଖିପାରଂତି "By faith and faith alone we embrace, beliving where we can not prove." ମୋର ସେତେବେଳର ଇଂରେଜୀ ଅଧ୍ୟାପକ ସ୍ୱର୍ଗତ ଉପେଂଦ୍ରନାଥ ମୈତ୍ର । ମୋ ପ୍ରବଂଧ ଲେଖାରେ ଭକ୍ତିଭାବର ଏ ବିରୋଧ ଦେଖି ବିସ୍ମୟ ପ୍ରକାଶ କରିଥିଲେ । କିଂତୁ ମୋର ଏଠି କହିବାର କଥା ମୁଁ ଏହିପରି ଯୁକ୍ତିଭାବ ଭାବିତ ଥିବାରୁ ଅନେକ କ୍ଷେତ୍ରରେ ଅନୁରାଗ ବିରାଗ ଜଡ଼ିତ ଥିବା ଘଟଣାର ସ୍ମୃତି ମୋର ପ୍ରାଂଜଳ ନୁହେଁ ।

## (୨) ଅଧକ୍ଷ ବି: ଭି: ଗୁପ୍ତଂକ ସ୍ମୃତି

## (୨ କ)

ମୋ କଲେଜଦିନ କଥାରୁ କିଛି ଲେଖିବି । ମୋର ଡାଏରୀ ନାହିଁ । ଦୈନିକ ବିବରଣୀ ବି ଲେଖି ରଖି ନାହିଁ । ଏସବୁ ସାମାନ୍ୟ ଦୈନଂଦିନ ଘଟଣାର ସ୍ମୃତି ମୋର ବଡ଼ ବେଶି ମନେ ରହେ ନାହିଁ । ତା' ପୁଣି ବିଶେଷରେ ଏ ବୟସରେ ରହୁ ନାହିଁ । ତତ୍ୱବିତ୍ମାନେ କହଂତି ହାରାହାରି ପଚାଶଚାଳିଶ ବର୍ଷ ବୟସ ପରେ ସ୍ମରଣଶକ୍ତି କମିଯାଏ ।

ଯେତେଦୂର ମନେହୁଏ, ୧୯୦୭ ଖ୍ରୀଷ୍ଟାବ୍ଦର ଠିକ୍ ପୂଜା ପୂର୍ବର କଥା । ବ୍ରାହ୍ମଣୀ, ବୈତରଣୀ ଓ ଖରସୁଆଁ—କେଂଦ୍ରାପଡ଼ା,' ଯାଜପୁରର ଏ ତିନୋଟି ନଦୀ ବଢ଼ିରେ ମିଶି ଏକାକାର ହୋଇ ଯାଇଥାଏ । ଘାଇ ଭାଂଗି ଗାଁଗଂଡ଼ାରେ ବଢ଼ିପାଣି ପଶି ଘରଦ୍ୱାର ବୁଡ଼ି ଭାସି ଯାଇଥାଏ । ସେକାଳର କଥା ଆଜିକାଲି ପିଲାଏ ଧାରଣା କରିବା ଦୂରେ ଥାଉ, ବୁଝିପାରିବେ ନାହିଁ । ଆମେ ବଢ଼ି ଅଂଚଳରେ ପଶିଲାବେଳକୁ ବଢ଼ିପାଣି ଉଚ୍ଚତାରେ ପ୍ରାୟ ପାଂଚଫୁଟ ଛାଡ଼ି ଯାଇଥାଏ । ଗାଁରୁ ଚାଳମାନ ଭାସିଯାଇ ନାନା ସ୍ଥାନରେ ବିଲରେ ପଡ଼ିଥାଏ । ଗାଁର ପତ୍ତନ କେବେ ଦିଶୁ ନଥାଏ; ତଥାପି କୌଣସି କୌଣସି ଗାଁ ଭିତରେ ନାଆ ଚାଲିଯାଉଥାଏ । ଖଂଡ଼େ ଖଂଡ଼େ ବୁଦା ଦିଶୁଥାଏ ଓ ଲୋକେ ସେଠାରେ ଜମା ହୋଇଥାଂତି । ତା' ଛଡ଼ା ଲୋକେ ଥାଂତି ଗଛରେ । ହଇଜା ପ୍ରବଳ ବେଗରେ ଲାଗିଥାଏ । ଲୋକେ ମରିବା ପୂର୍ବରୁ ଗଛରୁ ଖସିପଡ଼ି ମରି ଭାସି ଯାଉଥାଂତି ।

ଆମେ କେଂଦ୍ରାପଡ଼ା ବାଟେ ଯାଇ ଇଂଦୁପୁରଠାରୁ ନାଆରେ ଚଢ଼ି ଆଗ ଭଂଗା କେନାଲବଂଧ ପାରିହୋଇ ବିଲ ଭିତରେ ବଢ଼ିପାଣିରେ ପଡ଼ିଲୁ । ସେଠାରୁ କ୍ରମେ କ୍ରିମାର ବାଟେ ବରୀ, କଳାମାଟିଆ ପ୍ରଭୃତି ଆଡ଼କୁ ନାଆ ଚଳାଇଥିଲୁ । ସଂଗରେ ଥିଲେ ପଂଡ଼ିତ ଗୋପବଂଧୁ ଦାସ, ପ୍ରଚାରକ ଅନଂତ ମିଶ୍ର ଓ ଏବେ ପେନ୍‌ସନ୍ ପାଉଥିବା ଡେପୁଟି ଶ୍ରୀ ନାରାୟଣ ନଂଦ । ସାଂଗରେ ସାମାନ୍ୟ ଚୁଡ଼ା, ଚାଉଳ, ତିଂତୁଳି, ଲୁଣ, କିରାସିନି ପ୍ରଭୃତି ନେଇ ସେ ଅଂଚଳକୁ ବାଂଟିବା ପାଇଁ ଯାଇଥିଲୁ । ନାଆ ଉପରେ ଆମେମାନେ ଯେତେଦୂର ମନେହୁଏ, ପ୍ରାୟ ଦଶଦିନ ଥିଲୁ ।

ମୁଁ ସେତେବେଳେ କଲେଜ ହଷ୍ଟେଲ (ଏବର କଲେଜିଏଟ୍ ହଷ୍ଟେଲ)ରେ ଥାଏ । ପୁଣି ମୁଁ ଥିଲି ବୃତ୍ତିଭୋଗୀ ଛାତ୍ର । କଲେଜର ପ୍ରିନ୍‌ସିପାଲ ସେତେବେଳେ ଥିଲେ ସ୍ୱର୍ଗତ ବିପିନବିହାରୀ ଗୁପ୍ତ । ସମସ୍ତେ ତାଂକୁ ବି: ଭି: ଗୁପ୍ତ ବୋଲି ଜାଣଂତି । ତାଂକର ଇଂରାଜୀ ପାଟୀଗଣିତ ଅନେକ ଦିନଯାଏ ଏନ୍‌ଟ୍ରାନ୍‌ସ୍ ବା ମାଟ୍ରିକୁଲେଶନ ତଥା ଏଫ୍.ଏ. ବା ଆଇ.ଏ. କ୍ଲାସରେ ପାଠ୍ୟପୁସ୍ତକ ଥିଲା । ଏବେ ହୁଏତ ଛାତ୍ରମାନେ ତାହା ବ୍ୟବହାର କରୁଥିବେ । ବି: ଭି: ଗୁପ୍ତ କଡ଼ା ମିଜାଜର ଲୋକ ଥିଲେ ବୋଲି ସମସ୍ତେ କହୁଥିଲେ । ପୁଣି ସେତେବେଳେ କଲେଜ ତଥା ହଷ୍ଟେଲରେ ଓଡ଼ିଆ ଛାତ୍ରଂକ ସଂଖ୍ୟା ବେଶି ନଥିଲା । ପ୍ରଫେସରମାନଂକ ଭିତରେ ଓଡ଼ିଆ ଆଦୌ ନଥିଲେ କହିଲେ ହୁଏ; ତେଣୁ ବି: ଭି: ଗୁପ୍ତଂକ ଭଳି ପ୍ରିନ୍‌ସିପାଲଂକ ସଂଗେ ମୋ ଭଳି ଛାତ୍ରର ବେଶି ଆତ୍ମୀୟତା ନଥିଲା ।

ହେଲେହେଁ ସେଇକାଳରୁ ମୁଁ ଟିକିଏ ସ୍ୱାଧୀନଚେତା ଥିଲି । କଲେଜରେ ପଢ଼ିବା ଦିନରୁ ଏପରିକି କଟକରେ କଲେଜିଏଟ୍ ସ୍କୁଲରେ ଏନ୍‌ଟ୍ରାନ୍‌ସ ସେକେଂଡ଼ କ୍ଲାସରେ ମୁଁ ପଢୁଥିଲାବେଳୁ ସ୍ୱର୍ଗତ ପଂଡ଼ିତ ଗୋପବଂଧୁ ଦାସଂକ ସାକ୍ଷାତ ସଂପର୍କରେ ଆସି ଦେଶର ଭବିଷ୍ୟତ ଘେନି ବହୁପ୍ରକାର କଳ୍ପନା ଜଳ୍ପନାରେ ପଂଡ଼ିତ ଗୋପବଂଧୁ ଦାସ, ଆଚାର୍ଯ୍ୟ ହରିହର ଦାସ ଓ ପ୍ରଚାରକ ଅନଂତ ମିଶ୍ରଂକ ସଂଗେ ମୋର କାଳ କଟୁଥିଲା । ସେତେବେଳେ ମୋର ତରୁଣ ପ୍ରାଣରେ ଦେଶ ଓ ଜାତିର ଭବିଷ୍ୟତ ସଂବଂଧରେ ଯେଉଁ କଳ୍ପନା ଖେଳୁଥିଲା ଓ ସେଥି ସଂଗେ କାର୍ଯ୍ୟାନୁଷ୍ଠାନର ଯେଉଁ ସବୁ ପଂଥା ଅନୁସଂଧାନ କରାଯାଉଥିଲା, ତାହା ଆଜି ବର୍ଣ୍ଣନା କରି କହିପାରିବି ନାହିଁ । ତା' ଭିତରେ ଗୋଟିଏ ବଡ଼ କଥା ହେଉଚି, ଲୋକସେବା, ରୋଗୀସେବା ଓ ନାନା ସାହିତ୍ୟିକ ଆଲୋଚନା ସଭା କରିବା ଓ ସେ ସବୁରେ ଯୋଗଦେବା ।

ଏସବୁ ଭିତରେ ସଙ୍କଟ ଥାଏ, 'ସରକାରୀ ଚାକିରି' କରିବାକୁ ହେବ ନାଇଁ । ଏଥିରେ ସ୍ୱାଧୀନ ଚିତ୍ତବୃତ୍ତି ଯେପରି ବିକାଶ ପାଇବାର କଥା ତା' ବୋଧହୁଏ ହେଉ ନଥିଲା ।

ବଢ଼ି ଅଂଚଳରୁ ବୋଡ଼ିଂକୁ ଫେରିଆସି ଶୁଣିଲି ପ୍ରିନ୍‌ସିପାଲ ବି: ଭି: ଭାରି ରାଗିଚଂତି । ସେଥିରେ ପୁଣି ଜିଲ୍ଲାମାଜିଷ୍ଟ୍ରେଟ ଥାଂତି ସେତେବେଳେ ଗ୍ୟାରେଟ ବୋଲି ଜଣେ ଇଂରେଜ । ଦେଶଲୋକଂକ ପାଇଁ କାର୍ଯ୍ୟ କଲେ, ବିଶେଷତଃ ବଢ଼ି, ମରୁଡ଼ି, ମଡ଼କରେ ଲୋକଂକ ସେବା କଲେ ସେଭଳି କାର୍ଯ୍ୟସବୁ ସେକାଳେ ଅନେକ ଇଂରେଜ ଶାସକମାନଂକୁ ବଡ଼ ଅସହ୍ୟ ହେଉଥିଲା । ଗ୍ୟାରେଟ ଥିଲେ ସେଇଭଳି ଜଣେ ଶାସକ । ପୁଣି ସେ ଥିଲେ ଜଣେ ଭାରି ଟାଣୁଆ ଲୋକ ।

ଅନେକେ ଜାଣିଥିବେ କି ନାଇଁ ଜାଣେ ନାଇଁ; ସେକାଳେ ଲୋକେ ବଢ଼ି, ମରୁଡ଼ିରେ ପଡ଼ି ଖାଇବାକୁ ନପାଇ ଅଣହେଳାରେ ପୋକମାଛି ପରି ମରୁଥିଲେ; କିଂତୁ ଗୋରା ଜିଲ୍ଲା ମାଜିଷ୍ଟ୍ରେଟ୍‌ମାନେ କୌଣସି ଅଧଃସ୍ତନ କର୍ମଚାରୀଂକ ରିପୋର୍ଟରେ ମଧ ଏ କଥା ବାହାରିବାଟାକୁ ପସଂଦ କରୁ ନଥିଲେ । ଅନେକେ ଜାଣିଥିବେ, ସ୍ୱର୍ଗତ ଗୋପବଂଧୁ ଚୌଧୁରୀ (ସେକାଳ ଡେପୁଟି) ଏପରି ଏକ ବଢ଼ିରେ ବହୁତଗୁଡ଼ାଏ ଲୋକ ଖାଦ୍ୟାଭାବରେ ପଡ଼ିଥିବାର ରିପୋର୍ଟ କରିଥିଲେ । ଉପରୁ ଜିଲ୍ଲା ମାଜିଷ୍ଟ୍ରେଟଂକ ପାଖରୁ ଆଦେଶ ଯାଇଥିଲା "Fool reduce the number" ଫଳରେ ମନସ୍ୱୀ ଗୋପବଂଧୁ ଚୌଧୁରୀଂକର ଚାକିରି ଛାଡ଼ିବାର କାରଣ ଏହାଇ ଥିଲା । ଏଥିରୁ ସେକାଳ ଶାସନ ଓ ଶାସକମାନଂକ ଅବସ୍ଥା ବୁଝାପଡ଼ିବ । ଅବଶ୍ୟ ଏହା ଏକାଳ କଳ୍ପନାରୁ ଅତୀତ ।

ଏଇ ଗ୍ୟାରେଟ୍ ସାହେବ ଆମମାନଂକ ବଢ଼ି ଅଂଚଳକୁ ଯିବା ଓ ନାଆରେ ବୁଲି ଚୁଡ଼ା, ଚାଉଳ ବାଂଟିବା କଥାଟାକୁ ଆଦୌ ପସଂଦ କରି ନଥିଲେ । ଲୋକେ ସ୍ୱତଃ ମନେ କରୁଥିଲେ, ସେ ଏ ବିଷୟରେ ଆମ ପ୍ରିନ୍‌ସିପାଲ ବି: ଭି: ଗୁପ୍ତଂକୁ ତାଗିଦ୍ ମଧ କରିଥିଲେ । ମୁଁ ଥିଲି ଗୋଟିଏ ବୃତ୍ତିଭୋଗୀ ଛାତ୍ର । ସେଥିପାଇଁ ମୋର ଦରମା ଛାଡ଼ ମଧ ହୋଇଥିଲା । ପ୍ରିନ୍‌ସିପାଲ ବିଚାରିଥିଲେ ମୋର ଦରମା ଛାଡ଼ ଓ ବୃତ୍ତି କଟିଯାଂତା । ମୋର ଅନୁପସ୍ଥିତିରେ ଯେ କୌଣସି କାରଣରୁ ହେଉ ସମସ୍ତେ ମତେ ମନେ କରିଥିଲେ ଏଣେ କଡ଼ା ବି: ଭି: ଗୁପ୍ତ, ତେଣେ ପୁଣି ଅତି ଅସହିଷ୍ଣୁ ଗ୍ୟାରେଟ ସାହେବ—ଏଥିରେ ମୋର ଆଉ ଦରମା ଛାଡ଼ ବା ବୃତ୍ତି ରହିବ ନାଇଁ । ମତେ କଲେଜରୁ ବାହାର କରି ଦିଆଯିବ ।

ମୁଁ ପୁଣି ବୋଡ଼ିଂ ସୁପରିନ୍‌ଟେଂଡ଼େଂଟ ( ସେ କାଳର କଲେଜିଏଟ୍ ସ୍କୁଲ ମାଷ୍ଟର ଶ୍ରୀ ସୁରେଶଚଂଦ୍ର ଗୁପ୍ତ, ବି.ଏ.)ଙ୍କ ଅନୁମତି ପର୍ଯ୍ୟଂତ ଘେନିଯିବାକୁ ବେଳ ପାଇ ନଥିଲି ପ୍ରିନ୍‌ସିପାଲଂକୁ କହିକରି ଯିବା ତ ଦୂରର କଥା । ମାତ୍ରକ କେଂଦ୍ରାପଡ଼ାରୁ ପ୍ରିନ୍‌ସିପାଲଂକୁ କଟକରୁ ଯିବାବେଳର ସମୟାଭାବ ଜଣାଇ ଖଂଡ଼େ ସେ କାଳ ପଇସିକିଆ ପୋଷ୍ଟକାର୍ଡ ମାତ୍ର ଲେଖି ଦେଇଥିଲି ।

ମୁଁ ଆସି ହଷ୍ଟେଲରେ ପହଂଚିଲାମାତ୍ରେ ହଷ୍ଟେଲରେ ମୋ ଆଗମନକୁ ଅପେକ୍ଷା କରି ରହିଥିବା ଦୁଇଜଣ ଚପରାଶି ମତେ ଘେନି ପ୍ରିନ୍‌ସିପାଲଂକ ପାଖକୁ ଗଲେ । ଏବେ କଲେଜିଏଟ୍ ସ୍କୁଲ ହେଡ୍‌ମାଷ୍ଟରଂକର ଯେଉଁ ବସାଘରଟି ଅଛି, ତାହାରି ଦୋ'ତାଲା ଉପରେ ସେ କାଳ

କଲେଜ ପ୍ରିନ୍‌ସିପାଲଂକ ଅଫିସ ଥିଲା । ମୁଁ ଚପରାଶି ଦୁଇଜଣଂକ ସଂଗେ ଦୀର୍ଘ ସୋପାନ ଶ୍ରେଣୀଟି ଅତିକ୍ରମ କରି ପ୍ରିନ୍‌ସିପାଲଂକ ଆଗରେ ଯାଇ ପହଂଚିଲି । ପ୍ରିନ୍‌ସିପାଲ ଅତି ରୁକ୍ଷସ୍ୱରରେ ମତେ ପଚାରିଲେ, ''ତୁମେ କୁଆଡ଼େ ଯାଇଥିଲ ?'' ମୁଁ କହିଲି, ''କେଂନ୍ଦ୍ରାପଡ଼ା, ଯାଜପୁର ଅଂଚଳରେ ରାଶି ରାଶି ଲୋକେ ବଢ଼ିରେ ବୁଡ଼ି ମରିଯାଉଥିଲେ । ମୁଁ ତାଂକୁ ଚୁଡ଼ା, ଚାଉଳ ବାଂଟିବା ପାଇଁ ଗୋପବଂଧୁ ଦାସଂକ ସଂଗେ ଯାଇଥିଲି । ମୁଁ ତ ଆପଣଂକୁ କେଂନ୍ଦ୍ରାପଡ଼ାଠାରୁ ପୋଷ୍ଟକାର୍ଡ଼ ଲେଖି ଜଣାଇଥିଲି । ଆପଣ ପାଇଥିବେ ।'' ପ୍ରିନ୍‌ସିପାଲ ଆଗପରି ରୁକ୍ଷସ୍ୱରରେ ପୁଣି ପଚାରିଲେ, ''ଏଇପରି କ'ଣ ଜଣାଇବାକୁ ହୁଏ ? ତମେ ଜାଣ ତମର ପିତା ତ ଅଛଂତି । ତୁମକୁ ସେ ଏଠାରେ ରଖାଇ ଦେଇଥିଲେ ଆମର ତତ୍ତ୍ୱାବଧାନରେ । ଧର, ତମର ପିତା ଆସି ଆମକୁ ପଚାରିଥାଂତେ, ଆମେ କ'ଣ ଉତ୍ତର ଦିଅଂତୁ ? ତୁମେ ରୁଗ୍‌ଣ ହୋଇଥାଂତ, ଆମେ କ'ଣ କରଂତୁ ? ଇତ୍ୟାଦି''

ମୁଁ ଟିକିଏ ଦୃଢ଼ ଗଂଭୀର ଭାବରେ ଠିଆ ହେଲି । ତା'ପରେ କ'ଣ ଭାବିଲି, ମୋର ମନେ ହେଉ ନାହିଁ । ମୁଁ ହଠାତ୍ କହିଉଠିଲି, ''ଲୋକେ ରାଶି ରାଶି ମରିଯାଉଥିଲେ, ମୁଁ ତ ତାଂକରି ସାହାଯ୍ୟ ପାଇଁ ଯାଇଥିଲି । ଅବସ୍ଥା ବଡ଼ ଜରୁର, ମୋର ଜଣାଇବାକୁ ବେଳ ନଥିଲା । ମୋର ଆଉ ଚାରା କ'ଣ ଥିଲା ?'' ପ୍ରିନ୍‌ସିପାଲ କହିଲେ, ''ତମର ଚାରା ଥିଲା କି ନାହିଁ, ସମୟ ଥିଲା କି ନାହିଁ, ଏକଥା ଆମର ଭାବିବାର ବିଷୟ ନୁହେଁ ।'' ସେଠାରୁ ମୁଁ କହିଲି, ''ପ୍ରବୀଣ ବୟସ୍କମାନେ ଏଇପରି କହଂତି । ପିଲାଏ ଏଇପରି ଯାଆଂତି । ମୁଁ କିଛି ଅପକାର୍ଯ୍ୟ କରିବାକୁ ଯାଇ ନଥିଲି ।''

କାହିଁକି କେଜାଣି ବି: ଭି: ଗୁପ୍ତଂକ ପରି ପ୍ରିନ୍‌ସିପାଲ ହଠାତ୍ ଏ କଥାରେ ଖେଁକିନି ହସିଦେଲେ । ମତେ କହିଲେ, ''ଦୁଷ୍ଟପିଲା, ଯାଅ ଯାଅ ।''

ମୋର ଯେତେଦୂର ମନେ ହେଉଚି, ପ୍ରିନ୍‌ସିପାଲଂକ ସଂଗେ ଏହାଇ ମୋର ପ୍ରଥମ ଦେଖା । ଓଡ଼ିଆ ପିଲାଂକର ବିଶେଷରେ ମୋ ପରି ତଳକ୍ଲାସ ପିଲାଂକର ସେତେବେଳେ ପ୍ରିନ୍‌ସିପାଲଂକ ଭଳି ଲୋକଂକ ସଂଗେ ଦେଖା ହେବା, କଥାବାର୍ତ୍ତା ହେବା, ସହଜ ନଥିଲା । ମାତ୍ର ଏହା ଦେଖି ଆମ ବୋର୍ଡ଼ିଂର ସୁପରିନ୍‌ଟେଂଡ଼େଂଟଂକୁ ମିଶାଇ ଆଉ ସମସ୍ତେ ତାଜିବ ହୋଇଗଲେ । ଆଉ ବୋର୍ଡ଼ିଂରେ ବା କଲେଜରେ ଏକଥା ପଡ଼ି ନାହିଁ ।

## ଅଧ୍ୟକ୍ଷ ବି: ଭି: ଗୁପ୍ତଂକ ସ୍ମୃତି
## (୨ ଖ)

ଆଉ ଦିନକର କଥା । ଏମଧ ସେଇ ବି: ଭି: ଗୁପ୍ତ, ପ୍ରିନ୍‌ସିପାଲଂକ ସଂବଂଧୀୟ କଥା । ସେକାଳ କଲେଜ ହଷ୍ଟେଲ ବା ଏବ କଲେଜିଏଟ୍ ସ୍କୁଲବୋର୍ଡ଼ିଂ ଗେଟ୍ ପାଖେ ଅଛି ଲଂଡ଼ା ଦେଉଳ । ସେଇ ଲଂଡ଼ା ଦେଉଳରେ କେତେଗୁଡ଼ିଏ ବସା ଥାଏ । କଲେଜ, କଲେଜିଏଟ୍ ସ୍କୁଲ ତଥା ସହର ମଧ୍ୟରେ ଅନ୍ୟାନ୍ୟ ସ୍ଥାନରେ ପଢୁଥିବା କେତେକ ଛାତ୍ର ମଧ୍ୟ ସେଥିରେ ରହୁଥିଲେ । ଥରେ ସେଇ ଛାତ୍ରମାନଂକ ଭିତରେ ହଇଜା ଆରଂଭ ହେଲା । ଏବେ ପଟିଆର

ଲୋକନାଥ ଦାସ ଆଡ୍‌ଭୋକେଟ୍, ରାଜାବଗିଚାରେ ଅଛଂତି । ସେ ଓ ତାଂକ ସଂଗେ ତାଂକର ଗୋଟିଏ ଛୋଟଭାଇ, ଏ ଦୁହେଁ ସେଇ ଲଂଡ୍ରାଦେଉଳ ବସାମାନଂକ ଭିତରୁ ଗୋଟିକରେ ଥାଂତି । ସେଇ ଛୋଟ ପିଲାଟିର ହଇଜା ହେଲା । ସେ ସେତେବେଳେ ଟ୍ରେନିଂସ୍କୁଲ ସଂପର୍କରେ ଥିବା ମଡ଼େଲ ସ୍କୁଲ (ମାଇନର ସ୍କୁଲ)ରେ ଗୋଟିଏ ଛାତ୍ର ଥାଏ । ମୁଁ ମଧ ସେ କାଳେ ହଇଜା ରୋଗୀଂକର ବୁଲି ବୁଲି ଚିକିତ୍ସା କରୁଥିବା ଗୋଟିଏ କ୍ଷୁଦ୍ରଦଳରୁ ଜଣେ ଥିଲି । ମୁଁ ବି, ମନେଅଛି, ଅତି ପ୍ରତ୍ୟୁଷରୁ କାଠଯୋଡ଼ିରେ ସ୍ନାନକରି ଗୋଟାଏ ମଠା ପିଂଧି ନୈଷ୍ଠିକ ଭାବରେ ସକାଳୁ ଗୀତା, ଉପନିଷଦ୍ ପ୍ରଭୃତି ଘଂଟାଏ ଖଂଡେ ପଢୁଥିଲି । ସକାଳୁ ଯୋଡ଼ାଏ ଖଡ଼ମ ବି ମାଡୁଥିଲି । ସେଇପରି ଗୀତା, ଉପନିଷଦ୍ ପଢୁ ପଢୁ ଖବର ପାଇଲି, ଲଂଡ୍ରା ଦେଉଳରେ ଗୋଟିଏ ପିଲାର ହଇଜା ହେଉଚି । ମୁଁ ସେଇପରି ମଠା ପିଂଧି କାଂଧରେ ଗାମୁଛା ପକାଇ ଖଡ଼ମ ମାଡ଼ି ବୋଡ଼ିଂରୁ ବାହାରି ଲଂଡ୍ରା ଦେଉଳକୁ ଚାଲିଗଲି । ଲଂଡ୍ରା ଦେଉଳରୁ ଆଉ ସବୁ ଛାତ୍ରମାନଂକୁ ସ୍ଥାନାଂତରକୁ ଯିବାକୁ କହିଦେଲି । ଲୋକନାଥର ଆଉ ସ୍ଥାନାଂତର ନଥିଲା । ତାକୁ ବୋଡ଼ିଂରେ ଯାଇ ମୋ ପାଇଁ ରଂଧା ହୋଇଥିବା ମିଲ୍ ଖାଇ ରହିବାକୁ କହିଦେଲି ।

ହଇଜାଗ୍ରସ୍ତ ପିଲାଟିର ନାମ, ମୋ ମନେ ହେଉଚି, ନେତ୍ରାନଂଦ । ମୋ ଛଡ଼ା ତା' ପାଖେ ଆଉ କେହି ରହିଲା ନାଇଁ । ମୁଁ କ୍ରମେ କ୍ରମେ ଆଗ ମୋର ଗାମୁଛା, ତା'ପରେ ବିଛଣା ଚାଦର ପ୍ରଭୃତି ବୋଡ଼ିଂରୁ ଆଣି ଚିରି ଚିରି ଖଂଡ଼ ଖଂଡ଼ କରି ତା'ର ଝାଡ଼ା ପାଇଁ ପକାଇ ପକାଇ ସବୁ ଶେଷ ହୋଇଗଲା । ସେତେବେଳେ ହଇଜାର ବିଶେଷ କିଛି ପ୍ରତିକାର ନଥିଲା । ପାଖରେ ଥାଂତି ମନ୍ମଥ ବାବୁ, ସେତେବେଳର ଟ୍ରେନିଂ ସ୍କୁଲର ଡ୍ରଇଁ ମାଷ୍ଟର । ସେ କରୁଥାଂତି ଅବୈତନିକ ହୋମିଓପାଥିକ ଚିକିତ୍ସା । ତାଂକଠାରୁ ବରାବର ଔଷଧ ଆଣି ନେତ୍ରାନଂଦକୁ ପାନେ ପାନେ ଦେଉଥାଏ । ପରେ ଜଣାପଡ଼ିଲା, ସେ ଔଷଧ ଦିଆଯାଉଥିଲା ଭାସ୍କର ପାଣି (କର୍ପୂର ସୁବାସିତ ପାଣି)ରେ ।

ଏଣେ ସାରା ହଷ୍ଟେଲରେ ଚହଳ ପଡ଼ିଗଲା, ନୀଳକଂଠ ଲଂଡ୍ରା ଦେଉଳରେ ଯାଇ ହଇଜା ରୋଗୀ ଚିକିତ୍ସା କରୁଚି, ସେଇ ଲୁଗା ପିଂଧି ବୋଡ଼ିଂରେ ନିଜ ଘରକୁ ଆସୁଚି ଯାଉଚି କାହାରି କଥା ମାନୁ ନାଇଁ । କ୍ରମେ ଏ କଥା ସୁରେଶ ଗୁପ୍ତ (ସୁପରିନ୍‌ଟେଂଡେଂଟ) କଲେଜର ପ୍ରିନ୍‌ସିପାଲଂକ କାନକୁ ନେଲେ । ପ୍ରିନ୍‌ସିପାଲ ମଧ ଟିକିଏ ବିଚଳିତ ହୋଇଗଲେ ଓ ସଂଗେ ସଂଗେ ମତେ ଡାକିବା ପାଇଁ ଚପରାଶି ପଠାଇଦେଲେ । ସେତେବେଳକୁ ନେତ୍ରାନଂଦ ବାରଂବାର ପାଣି ମାଗୁଚି । ମୁଁ ମଧ ପାଖରେ କଡ଼ା ପୋଟାସ୍ ପରମାଂଗାନେଟ୍ ପାଣି ଆଟିକାଏ ରଖିଦେଇ ତା'ର ସେବାରେ ଲାଗିଚି । ପଟାସ୍ ପାଣିରେ ବାରଂବାର ହାତ ଧୋଇ ଧୋଇ ମୋ ହାତ କଳା ପଡ଼ିଯାଇଚି । ମୁଁ ମାଡ଼ିଚି ଖଡ଼ମ । ପିଂଧିଚି ସେଇ ମଠାଟି । ଗାମୁଛା ମଧ କାଂଧରେ ନାଇଁ । ପ୍ରିନ୍‌ସିପାଲ ପଠାଇଥିବା ଚପରାଶି ସଂଗେ ତର ତର ହୋଇ ଚାଲି ଦୋ'ତାଲା ଉପରେ ପ୍ରିନ୍‌ସିପାଲଂକ କୋଠରିକୁ ଉଠିଆସିଲି । ପ୍ରିନ୍‌ସିପାଲଂକୁ ଦେଖିବା ମାତ୍ରେ କହିଲି, ''ରୋଗୀଟି ପାଖରେ ଆଉ କେଇ ନାହାଂତି । ସେ ପ୍ରତିକ୍ଷଣରେ ପାଣି ମାଗୁଚି ଓ ଝାଡ଼ା ଯାଉଚି । ମୁଁ ତା' ପାଖରୁ ଆସିଚି । ଶୀଘ୍ର ଫେରିଯିବି ।

ଆପଣ ମୋତେ ଅପରାଧୀ ବୋଲି ବିଚାରୁଥିବେ, କ'ଣ ଦଂଡ଼ ଦେବାକୁ ଭାବୁଥିବେ । ଆପଣ ଯାହା କରିବେ କରଂତୁ, ମତେ ଛାଡ଼ିଦିଅଂତୁ ।''

ପ୍ରିନ୍‌ସିପାଲ ଟିକିଏ ସ୍ତଂଭିଭୂତ ହେଲା ପରି ରହିଲେ । ମତେ କହିଲେ, ''ଯାଅ ।''

ତା'ପରେ ସୁପରିନ୍‌ଟେଂଡେ଼ଂଟ ଲଂଡ଼ା ଦେଉଳ ବସା ବାହାରକୁ ଆସି ମତେ ଦଶ ଟୋପା Sulphuric Acid (ସଲଫ୍ୟୁରିକ ଏସିଡ୍) ପିଆଇ ଦେଇଗଲେ । ଆଉ ମତେକିଛି କହି ନାହାଂତି ।

ସେ ପିଲାଟି କଥା ଟିକିଏ କହିଦିଏ । ଠିକ୍ ସନ୍ଧ୍ୟା ପୂର୍ବରୁ ତା'ର ମୃତ୍ୟୁ ହେଲା । ଏ ମଧରେ ଟ୍ରେନିଂ ସ୍କୁଲର ସେକାଳ ଅଧକ୍ଷ ଓ ମଡେ଼ଲ ସ୍କୁଲର ସୁପରିନ୍‌ଟେଂଡେ଼ଂଟ ଚଂଦ୍ର- ମୋହନ ମହାରଣା ଖବର ପାଇଁ ତାକୁ ଦେଖିବାକୁ ଆସିଥିଲେ । ମୁଁ ତାଂକ ସଂଗେ ଯାଇ ଟ୍ରେନିଂ ସ୍କୁଲ ବୋଡ଼ିଂରୁ କେତେକ ଛାତ୍ରଂକୁ ଡାକିଆଣି ରାତ୍ରରେ ଖାନନଗରରେ ତାର ଦାହକ୍ରିୟା କରୁ କରୁ ମନେ ଅଛି, ନଈ ମାଡ଼ିଆସିଲା । ଆମେ ଶେଷକୁ ଅକର୍ତ୍ତବ୍ୟରେ ଦାହ କରିବା ଅବସ୍ଥାରେ ସେ ପିଲାଟିକୁ ନଈରେ ଭସାଇଦେଲୁ । ଚଂଦ୍ରମୋହନ ବାବୁ ମଧ ସଂଗେ ଥିଲେ ।

## ଅଧକ୍ଷ ବି: ଭି: ଗୁପ୍ତଂକ ସ୍ମୃତି
## (୨ ଗ)

ମୁଁ ୧୯୦୫ରେ ଏନ୍‌ଟ୍ରାନ୍‌ସ ପାସ୍ କରି ଗୋଟିଏ ପ୍ରାଦେଶିକ ବୃତ୍ତି ପାଉଥିଲି । ସେ ବର୍ଷ ଏଇ ପ୍ରାଦେଶିକ ବୃତ୍ତି ପାଇବାବାଲା ଆଉ ତିନିଜଣ ହେଉଚଂତି, ଏବର ଡକ୍ଟର ସୁଶୀଳ କୁମାର ଦେ । ଆଉ ଜଣେ ହେଉଚଂତି, ପ୍ରତିଷ୍ଠିତ ପଂଡ଼ିତ ଓ ଐତିହାସିକ ଡକ୍ଟର ରମେଶଚଂଦ୍ର ମଜୁମଦାର । ଚତୁର୍ଥ ଜଣଂକ ହେଉଚଂତି ଏବର କଟକର ଆଡ଼ଭୋକେଟ୍ ଶ୍ରୀ ଜୀବନାନଂଦ ଦାସ । ଯାହାହେଉ, ଏଇ ପ୍ରାଦେଶିକ ବୃତ୍ତି ମୋର ଏଫ୍.ଏ. (ଏବର ଆଇ.ଏ.) ବେଳକୁ ଥିଲା ମାତ୍ର ଦୁଇଟି । ମୋର ସ୍ଥାନ ଥିଲା ତୃତୀୟ । ତଥାପି ମୁଁ ବି.ଏ. ପଢ଼ିବାକୁ ମନସ୍ଥ କରି ଆସିଥିଲି । ହଠାତ୍ ଦିନେ ପ୍ରିନ୍‌ସିପାଲ, ବି: ଭି: ଗୁପ୍ତ ମତେ ଡକାଇ ପଠାଇଲେ । କହିଲେ, ''ମେୟୋ ସାହେବଂକ ନାମରେ ଦୁଇଟି ବୃତ୍ତି ଅଛି । ତମର ସ୍ଥାନ ଅଛି ତୃତୀୟ । ତମେ ଗୋଟିଏ ଦରଖାସ୍ତ ଦେଉ ନାହଁ କାହିଁକି ?'' ମୁଁ ସେଠାରୁ ଆସି ଦରଖାସ୍ତ ଖଂଡ଼ିଏ ଲେଖିନେଇ ତାଂକୁ ଦେଲି । ସେ କହିଲେ, ''ଦୁଇଟି ସାର୍ଟିଫିକେଟ୍ ଏହା ସଂଗେ ଦେବା ଦରକାର ।''

ମୁଁ ତ ଜୀବନରେ କେବେ କାହାରିଠାରୁ ସାର୍ଟିଫିକେଟ୍ ପାଇଁ ଯାଇ ନଥିଲି । ତା'ପରେ ବି ଯାଇ ନାହିଁ । କାରଣ ଅତି ତଳ କ୍ଲାସରୁ ଗୋପବଂଧୁ ବାବୁଂକ ସଂପର୍କରେ ଆସି ମୁଁ ପ୍ରତିଜ୍ଞା କରିଥିଲି ସରକାରୀ ଚାକିରୀ କରିବି ନାହିଁ । କାହାକୁ ସାର୍ଟିଫିକେଟ୍ ନ ମାଗିବାର ଏ ଗୋଟିଏ କାରଣ; କିଂତୁ ପ୍ରିନ୍‌ସିପାଲ ମତେ ବାଧ କଲେ । କାହିଁକିନା, ମେୟୋବୃତ୍ତିର ନିୟମରେ ସେଇଆ ଥିଲା ।

ମୋ ମନେଅଛି, ମୁଁ ସେଠାରୁ ମାଣିକଘୋଷ ବଜାରରେ ଥିବା (ଏବେ ଯେଉଁଠାରେ କୋଣାର୍କ ହୋଟେଲ ହୋଇଚି) ବ୍ରଜସୁଂଦର ଦାସଂକ ଘରକୁ ଗଲି । ସେଠାରେ ବ୍ରଜସୁଂଦର ବାବୁ ଓ ଗପୋବଂଧୁ ବାବୁ ଦୁହେଁ ବସି ଆଳାପ କରୁଥିଲେ । ତାଂକୁ କହିବାରେ ସେ ଆଗ ଟିକିଏ ଅପସଂଦ କଲା ପରି କଲେ; ମାତ୍ର ମତେ ଦୁଇଖଂଡ଼ ସାର୍ଟିଫିକେଟ୍ ଲେଖିଦେଲେ ।

ମୁଁ ତାକୁ ଆଣି ପ୍ରିନ୍‌ସିପାଲଂକୁ ଦେଲି । ପ୍ରିନ୍‌ସିପାଲ ତାକୁ ଦେଖିଲେ । ମୋ ଆଡ଼ିକି ଚାହିଁ ଟିକିଏ ସ୍ମେରମୁଖରେ ମତେ କହିଲେ, ''ହଉ, ବିଧି ରକ୍ଷା ତ ହୋଇଗଲା, ଯାଅ ।'' ଭଣାଇ ଦେବାକୁ ଚାହେ, ଏଇ ଦରଖାସ୍ତ ଫଳରେ ମୋର ମେଯୋବୃତ୍ତି ହୋଇଥିଲା ।

## ଅଧକ୍ଷ ବି: ଭି: ଗୁପ୍ତଂକ ସ୍ମୃତି
## (୨ ଘ)

ସେଇପରି ରେଭେନ୍‌ସା କଲେଜ ଛାଡ଼ିବା ବେଳେ । କୌଣସି କମିଶନ ଅନୁସାରେ ସଂଶୋଧିତ ହୋଇଥିବା ବିଧିରେ ୧୯୦୯ରେ ପ୍ରଥମେ ବି.ଏ. ପରୀକ୍ଷା ଆରଂଭ ହୋଇଥିଲା । ମୁଁ ସେଥିରେଇ ପରୀକ୍ଷା ଦେଇ ପାସ୍ କରିଥିଲି । ମୋ ପୂର୍ବବର୍ଷ ୧୯୦୮ ପରୀକ୍ଷାରେ ଯେଉଁମାନେ ଅକୃତକାର୍ଯ୍ୟ ହୋଇଥିଲେ, ସେମାନଂକ ପାଇଁ ଗୋଟିଏ ସପ୍ଲିମେଂଟାରୀ ପରୀକ୍ଷା ହୋଇଥିଲା । ସ୍ୱର୍ଗତ ଓକିଲ ଭୂତପୂର୍ବ ପ୍ରଧାନ ବିଚାରପତି ବୀରକିଶୋର ରାୟ ଓ ଆଡ୍‌ଭୋକେଟ୍ ଶ୍ରୀ ବିଚିତ୍ରାନଂଦ ଦାସ ପ୍ରଭୃତି କେତେକ କଲେଜରେ ସୁପରିଚିତ ଛାତ୍ର ଏଇ ସପ୍ଲିମେଂଟାରୀରେ ପାସ୍ କରିଥାଂତି ।

ସେଇ ବର୍ଷ ପୁଣି କଲିକତାରେ ନୂଆ ହୋଇ ବିଶ୍ୱବିଦ୍ୟାଳୟରେ ଆଇନ୍ କଲେଜ ପ୍ରତିଷ୍ଠିତ ହୋଇଥାଏ ଓ ଓଡ଼ିଶାର ଏକମାତ୍ର ରେଭେନ୍‌ସା କଲେଜର ଛାତ୍ରମାନଂକ ପାଇଁ ମାସକୁ ୩୦ଟଂକା ହିସାବରେ ବି.ଏଲ. ପଢ଼ିବା ପାଇଁ ଚାରୋଟି ବୃତ୍ତି ସରକାର ଦେଉଥାଂତି ।

ମୁଁ ସେ ବୃତ୍ତି ବିଷୟରେ ବିଶେଷ ମନ ଦେଇ ନଥିଲି, କାଇଁକିନା, ମୋର ଧାରଣା ଥିଲା, ସପ୍ଲିମେଂଟାରୀରେ ପାସ୍ କରିବା ଛାତ୍ରମାନଂକୁ ନଦେଇ ସେ ବୃତ୍ତିକୁ ଆମକୁ ଦେବେ କାଇଁକି ? ତଥାପି ମୁଁ ଏମ୍.ଏ. ପାସ୍ କରିବା ପାଇଁ କୃତସଂକଳ୍ପ ଥାଏ । ବି.ଏ. ପାସ୍ କରିବା ସଂଗେ ସଂଗେ ସତ୍ୟବାଦୀରେ ମାଇନର୍ ସ୍କୁଲଟି ଗୋପବଂଧୁବାବୁଂକ ସାହଚର୍ଯ୍ୟରେ ପ୍ରତିଷ୍ଠା କରାଯାଇଥିଲା । ସେଇଥିରେଇ ମୋର ପ୍ରଧାନ ଶିକ୍ଷକ ଓ ହଷ୍ଟେଲର ଅଧକ୍ଷ ହେବା କଥା ମୁଁ ନିଶ୍ଚୟ କରି ସାରିଥାଏ; କିଂତୁ ସେତେବେଳେ ଏମ୍.ଏ. ପଢ଼ିବାକୁ ଓଡ଼ିଶାର ପିଲାଏ କଲିକତା ଯାଉ ନଥାଂତି । ମୁଁ ଠିକ୍ କଲି ଏମ୍.ଏ. ପାସ୍ କରି ଆସି ସତ୍ୟବାଦୀ ସ୍କୁଲ ଓ ହଷ୍ଟେଲର ଭାର ନେବି । ସେ ପର୍ଯ୍ୟଂତ ସ୍କୁଲରେ ମାଇନରଠାରୁ ଉପର ଶ୍ରେଣୀ ଖୋଲିବା କଥା, ତେଣୁ ବଂଦ ରଖାଇଲି ।

କିଂତୁ ମୋର ପରିବାର ସଂବଳହୀନ । କଲିକତାରେ ପଢ଼ିବି କିମିତି ? ଥରେ କଟକରେ ଏଇ ସଂବଂଧରେ ଗୋଟିଏ କୌତୁକାବହ ଘଟଣା ଘଟିଥିଲା । ମୁଁ କଟକରେ ଆସି ସେକାଳର ଇଂରେଜୀ ପ୍ରଫେସର ଶ୍ରୀଯୁକ୍ତ ଗୋପାଳଚଂଦ୍ର ଗାଂଗୁଲିଂକ ସଂଗେ କଥାବର୍ତ୍ତା ହେଉଥିଲି । ସେ ମୋର ଭବିଷ୍ୟତ କଥା ପଚାରି ବସିଲେ । ମୁଁ କହିଲି, ''ସତ୍ୟବାଦୀ ସ୍କୁଲରେ ଅଧକ୍ଷ ରୂପେ ଯୋଗଦେବି ଓ ସେଇ ସ୍କୁଲକୁ ଜାତୀୟ ବିଦ୍ୟାଳୟ ଭାବରେ ଗଢ଼ିବାପାଇଁ ସ୍ଥିର କରା ହୋଇଚି । ମୁଁ ତା'ଛଡ଼ା ଆଉ କିଛି କରିବି ନାଇଁ ।'' ସେ ପଚାରିଲେ, ''ତେବେ ଏମ୍.ଏ. ପଢ଼ିବା ପାଇଁ କଲିକତା ଯାଉଚ କାଇଁକି ? ବି.ଏ. ପାସ୍ ତ ସତ୍ୟବାଦୀ ସ୍କୁଲ ପାଇଁ

ଯଥେଷ୍ଟ ହୋଇଯିବ ।'' ମୁଁ କହିଲି, ''ଓଡ଼ିଆ ପିଲାଏ ଏମ୍.ଏ. ପଢ଼ିବାକୁ କଲିକତା ଯାଉ ନାହାଂତି, ଅଥଚ ଏଠାରେ ରେଭେନ୍‌ସା କଲେଜରେ ଏମ୍.ଏ. ପଢ଼ିବାର କୌଣସି ସୁବିଧା ନାହିଁ । ମୁଁ ସ୍ଥିର କରିଚି, କଲିକତା ଯାଇ ଏମ୍.ଏ. ପାସ୍ କରିବା ବିଷୟରେ ବାଟ ଦେଖାଇବି । ମୋର ଆଉ କିଛି ଉଦ୍ଦେଶ୍ୟ ନାହିଁ ।'' ଗୋପାଳବାବୁ ପଚାରିଲେ, ''ଆଚ୍ଛା, ତମର ତ ଅବସ୍ଥା ଭଲ ନୁହେଁ । ତେବେ କଲିକତାରେ ଯାଇ ଖର୍ଚ୍ଚ ଚଳାଇ ପଢ଼ିବ କିପରି ?''

ମୁଁ କହିଲି, ''ଦେଖାଯାଉ ।

''ଯେନ ଶୁକ୍ଳୀକୃତା ହଂସାଃ
ଶୁକ୍ଳାଶ୍ଚ ହରିତା କୃତାଃ
ମୟୂରାଶ୍ଚିତ୍ରିତା ଯେନ
ସତେ ବୃତ୍ତିଂ ବିଧାସ୍ୟତି ।''

କୌଣସିମତେ ଅର୍ଥର ବ୍ୟବସ୍ଥା ହୋଇଯିବ । ଗୋପାଳବାବୁ ଗୋଟାଏ ସଂତୋଷର ପ୍ରସନ୍ନତାରେ କହିଲେ, ''ତୋର ଏପରି ଭାବ ? ତୁ ଯା, କୌଣସିମତେ ହେଲେ ତୋର ହୋଇଯିବ ।''

ବିଚିତ୍ର କଥା । ଠିକ୍ ସେଇଆଡୁ ଆସି ଶୁଣିଲି, ପ୍ରିନ୍‌ସିପାଲ ବି.ଭି. ଗୁପ୍ତ ମତେ ଚାହିଁ ବସିଚଂତି । ମୁଁ ସାଂଗେ ସାଂଗେ ଦୋତାଲା ଉପରକୁ ତାଂକ ଅଫିସରେ ତାଂକୁ ଭେଟିବାକୁ ଗଲି । ସେ କହିଲେ, ''କିଓ ! ତମେ କାହିଁକି ବି.ଏଲ. ବୃତ୍ତି ପାଇଁ ଦରଖାସ୍ତ ଦେଉନାହଁ ? ଆଜି ତ ଶେଷ ଦିନ, ମୁଁ ତୁମକୁ ଚାହିଁ ବସିଚି ।''

ମୁଁ କହିଲି, ''ଅନେକ ତ ପୂର୍ବବର୍ଷ ସପ୍ଲିମେଂଟାରୀରେ ବି.ଏ. ପାସ୍ କରିଚଂତି । ମୋ ସଂଗେ ଅନ୍ୟାନ୍ୟ ଅନେକ ବି ପାସ୍ କରିଚନ୍ତି । ମୋର ବି ହୁଏତ ପରୀକ୍ଷାରେ କୌଣସି ଉଚ୍ଚସ୍ଥାନ ନଥିବ । ମୁଁ କାହିଁକି ଦରଖାସ୍ତ ଦେବି ?'' ପ୍ରିନ୍‌ସିପାଲ କହିଲେ, ''ଏସବୁ ଯୁକ୍ତି ଛାଡ଼, ଖଂଡ଼ିଏ ଦରଖାସ୍ତ ଦିଅ ।'' ମୁଁ ସେଇଠାରେ ଖଂଡ଼େ ଦରଖାସ୍ତ ଦେଇଦେଲି । ପରେ ଗେଜେଟ୍‌ରେ ବାହାରିବାରେ ଦେଖିଲି, ଚାରିଜଣ ବୃତ୍ତି ପାଇବାରେ ମୋର ସ୍ଥାନ ଥିଲା ପ୍ରଥମ ।

(ଲେଖା—୨୯-୧୧-୧୯୫୮)

## (୩) ନିଶୁଆ ନୀଳକଂଠ ଦାସ

ମୋର ଜୀବନରେ ସମାଜ ସଂସ୍କାରର ପ୍ରଥମ ପର୍ବ 'ନିଶ' ନାମରେ ଚାରିଆଡ଼େ ବ୍ୟାପ୍ତ ହୋଇଥିଲା । ସେଥିରେ ନିଶ ଶବ୍ଦର ବ୍ୟୁତ୍ପତ୍ତିକ ଅର୍ଥ ସଂଗେ ତାର ବିଶେଷ କିଛି ସଂପର୍କ ନଥିଲା । ତା' କିପରି ହେଲା କହିଦେବା ଦରକାର । ପୁରୀର ସେକାଳ ହେଡ୍‌ପଂଡ଼ିତ ପଂଡ଼ିତ ସଦାଶିବ ମିଶ୍ର ମହାମହୋପାଧ୍ୟାୟ ଆମକୁ ସବୁ ସମୟରେ ବଡ଼ ସୁଖ ପାଉଥିଲେ । ବିଶେଷରେ ବ୍ରାହ୍ମଣମାନଂକ ଶିକ୍ଷା ତହିଁ ସଂଗେ ବ୍ରାହ୍ମଣ ସଂସ୍କୃତି ପ୍ରତି ତାଂକର ଖୁବ୍ ଶ୍ରଦ୍ଧା ଥିଲା । ସେ ବୃଦ୍ଧାଦିନକୁ 'ନୀଳାଚଳ' ବୋଲି ଖଂଡ଼ିଏ କାବ୍ୟ ଲେଖୁଥିଲେ । ମତେ ତାକୁ ଦିନେ କୌତୂହଳରେ କେତେକ ପୃଷ୍ଠା ଶୁଣାଇଥିଲେ । ମୁଁ ସେତେବେଳେ କଟକରୁ ଆସି

ଏନ୍‌ଟ୍ରାନ୍‌ସ ଫାଷ୍ଟକ୍ଲାସରେ ପୁରୀରେ ପଢୁଥାଏ । ମୋ ମନରେ କିପରି ହେଲା । ସେତେବେଳେ ଗୋପବନ୍ଧୁ ବାବୁ ପୁରୀ ଆସିଥିଲେ । ମୁଁ ଯାଇ ତାଂକୁ ସେକଥା କହିଲି । ସେ ମତେ ଘେନି ପଂଡ଼ିତଂକ ଘରକୁ ଆସିଲେ । ସେଇକଥା ପକାଇଲେ । ଶେଷକୁ ପଂଡ଼ିତ ମହାଶୟଂକ ସଂଗେ ସ୍ମୃତି ବିଷୟରେ କୌଣସି ନୂତନ କଥା ପକାଇବାର ତାଂକର ମମତା ଦେଖିଲି । ସେଇଥିରୁ ପଂଡ଼ିତ ମହାଶୟଂକ ସେତେବେଳର 'କାଲ୍ୟାପାଧର୍ମସର୍ବସ୍ୱ' ସ୍ମୃତି ଲେଖିବାର ସ୍ଥିର ହେଲା । ସେଇ ସ୍ମୃତି ବା ସେଇଭଳି କୌଣସି ଗ୍ରଂଥ ପାଇଁ କଲିକତାର ସେକାଳର ବଡ଼ ବାରିଷ୍ଟର ଶ୍ରୀ ବ୍ୟୋମକେଶ ଚକ୍ରବର୍ତ୍ତୀ ବଡ଼ ବ୍ୟାକୁଳ ଥିଲେ । ପଂଡ଼ିତ ମହାଶୟ ଲେଖା ଆରଂଭ କଲାଦିନରୁ ତାଂକୁ ଆସ୍ତେ ଆସ୍ତେ ଦେଖାଉଥାଂତି । ସମସ୍ତ ସ୍ମୃତିଟି ଶ୍ରୀ ବ୍ୟୋମକେଶ ଚକ୍ରବର୍ତ୍ତୀ ନାଗରାକ୍ଷରରେ ଛପାଇ ଦେଇଥିଲେ । ସେଥିରେ ଏ କାଲ୍ୟାପଦ୍ କାଳରେ ବ୍ରାହ୍ମଣମାନଂକ ଭିତରେ ଯୁବତୀ ବିବାହ ପ୍ରଭୃତି ଆନୁଷ୍ଠାନିକ ଭାବରେ ସଂଗତ ବୋଲି ପ୍ରମାଣ କରାହୋଇଥିଲା । ଏଇପରି ସେକାଳକୁ ଚାହିଁ ସେ ସ୍ମୃତି ଖଂଡ଼ି ବଡ଼ ଉପଯୋଗୀ ବୋଲି ମନେ କରାହେଉଥିଲା । ନିଶ ଆଂଦୋଳନର ମୂଳ ହୁଏତ ଏଇଠାରେ ଅଛି ।

ତା'ପରେ କଲିକତାରେ ମୁଁ ଏମ୍.ଏ. ପଢ଼ିଲାବେଳେ ଦାଢ଼ି କାଟି ଖାଲି ନିଶ ରଖିଥିଲି । ସେହିପରି ନିଶ ରଖିବାଟା ଗୋଟିଏ ଫେସନ୍ ବୋଲି ମୁଁ ତାହା କରିଥିଲି । ଏଣେ ମଧ 'ଉତ୍କଳ-ସାହିତ୍ୟ' ପ୍ରଭୃତିରେ 'ଟିକିଏ ଶୁଣିବେ କି ?'' ବୋଲି ବିଜ୍ଞାପନ ଦେଇ ସମାଜର ସଂସ୍କାରମାନଂକ ପ୍ରତି ଲୋକଦୃଷ୍ଟି ଆକର୍ଷଣ କରିଥିଲି । ମୁଁ ନିଶ ରଖି ଆସିବା ପରେ ସତ୍ୟବାଦୀରେ ସ୍କୁଲ କରିବାର ଅଭିପ୍ରାୟଟା ପୁରୀର ପଂଡ଼ିତମାନଂକୁ ସୁଖ ଲାଗି ନଥିଲା । ସେମାନେ ସେଥିରେ ମନେ କରିଥିଲେ, ସମାଜରୁ ସେମାନଂକର ଆଧିପତ୍ୟ ଚାଲିଯିବ; ତେଣୁ ସେମାନେ ବିରୋଧ ଆରଂଭ କରିଦେଲେ । ପଂଡ଼ିତ ସଦାଶିବ ମିଶ୍ରଂକ ଘରେ ସେତେବେଳେ ଲୋକନାଥ ରଥ ନାମକ ପୁରୀର ଆଉ ଜଣେ ଖ୍ୟାତନାମା ବ୍ରାହ୍ମଣ ରହୁଥିଲେ । ଏହା ସେ ବର୍ଷ (୧୯୧୨ ସାଲ) ପୁରୀ ଷୋଳଶାସନ ଭୋଗର ସାତ ଆଠଦିନ ପୂର୍ବକଥା ହେବ । ମୁଁ ପୁରୀରେ ରହିଲେ, ପଂଡ଼ିତଂକ ଘରେ ଖାଇବାର ସ୍ଥାନ କରିଥାଏ । ସେଥର ପଂଡ଼ିତ ସଦାଶିବ ମିଶ୍ର ନଥିଲେ । ଶୁଣିଲି ଦେଉଳକୁ ଦର୍ଶନକୁ ଯାଇଥିଲେ । ପଂଡ଼ିତ ଲୋକନାଥ ରଥ ଦିଅଁ ବସାଉଥିଲେ । ସେ ଯେପରି ମୋତେ ଦେଖିଲେ, ସେଇପରି ମୋ ନିଶ ରଖିବା ବିଷୟରେ ଏକ ବକ୍ତୃତା ଆରଂଭ କଲେ । ମତେ କହିଲେ, ''ନିଶକୁ ଏଇ ପୁରୀରେ କାଟି ଆମେ ପୋଡ଼ିଦେବୁ ।'' ମୁଁ ଟିକିଏ ହସି କହିଥିଲି, ''ମହାଶୟ, ପିଂପୁଡ଼ି ନୁହେଁ ଯେ ମକଚି ଦେବେ, ସାପ ଗାତରେ କିଆଁ ହାତ ପୂରାଉଚଂତି ? ବଡ଼ ଭଲ ହେବନାଇଁ ।'' ସେ ବଡ଼ ଉଚ୍ଚବାଚ କରି ଆଉ କଥାଏ ଦି'କଥା କହିଲେ । ମୁଁ ସେଠାରେ ନଖାଇ ଚାଲି ଆସିଥିଲି । ତା'ପରେ ମୁକ୍ତିମଂଡ଼ପ ଷୋଳଶାସନ ଭୋଗଦିନ ପୁରୀର ସମସ୍ତ ଶାସନୀ ବ୍ରାହ୍ମଣମାନେ ଏକାଠି ହୁଅଂତି । ସେଦିନ ପୁରୀ ମଂଦିରର ତତ୍କାଳୀନ ମ୍ୟାନେଜର ଶ୍ରୀଯୁକ୍ତ ରାଜକିଶୋର ଦାସ ଜଟଣୀ (ଖୋର୍ଦ୍ଧାରୋଡ଼) ବଂଗଳାରେ ଥିଲେ । ପଂଡ଼ିତମାନେ ଜଟଣୀ ଲୋକ ପଠାଉଚଂତି ବୋଲି ଶୁଣି ମୁଁ ରାତାରାତି ଜଟଣୀ ଯାଇଥିଲି । ରାଜକିଶୋର ଦାସଂକର ମୋ ପ୍ରତି ଭାରି ଶ୍ରଦ୍ଧା ଥିଲା । ମୋ ସଂଗେ ଡେଲାଂଗରୁ ଅନଂତ ମିଶ୍ର ମଧ ସେଇଦିନ ନିଶ ରଖି ଯାଇଥିଲେ । ଆମକୁ ରାତିରେ ଖାଇବାକୁ ଦେଇ ଶୋଇଲାବେଳେ ରାଜକିଶୋର ଦାସ କହିଲେ, ''ମୁଁ ଯାହା କରିବାର ବ୍ୟବସ୍ଥା କରୁଚି । ଆପଣମାନଂକ ଦେହକୁ କିଛି ଲାଗିବ ନାଇଁ ।'' ସେ ସେଦିନ

ଯେଉଁ ପଂଡ଼ିତ ଗଲେ ତାଂକ ହାତେ ଖବର ପଠାଇଦେଲେ ମଂଦିରରେ କୌଣସି ସଭା ହୋଇପାରିବ ନାହିଁ । ପଂଡ଼ିତମାନେ ହତାଶ ହେଲେ । ଅନି ମାହାରୀଂକ କୋଠା ବୋଲି ଗୋଟିଏ ପୁରୁଣା ବେଶ୍ୟାର ଗୋଟିଏ ଘରେ ମିଛୁ ମିଶ୍ର ବା ଭିକାରୀ ମିଶ୍ରଂକର ମଂଦିର ପଶ୍ଚିମ ଦୁଆରପଟେ ଗୋଟିଏ ବଡ଼ କୋଠା ଥିଲା । ସେଠାରେ ବ୍ରାହ୍ମଣଂକୁ ଏକାଠି କରି ବଡ଼ ସଭା କଲେ । ଠିକ୍ ସେଇଦିନ (ଷୋଳଶାସନ ଭୋଗଦିନ) ମଂଦିରର ପୋଲିସ୍ ଆମ ଦଳ ଲୋକଂକୁ ମଂଦିରରେ ପୂରାଇଲାବେଳେ ବଡ଼ ସମ୍ମାନ କରୁଥାଂତି । ତା' ଦେଖି ପଂଡ଼ିତମାନଂକର ଦିହ ସହିଲା ନାହିଁ । ଆମମାନଂକର ଉତ୍ତରଦ୍ୱାରେ ଥିବା ବାମଦେବ ପଡ଼ିହାରୀଂକର ଗୋଟିଏ କୋଠା ଥିଲା । ସେଥିରେ ବୀରରାମଚଂଦ୍ରପୁରର ଯଜ୍ଞଧର ରଥେ ଶାସନର ଯୁବକ ଗୋଷ୍ଠୀଂକୁ ଧରି ଆଉ ଗୋଟିଏ ସଭା କରିଥିଲେ । ଏହିଠାରେ କହିଦିଏ, ପଂଡ଼ିତମାନଂକ ପ୍ରତିବାଦ କରିବାକୁ ସେଇକାଳୁ ଦୁଇଜଣ ଲୋକ ଆମର ସଂଗୀ ଥିଲେ । ଜଣେ ହେଉଚଂତି ପୁରୀର ସ୍ୱର୍ଗତ ଶ୍ରୀ ବାମଦେବ ପଡ଼ିହାରୀ, ଅନ୍ୟଜଣେ ହେଉଚଂତି ବୀରରାମଚଂଦ୍ର ପୁରର ଶ୍ରୀ ଯଜ୍ଞଧର ରଥ । ଏଇ ସମାଜ ସଂସ୍କାରର ସୂତ୍ରପାତବେଳୁ ଏଇ ଦୁଇଜଣ ମୋର ଅଂତରଂଗ ସଂଗୀ ଥିଲେ । ଆଉ ସେଇ ଘଟଣା ପରେ ବାରିପଦାରେ ଥିବାବେଳେ ଗୋପବଂଧୁ ଦାସ ସେଇ ବାରିପଦାରୁ ବାହାରୁଥିବା 'ମନୋରମା' ସାପ୍ତାହିକରେ ଦୁଇସ୍ତଂଭବ୍ୟାପୀ ଏକ ଅତି ସୁଂଦର ପ୍ରବଂଧ ସେଇ ସ୍ଥାନରେ ଥିବା ଶ୍ରୀଯୁକ୍ତ ଧର୍ମାନଂଦ ଆଚାର୍ଯ୍ୟଂକ ନାମରେ ଲେଖିଥିଲେ । ସେ ପ୍ରବଂଧଟି ମଧ୍ୟ ଆଜି ମୋ ପାଖେ ନାହିଁ । ଏଇ ସଂବଂଧୀୟ ଘଟଣାଗୁଡ଼ିକ ପରେ 'ନିଶ' ନାମରେ ପ୍ରଚାର ଲଭୁଥିଲା ।

ଏଇ 'ମନୋରମା' ସାପ୍ତାହିକ ସଂବଂଧରେ ଆଉ ଟିକିଏ କଥାକହେ । ଏହାର କିଛିଦିନ ପୂର୍ବରୁ ମୁଁ କଲେଜର ପ୍ରଥମବର୍ଷୀୟ ଶ୍ରେଣୀରେ ପଢ଼ିଲାବେଳେ ସେକାଳର ପ୍ରସିଦ୍ଧ ପଂଡ଼ିତ ଓ ଭାଷାବିତ୍ ପାରଳାର ଶ୍ରୀ ଗୋପୀନାଥ ନଂଦ ମେଘଦୂତର ଅନୁବାଦ ଓଡ଼ିଆରେ ପଦ୍ୟରେ ଛପାଇଥିଲେ । ତାଂକର 'ବିଲ୍ହଣୀୟ' କାବ୍ୟ ପରି କାବ୍ୟ ଓ ଅନ୍ୟାନ୍ୟ ପଦ୍ୟ ଲେଖାପରି ତାହା ସଂସ୍କୃତ ଛଂଦରେ ପ୍ରଚାର କରିବା ପାଇଁ ସେ ଖୁବ୍ ଯତ୍ନ କରିଥିଲେ । ସେଇ ମେଘଦୂତ କାବ୍ୟ ଖଂଡ଼ି କିଣିଆଣି ଆମେ ଦିନଯାକ ପଢ଼ିଥିଲୁ । ଗୋପବଂଧୁ ଦାସ ସେତେବେଳେ ବି.ଏଲ. ପଢୁଥାଂତି । ତାଂକ ସଂଗେ ଆମେମାନେ ଦିନଯାକ ରହସ୍ୟ କରି ହସିଲୁ । ହଠାତ୍ ଚାରିଟାବେଳକୁ ମୁଁ ପାଇଖାନାକୁ ଯାଇ ଆସି ଯେଉଁ ସମାଲୋଚନାଗର୍ଭକ ଶ୍ଳୋକଗୁଡ଼ିକୁ ଲେଖିଥିଲି, ତାହା ଏବେ ମନେଅଛି । ଯଥା—

''ନଂଦଂକ ଭାଷୀ କୃତ ମେଘଦୂତ;
ଦେଖି ମନେ ଯେ ଭଲ ଭାବ ହେଲା,
ଲୋକଂକୁ ତାହା ଉପହାର ପାଇଁ,
ଯେଉଁ ସମାଲୋଚନ ଏଇ ତାହା,

ମହାଶୟ,
ସାଂପାଦିୟ ଶକତି ତ ବହେ,
କାଶିଅଛେ ମଦିଆ; ଗୋପୀନଂଦେ ବହି କରିଥିବା
ଲୋଚନାକୁ ଦ୍ୱ ଦିଏ ।

ସ୍ୱାନାପିତ୍ରେ କୁଶଳ କରଣେ ଖ୍ୟାତ ସଂବାଦପତ୍ରେ,
ଯାଚିଥାଁ ଏହା ଉପକୃତ କରି ଜ୍ଞାତଲୋକେ କରାଥ,
ଟୁଂଗିଗ୍ରଂଥେ ପ୍ରଚଳନ କଥା ସଂସ୍କୃତାଭାଷ ହେତୁ,
ବାରେ ଦେଖି ମନେ କରିଥିଲୁ କେହି ବାହାରିବେଟି,
ଗ୍ରଂଥାକାରେ ପାଇଣ ସବୁଟି କ୍ଷେମ ଆପନ୍ନ ହେଲୁ,
ଭାବି ଭାବି ସ୍ଥିରକରିନେଲୁ ମାର୍ଗ ଦେଖାଇବେଟି ଯେ,—ନଂଦେ
+ + +
କେହି ଲୋକ ମହାଘ୍ରାଣେ; ନଂଦଂକ କବିତା ଫୁଲ,
ମନଃପ୍ରାଣ ବିମୁଗ୍ଧତ୍ୱଂ ପାଇ ଲେଖିଗଲା ସୁଖେ । ★

ଅବଶ୍ୟ ଏଇ ସତ୍ୟବାଦୀ ସ୍କୁଲବେଳେ ଏଇ ନଂଦଂକ ପ୍ରତି ମୋର ଗଭୀର ଶ୍ରଦ୍ଧା ଓ ଭକ୍ତି ଥିଲା । ମୁଁ ତାଂକ ଶବ୍ଦତତ୍ତ୍ୱବୋଧ ଅଭିଧାନରେ ଗୋଟିଏ ଭଲ ମୁଖବଂଧ ଲେଖିଥିଲି ଓ ତାଂକ ଭାଷାତତ୍ତ୍ୱ ବିଚାରରେ ତାଂକ ଜୀବିତ ଭାଇ ବଳଭଦ୍ର ନଂଦଂକ ଅନୁରୋଧ କ୍ରମେ ବଡ଼ ମୁଖବଂଧଟିଏ ମଧ ଲେଖିଥିଲି । ଭାରତ ଦର୍ପଣ ଗ୍ରଂଥରେ ସେ ଲେଖିଚଂତି, 'ଲୋକଂକ ସମାଲୋଚନାରେ ବିବ୍ରତ ହୋଇ ସେ ମୋ ପାଖକୁ ସତ୍ୟବାଦୀକୁ ଦୌଡ଼ି ଆସିଥିଲେ, ଇତ୍ୟାଦି ।' ତଥାପି ରସିକତା ଓ ରହସ୍ୟର ପ୍ରେରଣା ଏଡ଼ି ନପାରି ମୁଁ ସେତେବେଳେ ଏଇ ସମାଲୋଚନାଟି ଲେଖିଥିଲି । ଏଥିରେ ସେକାଳ କଲେଜ ହଷ୍ଟେଲରେ ଗୋପବଂଧୁ ବାବୁ, ବାଲୁଂକେଶ୍ୱର ବାବୁ (ସଂବଲପୁରର) ଓ ତ୍ରିବିକ୍ରମ ବାବୁ (ସେଇ ସଂବଲପୁରର) ଓ ବାଂକିର ଦାମୋଦର ମିଶ୍ର ଓ ମୁଁ ଆମର ସମସ୍ତ ସନ୍ଧ୍ୟାଟି ସେଇ ରହସ୍ୟ ଓ ଆମୋଦରେ କଟାଇଥିଲୁ । ପରେ ସଂଗେ ସଂଗେ ଗୋପବଂଧୁବାବୁ ନୂତନ ପ୍ରକାଶିତ 'ମନୋରମା' ସାପ୍ତାହିକରେ ଛପାଇ ଦେବାପାଇଁ ଏହାକୁ ପଠାଇ ଦେଇଥିଲେ ।

ପୁରୀ ପଂଡ଼ିତମାନଂକର ଷୋଳଶାସନ ଭୋଗଦିନ ଯେଉଁ ଉଦ୍ୟମ ଆରଂଭ ହୋଇଥିଲା, ତାହା କ୍ରମେ ଚାଲିଥିଲା । ସେଥିରେ ମତେ ବାରଂବାର ସଭା କରି ଏକଘରକିଆ (ଆପାଂକ୍ତେୟ) କରିବାକୁ ବହୁ ବହୁ ପ୍ରସ୍ତାବମାନ ହୋଇଥିଲା । ପୁରୀ ପଂଡ଼ିତମାନେ ମଧ ସେକାଳର ରାଜଦ୍ୱାରମାନଂକରେ ଯାଇ ମୋର ବଡ଼ କୁତ୍ସା କରିଥିଲେ ଓ ସେଇ ସବୁ ଫଳରେ ମୋର ଆତ୍ମୀୟସ୍ୱଜନମାନଂକୁ ସଭା (ନିମିତ୍ତାଦିରେ ଏକତ୍ର ଭୋଜୀ)ରେ ଖାଇବାକୁ ନଦେଇ ରାତି ଅଧରେ ଉଠାଇ ଛାଡ଼ିଦେବାର ବହୁ ଉଦ୍ୟମ ହୋଇଥିଲା । ଫଳରେ ମୋର ସେତେବେଳର ପ୍ରାୟ ୭୫ବର୍ଷ ବୟସ୍କ ପିତାଂକୁ ତାଂକର ସାନଭାଇଂକ ଜ୍ୱାଇଁ (ମହାମହୋପାଧ୍ୟାୟ ଶ୍ରୀ ଜଗନ୍ନାଥ ମିଶ୍ରଂକ) ଘରୁ ଗୋଟିଏ ବଡ଼ ଭୋଜିସଭାରୁ ରାତି ୧୧ଟା ବେଳେ ଉଠାଇ ଦେଇ ଦଶ ମାଇଲରୁ ଅଧିକ ତାଂକ ନିଜ ଗ୍ରାମ ଶ୍ରୀରାମଚଂଦ୍ର ପୁରକୁ ପଠାଇ ଦେଇଥିଲେ । ଏ କଥାରେ ମଫସଲରେ ଖୁବ୍ ଚହଳ ପଡ଼ିଯାଇଥିଲା; କିଂତୁ ବଡ଼ ଆଶ୍ଚର୍ଯ୍ୟର କଥା, ଏଥିରେ ମୋର ବୃଦ୍ଧ ପିତା ବା ତାଂକ ସଂଗୀ ସହଚରମାନଂକୁ କୌଣସି ପ୍ରକାର ବ୍ୟଥିତ ହୋଇଥିବାର କେଇ କେବେ

---

★ ''ଗଇଂଠେ ଚାଂଦ୍ରବିଂଦୂନ୍''—ସାନୁସ୍ୱରାଣ୍ଟ ବିସର୍ଗାଚ ପ୍ରଭୃତି ଇତ୍ୟସ୍ମାତ୍ ପରସ୍ମାତ୍ ଯୋକ୍ତବ୍ୟଂ ତଥା ପାଦାଂତ ଗୋ ପିବା—ଏଥିରେ ହେତୁ, ଦେଖି ଇତ୍ୟାଦିର ଦୀର୍ଘହ୍ରସ୍ୱ ବୁଝିବାକୁ ହେବ ।

ଦେଖିନାହିଁ । ଅଥଚ ଏଇସବୁ କଥାରୁ ଓଡ଼ିଶାରେ 'ନିଶ' ନାମରେ ସଂସ୍କାର କ୍ରିୟାରେ ଯେ ବାତ୍ୟା ଉଠିଲା, ସେଥିରେ ଏବେ ମଧ୍ୟ ଅତି ଦୂରପଲ୍ଲୀରେ 'ନିଶୁଆ ନୀଳକଂଠ ଦାସ' କଥାଟି ବି ପ୍ରଚଳିତ ଥିବାର ଦେଖାଯାଏ ।

## (୪) ଧରଣୀଧର ଭୂୟାଁ

ଆଉ ଗୋଟିଏ ବଡ଼ ମୂଲ୍ୟବାନ୍ ଜିନିଷ—ଛାତ୍ରଜୀବନର ଗୋଟିଏ ଘଟଣା ମୋର ମନେପଡୁଚି । ସ୍କୁଲ ଆରଂଭବେଳେ କଥା ହେବ, ସେତେବେଳେ ଦିନେ ଗୋପବଂଧୁବାବୁ ଆସି କହିଲେ, ''ପୁରୀକୁ ଜଣେ ସର୍ବଜ୍ଞ ଆସିଚଂତି, ସେ ସବୁ ଆଗତ ଭବିଷ୍ୟ କଥା କହିପାରୁଚଂତି । ଚାଲ ଆମେ ତାଂକୁ ଦେଖି ଆସିବା ।'' ପୁରୀରେ ଜଣେ ମନୁଷ୍ୟ, ସେ ସର୍ବଜ୍ଞ ହୋଇ ଆଗତ ଭବିଷ୍ୟ କଥା କହିପାରୁଚଂତି, ଏହା ଶୁଣି ମୋତେ ଟିକିଏ ଆଶ୍ଚର୍ଯ୍ୟ ଲାଗିଲା । ତଥାପି ମୁଁ କହିଲି, ''ହଉ, ଚାଲ ଯିବା ।'' ଆଂଭେ ଦୁହେଁ ପୁରୀରେ ଏବେ ମ୍ୟୁନିସିପାଲିଟ ହାଟ ପାଖେ ଥିବା ପଂଡ଼ିତ ଗୋପବଂଧୁ ଦାସଂକ ନିଜ ଘରେ ଯାଇ ରହିଲୁ । ସେଠାରୁ ମହାପୁରୁଷ ଦେଖିବାକୁ 'ଦରିଆ ମହାବୀର' ଗଲୁ । ସେତେବେଳର 'ଦରିଆ ମହାବୀର' ଗୋଟିଏ ନିକାଂଚନ ସ୍ଥାନ । ଏହା ଏବର B.N.R. Hotel ପାଖେ ସମୁଦ୍ର କୂଳେ ଥିଲା । ସେଠାରେ ଖାଲି ଦରିଆ ମହାବୀରଂକ ଦେଉଳଟି ଓ ପୀଠଟି । ପାଖରେ ଆଉ କିଛି ଦେଖାଗଲା ନାହିଁ । ଅନେକ କ୍ଷଣ ନାହିଁ ଦେଖିବାରୁ ଗୋଟିଏ କୂଅ ଭଳି ଗହୀରିଆ ଜାଗା ଉପରେ ବେଂଟ ନଥିବା ଛତାଟିଏ ଘୋଡ଼ା ହେଲାପରି ଦିଶିଲା । ଆଂଭେ ଦୁହେଁ ଖୋଜି ଖୋଜି ଯାଇ ସେ ଛତାଟି କାଢ଼ିଦେଲୁ । ଦେଖି ଆଶ୍ଚର୍ଯ୍ୟ ହେଲୁ, ସେଇ କୂଅ ଭିତରେ ପାଣି ନାହିଁ । ଭିତରେ ଜଣେ ସୌମ୍ୟବପୁ, ଶ୍ମଶ୍ରୁଯୁକ୍ତ ପୁରୁଷ ବସିଚଂତି । ଦାଢ଼ି ପାଚିନାହିଁ । ସେ ଆମକୁ ଚାହିଁଲେ । ଗୋପବଂଧୁ ଦାସେ ପଚାରିଲେ, ''ଦେଶ କେବେ ସ୍ୱାଧୀନ ହେବ ?'' ମହାପୁରୁଷ ଟିକିଏ ଚାହିଁଲେ । କହିଲେ, ''ତୁଂଭେମାନେ ଯେବେ ମନୁଷ୍ୟ ହେବ ।'' ଏହା କହି ତଳକୁ ମୁଂଡ଼ ପୋତିଦେଲେ । ଆଉ ଚାହିଁଲେ ନାହିଁ କି କିଛି କହିଲେ ନାହିଁ । ଆମେ ପରେ ଜାଣିଲୁ, ଏ ହେଉଚଂତି ଓଡ଼ିଶା କେଂଦୁଝର ଗଡ଼ଜାତ ପ୍ରଜାବିପ୍ଳବର ନେତା—ଶ୍ରୀ ଧରଣୀଧର ଭୂୟାଁ । ଏହାଂକ କଥା ଫକୀରମୋହନ ସେନାପତିଂକ ଆତ୍ମଜୀବନୀ ସଂପର୍କରେ ଲୋକେ ପଢ଼ିବାକୁ ପାଇବେ । ଏହାର କେତେ ବର୍ଷ ପରେ ସେଇ ଧରଣୀଧର ଭୂୟାଁ ଆଳିର ଗୋଟିଏ ବାଉଁଶବୁଦାରେ ପ୍ରାଣତ୍ୟାଗ କରିଥିଲେ ବୋଲି କାଗଜରେ ଆମେ ପଢ଼ିଚୁ । ମାତ୍ର ଏହିପରି ତଳକୁ ଚାହିଁ ନୀରବ ରହିବାରୁ ଆମେ କୂଅ ଉପରେ ଛତାଟିକୁ ଘୋଡ଼ାଇ ଦେଇ ଚାଲିଆସିଲୁ । ସେ ସୌମ୍ୟବପୁ, ଉଜ୍ଜ୍ୱଳ ଚକ୍ଷୁ ଓ ଗୌର ମୁଖରେ ସୁଂଦର ଶ୍ମଶ୍ରୁ ଆଉ ଭୁଲି ହେବ ନାହିଁ । ସେହି ମୋ ଜୀବନରେ ପ୍ରଥମ ସ୍ପଷ୍ଟ ପ୍ରେରଣା ବୋଲି ମନେ ହୁଏ । ସେହିଦିନଠାରୁ ''ତୁଂଭେମାନେ ଯେବେ ମନୁଷ୍ୟ ହେବ, ତେବେ ଯାଇ ଦେଶ ସ୍ୱାଧୀନ ହେବ''—ଏ କଥାଟି ବରାବର ମନେ ଅଛି ।

## (୫) ୧୯୨୧ରେ ସଂବଲପୁରେ ନଅମାସ

ମୁଁ ୧୯୨୧ ଖ୍ରୀଷ୍ଟାବ୍ଦ ଶେଷଆଡ଼ିକି ବୋଧହୁଏ ଅକ୍ଟୋବର ଆଡ଼ିକି, ସେକାଳ କଲିକତା ବିଶ୍ୱବିଦ୍ୟାଳୟର ସାର୍ ଆଶୁତୋଷ ମୁଖର୍ଜୀଂକ ନିମନ୍ତ୍ରଣ ଓ ଅନୁରୋଧ କ୍ରମେ କଲିକତା

ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଶ୍ରେଣୀମାନଙ୍କରେ ଅଧ୍ୟାପକ ଭାବରେ ଯାଇ ଯୋଗଦେଇଥିଲି । ମୁଁ ସତ୍ୟବାଦୀ ସ୍କୁଲ ପାଇଁ ୧୯୦୯ ଜୁନ ମାସଠାରୁ ବରାବର ଜୀବନସାରା ଆତ୍ମନିୟୋଗ କରିବି ବୋଲି ପଣକରି ସେ ସ୍କୁଲ କରିବାରେ ଲାଗିଥିଲି । ମୋ ମନରେ ଏ ଭାବ ଏତେ ଦୃଢ଼ ଥିଲା ଯେ ମୁଁ ଜୀବନରେ କୌଣସି ପ୍ରଫେସର, ପ୍ରିନ୍ସିପାଲ ବା ଆଉ କାହାରିଠାକୁ ନିଜର ପ୍ରଶଂସାପତ୍ର ପାଇଁ ଯାଇ ନାହିଁ । ୧୯୦୯ରେ ବି.ଏ. ପାସ୍ କରି ପଂଡ଼ିତ ଗୋପବଂଧୁ ଦାସଂକ ସାହଚର୍ଯ୍ୟରେ ଶ୍ରୀରାମଚଂଦ୍ରପୁର ମଧ୍ୟ ଇଂରେଜୀରେ ପରିଣତ ହେଉଥିବା ମଧ୍ୟ-ଭର୍ଣ୍ଣାକୁଲର ସ୍କୁଲଟିକୁ, କହିଲେ କୁହାଯିବ, ଝୁଂଟି ଝୁରୀଠାରୁ ଉପ୍ରରି ଓ ପ୍ରଧାନ ଶିକ୍ଷକଂକ ପର୍ଯ୍ୟଂତ ସମସ୍ତଂକୁ ଧରି ସତ୍ୟବାଦୀରେ ମଧ-ଇଂରାଜୀ ରୂପେ ସ୍କୁଲଟିର ପ୍ରତିଷ୍ଠା କରି ମୁଁ ଯାଇଥିଲି କଲିକତାରେ ଏମ୍.ଏ. ପଢ଼ିବାର ଉଦ୍ଦେଶ୍ୟ ଥିଲା ଦୁଇଟି । ଗୋଟିଏ ଥିଲା—କଟକରେ ସେତେବେଳକୁ ଏମ୍.ଏ. ନଥିଲା ଓ ଏମ୍.ଏ. ପଢ଼ିବା ପାଇଁ ଆମ ଓଡ଼ିଆ ପିଲାଏ ସାଧାରଣତଃ କଲିକତା ଯାଉ ନଥିଲେ । ସେତେବେଳକୁ କଟକର ରେଭେନ୍ସା କଲେଜଟି କଲିକତା ବିଶ୍ୱବିଦ୍ୟାଳୟର ଅଂତର୍ଭୁକ୍ତ ଥିଲା । ଅନ୍ୟ ଉଦ୍ଦେଶ୍ୟଟି ଥିଲା ସତ୍ୟବାଦୀ ପରି ମଫସଲରେ ହାଇସ୍କୁଲ ଚଳାଇବାକୁ ହେଲେ ସେପରି ସ୍ଥାନରେ ମତେ ସବୁ ବିଷୟ ସବୁ କଥାରେ ସମସ୍ତେ ପଚାରିବେ । ମୁଁ ସେ ସବୁ ପ୍ରଶ୍ନର ସମାଧାନ ପାଇଁ ପ୍ରସ୍ତୁତ ହେବା ଦରକାର । ସେଥିପାଇଁ କେବଳ ଏମ୍.ଏ. ପଢ଼ିବାରେ କଲିକତାରେ ମିଳୁଥିବା ପୁସ୍ତକ ଓ ବିଦ୍ୟାମାନଂକର ଆଲୋଚନା କେବଳ ନୁହେଁ—ଅନେକ ପୁସ୍ତକ ମତେ ପଢ଼ିବାକୁ ହେବ—ବିଦ୍ୟା ହାସଲ କରିବାକୁ ହେବ ।

ଯାହାହେଉ, ୧୯୨୦ ଖ୍ରୀଷ୍ଟାବ୍ଦ ସେପ୍ଟେଂବର ମାସ ବେଳକୁ ମୁଁ ଗୋପବଂଧୁ ବାବୁ ଓ ଅନ୍ୟାନ୍ୟ ସହକର୍ମୀ ଓ ସହଯୋଗୀମାନଂକ ମତାନୁସାରେ ମାତ୍ରକ ଦୁଇବର୍ଷ ପାଇଁ ସତ୍ୟବାଦୀ ଛାଡ଼ି କଲିକତା ବିଶ୍ୱବିଦ୍ୟାଳୟରେ ନୂତନ ହୋଇ ପ୍ରତିଷ୍ଠିତ ହୋଇଥିବା ଓଡ଼ିଆ ଏମ୍.ଏ. ଶ୍ରେଣୀର ଅଧ୍ୟାପକରୂପେ କଲିକତା ଯାଇଥିଲି । କଥା ଥିଲା, ଠିକ୍ ଦୁଇବର୍ଷରେ ଗୋଟିଏ ଛାତ୍ର ଓଡ଼ିଆରେ ଏମ୍.ଏ. ପାସ୍ କରିସାରିଲେ ମୁଁ ପୁଣି ସତ୍ୟବାଦୀକୁ ଫେରିଆସିବି । ସେଥିପାଇଁ ଗୋଟିଏ ଛାତ୍ର ମଧ୍ୟ ଓଡ଼ିଶାରୁ ସେଠାକୁ ମୁଁ ଘେନିଯାଇଥିଲି । ସେ ଠିକ୍ ଦୁଇବର୍ଷରେ ଏମ୍.ଏ. ପାସ୍ କରିଥାଇ ଓଡ଼ିଶାରେ ହାଇସ୍କୁଲର ଶିକ୍ଷକରୂପେ କାର୍ଯ୍ୟ କରି ଏବେ ପ୍ରାୟ ଦୁଇବର୍ଷ ତଳେ ଅବସର ଗ୍ରହଣ କରିଚଂତି । ସେ ହେଉଚଂତି ବିଶ୍ୱନାଥପୁରର । ତାଂକ ନାମ ଶ୍ରୀ ଲୋକନାଥ ମହାପାତ୍ର ।

ସାର୍ ଆଶୁତୋଷ ମୁଖାର୍ଜୀଂକ ଡାକାରାରେ ମୁଁ ଯାଇ କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର (Post Graduate) ଶ୍ରେଣୀରେ ଅଧ୍ୟାପକରୂପେ ଯୋଗଦେଇ ପ୍ରସିଦ୍ଧ ୯ ନଂବର ପଂଚାନନ ଘୋଷ ଗଲିରେ ଥିବା ବସାରେ ଯାଇ ରହିଲି । ଗୋପବଂଧୁ ବାବୁ ସେତେବେଳକୁ ବିହାର ଓଡ଼ିଶା କାଉନ୍ସିଲ ବା ବ୍ୟବସ୍ଥାପକ ସଭାରେ ମେଂବର ଥାଂତି । ସେ ଶେଷଥର ପାଇଁ ସେଇ ସଭାରେ ଯୋଗ ଦେବାକୁ ପାଟନା ଯାଇଥିଲେ । ମୋ ମନେ ଅଛି, ସେ ଖାଉଥାଂତି—ମୁଁ ବିଂଚି ଦେଉଥାଏ । ଏଇ ଅସହଯୋଗ କଥା ପଡ଼ିଲା । ସେତେବେଳକୁ କଂଗ୍ରେସର କଲିକତାରେ ହୋଇଥିବା ବିଶିଷ୍ଟ ଅଧିବେଶନରେ ମହାତ୍ମା ଗାଂଧି ଅସହଯୋଗ ଆଂଦୋଳନ ମତାଇବାର ସୂଚନା ଦେଇସାରିଥାଂତି । ଗୋପବଂଧୁ ବାବୁ ସେଥିରେ ଯୋଗ ଦେବାର ଏକପ୍ରକାର ସ୍ଥିର ମଧ୍ୟ କରିସାରିଥାଂତି । ସେ କଥା ପ୍ରସଂଗରେ ମତେ କହିଲେ,

''ମୁଁ ଯାଉଚି ଅସହଯୋଗ ଆଂଦୋଳନରେ ଯୋଗ ଦେବି । ତୁମେ ଯାଅ ସତ୍ୟବାଦୀ ସ୍କୁଲର ନେତୃତ୍ୱ ଗ୍ରହଣ କରି ସେହିଠାରେ ରହ ।'' କଥାଟା ମତେ କିପରି ଲାଗିଲା । ମୁଁ କହିଲି, ''ଜୀବନରେ ସମସ୍ତେ ଏକାନାଥରେ ବସିଥାଇଁ । ଆଉ ସ୍କୁଲ ଲୋଭ କାହିଁକି ? ଆପଣ ଯାହା କରିବାକୁ ବିଚାରିଚଂତି, ମୁଁ ସେଇଆ କରିବି । ମୋର ଇଚ୍ଛା ଆମେମାନେ ସମସ୍ତେ ସେଇଆ କରିବୁ ।'' ଆଉ ଏ ବିଷୟରେ ସେଦିନ ବିଶେଷ କଥା ହେଲା ପରି ମନେ ହେଉ ନାହିଁ । ସେ ରେଳକୁ ଚାଲିଲେ । ପାଟନାରୁ ଫେରିଆସି ପୁଣି ସତ୍ୟବାଦୀ କେବେ ଓ କିପରି ଗଲେ ତା' ମଧ୍ୟ ମୋ ମନେ ହେଉ ନାହିଁ ।

୧୯୨୧ର ଜାନୁୟାରୀ ପହିଲାବେଳକୁ ନାଗପୁର କଂଗ୍ରେସ ଅଧିବେଶନର ଅବ୍ୟବହିତ ପରେ ଅସହଯୋଗ ଆଂଦୋଳନ ଆରଂଭ ହୋଇଗଲା । ସତ୍ୟବାଦୀ ସ୍କୁଲ ସେତେବେଳକୁ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇ ନାହିଁ । ହଠାତ୍ ଖବର ଆସି ପହଂଚିଲା, ସଂବଲପୁରରେ ଅବସ୍ଥା ଅତି ଉତ୍ତେଜିତ ଭାବରେ ଗତି କରିବାର ଆରଂଭ ହେଇଚି । ସଂବଲପୁରର ଭାଗୀରଥ ମିଶ୍ର ସେତେବେଳେ ଛାତ୍ର ଭାବରେ କଲିକତାରେ ମୋ ସଂଗେ ଏକା ବସାରେ ଥିଲେ । ତାଂକ ସଂଗେ ମୋର ବିଚାରରେ ସ୍ଥିର ହେଲା, ତାଂକୁ ଘେନି ମୁଁ ସଂବଲପୁର ଯିବି । ସେଇ ଜିଲ୍ଲାରେ ଅସହଯୋଗ ଆଂଦୋଳନ ଆରଂଭ କରିବି । ଖୁବ୍ ଉତ୍ସାହ ଖେଳିଗଲା । ସଂଗେ ସଂଗେ ଗୋପବଂଧୁ ବାବୁଂକୁ ଟେଲିଗ୍ରାମ କରାଗଲା, ''ଆପଣ ଆସଂତୁ, ସଂବଲପୁର ଯିବା । ସେଇଠାରେ ମୁଁ ଅସହଯୋଗ ଆରଂଭ କରିବି । ଆପଣ ଫେରି ଆସିବେ ।'' ଜାନୁୟାରୀ ୫ ତାରିଖ ସନ୍ଧ୍ୟାରେ ଗୋପବଂଧୁ ବାବୁ ଯାଇ କଲିକତାରେ ଆମ ପାଖେ ପହଂଚିଲେ । ଆମେ ତିନିଜଣଯାକ ସଂବଲପୁର ବାହାରିଲୁ ।

ଜାନୁୟାରୀ ୬ ତାରିଖ ଦିନ ଆମେମାନେ ସଂବଲପୁର ଯିବା ପାଇଁ କଲିକତା ଛାଡ଼ିଲୁ । ମନେ ହେଉଚି, ୭ ତାରିଖ ସକାଳୁ ସଂବଲପୁରରେ ଉପସ୍ଥିତ ହେଲୁ । କଲିକତାରେ, ବିଶ୍ୱବିଦ୍ୟାଳୟରେ ସମସ୍ତଂକଠାରୁ ମୁଁ ବିଦାୟ ଘେନି ଗଲାବେଳେ ଗୋଟିଏ ବିଶେଷ କଥା ଆଜି ଜ୍ୱଳଂତ ଭାବରେ ମୋ ମନେପଡୁଚି । ଏବର ଡକ୍ଟର ରମେଶଚଂଦ୍ର ମଜୁମଦାର ମୋ ସଂଗେ ଇତିହାସ ଅଧ୍ୟାପକ ଥିଲେ । ତାଂକର ମୋର ଅତ୍ୟଂତ ଆତ୍ମୀୟତା ଥିଲା । ସେ ମୋରି ସଂଗେ କଟକରେ ଏନ୍ଟ୍ରାନ୍ସ ୨ୟଶ୍ରେଣୀ (ସେ କାଳର ମାଟ୍ରିକୁଲେଶନ ୧୦ମ ଶ୍ରେଣୀ)ରେ ପଢୁଥିଲେ । ଆମେ ଦୁହେଁ ଏକସଂଗରେ ଏନ୍ଟ୍ରାନ୍ସ ପାସ୍ କରିଥିଲୁ । କଲିକତାରେ ମୁଁ ବି.ଏ. ପରୀକ୍ଷା ଦେଉଥିଲାବେଳେ ସେ ପ୍ରେସିଡ଼େନ୍ସି କଲେଜର ଇଡ଼େନ୍ ହଷ୍ଟେଲରେ ଥିଲେ । ତାଂକ ସଂଗେ ଖୁବ୍ ଭାବାଳାପ ଥିଲା । ବିଦାୟ ଘେନି ଗଲାବେଳେ ସେ ମତେ କହିଲେ, ''ନୀଳକଂଠ, ତୁମେ କ'ଣ ଏସବୁ ଛାଡ଼ିଦେଇ ଯାଉଚ ?'' ମୁଁ ଆଉ କିଛି ନକହି କହିଲି, ''ହଁ ।'' ସେଥିରେ ତାଂକ ଆଖିରୁ ଟପ୍ ଟପ୍ ହୋଇ ଲୁହ ଗଡ଼ିବାର ମୋର ଏବେ ସ୍ପଷ୍ଟ ମନେପଡୁଚି ।

ଏବେ ସଂବଲପୁର ଷ୍ଟେସନରେ ଲୋକେ ଅପେକ୍ଷା କରିଚଂତି । ଲୋକେ ମଧ୍ୟ ଖଂଡ଼ିଏ ମଟରକାର ଆଣିଥିଲେ । ସେଇଠାରୁ ବିରାଟ ଶୋଭାଯାତ୍ରାରେ ସମସ୍ତ ସଂବଲପୁର ବୁଲିଥିଲୁ । ଦ୍ୱାରେ ଦ୍ୱାରେ ଅଭ୍ୟର୍ଥନା, ଫୁଲମାଳ । କିଏ ଚଂଦନ ଦେଇ ମୁଂଡ଼ରେ ଚାଉଳ ପକାଉଥାଏ ଓ ଛଡ଼ାନଡ଼ିଆ ଆଣି ମୁଂଡ଼ରେ ଲଗାଉଥାଏ । ଯୁବତୀମାନେ ଆସି ମୁଂଡ଼ରେ ଚଂଦନ, ସିଂଦୂର

ଦେଉଥାʼନ୍ତି । ସେ ଶୋଭାଯାତ୍ରାର ଦୃଶ୍ୟ ଭୁଲିବାର ନୁହେଁ । ଜୟଧ୍ୱନିର ସ୍ୱର ବରାବର ଉଠୁଥାଏ । ଶେଷକୁ ଯାଇ ସେକାଳେ ସ୍ୱର୍ଗତ ଓକିଲ ଚଂଦ୍ରଶେଖର ବେହେରାʼଂକର ଝାଡୁଆପଡ଼ାରେ ଥିବା ଘରେ ପ୍ରଥମେ ରହିଲୁ । ଗୋପବଂଧୁ ବାବୁ ବୋଧହୁଏ ସେଇଦିନ ସନ୍ଧ୍ୟାକୁ ଚାଲିଆସିଲେ । ମୁଁ ଯେତେଦିନ ଥିଲି, (୯ମାସ କାଳ) ସେଇ ଚଂଦ୍ରଶେଖର ବାବୁଂକ ଘରେ ତାʼଂକର ସʼଂଗେ ଥିଲି ।

ମୋର ପ୍ରଥମ କାର୍ଯ୍ୟ ହେଉଚି, ଚଂଦ୍ରଶେଖର ବେହେରା ଓ ଧରଣୀଧର ମିଶ୍ର ପ୍ରଭୃତିଂକୁ ଘେନି ସʼଂବଲପୁର ଜିଲ୍ଲାର କଂଗ୍ରେସ କାର୍ଯ୍ୟ ଓ ସʼଂଗେ ସʼଂଗେ ସʼଂବଲପୁରରେ ଜାତୀୟ ବିଦ୍ୟାଳୟ ଆରʼଂଭ କରିବା । ଫ୍ଲେଜର କ୍ଲବ୍ ବୋଲି ଗୋଟିଏ ଘର ଥାଏ । ସେଇଠାରେ ଜାତୀୟ ବିଦ୍ୟାଳୟ ଆରʼଂଭ କରା ହେଲା । ଅନ୍ୟାନ୍ୟ କେତେକ ଶିକ୍ଷକ ଆସି ଉତ୍ସାହରେ ଯୋଗ ଦେଲେ । ସେଥିମଧ୍ୟରେ ଗ୍ରାଜୁଏଟ୍ ଶିକ୍ଷକ ବି ଥିଲେ । ସମସ୍ତେ ଅସହଯୋଗ ବ୍ରତଧାରୀ । ସେଇ ଉତ୍ସାହରେ ଶୋଭାଯାତ୍ରାରେ ସହର ପରିକ୍ରମା ଚାଲିଥାଏ । ମଧ୍ୟେ ମଧ୍ୟେ ବାଲିବʼଂଧାରେ ତଥା ଅନ୍ୟ ଛକ ଜାଗାମାନʼଂକରେ ସଭା ମଧ୍ୟ ହେଉଥାଏ । ସହରର ଲୋକʼଂକର ଆଶାତୀତ ଉତ୍ସାହ ପ୍ରକାଶ ପାଇଲା । ମନେ ହେଉଚି, ଲଦାଭାଇ ଥରିଆ ନାମକ ଜଣେ ମୁସଲମାନ ବ୍ୟବସାୟୀ ଥିଲେ । ତାʼଂକର ଗୋଟିଏ ଯୁବକ ପୁତ୍ର ଆମ ସʼଂଗେ ଖୁବ୍ ଯୋଗ ଦେଉଥିଲେ । ସେ ଯୁବକଟି ବଡ଼ ସୁʼଂଦର ଓ ସୁପୁରୁଷ । ସେ ଥିଲେ ମୁସଲମାନ । ବସ୍ତୁତଃ ସେ ଆʼଂଦୋଳନରେ ହିଂଦୁ, ମୁସଲମାନ, ଗୁଜୁରାଟୀ, ମାରୱାଡ଼ୀ ସମସ୍ତେ ପୂର୍ଣ୍ଣପ୍ରାଣରେ ଯୋଗ ଦେଉଥିଲେ । ବିରୋଧ ଜମା ନଥିଲା । ସରକାର ପ୍ରତି ଏପରି ବିରୋଧ ଭାବରେ ଏଡ଼େ ଉଦ୍ଦୀପନା ପ୍ରକାଶ ପାଇବ ବୋଲି ମୁଁ ଆଶା ମଧ୍ୟ କରି ନଥିଲି । ଏପରିକି ସ୍ଥାନୀୟ କୃତବିଦ୍ୟ ଓକିଲ ଶ୍ରୀ ଧରଣୀଧର ମିଶ୍ରʼଂକ ପୁତ୍ର ଶ୍ରୀ ରାମନାରାୟଣ ମିଶ୍ର ମଧ୍ୟ ନିଜର ଦ୍ୱିତୀୟ ପୁତ୍ରକୁ ଅତି ଉତ୍ସାହ ଓ ଆନʼଂଦରେ ଆମ ଜାତୀୟ ସ୍କୁଲକୁ ପଠାଇଦେଲେ ।

ସ୍କୁଲ, କଚେରି, କାଉନ୍ସିଲ ଛାଡ଼ିବା ସେତେବେଳେ ଅସହଯୋଗର ଥିଲା ମୁଖ୍ୟମʼଂତ୍ର । ଏଣେ ସ୍କୁଲକୁ ଖାଲି କରି ଛାତ୍ରଯାକ ଜାତୀୟ ବିଦ୍ୟାଳୟକୁ ଆଣିବାକୁ ହେବ । ଦିନକର ଶୋଭାଯାତ୍ରା ମନେଅଛି । ମୁଁ ଆଗେ ଆଗେ ଚାଲିଥାଏ । ସହଯୋଗୀ ଓ ଛାତ୍ରମାନେ ପଛରେ ଚାଲୁଥାʼନ୍ତି । ମୁଁ ସେତେବେଳେ ଗୀତ ଲେଖୁଥାଏ । ସେ ଗୀତ ଶୋଭାଯାତ୍ରାରେ ବୋଲା ହେଉଥାଏ । ଗୋଟିଏ ଗୀତ ମୋ ମନେପଡୁଚି । କାହିଁକିନା ସେଇ ଗୀତଟି ବୋଲି ପାଦ ପକାଇ ଚାଲିଲାବେଳେ ଛାତ୍ରମାନେ ଜିଲ୍ଲା ସ୍କୁଲରୁ ହେଡ୍‌ମାଷ୍ଟର ଓ ଅନ୍ୟ ମାଷ୍ଟରମାନʼଂକୁ ନମାନି ସ୍କୁଲରୁ ବାହାରି ଆମ ସʼଂଗେ ଚାଲିଲେ । ମନେଅଛି, ପୁରୀ ନିମାପଡ଼ାର ସ୍ୱର୍ଗତ ଶ୍ରୀ ମଧୁସୂଦନ ଦାସ ଥାʼନ୍ତି ହେଡ୍‌ମାଷ୍ଟର । ସେ ମଧ୍ୟ ବାହାରକୁ ଆସି ଖାଲି ମତେ ଚାହିଁ ରହିଲେ । ସେତେବେଳେ କିଛି କହିଲେ ନାହିଁ । ଗୀତଟି ଆଠ ପଦରେ ଲେଖିଥିଲି । ଗୀତଟି ଓଡ଼ିଆମିଶା ହିଂଦିରେ ଲେଖା—କହିଦିଏ ।

"ସ୍ୱରାଜ ଭାୟା ଅଲବତ ହୋଗା
ଛୋଡ୍‌କେ ଆଓ ଗୋଲାମୀ,
ଭାରତ ଲଡ୍‌କା ଗୋଲାମ ହୋକେ
କାହେ କରୋ ବଦ୍‌ନାମୀ ।

ଗୋଲାମ ହୋନେ ମାଲୁମ ନେହିକି
କୈସେ ହେଁ ରାଜ ବେପାରୀ
ସବ୍‌କୁଛ୍ ଯାଏ ଦରୟାପାରି
ଘରମେ ହାମ୍‌ଲୋଗ୍ ଭିଖାରୀ ।
ସ୍କୁଲ, କଲେଜ, କାଉନ୍‌ସିଲକୋ
ଇୟାଦ୍ ରଖ୍‌ଗୋ ବାପୁଜୀ,
ମାୟା ଏ ସବ୍ ଗୋଲାମୀକା
ଇସ୍‌ମେ ନାଇ ଭୁଲୋଜୀ ।
ଦିଲ୍‌ମେ ସ୍ୱାଧୀନ ଦିଲ୍‌ମେ ଗୋଲାମ
ଦିଲ୍‌କା ବଂଧନ ନୌକରୀ ।
ଦିଲ୍‌କୋ ମଜା ରଖୋ ଭାଇୟା
ଛୋଡ୍ ଦୋ ସବ ସରକାରୀ ।

'ଉତ୍କଳ ସେବକ' ବୋଲି ଖଂଡ଼େ ସାପ୍ତାହିକ ପତ୍ର ସଂବଲପୁରରୁ ବାହାରୁଥିଲା । ଆଉ ଖଂଡ଼େ ମଧ 'ସାଧନା' ବୋଲି ସେଇପରି ସାପ୍ତାହିକ ପତ୍ର ବାହରିଲା । ଦୁଇଟିଯାକ ଅବଶ୍ୟ କେହି ଇଂରେଜ ସରକାରଂକର ଖଏର ଖାଁ ନଥିଲେ । ତଥାପି ଚଂଦ୍ରଶେଖର ବାବୁ ଓ ଧରଣୀଧର ମିଶ୍ର ଦୁହିଁଂକ ପରାମର୍ଶରେ ମୁଁ ସେଇଭଳି ଆଉ ଗୋଟିଏ ସାପ୍ତାହିକ ପତ୍ର ମୋରି ନିଜ ସଂପାଦକତ୍ୱରେ ବାହାର କଲି । ଧରଣୀଧର ମିଶ୍ରଂକ 'ମିଶ୍ରପ୍ରେସ୍'ରୁ ତାହା ବାହାରୁଥିଲା । ସମସ୍ତ ଟଂକାପଇସା ପ୍ରଭୃତିର ମାଲିକ ଓ ତତ୍ତ୍ୱାବଧାନରେ ଥିଲେ ସେଇ ଧରଣୀଧର ମିଶ୍ରେ । ମୋ ସଂଗେ ଥିଲେ କଟକ କଲେଜ ଛାଡ଼ି ଅସହଯୋଗ କରିଥିବା ସ୍ୱର୍ଗତ ଶ୍ରୀ ଚଂଦ୍ରଶେଖର ମିଶ୍ର । ସେ କାଗଜ କାଢ଼ିବାରେ ସେଇ ଏକମାତ୍ର ଥିଲେ ମୋର ସହଯୋଗୀ । ମୁଁ ସଂବଲପୁର ଛାଡ଼ି ଆସିବା ପର୍ଯ୍ୟଂତ ସେ କାଗଜ ବାହାରୁଥିଲା । କହିଦିଏ—ସମସ୍ତ ଓଡ଼ିଶାରେ ସେଇ କାଗଜର ସେତେବେଳେ ଖୁବ୍ ପ୍ରତିଷ୍ଠା ଓ ପ୍ରତିପତ୍ତି ପ୍ରକାଶ ପାଇଥିଲା ଏବଂ ସଂବଲପୁରରେ ମଧ ତା'ର ଖୁବ୍ କାଟତି ଥିଲା । ଦୁଃଖର କଥା ଏବେ ବହୁତ ଖୋଜିଚି । ସେ ପତ୍ର କୌଣସିଠାରେ ସୁରକ୍ଷିତ ଥିବାର ମତେ ଦିଶୁ ନାଇଁ । ସାପ୍ତାହିକଟିର ନାମ 'ସେବା' ।

ସେତେବେଳକୁ ସଂବଲପୁରୁ ସହରରୁ ଦୁଇଜଣ ବଡ଼ ଡାକ୍ତର ବାହାରିଥିଲେ । ସେ ଦୁହେଁ ବଡ଼ ସେବାପରାୟଣ, ଜନପ୍ରିୟ ଓ ଉନ୍ନତ ଚରିତ୍ରର ଲୋକ ଥିଲେ । ସେ ଦୁହେଁ ହେଉଚଂତି, ସୁପରିଚିତ ଶ୍ରୀ ସନାତନ ପୂଜାରୀ ଓ ଶ୍ରୀ ଧରଣୀଧର ମିଶ୍ରଂକ କନିଷ୍ଠ ପୁତ୍ର ଶ୍ରୀ ରାମଚଂଦ୍ର ମିଶ୍ର । ତଥାପି ମଫସଲର ଗାଁମାନଂକରେ ହଇଜା ଓ ବସଂତ ପ୍ରଭୃତି ମହାମାରୀର ଭୀଷଣ ଭୟ ସେତେବେଳକୁ ବଡ଼ ତୀବ୍ର ଭାବରେ ଥାଏ । ସେ କଥା ଆଜି ଲୋକେ କଳ୍ପନା କରିପାରିବେ ନାଇଁ । କାହାକୁ ହଇଜା ହେବାର ଦେଖାଗଲେ, ଲୋକେ ସେ ଘର ପାଖଆଖ ଛାଡ଼ି ପଳାଂତି । ବେଳେ ବେଳେ ଗୋରୁରେ ଦଉଡ଼ି ବାଂଧି ସେଥିରେ ହଇଜାମଲୁକୁ ବାଂଧି ଛାଡ଼ି ଦିଅଂତି । ସେ ମଲୁ ଘୋଷାରି ହୋଇ ବାଟରେ ମରି ଗାଁ ବାହାରକୁ ଚାଲିଯାଏ । ହଇଜା ରୋଗୀଂକୁ କେହି ପାଣି ମୁଂଦାଏ ହେଲେ ଦେବାକୁ ନଥାଏ । ଆଉ ବର୍ଣ୍ଣନା କରିପାରିବି ନାଇଁ ।

ଶୁଣିଲି, ମଫସଲର ବଡ଼ଗାଁ ମାନପୁରେ ହଇଜା ଲାଗିଚି । ସ୍କୁଲ ପିଲାଂକୁ ସାଂଗରେ ଧରି ମୁଁ ହୋମିଓପାଥି ବାକ୍‌ସ, ଆଉ ଫିନାଇଲ, ପଟାସ ପରମାଂଗାନେଟ୍ କିଛି ଧରି ସେ

ଗାଁକୁ ଚାଲିଲି । ଲୋକେ ତଟସ୍ଥ । କେବଳ ସହର ନୁହେଁ, ଦୂର ମଫସଲ ପିଲାଏ ବି ସାଂଗରେ ଅଛଂତି । ବଡ଼ ଧନୀଲୋକ ପିଲାଏ ବି ସାଂଗରେ ଅଛଂତି । କେଉ କିଛି କହିଲେ ନାହିଁ । ମୁଁ ଯାଇ ରୋଗୀମାନଂକୁ ଘରେ ଦେଖି ସବୁ ପରିଷ୍କାର କରି ଧୂପ ଦେଇ ରୋଗୀଂକୁ ପାଣି ଦେଲି; ତାଜା କଲି । ଫିନାଇଲ, ପଟାସ ପରମାଂଗାନେଟ୍ ପ୍ରଭୃତିର ବ୍ୟବହାର ଶିଖାଇଲି । ଔଷଧ ଯାହା ବି ଦେଲି, ସେ ତ ନଈ ବଢ଼ିକି ବିଅଂକ ରାଣ; କିଂତୁ ସେଥିରେ ଅଦ୍ଭୁତ ଫଳ ହେଲା । ଯେଉଁଠାରେ ମୁଁ ଯାହା କହୁଥିଲି, ଲୋକେ ସବୁ ମାନୁଥିଲେ । ଭୟ, ଘୃଣା ପ୍ରଭୃତି ସବୁ ଛାଡ଼ି କାମରେ ଲାଗି ଯାଉଥିଲେ ।

ଆଉ ଗୋଟିଏ ଦିନର କଥା । ସେଦିନ ଅପ୍ରେଲ ୫ ତାରିଖ ସନ୍ଧ୍ୟା । ୬ ତାରିଖ ସକାଳୁ ହରତାଳ ହେବାର କଥା । ନଈ ଭିତରେ ବାଲିରେ ସଭା ହେବ ବୋଲି ସହରରେ ଜଣାଇ ଦେଇ ମୁଁ ସେଠାରେ ଗୋଟିଏ ନାତିଦୀର୍ଘ ବକ୍ତୃତା ଦେଇସାରି କହିଲି, "ସମସ୍ତେ ଉଠ, କାଲି ଜାଲିଆନ ୱାଲାବାଗ ହତ୍ୟାର ଦିବସ । ସେଥିପାଇଁ ସମସ୍ତ ସହରରେ ହରତାଳ ହେବ । କୌଣସି ଦୋକାନ ଖୋଲିବ ନାହିଁ । କେହି କାମ କରିବେ ନାହିଁ ।" ଏବେ ମଧ୍ୟ ମନେପଡ଼ିଲେ ଆଶ୍ଚର୍ଯ୍ୟ ଲାଗୁଚି । ସେ ବିରାଟ ଜନତା ସେଇଠାରୁ ମୋ ପଛେ ପଛେ ଉଠିଆସିଲେ । ଆଉ ସହରଯାକ ବୁଲି ସମସ୍ତଂକୁ ହରତାଳ କଥା କହିଦେଲୁ । ତହିଁଆରଦିନ ସହରରେ ପୂର୍ଣ୍ଣ ହରତାଳ ।

ଏଣେ କଂଗ୍ରେସ କମିଟିର କାର୍ଯ୍ୟ ମଧ୍ୟ ଲାଗିଥାଏ । ଯେତେଦୂର ମନେହେଉଚି ସଭାପତି ଥାଂତି ଶ୍ରୀଯୁକ୍ତ ଚଂଦ୍ରଶେଖର ବେହେରା । ଶ୍ରୀ ଧରଣୀଧର ମିଶ୍ର ପୂର୍ଣ୍ଣ ସହଯୋଗ କରୁଥାଂତି । ମୁଁ ନିଜେ ଛାପା ଡିମାଇ ଆଠପୃଷ୍ଠାବ୍ୟାପୀ ଗୋଟିଏ ପତ୍ର ଛପାଇ ତାହାର ଦାମ ଦୁଇପଇସା କରିଦେଲି । ସମସ୍ତ କର୍ମୀମାନେ (ସେଇ କର୍ମୀଂକ ଭିତରେ ବାଳକ, ଯୁବକ, ତରୁଣ ଓ ପ୍ରବୀଣ ବୃଦ୍ଧ ମଧ୍ୟ ଥିଲେ) ସେଇ ପତ୍ର ଘେନି ଜିଲ୍ଲାର ଗ୍ରାମେ ଗ୍ରାମେ ବୁଲିଗଲେ । ଏବେ ସେ କର୍ମୀଂକ ଭିତରେ ଜଣେ ଜୀବିତ ଥିବାରୁ ମନେପଡୁଚି—ଆଉ ଅନେକ ଥିବେ—ସେ ଜଣଂକ ହେଉଚଂତି ଏବର ସୁନାମ ପ୍ରସିଦ୍ଧ ଶ୍ରୀ ଶ୍ରଦ୍ଧାକର ସୁପକାରଂକ ପିତା—ତାଂକ ନାମ ଜନାର୍ଦ୍ଦନ ସୁପକାର । ସେ ଏଇ ପତ୍ର ଘେନି ବହୁତ ଇଲାକା ବୁଲିଥିଲେ ଓ ବହୁ ମେଂବର ସଂଗ୍ରହ କରିଥିଲେ । ମେଂବର ଫିସ୍ ଚାରିଅଣା ସଂଗେ କୌଣସି ନିର୍ଦ୍ଦିଷ୍ଟ ଚାଂଦା ଛଡ଼ା ଅନ୍ୟକୌଣସି ଚାଂଦା ସଂଗୃହୀତ ହୋଇ ନଥିଲା । ତଥାପି ମୋ ମନେ ଅଛି, ମୁଁ ସଂବଲପୁର ଛାଡ଼ି ଆସିଲାବେଳକୁ କଂଗ୍ରେସ ଫଂଡ଼ରେ ଜମା ହୋଇଥିଲା ପ୍ରାୟ ୧୬୦୦ ଟଂକା (ଏକ ହଜାର ଛଅ ଶହ) । ଅନ୍ୟାନ୍ୟ ସବୁ ଜିଲ୍ଲାଠାରୁ ସଂବଲପୁର ଜିଲ୍ଲାରେ ସେବର୍ଷ କଂଗ୍ରେସ ଯେପରି ପ୍ରତିଷ୍ଠିତ ହୋଇଥିଲା, ତାହା ମୋର ଯେତେଦୂର ମନେହୁଏ, ଓଡ଼ିଶାର ସବୁ ଜିଲ୍ଲାଠାରୁ ଉତ୍କୃଷ୍ଟ ଥିଲା । ଆଉ ବେଶୀ ଲେଖିପାରୁ ନାହିଁ । ମୁଁ ସେଇବର୍ଷ ସେପ୍ଟେଂବର କିଂବା ଅକ୍ଟୋବରରେ ସଂବଲପୁରରେ କଂଗ୍ରେସ ଛାଡ଼ି ପୁରୀ ଓ ତା'ପରେ ଉତ୍କଳ କଂଗ୍ରେସରେ କାମ କରିବାକୁ କଟକ ଆଡ଼େ ଆସିଲି; ଜେଲ୍ ଗଲି । ତା'ପରେ ଅନ୍ୟକୌଣସି କାର୍ଯ୍ୟରେ ଥରେ ଅଳ୍ପ ସମୟ ପାଇଁ ସଂବଲପୁର ଯାଇଚି, ଆଉ ବେଶୀ ଯାଇ ନାହିଁ । କିଂତୁ ଯାହା ଜାଣୁଚି, ଜାତୀୟତାରେ ସଂବଲପୁରର ସ୍ଥାନ ମଧ୍ୟ ଏବେ ଓଡ଼ିଶାରେ ବହୁ ଉଚ୍ଚରେ । ମଂଗଳ ହେଉ ।

(ଲେଖା—ତା ୨୩-୧-୧୯୫୯)

## (୬) ମନସ୍ୱୀ ରାମଚଂଦ୍ର

ସତ୍ୟବାଦୀ ସ୍କୁଲର ଅନ୍ୟତମ ପ୍ରତିଷ୍ଠାତା କର୍ମୀ ରାମଚଂଦ୍ର ରଥ ଆଉ ଇହଧାମରେ ନାହାଂତି । ସତ୍ୟବାଦୀ ସ୍କୁଲ ଉତ୍କଳରେ ସୁପରିଚିତ ଥିଲା; ମାତ୍ର ରାମଚଂଦ୍ରଂକୁ ହୁଏତ ଅନେକେ ଜାଣି ନଥିବେ । ମାନବସମାଜର ପ୍ରଗତିରେ ଏଇଭଳି ସାଧୁ ମନସ୍ୱୀ ନିଷ୍ଠାପର କର୍ମୀଂକ ବ୍ୟକ୍ତିତ୍ୱ ଓ କର୍ମର ପ୍ରଭାବ ପ୍ରଚ୍ଛନ୍ନ ରହିଯାଏ । ହେଲେହେଁ ସେଇମାନେ ଯଥାର୍ଥରେ ପ୍ରଗତିର ବିଧାତା ଓ ନିୟଂତା । ସେଇଠାରେ ହିଁ ଯଥାର୍ଥ ଆତ୍ମତ୍ୟାଗ, ଯଥାର୍ଥ ସାଧୁତା ଓ ଓ ଯଥାର୍ଥ କର୍ମନିଷ୍ଠା ।

ରାମଚଂଦ୍ର ମୋର ପାଂଚ ଛଅବର୍ଷ କନିଷ୍ଠ । ପୁରୀର ଯେଉଁମାନେ ଶ୍ରେଷ୍ଠତମ ବ୍ରାହ୍ମଣ ବୋଲି ନିଜକୁ ମନେକରଂତି, ସେଇ କୁଳରେ ସତ୍ୟବାଦୀ ପାଖ ବିଶ୍ୱନାଥପୁର ଶାସନରେ ତାଂକର ଜନ୍ମ । ସେ କାଳେ କୌଣସି ବ୍ରାହ୍ମଣ ଘରେ ଅନ୍ନ ଗ୍ରହଣ କରିବା ତାଂକ ପକ୍ଷରେ ନିଷିଦ୍ଧ ଥିଲା । ସମସ୍ତେ ତାଂକ ହାତେ, ତାଂକ ଘରେ ଖାଇବେ—ସେ କାହାରି ଘରେ ଖାଇବେ ନାଇ—ଏହାଇ ରୀତି । ହେଲେହେଁ ରାମଚଂଦ୍ର ଅତ୍ୟଂତ ଗରିବ ପରିବାରର ସଂତାନ । କାଲିପରି ମନେଅଛି, ପୁରୀ ଜିଲ୍ଲାସ୍କୁଲର ତଳ ଶ୍ରେଣୀରେ ରାମଚଂଦ୍ର ପଢୁଥାଂତି । ହାତରେ ରାଂଧି ଖାଇଲେ ମଧ, ଅର୍ଥାଭାବରେ ପଢ଼ା ଛାଡ଼ିବାର ବେଳ ଆସିଲା । ସ୍ୱର୍ଗୀୟ ପଂଡ଼ିତ ଗୋପବଂଧୁଂକ ସଂଗେ ସେତେବେଳେ ମୋର ସଂପର୍କ ହୋଇଥିଲା । ମୁଁ ଦେଖିଚି ପଂଡ଼ିତ ଗୋପବଂଧୁ ଶ୍ରମର ମହତ୍ତ୍ୱ ବିଷୟରେ ବୁଝାଇଦେଲେ । କର୍ମୀ ବାସୁଦେବ ମହାପାତ୍ର ମଧ ରାମଚଂଦ୍ରଂକ ସଂଗେ ସମାନ ଅବସ୍ଥାରେ ଥାଇ ସେ ଉପଦେଶ ଶୁଣିଲେ । ତହିଁ ଆରଦିନ ଠାରୁ ରାମଚଂଦ୍ର, ବାସୁଦେବ ଦୁହେଁ ଦୁଇବେଳା ପୁରୀ ଷ୍ଟେସନରୁ ବୋଝ ବୋହି, ସେଇ ମଜୁରୀରେ ନିଜେ ନିଜର ଖର୍ଚ୍ଚ ଚଳାଇଲେ ।

ସେ ଯେଉଁ ବର୍ଷ ମାଟ୍ରିକୁଲେଶନ ପାସ୍ କଲେ (୧୯୧୧), ମୁଁ ସେଇବର୍ଷ ଏମ୍.ଏ. ପାସ୍ କରି ଆସି ସତ୍ୟବାଦୀରେ ଯୋଗ ଦେଇଥିଲି । ରାମଚଂଦ୍ର ପୁରୀ କଚେରିରେ ଆପ୍ରେଂଟିସ୍ ରୂପେ ଗୃହୀତ ହୋଇ ଅଳ୍ପଦିନ ମଧରେ ଖୋର୍ଦ୍ଧାରେ ପେଷ୍କାର ହେଲେ—ଦରମା ମାସକୁ ୩୫ଟଂକା । ମୁଁ ଶୁଣି ସୁଖୀ ହେଲି; ମାତ୍ର ହଠାତ୍ ପତ୍ର ପାଇଲି, ସେ ସତ୍ୟବାଦୀରେ ଶିକ୍ଷକ ରୂପେ ଯୋଗ ଦେବାକୁ ଚାହାଂତି । ବିସ୍ମିତ ହେଲି । ଚତୁର୍ଥ ଶ୍ରେଣୀ ଫିଟି ନଥାଏ । ୧୯୧୨ ଜାନୁୟାରୀ ପହିଲାରୁ ଫିଟିବ । ମୁଁ ମାଇନର ସ୍କୁଲରେ ଥାଏ । ଆଉ ଶିକ୍ଷକ ପାଇଁ ସେତେବେଳେ ଟଂକା କାହୁଁ ଆସିବ ? ଗୋପବଂଧୁ ଦାସ ମୟୂରଭଂଜରେ ରାଜ ଓକିଲ ଥାଆଂତି । ତାଂକ ସଂଗେ ପରାମର୍ଶ କରିବାର ବେଳ ନାଇଁ । ବର୍ଷ ଶେଷ ହୋଇ ଆସୁଥାଏ । ମୁଁ ରାମଚଂଦ୍ରଂକୁ ମନା କରି ନିବର୍ତ୍ତାଇ—ଅଂତତଃ କିଛିଦିନ ହେଲେ ଟକାଇବା ପାଇଁ ଚିଠି ଲେଖିଲି । ସେ ଚିଠି ପାଇ ଆଉ ଉତ୍ତର ବି ଦେଲେ ନାଇଁ । ହଠାତ୍ ଜାନୁୟାରୀ ପହିଲାରେ ଆସି ନିଜେ ହାଜର ହୋଇଗଲେ । ପଚାରିବାରୁ ଧୀର ଭାବରେ କହିଲେ, ''ସେ କାମରେ ମୁଁ ରହିଲି ନାଇଁ । ଇସ୍ତଫା ଦେଇଆସିଲି । ସେଠାରେ ଚରିତ୍ର ଖରାପ ହୋଇଯାଂତା ।'' (ରାମଚଂଦ୍ରଂକ ଚାକିରି ଇସ୍ତଫା ଦେବାର କାରଣ ଅନ୍ୟତ୍ର କୁହାଯାଇଚି) ।

ରାମଚଂଦ୍ରଂକର ବଡ଼ ପରିବାର । ବୃଦ୍ଧ ପିତାମାତା ଋଣଭାରରେ ଆକ୍ରାଂତ । ଅର୍ଜନ ପାଇଁ ପୁଅକୁ ଆଶା କରି ବସିଥାଂତି; କିଂତୁ ରାମଚଂଦ୍ର ଆସି ସତ୍ୟବାଦୀରେ ମାସିକ ଛଅଟଂକା

ମାତ୍ର ଉତ୍ତାରେ ନିଜ ଜୀବନର ସାର୍ଥକତା ଦେଖିଲେ । ସାରାଜୀବନର ଦାରିଦ୍ର୍ୟ ମଧ୍ୟରେ ମଧ୍ୟ ଏ ଦୃଢ଼ତା ତାଂକର କେବେ ଲୁଚି ନାହିଁ ।

ସତ୍ୟବାଦୀ ସ୍କୁଲର ଯେତେଦିନ ଚିହ୍ନବର୍ଣ୍ଣ ଥିଲା, ସେତେଦିନ ସେ ସତ୍ୟବାଦୀ ଛାଡ଼ି ନାହାଂତି । ସତ୍ୟବାଦୀ ଛାପାଖାନା ଯେତେଦିନ ଯାଏ ସତ୍ୟବାଦୀ ବିଦ୍ୟାଳୟରେ ଥିଲା, ସେତେଦିନଯାଏ ରାମଚଂଦ୍ର ସତ୍ୟବାଦୀର ଅନ୍ୟାନ୍ୟ କର୍ମୀଂକ ସହିତ ସେଇ ଛାପାଖାନାରେ ଶ୍ରୀବୃଦ୍ଧିରେ ପ୍ରାଣପଣେ ଲାଗିଥିଲେ । କେତେ କାଳ ପାଇଁ ଛାପାଖାନାର ମାନେଜର ହୋଇ ସେ ଅନୁଷ୍ଠାନଟିକୁ ଦୃଢ଼ ଓ ବଳିଷ୍ଠ କରି ଗଢ଼ିଥିଲେ ।

ଆତ୍ମସଂଧାନର ଜ୍ଞାନ ତାଂକର ବରାବର ଅକ୍ଷୁଣ୍ଣ ଥିଲା । ଛାପାଖାନା ଛାଡ଼ି ମଧ୍ୟ ସେ ପଂଡ଼ିତ ଗୋପବଂଧୁଂକ ମୃତ୍ୟୁ ପରେ ଆଉ କିଛିଦିନ ପର୍ଯ୍ୟଂତ ସତ୍ୟବାଦୀରେ ନିଷ୍ଠା ଧରି ପଡ଼ି ରହିଥିଲେ । ମାତ୍ର ଦାରିଦ୍ରତା ଓ ଋଣଭାର ଆଉ ସହି ନପାରି କଟକ ଚାଲିଆସିଲେ । କେତେଦିନ କଟକରେ ଛାତ୍ରମାନଂକର ଗୃହଶିକ୍ଷକତା କରି ପରେ ଶ୍ରୀଯୁକ୍ତ ଗୋପାଳଚଂଦ୍ର ପ୍ରହରାଜଂକ ଭାଷାକୋଷରେ ସହକର୍ମୀ ରୂପେ କାର୍ଯ୍ୟ କରୁଥିଲେ । ସେ କାର୍ଯ୍ୟ ତାଂକର ଶେଷ ହୋଇ ନାହିଁ । ପରିବାରର ଋଣଭାର ମଧ୍ୟ ଲଘୁ ହୋଇ ନାହିଁ । ଗୋପାଳ ବାବୁ ଆଜି ତାଂକୁ ଝୁରି ହେଉଚଂତି, ପରିବାର ଆଜି ରାମଚଂଦ୍ରଂକୁ ହରାଇ ଅନାଥ ।

ଛାତ୍ର ହୁଅଂତୁ, ସହକର୍ମୀ ହୁଅଂତୁ, ବଂଧୁ ବା ସହଚର ହୁଅଂତୁ, ଯେ ରାମଚଂଦ୍ରଂକ ସଂପର୍କରେ ଆସିଚଂତି, ସେ ତାଂକର ବ୍ୟକ୍ତିତ୍ୱ ଓ ଚରିତ୍ରର ଦୃଢ଼ତା, ଗଭୀର ଆତ୍ମସଂଧାନ, ଜ୍ଞାନ, ପ୍ରକୃତିର ମଧୁରତାରେ ମୁଗ୍ଧ ହୋଇଥିବେ । ବିଷୟଜ୍ଞାନ ଓ ଚିଂତା ଚତୁରତା; ସଂସ୍କାର କ୍ରିୟାରେ ଗଂଭୀର ଓ ସୁଦୃଢ଼ ପ୍ରବଣତା, କ୍ଷିପ୍ର ବିବେଚନା ଓ ନିର୍ବାଚନରେ ବିଚକ୍ଷଣତା ପ୍ରଭୃତି ଦୁର୍ଲ୍ଲଭ ଗୁଣମାନ ରାମଚଂଦ୍ରଂକ କ୍ଷୀଣ ବପୁଷ୍ମଦ୍ ବ୍ୟକ୍ତିତ୍ୱକୁ ସୁଂଦର ଓ ଉଦାର କରି ରଖିଥିଲା । ଲୋକଚକ୍ଷୁର ଅଂତରାଳରେ ତାହା ଏବେ ଚିରଦିନ ପାଇଁ ଲୁପ୍ତ ହୋଇ, ଆତ୍ମତ୍ୟାଗବ୍ରତ୍ ଉଦ୍‌ଯାପନ କରିଅଛି ।

ସତ୍ୟବାଦୀ ସ୍କୁଲ ଏକ ରକ୍ଷଣଶୀଳ କେଂଦ୍ରରେ ଆରଂଭ କରା ହୋଇଥିଲା । ଛାତ୍ରଂକ ମଧ୍ୟରେ ବ୍ୟବହାରାଦିରେ ଜାତିଧର୍ମ ଭେଦ କରିବା ଅସଂଗତ ବୋଲି ସେଠାରେ କାର୍ଯ୍ୟରେ ପ୍ରଚାର କରାହେଲା । ସମସ୍ତଂକୁ ଏକାଘରେ ଏକ ପଂକ୍ତିରେ ଖାଇବାକୁ ଦିଆହେଲା । ପୁରୀର ବ୍ରାହ୍ମଣମାନେ ପ୍ରତିବାଦ କଲେ । ପ୍ରତିବାଦ ଘୋର ବିଦ୍ୱେଷରେ ପରିଣତ ହେଲା । ମୁଁ ସେତେବେଳେ ବେ-ଦାଢ଼ି ନିଶ ରଖିଥିଲି । ପୁରୀର ମୁକ୍ତିମଂଡ଼ପ ପଂଡ଼ିତମାନେ ତାକୁଇ ବାହାନା କରି ମତେ ସମାଜରୁ ବାହାର କରିଦେବାର ଘୋର ଉଦ୍ୟମ ଓ ଆୟୋଜନ କଲେ । ରାମଚଂଦ୍ର ସେତେବେଳେ ନୀତିର ଦୃଢ଼ତାରେ ମୋର ଏକମାତ୍ର ସହଚର । ସେଥିପାଇଁ ସମାଜର ତୀବ୍ରତା ମଧ୍ୟ ତାଂକ ଉପରେ ଅଧିକ ପଡ଼ିଥିଲା । ସେଇସବୁ ପ୍ରତିବାଦ ଓ ତୀବ୍ରତା ଘନୀଭୂତ ହୋଇ ସତ୍ୟବାଦୀର ବୃହତ୍ ସ୍କୁଲଘର ଓ ପୁସ୍ତକାଳୟ ପୋଡ଼ି ଭସ୍ମସାତ୍ କରିଥିଲା; କିଂତୁ ଏକମାତ୍ର ରାମଚଂଦ୍ର ସେତେବେଳେ ଏ ସମସ୍ତ ଭିତରେ ମୁଂଡ଼ଟେକି ନୀତିର ଦୃଢ଼ତା ଓ ଗର୍ବିତ ଦୈନ୍ୟରେ ଠିଆ ହୋଇ ରହିଥିଲେ ।

୧୯୧୨ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥଂକ ନୂଆ କଳେବର । ସେ ବର୍ଷ ରଥଯାତ୍ରାର ଜନତା

ଆଉ କେବେ ହୋଇ ନାହିଁ । ସେ ବିସୂଚିକା ମଫସଲର ଗ୍ରାମମାନଂକରେ ରଂଧ୍ରେ ରଂଧ୍ରେ ପଶିଯାଇ ଅତି ପ୍ରବଳ ହୋଇଥିଲା । ସେତେବେଳେ ମଧ ରାତିଦିନ କୁଳାଇ ମାସର ଖରା ବର୍ଷାରେ ସମାନ ଭାବରେ ଏକମାତ୍ର ରାମଚଂଦ୍ରଂକ ସଂଗେ ଗ୍ରାମେ ଗ୍ରାମେ ବୁଲି ରୋଗୀ ସେବା କରିବା କଥା ଆଜି ମନେପଡୁଚି ଆଜି ରାମଚଂଦ୍ର ଚାଲିଗଲେ; କିଂତୁ ସେ ବ୍ୟକ୍ତିତ୍ୱ, କର୍ମନିଷ୍ଠା ଓ ଆତ୍ମତ୍ୟାଗର ପ୍ରଭାବ ଜୀବଂତ ରହିଚି ବୋଲି ମନେହୁଏ । ରାମଚଂଦ୍ର, ତୁମେ ନିଜେ ନିଃସଂତାନ, ବିଧବାଂକୁ ଗୋଟିଏ ବୃହତ୍ ଦରିଦ୍ର ପରିବାରରେ ଛାଡ଼ିଗଲ । ଯାଅ, କିଂତୁ ତୁମରି ପରି ନୀରବ, ଆତ୍ମତ୍ୟାଗୀ, ନିଷ୍ଠାପର, ମନସ୍ୱୀ ଯତି ହିଁ ଏ ଜଗତରେ ପ୍ରଗତିର ଯଥାର୍ଥ ପୀଠ ।

## (୭) ସ୍ୱର୍ଗତ ପ୍ରଚାରକ ଅନଂତ ମିଶ୍ର

ଅନଂତ ମିଶ୍ରେ ଚାଲିଗଲେ । ୧୯୩୭ ମେ ମାସ ୬ ତାରିଖରେ ତାଂକର ପରଲୋକ ହେଲା । ଉତ୍କଳର ଜାତୀୟ ଆକାଶରୁ ଗୋଟିଏ ଅତି ଉଜ୍ଜ୍ୱଳ ନକ୍ଷତ୍ର ଲିଭିଗଲା । ତାଂକର ବୟସ ହୋଇ ନଥିଲା । ୧୮୮୪ ଅକ୍ଟୋବର ମାସରେ ତାଂକର ଜନ୍ମ । ବୟସ ମାତ୍ର ୫୨ବର୍ଷ ୬ମାସ । ସେ ଆଜକୁ ୨୫ବର୍ଷରୁ ଅଧିକ କାଳ ବିପତ୍ନୀକ ଥିଲେ । ଏକମାତ୍ର ପୁତ୍ରଛଡ଼ା ସଂସାରରେ ଯାହାକୁ ନିଜର କହଂତି ସେପରି ତାଂକର ଆଉ କେହି ନଥିଲା । ଯେଉଁମାନେ ତାଂକ ଭିତର କଥା ଜାଣଂତି ସେମାନେ ବୁଝିଥିବେ ଯଥାର୍ଥ ନିଷ୍କାମ ସ୍ୱଦେଶ-ପ୍ରାଣତାରେ ଜୀବନର ଶେଷଦିନଯାଏ ସେ କର୍ମ ଓ ଚିଂତାତତ୍ପର ଥିଲେ । ମାତ୍ର ମୃତ୍ୟୁର ପ୍ରଧାନ କାରଣ ଅଭାବ—ସ୍ୱଚ୍ଛଂଦ ଶାରୀରିକ ବ୍ୟବସ୍ଥା ନିମଂତେ ଏକାଂତ ଅଭାବ । ସିଂହଭୂମି ପାଇଁ ତାଂକର ପ୍ରାଣ ଚିରଜାଗ୍ରତ ଓ ବ୍ୟାକୁଳ ଥିଲା । ସେହି ସିଂହଭୂମି କର୍ମରେ ଆଜକୁ ପ୍ରାୟ ଦଶବର୍ଷ ପୂର୍ବେ ସେ ଯତ୍ କିଂଚିତ୍ ପୈତୃକ ସଂପତ୍ତି ମଧ ପଣ କରିସାରିଥିଲେ । ଗ୍ରାମରେ ରହିବାର ଘର ମଧ ଏବେ ତାଂକ ନିଜର ନଥିଲା । ଉତ୍ତମର୍ଣଂକଠାରୁ କିଣିଥିବା ଲୋକଂକ ଅନୁଗ୍ରହରେ ସେ ସେଘରେ ଏବେ ରହୁଥିଲେ । ମରିବା ପୂର୍ବରୁ ଯେତେବେଳେ ଜ୍ଞାନ ସମ୍ପୂର୍ଣ୍ଣ ବିଶୃଂଖଳ ହୋଇ ନଥିଲା, ସେତେବେଳେ ଶ୍ରୀମତୀ ରାଧାମଣି ଦେବୀଂକୁ ଶେଯପାଖେ ଦେଖି କହି ପକାଇଲେ—"ଆପଣ ଆସିଲେ । ଭଲ ହେଲା । ନୀଳକଂଠ ଦାସଂକୁ ହୁଏତ ଆଉ ଜ୍ଞାନ ଥାଇ ଦେଖିପାରିବି ନାଇ । କିଂତୁ ମୋର ଆଜି କି ଆନଂଦ, ଏପରି ଏ ଘରେ ମରିବି ବୋଲି ଜୀବନରେ କେବେ ଆଶା କରି ନଥିଲି । କେଉଁ ଗଛମୂଳେ ପଡ଼ି ଏକାକୀ ନିରାଶ୍ରୟ ଭାବରେ ମରିଥାଂତି । ଆଜି ଆପଣମାନଂକୁ ସମସ୍ତଂକୁ ଦେଖୁଚି । ଶଶି (ତାଂକର ଏକମାତ୍ର ପୁଅ ଶଶିଭୂଷଣ ମିଶ୍ର) ମଧ ମତେ ସେବା କରୁଚି । ଏ ମୋର ବହୁଭାଗ୍ୟ ।"

ଶେଷ ମୁହୂର୍ତ୍ତରେ ଏଇଭାବ ତାଂକ ଜୀବନ ଇତିହାସ ପ୍ରଚାର କରୁଚି । ଏହାକୁ ବିଶ୍ଳେଷଣରେ ବୁଝାଇବାର ଦରକାର ନାହିଁ । ଜୀବନରେ ସେ କେବେ ଘରେ ରହିବାର କଳ୍ପନା କରି ନଥିଲେ । ଶେଷଦିନ ମଧ ଆତ୍ମୀୟସ୍ୱଜନଂକ ପରିଚର୍ଯ୍ୟା କଥା ଦୂରେଥାଉ ପାଖେ ରହିବା ମଧ ସେ କଳ୍ପନା କରି ନଥିଲେ । ଏଇକଥା ସଂଗେ ସଂଗେ ପୁଣି ସେ କହିଲେ, "ନୀଳକଂଠ ଦାସଂକୁ କହିବ ସେ କୌଣସି କଥାରେ ବିଚଳିତ ହେବେ ନାହିଁ । ସେ କାର୍ଯ୍ୟଟିଏ ବିଚାରିଲେ ତାହା କରିପାରଂତି । ମୁଁ ତ ଚାଲିଯାଉଚି । ତାଂକୁ କହିଦେବ, ସିଂହଭୂମି ଓଡ଼ିଶାକୁ ଆସି ନାହିଁ । ଆଉକେତେ ଓଡ଼ିଆ ଭୂମି ବାହାରେ ଅଛି । ଏ କଥା ଯେପରି ଦେଶ ନଭୁଲେ । ମୁଁ

ପୁଣି ସିଂହଭୂମି ଯିବାର ସଂକଳ୍ପ କରିଥିଲି; କିଂତୁ ଆଉ ହେଲାନାହିଁ । କାର୍ଯ୍ୟ ଆରଂଭ କଲେ ଅର୍ଥର ଅଭାବ ହେବନାହିଁ ।'' ଏହାର ଅଳ୍ପ ସମୟ ପରେ ତାଂକର ଜ୍ଞାନ ବିଶୃଂଖଳ ହେଲା । ମଝିରେ ମଝିରେ ସ୍ପଷ୍ଟ କଥା ସବୁ ମୁହଁରୁ ବାହାରି ଯାଉଥାଏ; କିଂତୁ ବାହ୍ୟ ଜ୍ଞାନ ନଥାଏ । ସବୁ କଥାରେ ସେଇ ସିଂହଭୂମି, ସେଇ ଓଡ଼ିଶା ବାହାରେ ଥିବା ଓଡ଼ିଆ ଭୂମି, ବେଳେ ବେଳେ ଲୋକଂକ ସଂଗେ ଦେଖାକରି ସେଇ ବିଷୟରେ ଅନୁରୋଧ ଓ ଯୁକ୍ତି କରିବା ପ୍ରକାଶ ପାଉଥାଏ ।

ମୃତ୍ୟୁର ଅବ୍ୟବହିତ ପରେ ସ୍ଥାନୀୟ ଯୁବକମାନେ ସତ୍ୟବାଦୀର ବନ୍ଧୁ ପଲ୍ଲୀ ମଧ୍ୟରେ ତାଂକ ଶବକୁ ପୁଷ୍ପମଂଡ଼ିତ ବିମାନରେ ରଖି କାଂଧରେ ବହି ଶୋଭାଯାତ୍ରା କରିଥିଲେ । ନିରୀହ ନିଷ୍କାମକର୍ମୀ ଅନଂତ ମିଶ୍ରଂକର ଶୋକଚ୍ଛାୟା ପଲ୍ଲୀର ନରନାରୀଂକ ମୁଖରେ ସେ ଦିନ ଯେ ଦେଖିଚଂତି, ସେ ଭୁଲିବେ ନାହିଁ । ଲୋକେ କହୁଥାଂତି, ଆହା ! ଧନ୍ୟ ଅନଂତ ମିଶ୍ରେ । ଜୀବନରେ କାମନା ନାହିଁ, ଅଭିଳାଷ ନାହିଁ । ଅନଂତ ମିଶ୍ରେ କେବଳ କର୍ମହିଁ ଜାଣୁଥିଲେ—ଲୋକଂକ ପାଇଁ କର୍ମ । ସେଇ କର୍ମ କରିବାରେ ସେ ଓଡ଼ିଶାରେ କୌଣସି ବନପ୍ରାଂତର ପୁରପଲ୍ଲୀ ବାକି ରଖିନାହାଂତି । ଏପରି ଆଉ କିଏ ହେବ ?'' ପଲ୍ଲୀବନିତା କାଂଦି କାଂଦି ମଧ ମିଶ୍ରଂକର ଏଇ ଗୁଣ ସୁମରୁଥାଏ । ବାସ୍ତବିକ ଧନ୍ୟ ଅନଂତ ମିଶ୍ରେ ! ନିଷ୍କାମ କର୍ମସେବା ତୁମର ଜୀବନରେ ଏକା କାର୍ଯ୍ୟରେ ଦେଖାଗଲା । ତମପରି ଏ ଦେଶର ପୁରପଲ୍ଲୀ ବନପ୍ରାଂତର ଆଉ କିଏ ଚିହ୍ନିଚି ? ସେପରି ଅଭିଳାଷହୀନ ହୋଇ ଦେଶସେବା କେତେଜଣ କରିପାରଂତି ? ଦେଶସେବାରେ ସର୍ବସ୍ୱାଂତ ହୋଇ ମଧ ତୁମେ ନିରାଶ ହୋଇ ନଥିଲ । ଶରୀର ଭାଂଗିଗଲା; ମାତ୍ର ସଂକଳ୍ପ ତୁଟିନାହିଁ । ଆଜି ସେଇ ସଂକଳ୍ପ ଘେନି କୁଆଡ଼େ ଗଲ, ତା'ର ବାକି ପରିଣାମ କିଏ ଜାଣେ ?

୧୯୦୨ ଖ୍ରୀଷ୍ଟାବ୍ଦର ଗ୍ରୀଷ୍ମକାଳର ସେ ଚାଂଦନୀରାତି ଆଜି ମନେପଡୁଚି । ଜୀବନରେ ସେ ସ୍ମରଣୀୟ ଦିନ ତୁମ ସ୍ମୃତି ସଂଗେ ଜୀବିତ ଅଛି, ରହିବ । ଭାର୍ଗବୀର ଏପାଖେ ବଳପୁର ସେ ପାଖେ ସୁଆଂଡ଼ । ସୁଆଂଡ଼ ପାଖେ ବଂଧତଳେ ନଈର ଧାର । ତା'ପରେ ବଳପୁର ପଟକୁ ନଈର ବାଲିଶେଯ ରୁପାପରି ଦାଉ ଦାଉ ଦିଶୁଥାଏ । ବଳପୁର ଓ ପାର୍ଶ୍ୱବର୍ତ୍ତୀ ପଲ୍ଲୀରେ ସେତେବେଳେ ଭୀଷଣ ବିସୂଚିକା । ସେଇ ବାଲି ବଳପୁରର ଶ୍ମଶାନ; ଶ୍ମଶାନରେ ଅର୍ଦ୍ଧଦଗ୍ଧ ଶବ ପଡ଼ିଥାଏ । ଲୋକେ ପୋଡ଼ି ପାରୁ ନଥାଂତି । ସେ ରାତିରେ ଶୃଗାଳମାନେ କୋଳାହଳ କରି ସେ ଶ୍ମଶାନରେ ନୃତ୍ୟ କରୁଥାଂତି । ନଈ ଉପରେ ସୁଆଂଡ଼ ବଂଧ । ବଂଧକୁ ଲାଗି ବଂଧତଳେ ସୁଆଂଡ଼ର ଗ୍ରାମଦେବତା । ସୁଆଂଡ଼ ସ୍ୱର୍ଗତ ପଂଡ଼ିତ ଗୋପବଂଧୁଂକ ଗ୍ରାମ । ଗୋପବଂଧୁ ପ୍ରତିବର୍ଷ ଗ୍ରୀଷ୍ମାବକାଶରେ ସେତେବେଳେ ସେଇ ଗ୍ରାମ ଦେବସ୍ଥଳୀରେ ୭ଦିନ ହବିଷକରି ସେଇ ସାତଦିନ ମଧ୍ୟରେ ଜଗନ୍ନାଥ ଦାସଂକର ୧୨ଶ ସ୍କଂଧଯାକ ଭାଗବତ ଆବୃତ କରୁଥାଂତି । ତାହାକୁ କହଂତି ସପ୍ତା ବସିବା । ସେରାତି ସେବର୍ଷ ସପ୍ତା ବସିବା ମଧ୍ୟରେ ଏକରାତି । ଗୋପବଂଧୁଂକର ବି.ଏ. ଫେଲ୍ ହୋଇଥିବା ଫଳ ବାହାରି ଯାଇଥାଏ, କିଂତୁ ସେଥିରେ ଭୃକ୍ଷେପ ନଥାଏ । ସପ୍ତା ବସିବାରେ ତିଳେ ହେଲେ ପ୍ରତ୍ୟବାୟ ନଥାଏ । ସଂଗରେ ଆଚାର୍ଯ୍ୟ ହରିହର ଦାସ ଥିଲେ । ଦିନବେଳେ ଆମେ ତିନିଜଣ ଯାଇ ସପ୍ତା ଉପରେ ଭାଗବତ ପାଠରେ ନିରତ ଥିବା ପ୍ରସନ୍ନ ଗୋପବଂଧୁଂକୁ ଯେପରି କି କାଲି ଦେଖିଲାପରି ଲାଗୁଚି । ସେଇଦିନ ପୁଣି ପ୍ରଥମେ ସେଇଠାରେ ଭାଗବତକୁ ପୂଜା ହୋଇଥିବା ଭାତ ମହାପ୍ରସାଦ

ବ୍ୟବହାର । ଅନଭ୍ୟସ୍ତତା ହେତୁରୁ ରୁଚିରେ ଟିକିଏ ବାଧା ଆସିଥିଲା; କିଂତୁ ଗୋପବଂଧୁଂକର ପ୍ରସନ୍ନ ସୂଚନାରେ ପ୍ରାଣ କିପରି ଅଭିଭୂତ ହୋଇଥିଲା ତାହା ମଧ ମନେପଡୁଚି । ସନ୍ଧ୍ୟା ପରେ ଖଂଡ଼ିଏ ମାତ୍ର ଦୋପଟା ଚାଂଚ ପକାଇ ଚାରିଜଣ ଯାକ ନଣବଂଧ ଉପରେ ବରଗଛ ତଳେ ଶ୍ମଶାନର ସେଇ ଶିବାରବବ ମଧରେ ବସି ଦେଶର ଅବସ୍ଥା ଓ ଜୀବନର ଭବିଷ୍ୟତ କଳ୍ପନା ଓ ଜଳ୍ପନାରେ ରାତ୍ର ଏକାବେଳକେ ପ୍ରଭାତ ହୋଇଯାଇଥିଲା । ପ୍ରଭାତର ଠିକ୍ ପୂର୍ବ ଯାମରେ ସେଇ ସଂକଳ୍ପ କଥା ଆଜି ଅତୀତ ହେଲେ ମୃତ ନୁହେଁ । ସରକାରୀ ଚାକିରି କରିବା ନାହିଁ, ଇଚ୍ଛବେଳେ ଦେଶକୁ ଯାହା ଦେଖିଥାଇଁ, ନିଜ କର୍ମରେ ମରିବା ପୂର୍ବରୁ ତାହାଠାରୁ ଉନ୍ନତତର ଦେଖିବା ଏଇ ସଂକଳ୍ପର ଦ୍ୱିତୀୟ ସାଥୀ ତୁମର ମଧ ମରିବା ଦିନ ହୋଇଗଲା । ହୁଏତ ଯେଉଁଠାରୁ ଆଉ ଫେରଂତି ନାହିଁ, ସେ ଭୂମିରେ ଗୋପବଂଧୁଂକ ସଂଗେ ଦେଖାହେବ । ଜୀବନର ପ୍ରଥମରେ ଦେଶକୁ କଣ ଦେଖିଥିଲ, ଦେହ ଛାଡ଼ିଲାବେଳେ କି ଅବସ୍ଥାରେ ଦେଖିଲ, ତାହାର ଗଣନା ହୁଏତ କରିବାରେ ତୁମେ ଯାଇ ଗୋପବଂଧୁଂକ ସଂଗେ ସହଯୋଗ କରିବ; କିଂତୁ ତୁମର ସେଇ ସଂକଳ୍ପ ଦିନର ସାଥୀ ଆଉ ଯେ ଦୁଇଜଣ ରହିଲେ ତାଂକର ଗଣନାର ଦିନ କେବେ ଆସିବ ଜଣାନାହିଁ । ମାତ୍ର ଏବର ଗଣନାରେ ତୁମର ସ୍ମୃତି କି ବିଭାବ ମିଶାଇବ ବା ପ୍ରତ୍ୟବାୟ ହେବ କି ସାହାଯ୍ୟ କରିବ, ତାହା ବର୍ଣ୍ଣନା କରିବାର ବସ୍ତୁ ନୁହେଁ ।

ମନେପଡୁଚି ପୁଣି ନିଶ ଆଂଦୋଳନର କଥା । ମୁଁ ଦାଢ଼ି କାଟି ନିଶ ରଖିଲି । ସଂଗେ ସଂଗେ ସତ୍ୟବାଦୀ ସ୍କୁଲ କରି ବସିଲି । ସ୍କୁଲ ଛାତ୍ରବାସର ଭୋଜନ ବିଧାନରେ ଜାତିଭେଦ ଘେନି ପଂକ୍ତିଭେଦ ଉଠିଗଲା । ସେ କାଳର ପୁରୀର ପଂଡ଼ିତ ସମାଜ ତ୍ରସ୍ତ ଓ ବିବ୍ରତ ହୋଇଉଠିଲେ । ହିଂଦୁ ଧର୍ମର ଦ୍ୱାହି ଦେଇ ପଂକ୍ତି ଭେଦରେ ଭୋଜନବିଧାନ କରିବାକୁ ମୋତେ ଅନୁରୋଧ କଲେ । ମୁଁ ସେତେବେଳେ ଏକା । ଆଚାର୍ଯ୍ୟ ହରିହର ଥିଲେ ପି.ଏମ୍. ଆକାଡ଼େମିର ମାଷ୍ଟର । ଗୋପବଂଧୁ ଥିଲେ ମୟୂରଭଂଜରେ ଓକିଲ । ତୁମେ ଥିଲ ଡେଲାଂଗ ମାଇନର ସ୍କୁଲରେ । ପଂଡ଼ିତମାନେ ପଂକ୍ତିଭେଦକୁ ମୁଖ୍ୟ କରି ନଧରି, ଧଇଲେ ମୋ ଦାଢ଼ିହୀନ ନିଶକୁ । ସେଥି ସଂଗେ ସାମାଜିକ ନାନାବିଧ ବୈପ୍ଳବିକ ଅତ୍ୟାଚାର କଥା ଯୋଡ଼ା ହେଲା । ପୁରୀ ମଂଦିରର ମୁକ୍ତିମଂଡ଼ପ ଏଥିରେ ଜାଗ୍ରତ ହୋଇ ଉଠିଥିଲେ । ଗୋପବଂଧୁ ମୁକ୍ତିମଂଡ଼ପର ଅଧିକାରୀ ନୁହଂତି । ତୁମେ କିଂତୁ ଶୁଣିବାମାତ୍ରେ ଦାଢ଼ି କାଟିଦେଇ ନିଶ ରଖିଥିଲ । ଆଚାର୍ଯ୍ୟ ହରିହର ମଧ ତାହାଇ କରିଥିଲେ । ପ୍ରଥମରୁ ୧୬ଶାସନ ଭୋଗ ସଂପର୍କରେ ମଂଦିର ମଧରେ ସେଇ ବିରାଟ ବ୍ରାହ୍ମଣ ସଭାର ଆୟୋଜନ କଥା ମନେପଡୁଚି । ପଂଡ଼ିତମାନେ ସାରାଦିନ ବହୁ ଯତ୍ନ କରି ସୁଦ୍ଧା ତାହା କରାଇ ପାରି ନଥିଲେ । ସେ ସମସ୍ତ ଘଟଣା ମଧରେ ତୁମର ସେଇ ଜ୍ୱଳଂତ ଯୁବଭାବଦୀପ୍ତ ମୁଖମଂଡ଼ଳ ଓ ସେଥିରୁ ନିଃସୃତ ଜନସମାଜ ପ୍ରତି ବାଗ୍ମୀତାର ଅଭୟବାଣୀ ଆଜି ମଧ ମୋର ମନେପଡୁଚି । ମୋ ମତରେ ସେଇ ଦିନଇ ତୁମର ପ୍ରଚାରକତ୍ୱର ପ୍ରଥମ ପ୍ରତିଷ୍ଠା । ଲୋକଂକୁ ବୁଝାଇ ଶୃଂଖଳିତ କରିବାର ତୁମର ଯେଉଁ ଶକ୍ତି ପରବର୍ତ୍ତୀ କାଳରେ ତୁମର ସମସ୍ତ ଜୀବନକୁ ଅନବଚ୍ଛିନ୍ନ କ୍ରିୟା ପ୍ରବାହରେ ପ୍ରାଣିତ କରିଥିଲା, ତାହା ସେଇ ଘଟଣାରେ ପ୍ରଥମେ ପ୍ରକାଶ ପାଇଥିବାର ମୋର ମନେହୁଏ । ସେ ୧୯୧୧ ଖ୍ରୀଷ୍ଟାବ୍ଦର କଥା ।

ଯଥାର୍ଥରେ ଏଇ ଘଟଣା ପରେ ତୁମେ ଡେଲାଂଗ ମାଇନର ସ୍କୁଲ ଛାଡ଼ିଦେଇ ଓ ଏକାଂତ ନୀରବଲଂବ ଭାବରେ ପ୍ରଚାର କାର୍ଯ୍ୟ ଧରି ଦେଶକୁ ବାହାରି ପଡ଼ିଲ । ଏଇ ଘଟଣାର ପ୍ରାୟ

ଦେଢ଼ ବର୍ଷ ପରେ ତରଳା ରାଜ୍ୟର ପଂଡ଼ା-ଶାସନ ବା ମୁକ୍ତାପୁର ପଲ୍ଲୀ ସମ୍ମିଳନୀ କଥା ମୋର ମନେ ପଡୁଚି । ଏହା ପୂର୍ବରୁ ତୁମେ ବହୁ ପଲ୍ଲୀ ବୁଲିଥିଲ । ହୁଏତ ନିଜେ ବହୁତ କ୍ଷୁଦ୍ର ବୃହତ୍ ସମ୍ମିଳନୀ କରିଥିଲ । ୧୯୦୨ ସାଲ ପରେ ସତ୍ୟବାଦୀ ଅଂଚଳରେ ମଧ୍ୟ ବହୁ ପଲ୍ଲୀ ସମ୍ମିଳନୀ ହୋଇଯାଇଥିଲା । ତୁମେ ଏ ସବୁଠାରେ ଥିଲ; କିଂତୁ ସେଦିନ ମୁକ୍ତାପୁର ସମ୍ମିଳନୀରେ ତୁମର ପୁଷ୍କଳକୃତି ସ୍ମରଣୀୟ ।

ସେଦିନ ଜଗତରେ ଲୋକସମାଜର ଆଦି ଗଠନଠାରୁ ମାନବ ସଭ୍ୟତାର କ୍ରମୋନ୍ନତି ଧରି ଜନତାକୁ ତୁମେ ଯେପରି ଭଲ ମଂଦ ବାଟେ ଗତି ଓ ନିୟତି ଦେଖାଇଥିଲ ତାହାର ସ୍ମୃତି ଆଜି ଆହା କି ସୁଂଦର; କିଂତୁ କି କରୁଣ । ତିନିଘଂଟାବ୍ୟାପୀ ତୁମର ସେ ବାଗ୍ମୀତାର ନିସଂଦ୍ୟ ସ୍ଥିର ଓ ନିର୍ନିମେଷ ଜନତାକୁ କିପରି ମୁଗ୍ଧ ଓ ଅଭିଭୂତ କରିଥିଲା ତାହା ବର୍ଣ୍ଣନା କରିବାର ବସ୍ତୁ ନୁହେଁ ।

ତା'ପରେ ତୁମେ ହେଲ ଯଥାର୍ଥ ପ୍ରଚାରକ । ପ୍ରଚାରକ ବୋଲି ତୁମକୁ କେଇ ସଭାକରି ଉପାଧି ଦେଇନାହିଁ । ତୁମର କାର୍ଯ୍ୟରେ ଲୋକେ ତୁମକୁ କହୁଥିଲେ ପ୍ରଚାରକ । ତୁମେ ହେଲ ପ୍ରଚାରକ । ଏ ନିରୁତା ଉପାଧିର ସମାଲୋଚନା ନାହିଁ । ତାହା କେହି କେବେ କରିନାହିଁ, ଏବେ ମଧ୍ୟ କରୁନାହିଁ । ଏଇ ପ୍ରଚାରବାର୍ତ୍ତା ଘେନି ତୁମେ ଉତ୍କଳର ପୁରପଲ୍ଲୀ ବନପ୍ରାଂତର ଗିରିନଦୀ ସବୁ ଦେଖିନ । ପଦବ୍ରଜରେ ଏପରି ପ୍ରଚାରକ ଓଡ଼ିଶାରେ ଆଉ କେଇ ହୋଇନାହିଁ । ହେବ ବୋଲି ଆଶା ନାହିଁ । ଏ ସମସ୍ତ ପ୍ରଚାର ମଧ୍ୟରେ ତୁମର ପ୍ରାଣ ଥିଲା ଓଡ଼ିଆର ଜାତୀୟତା । ଉପାଂତ, ଓଡ଼ିଆ ହେବ ଏହାଇ ତୁମ ପ୍ରଚାରର ଥିଲା ମୂଳମଂନ୍ତ୍ର । କଂଗ୍ରେସ ଆସିଲା । ସେଥିରେ ପ୍ରାଣପଣେ ଯୋଗ ଦେଇଚ; କିଂତୁ ତୁମର ସେଇ ନିଜର ଆଦର୍ଶରୁ କେବେ ଭ୍ରଷ୍ଟ ହୋଇନାହିଁ । ସମସ୍ତ କଂଗ୍ରେସ କାର୍ଯ୍ୟ ମଧ୍ୟରେ ତୁମେ ଓଡ଼ିଆର ସେଇ ଜାତୀୟତାକୁ ଶୟନେ ସ୍ୱପନେ ଜାଗରଣେ ସଂବଳ କରିଥିଲ । ସେଥିପାଇଁ ବିଶେଷରେ ତୁମର କର୍ମକ୍ଷେତ୍ର ହେଲା ସିଂହଭୂମି ।

ବାସ୍ତବରେ ତୁମର କାର୍ଯ୍ୟ ବିନା ସିଂହଭୂମିରେ ଆଜି ମଧ୍ୟ ଓଡ଼ିଆ ନାମ ଫୁଟି ନଥାଂତା । ଦୁଃସ୍ଥ ଓ ପୁରୋଦୃଷ୍ଟିହୀନ ସିଂହଭୂମି ଓଡ଼ିଆ ଭାରତ ଜାତୀୟତାର ମଂନ୍ତ୍ର ଧରି ନିଜର କାର୍ଯ୍ୟ ସାଧନ କରିବାକୁ ବସିଥିଲେ ଆଜି ନିଶ୍ଚୟ ଅବସ୍ଥା ଭିନ୍ନ ପ୍ରକାର ହୋଇଥାଂତା । ତାହା ହୋଇନାଇ, କିଂତୁ ସେ ଦୋଷ ତୁମର ନୁହେଁ । ତୁମେ ପ୍ରଥମେ ଜେଲ ଯାଇଥିଲ ସିଂହଭୂମିରୁ । ଜେଲରୁ ଫେରି ସିଂହଭୂମିର 'ସମ୍ମିଳନୀ' ଖବର କାଗଜ ବାହାର କରି ସେଠାରେ ଜାତୀୟତା ପ୍ରତିଷ୍ଠା କରିବା ପାଇଁ ସଂକଳ୍ପ କଲ । ଦେଶ ଲୋକଂକ ସହଯୋଗରେ ତୁମର ଅଖଂଡ଼ ବିଶ୍ୱାସ ଥିଲା । ଶେଷରେ ନିଜର ସମସ୍ତ ପୈତୃକ ସଂପତ୍ତି ପର୍ଯ୍ୟଂତ ପଣ କରି ତୁମେ ସିଂହଭୂମିର 'ସମ୍ମିଳନୀ' ସେବା କରିଥିଲ । ବଂଧୁମାନେ ଆଗକୁ ପଛକୁ ଚାହିଁ ତୁମକୁ ନାନା ପରାମର୍ଶ ଦେଇଥିଲେ, ପୈତୃକ ସଂପତ୍ତି ପଣ ନକରିବାକୁ କହିଥିଲେ । ତୁମେ ଶୁଣି ନଥିଲ । ତୁମର ବିଶ୍ୱାସ ଦେଶ ଲୋକେ ନିଶ୍ଚୟ ତୁମ କାର୍ଯ୍ୟରେ ସାଥି ହେବେ । ସେ ବିଶ୍ୱାସ ପାଖେ କୌଣସି ବ୍ୟକ୍ତିଗତ ତ୍ୟାଗ ତୁମକୁ ବଡ଼ ଦିଶୁ ନଥିଲା । ସେଥିପାଇଁ ଶେଷ ଜୀବନ ପର୍ଯ୍ୟଂତ ତୁମେ ନିସ୍ୱ ଓ ତ୍ୟାଗପୂତ ଭାବରେ ଜୀବନର ଆଦର୍ଶ ସେବା କରିଥିଲ ।

ତୁମର ବଡ଼ ନେତୃତ୍ୱର ଆକାଂକ୍ଷା ନଥିଲା । ନିଜର ତ୍ୟାଗକୁ ଦେଶରେ ଜଣାଇବାର କଳ୍ପନା ମଧ ନଥିଲା । ଦେଶରେ ବହୁ ବଡ଼ଲୋକେ ହେବେ, ହୋଇ ପାରଂତି; କିଂତୁ ତ୍ୟାଗର ଏ ନିଷ୍ଠା ଆଦର୍ଶ ସାଧନାରେ ପ୍ରଯତ୍ନର ଏ ପରାକାଷ୍ଠା ଜଗତରେ କଦାଚିତ୍ କ୍ୱଚିତ୍ ଦେଖାଯାଏ ।

ପ୍ରଚାରକ ଭାବରେ ବହୁକାଳ ତୁମେ ପ୍ରତି ସପ୍ତାହରେ ଡାଇରି ବା ଦୈନିକ ବିବରଣୀ ଲେଖି ଆଶା ପତ୍ରିକାରେ ପ୍ରକାଶ କରୁଥିଲ । ଦେଶର ପୁରପଲ୍ଲୀ ସଂଗେ ନିଜେ ପରିଚିତ ହୋଇ ଲୋକଂକୁ ସେଥିରେ ପରିଚିତ କରାଇବାର ଏ ପ୍ରଚେଷ୍ଟା ଓଡ଼ିଶାରେ ଅନ୍ୟତ୍ର ଦେଖାନାଇଁ ।

ଆଜି ମଧ ସେ ଡାଇରି ସଂକଳିତ ହେଲେ ଦେଶର ସାହିତ୍ୟରେ ଅତ୍ୟଂତ ଆଦରଣୀୟ ହେବ; କିଂତୁ ଓଡ଼ିଶାରେ ଏକେ ସାହିତ୍ୟର ଆଦର ନିମଂତେ ସ୍ଥାନ ଆସିନାଇଁ, ସେଥିରେ ପୁଣି ପ୍ରଚାରକଂକ ଡାଇରି କିଏ ବା ଖୋଜିବ ? ଦେଶର ଅବସ୍ଥା ବା ପରିସ୍ଥିତି ଯାହା ହେଉ ତୁମର କର୍ମର ନିଷ୍କାମତାରେ ଅପଳାପ ହୋଇନାଇଁ । ଏଇ ନିଷ୍କାମତାରେଇ ତୁମର କର୍ମ ବରଂ ପବିତ୍ରତର ଓ ଉଜ୍ଜ୍ୱଳତର ହୋଇଅଛି ।

ସାମାଜିକ ଭାବରେ ତୁମକୁ ଦେଖିବାର ଅବକାଶ ଉତ୍କଳରେ ବହୁ ଲୋକଂକର ହୋଇନାଇଁ । ଦେଶର ମୁଖ୍ୟ ରାଜନୀତିକ ଓ ଆର୍ଥିକ ସମସ୍ୟାର ସମାଧାନର ପ୍ରଚେଷ୍ଟା ମଧରେ ବ୍ୟକ୍ତିତ୍ୱର ସେ ବିଭାବ ଏବେ ନ ଦିଶିବାର କଥା; କିଂତୁ ସେଠାରେ ମଧ ତୁମର ଦୃଢ଼ ବ୍ୟକ୍ତିତ୍ୱ ପ୍ରତିଷ୍ଠା ସ୍ମରଣୀୟ । ନିରହଂକାର ଓ ନିଷ୍କାମ ଭାବରେ ତୁମେ ଏ କ୍ଷେତ୍ରରେ ମଧ ଯେ କାର୍ଯ୍ୟ କରୁଥିଲ ତାହାର କଳନା ଏବେ ସଂଭବ ନୁହେଁ । ସର୍ବୋପରି ଦେଖିବାର କଥା ତୁମର ସେଇ ତ୍ୟାଗପୂତ ନିଷ୍ଠା ଓ ନିରାଡ଼ଂବର ସହିଷ୍ଣୁତା । ଯଥାର୍ଥ ଦେଶସେବାରେ ଏକପ୍ରକାର ନିରନ୍ନତା ବରଣ କରି ତୁମେ ମାନବୀୟତାର ଶ୍ରେଷ୍ଠ ପଦବୀରେ ପାଦଦେଇ ଯେପରି କି ସ୍ୱର୍ଗ ମର୍ତ୍ତ୍ୟର ବ୍ୟବଧାନ ହ୍ରସ୍ୱ କରି ଅକାଳରେ ସ୍ୱର୍ଗ ବରଣ କରିଅଛ । ବଡ଼ ତୁମେ ଥିଲ; କିଂତୁ ବଡ଼ ହୋଇନାହଁ । ସେଥିରେ ତୁମର କିଛି କ୍ଷତି ବୃଦ୍ଧି ନାଇଁ । ପୁଣି ଆଜି ତ ତୁମେ ସେ ସବୁ କ୍ଷତି ବୃଦ୍ଧିରୁ ଅତୀତ; ମାତ୍ର କର୍ମୀ ପୁରୁଷର କର୍ମମୟ ଜୀବନ ହିଁ ମରଣରେ ଦେଶର ସଂପଦ । ସେ ସଂପଦରେ ଏ ଦେଶ ଅତିଶୀଘ୍ର ଅଧିକାରୀ ହେବବୋଲି ଦେଶାତ୍ମବୋଧ ବିଶିଷ୍ଟ ବ୍ୟକ୍ତିମାତ୍ରେ କାମନା କରିବେ । ବିଧାତା ସେ କାମନାର ପୂରଣରେ ସହାୟ ହୁଅଂତୁ ।

## (୮) ସ୍ୱର୍ଗତ କୃପାସିଂଧୁ ମିଶ୍ର

ସ୍ୱର୍ଗତ କୃପାସିଂଧୁ ମିଶ୍ର ସତ୍ୟବାଦୀ ସ୍କୁଲର ଜଣେ ବିଶିଷ୍ଟ ଓ ପ୍ରସିଦ୍ଧ କର୍ମୀ ଥିଲେ । ପରେ ଯେତେବେଳେ ୧୯୨୧ରେ ଏଇ ସ୍କୁଲଟି 'ସତ୍ୟବାଦୀବିହାର' ନାମରେ ଉତ୍କଳର ଜାତୀୟ ବିଦ୍ୟାଳୟର କେଂଦ୍ର ହେଲା, ସେତେବେଳେ ସେ ଥିଲେ ସେଇ ବିହାରର ପ୍ରଧାନ । ଏହାପୂର୍ବରୁ ସେ ଉପାଂତ ଓଡ଼ିଆଭୂମିରେ ଓଡ଼ିଆ ଭାଷାର ପ୍ରଚାର ଉଦ୍ଦେଶ୍ୟ ଘେନି ସେତେବେଳେ ନୂତନ ସ୍ଥାପିତ ମେଦିନୀପୁରର ବାହାଡ଼ାଗୋଡ଼ା ଓଡ଼ିଆ ଉଚ୍ଚଇଂରାଜୀ ବିଦ୍ୟାଳୟର କେତେଦିନ ପ୍ରଧାନ ଶିକ୍ଷକ ଥିଲେ ।

ଯେତେଦୂର ମନେହୁଏ, ଆଜକୁ ୩୨ବର୍ଷ ତଳେ ୧୯୨୬ ଫେବୃୟାରୀରେ ନିଜଗ୍ରାମ ବୀରପ୍ରତାପପୁରଠାରେ ତାଂକର ତିରୋଧାନ ଘଟିଥିଲା । ସେଇ ହିସାବରେ ଆଜି ତାଂକ ମୃତ୍ୟୁର ୩୩ଶ ସାଂବତ୍ସରିକ । ତାଂକ ତିରୋଧାନ ବେଳେ ମୁଁ ଥିଲି ଦିଲ୍ଲୀରେ । ହଠାତ୍ ଦିନେ ସନ୍ଧ୍ୟାରେ ପଂଡ଼ିତ ଗୋପବଂଧୁଂକଠାରୁ ସତ୍ୟବାଦୀରୁ ଟେଲିଗ୍ରାମରେ ପାଇଲି କୃପାସିଂଧୁଂକ ମୃତ୍ୟୁଖବର । ଠିକ୍ ଭାଷାଟି କ'ଣ ଥିଲା ମନେନାହିଁ । ବୋଧହୁଏ ସେଥିରେ ଥିଲା, ''Now all is over, Krupasindhu expired'' ଏଇ ଦାରୁଣ ଓ ମର୍ମଭେଦୀ ସଂବାଦ ମୋର ଏକାବେଳକେ ଅନାଶଂକିତ ଥିଲା । ତଥାପି ସେଠାରୁ ଆଜିଯାଏ କୃପାସିଂଧୁଂକ ମୃତ୍ୟୁ ବିଷୟରେ ଆଉ କିଛି ଚିଂତା ବା ପ୍ରକ୍ରିୟାର ବିଶେଷ କିଛି ଆରଂଭ ବା ସମାରୋହ ହୋଇଥିବାର ମୋ ମନେନାହିଁ ।

ଏବେ ପ୍ରାୟ ମାସକତଳେ ଖଂଡ଼େ ଚିଠି ପାଇଲି । ତା' ଲେଖିଥିଲେ ଜାଣିଲି କୃପାସିଂଧୁଂକ ଧର୍ମପତ୍ନୀ ସାବିତ୍ରୀ । ସେ ଲେଖାରୁ ଜାଣିଲି କୃପାସିଂଧୁଂକ ମୃତ୍ୟୁବେଳେ ସ୍ୱର୍ଗତ ପଂଡ଼ିତ ଗୋପବଂଧୁ ଦାସ ତାଂକ ଘରକୁ ଯାଇ ସାବିତ୍ରୀଂକୁ କହିଥିଲେ, ''ଏ ଅସ୍ଥି ରଖିଥା । ହଜାଇଦେବୁ ନାହିଁ । କେତେବେଳେ କାମରେ ଲାଗିବ ।'' ଚିଠି ଖଂଡ଼ିପଢ଼ି ମୁଁ ସ୍ତଂଭିଭୂତ ହୋଇଗଲି । ସଂଗେ ସଂଗେ ଗୋପବଂଧୁଂକ ଦିବ୍ୟ ପୁରୋଦୃଷ୍ଟି ଓ ଭବିଷ୍ୟତ କଳ୍ପନାର ବଳିଷ୍ଠତା ମନେପଡ଼ିଲା। ଏତେଦିନ ପରେ ମଧ ବିଶେଷରେ ସ୍ୱର୍ଗତ ଗୋଦାବରୀଶଂକ ମୃତ୍ୟୁଠାରୁ ଯେ ଉତ୍କଳବ୍ୟାପୀ ଚହଳ ଆରଂଭ ହେଲା ଓ ସେଥିରେ ବିଶେଷରେ ''ସମାଜ'' ଓ ସମାଜର ମୁଖ୍ୟ ତଥା ଅନ୍ୟ କର୍ମୀବର୍ଗ ଯେପରି କ୍ରିୟାବାନ୍ ହେଲେ ଓ ତାଂକ ପ୍ରଭାବରେ ଦେଶ ଯେପରି ସତେ କି ଆଉଥରେ ସତ୍ୟବାଦୀର ସେକାଳର ପୁଣ୍ୟ ପ୍ରଭାବରେ ପ୍ରଭାବିତ ହେଲା । ମୁଁ ଏସବୁ କଥା ଚିଂତାକରି ଏ ଚିଠିର କଥା ଶ୍ରୀ ରାଧାନାଥ ରଥଂକୁ ଫୋନରେ କହିବା ପାଇଁ ଚେଷ୍ଟା କଲି । ସେ ନଥିଲେ । ତହୁଁ ଶ୍ରୀ ଶ୍ରୀହର୍ଷ ମିଶ୍ରଂକୁ ଫୋନ୍ କରି କୃପାସିଂଧୁଂକ ଧର୍ମପତ୍ନୀ ଲେଖିଥିବା ଚିଠିର ଉଦ୍ଦେଶ୍ୟଟି ଜଣାଇଦେଲି । କହିଲି, ସେ ଲେଖିଛଂତି ଯଦି ଅସ୍ଥିର ବ୍ୟବହାର କିଛି ନହୁଏ, ସେ ନିଜେ ତାହାର ବ୍ୟବସ୍ଥା କରିବେ । କିଂତୁ ଶ୍ରୀହର୍ଷ ମିଶ୍ରେ ହଠାତ୍ ଅତି ଆଗ୍ରହରେ ଏକଥା ଶୁଣିଲେ ଓ ସେ ଅସ୍ଥି ଆସି କିପରି ସତ୍ୟବାଦୀରେ ଯଥାସ୍ଥାନରେ ଓ ଯଥା ସମ୍ମାନରେ ରହିବ, ତାହାର ବ୍ୟବସ୍ଥା କରିବେ ବୋଲି କହିଲେ । ମୁଁ ସେଇ ମର୍ମରେ ସାବିତ୍ରୀଦେବୀଂକୁ ଲେଖିଦେଲି । ଏବେ ଆଜି ୧୮ ତାରିଖ ଫେବୃୟାରୀରେ ସେଇ ଅନୁସାରେ କାର୍ଯ୍ୟ ହେଉଚି ।

କୃପାସିଂଧୁ ମୋ ଠାରୁ ଦୁଇ ବରଷ ଛୋଟ—ପାଠ ପଢ଼ାରେ ତିନିବରଷ । ସେ ୧୯୧୪ରେ ଏମ.ଏ. ପାସ୍ କଲା ସଂଗେ ସଂଗେ ଆସି ସତ୍ୟବାଦୀ ସ୍କୁଲରେ ଯୋଗ ଦେଇଥିଲେ । ସେ ଥିଲେ ଇତିହାସରେ ଏମ୍.ଏ. । ସେ ପରୀକ୍ଷାରେ ଉଚ୍ଚସ୍ଥାନ ପାଇଥିଲେ । ସେତିକି ନୁହେଁ, ଇତିହାସ ଆଲୋଚନାରେ ସେକାଳକୁ ଚାହିଁ ତାଂକର ଖୁବ୍ ଗଭୀରତା ଓ ମୌଳିକତା ଥିଲା । ତାହାର ନିଦର୍ଶନ ସ୍ୱରୂପ ବାରବାଟୀ ଦୁର୍ଗ, ଓଡ଼ିଶାର ଇତିହାସ ଓ କୋଣାର୍କ—ତାଂକର ଏ ତିନିଖଂଡ଼ ପୁସ୍ତକ ଏବେ ମଧ ଜୀବିତ ଅଛି । ଏହାଛଡ଼ା ପାଠ୍ୟପୁସ୍ତକ ହେବାପାଇଁ ସେ ଇଂରେଜୀରେ ସେକାଳେ ଗୋଟିଏ 'ଇଂଲଂଡ଼ ଇତିହାସ' ଲେଖିଥିଲେ ।

ସତ୍ୟବାଦୀ ସ୍କୁଲରେ ସେ ଯୋଗ ଦେଇଥିଲେ ଅତି ଆଂତରିକ ଭାବରେ । ସତ୍ୟବାଦୀ ସ୍କୁଲ ସଂବଂଧରେ ମୂଳରୁ ସ୍ୱର୍ଗତ ପଂଡ଼ିତ ଗୋପବଂଧୁ ଦାସଂକ ସଂଗେ ସ୍ୱର୍ଗତ ପ୍ରଚାରକ ଅନଂତ

ମିଶ୍ର, ଆଚାର୍ଯ୍ୟ ହରିହର ଦାସ ଓ ମୁଁ ଏଇ ତିନିଜଣ ଅଂଗାଂଗୀ ଭାବେ ଜଡ଼ିତ ଥିଲୁ । ସେଥିପାଇଁ ଆମେ ଭିନ୍ନ ଭିନ୍ନ ଆଡ଼େ କୃତବିଦ୍ୟ ଯୁବକମାନଂକୁ ବାଛିବାରେ ମଧ୍ୟ ଲାଗିଥିଲୁ । ସତ୍ୟବାଦୀ ସ୍କୁଲରେ ମୁଁ ଆସି ଯୋଡ଼ ଦେଲାପରେ, ଅର୍ଥାତ୍ ୧୯୧୧ର ଶେଷାର୍ଦ୍ଧଠାରୁ ଆମେ ଦରକାର ଅନୁସାରେ ଯୁବକମାନଂକୁ ଉଚ୍ଚଶିକ୍ଷାରେ ଯଥାର୍ଥ ସାହାଯ୍ୟ କରିଥିଲୁ । କିଂତୁ ସ୍ୱର୍ଗତ କୃପାସିଂଧୁଂକ ବିଶେଷତ୍ୱ ଥିଲା ଯେ, ସେ ଆମମାନଂକ ସଂପର୍କରେ ଆସିଲା ଦିନଠାରୁ ସତ୍ୟବାଦୀ ସ୍କୁଲ ଛଡ଼ା ଆଉ କୌଣସି କଥା କେବେ ଭାବି ନାହାଂତି; ଚାକିରି କରିବା, ଓକିଲାତି କରିବା ବା ଅନ୍ୟ ବ୍ୟବସାୟ କରିବା ତ ଦୂରର କଥା ।

କୃପାସିଂଧୁ ମୋର ପ୍ରତିବେଶୀ ଦଦେଇପୁଅ ଭାଇଂକର ଭଣଜା । ଅତଏବ ଆମେ ଦୁହେଁ ବସ୍ତୁତଃ ମାମୁଁ ଭଣଜା ଥିଲୁ । ସେ ଥିଲେ, ଏକ ଭଉଣୀର ଜନ୍ମିତ ପୁଅ । ତାଂକ ଘର ବୀରହରେକୃଷ୍ଣପୁର । ସେ ପୋଷ୍ୟପୁତ୍ର ହୋଇଥିଲେ, ଆଉ ଗୋଟିଏ ଭଉଣୀର । ତାଂକ ଘର ବୀରପ୍ରତାପପୁର । ଏବେ ବୀରପ୍ରତାପପୁରେ ତାଂକ ଘରେ ତାଂକ ଧର୍ମପତ୍ନୀ ସାବିତ୍ରୀ ପୋଷ୍ୟପୁତ୍ର ପୁରୀର ଓକିଲ ଜଗନ୍ନାଥ ମିଶ୍ରଂକୁ ଘେନି ଅଛଂତି । ପୁରୀର ଆଡ୍‌ଭୋକେଟ୍ ହରିହର ଦାସ ତାଂକର ଆଉ ଗୋଟିଏ ପୋଷ୍ୟପୁତ୍ର ହୋଇ ଯାଇଥିବା ଜନ୍ମିତ ଭାଇ । ଜନ୍ମତଃ କୃପାସିଂଧୁ ଥିଲେ, କୃପାସିଂଧୁ ରଥ ।

ଅତି ପିଲା ଦିନରୁ କୃପାସିଂଧୁ ମାମୁଁଂକ ଘରେ ରହି ବିଦ୍ୟାଶିକ୍ଷା କରୁଥିଲେ, କାରଣ ତାଂକ ପିତା ଧନୀ ନଥିଲେ କିଂବା ତାଂକ ଗ୍ରାମରେ ପଢ଼ିବାର ସେପରି କିଛି ସୁବିଧା ନଥିଲା । ପୁଣି ସେକାଳେ ଅନେକ ସ୍ଥାନରେ ଭଣଜାମାନେ ପିଲାଦିନୁ ମାମୁଁଘରେ ରହି ପ୍ରାଏ ମଣିଷ ହେଉଥିଲେ ।

ମୁଁ ପୁରୀଜିଲା ସ୍କୁଲର ଉଚ୍ଚଶ୍ରେଣୀରେ ପଢ଼ିଲାବେଳେ କୃପାସିଂଧୁ ତଳ ଶ୍ରେଣୀରେ ପଢୁଥାଂତି । ଦିନେ ହଠାତ୍ କୌଣସି ଦଂଡ଼ ଦେବାପାଇଁ ଶିକ୍ଷକ ତାଂକୁ ଦିନତମାମ୍ ବେଂଚ ଉପରେ ଛିଡ଼ା କରିଦେଲେ । ତାଂକ ଗୋଡ଼ ଫୁଲିଗଲା । ଘରେ ଆସି ସେ ପ୍ରଥମ ଥର ପାଇଁ ବାତଜରରେ ପଡ଼ିଲେ । ସେଇଦିନଠାରୁ ତାଂକର ଗୋଦର ଗୋଡ଼ ହୋଇଗଲା । ଶେଷ ପର୍ଯ୍ୟଂତ ତାହା ଥିଲା । ମନେଅଛି, ତତ୍କାଳୀନ ସୁଦକ୍ଷ ଓ ଶିଷ୍ୟପ୍ରେମୀ ହେଡ୍‌ମାଷ୍ଟର ସ୍ୱର୍ଗତ ଚଂଦ୍ରମୋହନ ମହାରଣା କୃପାସିଂଧୁଂକୁ ଯେତେବେଳେ ଦେଖଂତି ସେତେବେଳେ ଟିକିଏ ତାଂକ ଗୋଡ଼ ଆଉଁସି ଦିଅଂତି ।

ସତ୍ୟବାଦୀ ସ୍କୁଲ ଆରଂଭ କଲାବେଳେ ଆଂଭେମାନେ ନିଜ ଖର୍ଚ୍ଚମାଫିକ୍ ବେତନ ନବାପାଇଁ କଥା କରିଥିଲୁ । କାରଣ ଆମେ ନିଜେ ଅର୍ଥ ସଂଗ୍ରହ କରି ସେକାଳରେ ସେଥିରୁ ବିଶେଷ ଖର୍ଚ୍ଚ କରିବା ପାଇଁ ମନ କରି ନଥିଲୁ । ମୁଁ ନେଉଥିଲି ମାସକୁ ୩୦ଟଂକା । ତା'ଛଡ଼ା ପଂଡ଼ିତ ଗୋପବଂଧୁ ଦାସ ମୋତେ ବାଧ କରି ଦେଉଥିଲେ ନିଜହାତରୁ ମାସକୁ ଆଉ ଦଶଟଂକା । ସ୍ୱର୍ଗତ ରାମଚଂଦ୍ର ରଥେ ସେତିକିବେଳେ ନିଜ ଚରିତ୍ରର ସାଧୁତା ରକ୍ଷା କରିବା ପାଇଁ ସତ୍ୟବାଦୀରେ ଆସି ଯୋଗ ଦେଇଥିଲେ । ସେ ଏନ୍‌ଟ୍ରାନ୍‌ସ ପାସ୍ କରିଥିଲେ ମଧ୍ୟ ବଡ଼ ସୁଦକ୍ଷ ଓ ଅଖଂଡ଼ ଚରିତ୍ରବାନ୍ ଶିକ୍ଷକ ଥିଲେ । ସେ ନେଉଥିଲେ ମାସକୁ ୭୦ଟଂକା । ସେକଥା ମୁଁ ଅନ୍ୟତ୍ର ତାଂକ ମୃତ୍ୟୁବେଳେ ଲେଖିଚି । ତା'ପରେ ଆସିଲେ ଆଚାର୍ଯ୍ୟ ହରିହର

ଦାସ । ସେ ତା'ପୂର୍ବରୁ କଟକ ପି.ଏମ୍. ଏକାଡ଼େମୀରେ ମାସକୁ ୪୦ଟଂକାରେ ଚାକିରି କରୁଥିଲେ । ତାଂକୁ ସେଇଆ ଦିଆହେଲା । ପରେ ସ୍ୱର୍ଗତ ଗୋଦାବରୀଶ ଆସି ସପରିବାରେ ରହିଲେ । ତାଂକ ପାଇଁ ପରିବାରର ସମସ୍ତ ଖର୍ଚ୍ଚ ଦେବାକୁ ହେବ । ମୋ ମନେଅଛି, ତାଂକ ପାଇଁ ମାସକୁ ୮୦ଟଂକା ସ୍କୁଲରୁ ଦିଆହେଲା ଓ ଆଚାର୍ଯ୍ୟ ହରିହର ଦାସ ସେ ଖର୍ଚ୍ଚ ତୁଲାଇ ତାଂକୁ ବସାରେ ରଖିବାର ଭାର ବହନ କଲେ । ସେ ଛାତ୍ରାବାସରେ କେବେ ରହି ନଥିଲେ; କିଂତୁ ବର୍ଷ ଶେଷରେ ଦେଖାଗଲା ମାସିକ ଅଂତତଃ ୧୨୦ଟଂକା ନହେଲେ, ତାଂକ ପରିବାର ଖର୍ଚ୍ଚ ଚଳିବ ନାଇଁ । ତାଂକୁ ସେଇଯା ଦିଆଗଲା । ସ୍ୱର୍ଗତ କୃପାସିଂଧୁ ମିଶ୍ରେ ତା'ର ଦୁଇବର୍ଷ ପରେ ଏମ୍.ଏ. ପାସ୍ କରି ଆସି ସଂଗେ ସଂଗେ ସ୍କୁଲରେ ଯୋଗଦେଲେ । ତାଂକର ମଧ ପରିବାରେ ଆଉ କେହି ନଥିଲେ । କଥାହେଲା ସେ ବସାକରି ସସ୍ତ୍ରୀକ ରହିବେ । ଅତଏବ ମାସକୁ ୮୦ଟଂକା ବା ୧୨୦ଟଂକା ଭଳି କିଛି ତାଂକୁ ଦେବାର ବିଚାର ହେଲା । କିଂତୁ ସେ କହିଲେ, ''ନା, ମାସକୁ ୫୦ଟଂକାରୁ ବେଶି ମୋର ଦରକାର ହେବନାଇଁ ।'' ଏ ଅଦ୍ଭୁତ କଥାଟି ଆଜିଯାଏ ମୋର ସ୍ପଷ୍ଟ ମନେଅଛି । ହୁଏତ ଆଚାର୍ଯ୍ୟ ହରିହର ଦାସଂକର ମନେଥିବ । ସ୍କୁଲର ତତ୍କାଳୀନ କିରାଣୀ, ସମସରପୁରର ଶ୍ରୀରଘୁନାଥ ମିଶ୍ରେ ବଂଚିଚଂତି । ଥିଲେ ଅବା ତାଂକର ମନେଥିବ । ଏସବୁ କଥାର ଭାବ ଓ ପ୍ରଭାବ ଧରି ରଖିବାର କଥା ଦୂରେଥାଉ, ଆଉ କାହାରି ହୁଏତ ଏହା ମନେ ନଥିବ ।

ଟଂକା ବେଶି କମ୍ ନେବା ନ ନେବା କଥା ସତ୍ୟବାଦୀସ୍କୁଲରେ ନଥିଲା । ଯାହାର ଯାହା ଦରକାର ବୋଲି ମନେ କରାଯାଉଥିଲା ବା ଯେ ଯାହା ଦରକାର ବୋଲି ଦାବି କରୁଥିଲା, ତାକୁ ତା' ଦିଆଯାଉଥିଲା । ଅନେକ ଏବେ ବି କହଂତି ଓ ଲେଖଂତି, ସତ୍ୟବାଦୀର ଶିକ୍ଷକମାନେ ଅତି ଅଳ୍ପ ବେତନରେ କାମ କରୁଥିଲେ । ତାହାଇ ଥିଲା ସତ୍ୟବାଦୀର ବିଶେଷତ୍ୱ; କିଂତୁ ତା' ନୁହେଁ । ସତ୍ୟବାଦୀର ଉଦ୍ଦେଶ୍ୟ ଓ ଆଦର୍ଶ ଥିଲା ଏଥିରୁ ଭିନ୍ନ । ଉପରେ ଯେଉଁସବୁ କଥା କୁହାଗଲା, ସେଥିରୁ ଲୋକ କେତେକ ପରିମାଣରେ ଏ କଥାର ତାତ୍ତ୍ୱିକତା ଓ ତାତ୍ପର୍ଯ୍ୟ ବୁଝିପାରିବେ ।

ସେଇପରି ବଡ଼ ବଡ଼ ଚାକିରି ପାଇବାର ସୁବିଧା ଥାଇ ତାକୁ ଛାଡ଼ିବା ମଧ ସତ୍ୟବାଦୀର ସେ କାଳର ଶିକ୍ଷକଂକର ମଧ ବିଶେଷତ୍ୱ ନୁହେଁ । କୃପାସିଂଧୁଂକ ଜୀବନରେ ସ୍ପଷ୍ଟ ଦେଖାଯାଏ, ତାଂକର ଏପରି କଦାକାଂକ୍ଷୀ କେବେ ପ୍ରକାଶ ପାଇନାଇଁ । ଏଇ ଆଧାତ୍ମିକତାର ବଳହିଁ ସତ୍ୟବାଦୀର ପ୍ରକୃତ ସଂବଳ । ଇତରବିଶେଷ ପରିମାଣରେ ଏଇଭାବ ଓ ପ୍ରଭାବ ସେକାଳ ସତ୍ୟବାଦୀରେ ପୂର୍ଣ୍ଣ ପ୍ରକାଶ ପାଇଲା ।

ନୀରଳସଭାବରେ ଅଧ୍ୟୟନ ତଥା ଗବେଷଣାରେ ନିବିଷ୍ଟ ରହିବା କୃପାସିଂଧୁଂକର ଥିଲା ବିଶେଷତ୍ୱ । ମନେଅଛି, ଘରେ କୋଣାର୍କ ପରି ଗ୍ରଂଥ ସେ କଳ୍ପନା କରଂତି, ରଚନା କରଂତି; କିଂତୁ ସେସବୁ ରଚନା ସେ ଡାକିଯାଂତି । ରାତିରେ ତାଂକ ଧର୍ମପତ୍ନୀ ଏଇ ସାବିତ୍ରୀ ଦେବୀ ତା'ସବୁ ଶ୍ରୁତଲେଖନ ଭଳି ଲେଖଂତି । ସେକାଳେ ଏପରି ପାରିବାରିକ ସାହଚର୍ଯ୍ୟ ବେଶି ଲୋକଂକର ନଥିଲା । ଆମମାନଂକ ମଧରେ ଅର୍ଥାତ୍ ସତ୍ୟବାଦୀର କର୍ମୀମାନଂକ ମଧରେ ଆଉ କାହାରି ନଥିଲା । ଅବଶ୍ୟ କୃପାସିଂଧୁଂକ ପତ୍ନୀ ମୂଳରୁ ଖୁବ୍ ଶିକ୍ଷିତା ନଥିଲେ, କିଂତୁ

ପରିବାରହୀନ କୃପାସିଂଧୁ ନିଜପାଇଁ ଏ ପାରିପାର୍ଶ୍ୱିକ ଅବସ୍ଥା ସୃଷ୍ଟି କରି ପୁଷ୍ଟ କରିଥିଲେ ବୋଲି ମନେହୁଏ । ତାଂକ ଜୀବନରେ ଏହା ଥିଲା ଗୋଟିଏ ବିଶେଷତ୍ୱ । ଅପଠିତଙ୍କୁ ପାଠ ପଢ଼ାଇ ମନୁଷ୍ୟ ଓ ମନୁଷ୍ୟ ପରି ଯଥା କର୍ମକ୍ଷମ କରିବା ବିଷୟରେ କୃପାସିଂଧୁଂକର ଏ ବିଶେଷତ୍ୱଟି ମଧ୍ୟ ସ୍ମରଣୀୟ ।

ଆଜି ଆଉ ବିଶେଷ କହିବାର ହୁଏତ ଅବକାଶ ନାଇ । କ୍ରମେ ସମାଜ ଓ ଦେବଶବାସୀଂକ ଆନୁକୂଲ୍ୟରେ ଏହା କ୍ରମବିକାଶରେ ବଢ଼ିବ ।

(ଲେଖା—୧୯୫୮ ଫେବୃଆରୀ)

## (୯) ଗୋଦାବରୀଶ ସ୍ମରଣେ

ଗୋଦାବରୀଶ ମୋ ସାଂଗ—କେବଳ ସାଂଗ ନୁହଂତି, ସେ ଥିଲେ ମୋର ଚିର ସହଚର । ତାଂକ ସଂବଂଧରେ ତାଂକ ପିଲାଦିନୁ ମୃତ୍ୟୁ ପର୍ଯ୍ୟଂତ ମୁଁ ଯେତେକଥା ସାକ୍ଷାତ ଭାବରେ ଜାଣେ ହୁଏତ ଏବେ ବଂଚିଥିବା ଲୋକଂକ ମଧ୍ୟରେ ଆଉ କେଇ ଜାଣଂତି ନାହିଁ । ହରି ଭାଇନା (ଆଚାର୍ଯ୍ୟ ହରିହର ଦାସ) ବହୁତ କଥା ଜାଣିଥିବେ, ଅବଶ୍ୟ ମୋଠାରୁ ବେଶି ନୁହେଁ; ମାତ୍ର ସେ ପ୍ରକାଶ କରିବା ଅବସ୍ଥା ବା ପରିସ୍ଥିତିରେ ନାହାଂତି; ମୁଁ ଅଛି ।

ଗୋଦାବରୀଶଂକ ମୃତ୍ୟୁ ଅଳ୍ପଦିନର କଥା । ତାଂକ ଜୀବନର ଯୌବନକାଳର ପର କଥା ହୁଏତ ଅନେକ ଜାଣିଥିବେ; ମାତ୍ର ଯେତେ ଜାଣିଲେ ବି ସେ ଜଣା ଅଂତରଂଗ ବୋଲି ମୋର ମନେ ହେଉନାହିଁ । ଅନ୍ୟ ଆଗେ ନିଜର କ୍ରିୟାକଳାପ ଯଥାଯଥ ଭାବରେ ସେ ପ୍ରକାଶ କରୁନଥିଲେ । ତାଂକର ବହୁକଥା ଅକୁହା ଓ ଅପ୍ରକାଶିତ ରହୁଥିଲା । ଏହା ତାଂକର ପ୍ରକୃତି । ଏପରିକି ତାଂକର ସରସତା ଓ ରସିକତା ମଧ୍ୟ ବଡ଼ ଗଭୀର ଥିଲେ ମଧ୍ୟ ବଡ଼ ସ୍ପଷ୍ଟ ନଥିଲା । ଇଂରେଜିରେ ଯାହାକୁ humour କହଂତି, ସେଇଯାକୁ ମୁଁ କହୁଚି ବ୍ୟବହାରରେ ରସିକତା । ତାଂକର ପ୍ରତ୍ୟେକ ଦୈନଂଦିନ ବ୍ୟବହାର ଓ କଥାବର୍ତ୍ତା ଏଇ ରସିକତାରେ ପୂର୍ଣ୍ଣ ଥିଲା; କିଂତୁ ତାକୁ ଜାଣିବା, ଅନୁଭବ କରିବା ପାଇଁ ଯେଉଁ ଉପାଦାନ ଦରକାର, ତା'ହୁଏତ ଅନେକଂକର ନଥିଲା, କିଂବା ସେ ନିଜେ କହିଲାବେଳେ କଥାରେ ରସିକତା ଅଛି ବୋଲି କୌଣସି ଭାବ ବା ଅଭିବ୍ୟକ୍ତି ପ୍ରକାଶ କରୁ ନଥିଲେ । ଏହା ତାଂକର ଗୋଟିଏ ଅଦ୍ୱିତୀୟ ଗୁଣ, ଖାଲି ଗୁଣ କାହିଁକି, ଏ ଶକ୍ତି ମଧ୍ୟ ଥିଲା ତାଂକର ଅସାମାନ୍ୟ ।

ଆଳାପ, ଆହାର, ବ୍ୟବହାରରେ ସେ ଥିଲେ ଅତି ଉନ୍ନତ ଓ ସଦାଚାରୀ । ଇଂରେଜିରେ ଯାହାକୁ କହଂତି 'Perfect gentle man', ସେ ଥିଲେ ସେଇଯା । ମୋର ଯେତେଦୂର ମନେହୁଏ, କେବେ କେଇ ତାଂକ ସଂଗେ ଆଳାପ କରି ବିମୁଖ ହୋଇ ଫେରିନାହିଁ । ସମାଲୋଚନା କରି ବହୁତ କଥା ସେ କହଂତି । ତୀବ୍ରତା ଓ ରୂଢ଼ତା ସେଥିରେ ନ'ଥାଏ ନୁହେଁ; କିଂତୁ ସାଧାରଣରେ ତା ଦେଖିପାରିବା ଭଳି ଜିନିଷ ନୁହେଁ । ଅନ୍ୟ ସଂବଂଧରେ କଥା କହିଲାବେଳେ ଏ ତୀବ୍ରତା ଓ ରୂଢ଼ତା ଅନେକବେଳେ ହଠାତ୍ ବାହାରକୁ ଜଣାପଡ଼େ ନାହିଁ । ଜଣାପଡ଼ିଲେ ମଧ୍ୟ ସେସବୁ ପ୍ରକାଶରେ ଅତି ମଧୁର ଓ କୌତୂହଳ ଉଦ୍ଦୀପକ । ବେଳେବେଳେ ବୁଝିବା ପାଇଁ ସେଥିରେ ବହୁତ ବୁଦ୍ଧି ବିଚକ୍ଷଣତା ମଧ୍ୟ ଦରକାର । ମୁଁ ତାଂକ ସଂଗେ ଆଳାପରେ

ବହୁତ ଆଲୋଚନା ସମାଲୋଚନା ଶୁଣିଚି । ଆଉ ସମସ୍ତେ କେତେ ଶୁଣିଥିବେ ବା କେତେ ଜାଣିଥିବେ ମୁଁ କହିପାରୁ ନାହିଁ । କିଂତୁ ଦେଖିଚି, ରସିକତା ନଥାଇ ଯେଉଁ ଆଲୋଚନା ତାଂକଠାରୁ ବାହାରେ ସେ ଅନେକବେଳେ ନିଜ ସଂବଂଧରେ । ସେତେବେଳେ ସେ ବଡ଼ ସ୍ପଷ୍ଟ ଓ ନିଃସଂକୋଚଭାବରେ କଥା କହିବାର ମୁଁ ଶୁଣିଚି । ରସିକତାର ଦୂର ସଂବଂଧ ବି ମୁଁ ସେଥିରେ ଦେଖିନାହିଁ । ସେତେବେଳେ ସେ ବଡ଼ ଖୋଲାଖୋଲି କଥା କହଂତି । ଅବଶ୍ୟ ସେପରି ଆଳାପ ବଡ଼ କଦାଚିତ୍ ତାଂକଠାରୁ ବାହାରେ । ହେଲେହେଁ, ସେ ସବୁଥିରେ ସେ ଥିଲେ ମହାଶୟ ବ୍ୟକ୍ତି । ଏପରି ବ୍ୟକ୍ତିତ୍ୱ ଅନ୍ୟତ୍ର ମୁଁ ଦେଖିଚି ବୋଲି ମନେ ହେଉନାହିଁ । ଦେଖିଚି ଅନେକ ଥାଂତି ଖୋଲାଲୋକ; କିଂତୁ ଗୋଦାବରୀଶ ତା' ନଥିଲେ । ତାଂକର ରୁଦ୍ଧ ମାନସିକତା ଭିତରୁ ଏପରି ଫୁଲ ଫୁଟିଲା ଭଳି ମହାବ୍ୟକ୍ତିତ୍ୱର ପ୍ରକାଶ ଅବଶ୍ୟ ବର୍ଣ୍ଣନା କରିବା ସେତେ ସହଜ ନୁହେଁ । ଏହା ଯେ ଦେଖିଚି, ସେଇ କେବଳ ଜାଣିଚି ।

ପ୍ରାରଂଭିକ ଜୀବନରେ ସେଥିଲେ ବଡ଼ ଅର୍ଥହୀନ । ପୁରୀଜିଲା ସ୍କୁଲରେ ପଢ଼ିଲାବେଳୁ ମୁଁ ତାଂକୁ ଭଲକରି ଜାଣେ । ତାଂକ ପିତାଂକୁ ମଧ ଦେଖିଚି । ଖାଲି ଦେଖିନାହିଁ—ପୁଅର ଶିକ୍ଷାପାଇଁ ଭିକ୍ଷାର୍ଥୀ ହେବାର ମଧ ତାଂକୁ ଦେଖିଚି; କିଂତୁ ପିତାପୁତ୍ର ଦୁହିଂକଠାରେ ଦାରିଦ୍ର୍ୟ ଥିଲେ ମଧ ଦୈନ୍ୟ ନଥିଲା । ଅଳ୍ପଦିନ ପରେ ପିତାଂକର ତିରୋଧାନ ହୋଇଥିଲା; କିଂତୁ ଏ ଦୈନ୍ୟର ଅଭାବ ମୁଁ ବାଳକ ଗୋଦାବରୀଶଂକ ଠାରେ ଯାହା ଦେଖିଥିଲି ତା ଆଜି ବର୍ଣ୍ଣନା କରିପାରିବି ନାହିଁ । ଦୋଷ ଦୁର୍ବଳତା ତାଂକର ନଥିଲା ନୁହେଁ; ତା ଥିଲା କିଂତୁ ସେ ସମସ୍ତ ଭିତରେ ମୁଁ ସେତେବେଳେ ମଧ ଜାଣି ପାରିଥିଲି ଓ ଉଦାହରଣସ୍ୱରୂପ ମୋ ମନେପଡୁଚି; କୌଣସି ଘଟଣାରେ ତତ୍କାଳୀନ ପୁରୀ ଜିଲ୍ଲା ସ୍କୁଲ ହେଡ୍‌ମାଷ୍ଟର ସ୍ୱର୍ଗତ ଚଂଦ୍ରମୋହନ ମହାରଣା ଓ ହେଡ୍‌ପଂଡ଼ିତ ସ୍ୱର୍ଗତ ମହାମହୋପାଧାୟ ଶ୍ରୀ ସଦାଶିବ ମିଶ୍ର ଏ ଦୁହିଂକୁ ସ୍ପଷ୍ଟବାକ୍ୟରେ ତାଗିଦ୍ କରି କହିଲା ପରି କହିବା ମୋ ମନେଅଛି—''ଗୋଦାବରୀଶ ବାଳକ ହେଲେ ମଧ ଆପଣ ତାକୁ ସାଧାରଣ ବାଳକ ବୋଲି ବିଚାରିବେ ନାହିଁ । ତା'ଭିତରେ ଏପରି କିଛି ଅଛି, ହୁଏତ ସେ ଦିନେ ଖୁବ୍ ବଡ଼ ମଣିଷ ହେବ । ଆପଣ ଏକଥା ମନେ ରଖି ତା ପ୍ରତି ବ୍ୟବହାର କରଂତୁ । ତା'ନହେଲେ ହୁଏତ ପରେ ଅନୁତାପ କରିବେ ।'' ମୁଁ ସେତେବେଳେ ଏନ୍‌ଟ୍ରାନ୍‌ସ ପରୀକ୍ଷା ଦେବାପାଇଁ ପ୍ରଥମଶ୍ରେଣୀ (ବର୍ତ୍ତମାନର ଏକାଦଶ ଶ୍ରେଣୀ)ରେ ପଢୁଥାଏ । ଗୋଦାବରୀଶ ମୋଠାରୁ ଗୋଟିଏ କ୍ଲାସ୍ ତଳେ ପଢୁଥିଲେ । ସେ ଥାଂତି ଦ୍ୱିତୀୟ (ଏବର ଦଶମ) ଶ୍ରେଣୀରେ । ଗୋଦାବରୀଶଂକର କୌଣସି ଦୋଷ ଦେଖି ହେଡ୍‌ମାଷ୍ଟର ଓ ହେଡ୍‌ପଂଡ଼ିତ ଦୁହେଁ ଅତ୍ୟଂତ ବିମନା ହୋଇ ଗୋଦାବରୀଶଂକୁ ଦଂଡ଼ ଦେବାକୁ ଯାଉଥିଲାବେଳେ ମୁଁ ଏକଥା କହିଥିଲି । ମୋ ମନେଅଛି, ମୋର ଏ କଥା ଅତି ଅଦ୍ଭୁତ ଭାବରେ ଫଳପ୍ରଦ ହୋଇଥିଲା । ଗୋଦାବରୀଶଂକୁ ସମସ୍ତ ଦଂଡ଼ରୁ ଅବ୍ୟାହତି ମିଳିଥିଲା । ସେତିକି ନୁହେଁ— କୌଣସି ଦୋଷ ସେ କରିଚଂତି, ତାଂକୁ ଜଣାଇ ପର୍ଯ୍ୟଂତ ଦିଆଯାଇ ନଥିଲା । ପୁରୀଜିଲ୍ଲା ସ୍କୁଲର ସେତେବେଳେ ଯେଉଁ ହଷ୍ଟେଲ ବା ବୋଡ଼ିଂ ହାଉସ୍ ଥିଲା, ସେଥିରେ ମୁଁ ଥିଲି ସେତେବେଳକୁ ଏକମାତ୍ର ମନିଟର୍ ଓ ଗୋଦାବରୀଶ ଥିଲେ ଜଣେ ଅଂତେବାସୀ ।

ସେଇ ସମୟରେ ଆଉ ଗୋଟିଏ କଥା ମନେପଡୁଚି । କହିଚି, ଗୋଦାବରୀଶଂକର ପିତୃବିୟୋଗ ହୋଇ ସାରିଥିଲା । ସେ ବଡ଼ ଅର୍ଥାଭାବରେ ଥାଂତି । ଅବଶ୍ୟ ଆଜିକାଲିର

ଅର୍ଥାଭାବ ସଂଗେ ତା'ର ତୁଳନା ନାହିଁ । ସେତେବେଳେ ଆମ ବୋଡିଂରେ ଦୁଇଟି ମେସ୍ ଥାଏ । ଆମ ମେସ୍‌ଟି ବଡ଼ ମେସ୍ । ସେଥିରେ ପ୍ରାୟ ୧୦ଜଣ ଥା'ନ୍ତି । ଥରେ ମାସ ଶେଷରେ ଜଣ ପିଛା ଟଂକାଏ ନ'ଅଣା ଖର୍ଚ୍ଚ ପଡ଼ିଯିବାରୁ ଆମ ମେସ୍‌ର ସଭା ବସିଗଲା । ଏତେ ବେଶି ଖର୍ଚ୍ଚ କାହିଁକି ପଡ଼ିଲା ବୋଲି ଥିବା ମ୍ୟାନେଜର୍‌କୁ ଛଡ଼ାଇ ଆଉ ଜଣକୁ ମ୍ୟାନେଜର୍ କରାଗଲା । ଯେତେଦୂର ମନେହୁଏ, ସେତେବେଳେ ଚାଉଳ ଥିଲା ଟଂକାକୁ କଟକୀ ୧୭ସେର ଓ ହାଟରେ ମାଛ ଥିଲା ବିଛାବାଲିଆ ବଡ଼ ଚିଂଗୁଡ଼ି ପଇସାକୁ ୧୦ଟି । ସେଇ ଅନୁସାରେ ଡାଲି, ପରିବା ପ୍ରଭୃତି ମିଳୁଥିଲା । ମନେଅଛି, ଶ୍ରୀ ବୀରବଳଭଦ୍ରପୁରର କଟକ ଟ୍ରେନିଂ ସ୍କୁଲର ଅବସରପ୍ରାପ୍ତ ହେଡ୍‌ମାଷ୍ଟର, ଶ୍ରୀ ଜଗନ୍ନାଥ ମହାପାତ୍ର, ବି.ଏ. ମୁଁ ଯେଉଁବର୍ଷ ଭର୍ଣ୍ଣାକ୍ୟୁଲର ବୃତ୍ତି ପାଇଥିଲି, ସେଇବର୍ଷ ବୀରନରସିଂହପୁର ମିଡ଼ଲ ଭର୍ଣ୍ଣାକ୍ୟୁଲର ସ୍କୁଲରୁ ବୃତ୍ତି ପାଇ ମୋ ସଂଗେ ପଢୁଥିଲେ । ସେ ମଧ ବୋଡ଼ିଂରେ ଥିଲେ । ବୃତ୍ତିର ପରିମାଣ ମାସକୁ ୪ଟଂକା । ଜଗନ୍ନାଥ ମହାପାତ୍ରେ ଅତି ଦରିଦ୍ର ପରିବାରର ସଂତାନ ଥିଲେ । ତାଂକର ବୃଦ୍ଧପିତା ମଧ ବଂଚିଥିଲେ । ସେ ମଧ ଅଭ୍ୟାସ କରି ନିଜେ ଟିକିଏ ପାନ ଖାଉଥିଲେ । ମାସକୁ ୪ଟି ମାତ୍ର ଟଂକାରେ ତାଂକର ମେସ୍ ଖର୍ଚ୍ଚ, ଜଳଖିଆ, ପାନ ପ୍ରଭୃତି ସବୁ ଚଳେ । ତା'ବାଦ୍ ସେ ପିତାଂକୁ ପରିବାରରେ ସାହାଯ୍ୟ କରିବା ପାଇଁ ପ୍ରତି ଶନିବାର ସନ୍ଧ୍ୟାରେ ପୁରୀରୁ ଯାଉଁଳିଏ ପରିବା କିଣିକରି ନେଇ ଗାଁକୁ ଯାଂତି ଓ ସୋମବାର ଦିନ ସକାଳୁ ପୁଣି ବୋଡ଼ିଂକୁ ଆସଂତି ।

ଏଇ ପରିସ୍ଥିତିରେ ଦରିଦ୍ର ପିତୃହୀନ ଗୋଦାବରୀଶ ଥିଲେ ମୋ ତଳ ଶ୍ରେଣୀର ଛାତ୍ର । ସେ ମଧ ବୋଡ଼ିଂରେ ଥିଲେ; କିଂତୁ ସେ ବୃତ୍ତି ପାଉ ନଥିଲେ । ଖୋର୍ଦ୍ଧା ସବ୍‌ଡ଼ିଭିଜନରେ କିଏ ଗୋଟିଏ ଖଂଡ଼ାୟତ ପିଲା—ଆକୃତିଟି ମନେ ପଡୁଥିଲେ ମଧ ନାମ ମନେ ହେଉନାହିଁ— ସ୍କୁଲରେ ପଢୁଥିଲେ ଓ ବୋଡ଼ିଂରେ ଥିଲେ । ବୋଡ଼ିଂରେ ମୁଁ ମନିଟର ଥିଲାବେଳେ ମଧେ ମଧେ ବିଶେଷତଃ ରବିବାରରେ ସବୁ ପିଲାଂକୁ ଏକାଠି କରି ଆଳାପ ଆଲୋଚନା ପ୍ରଭୃତିରେ ପ୍ରାୟ ଘଂଟାଏ ଖଂଡ଼େ କଟାଉଥିଲି । ସେଥିରେ ବେଳେବେଳେ ଚରିତ୍ର ପ୍ରକାଶ ଓ ପ୍ରତିଷ୍ଠା ବିଷୟରେ ଆଲୋଚନାମାନ ମଧ ଚାଲୁଥିଲା ।

କବିଏ ସ୍ୱଭାବତ ଭାବପ୍ରବଣ । ଗୋଦାବରୀଶ ଥିଲେ କବି । ଯୌବନରେ ସେ ଥିଲେ ଯଥାର୍ଥ କବି । ଯୌନସଂକେତ ଘେନି ପାଠକ ପ୍ରାଣରେ ସେଇ ଭାବରେ ତରଂଗ ଉଠାଇବା ଓ ସେଥିରେ କୃତିତ୍ୱ ଫୁଟାଇବାକୁ ପ୍ରଯତ୍ନ କରିବା ଅନେକ ସ୍ଥଳରେ ହେଉଚି କଳାରାଜ୍ୟରେ କବିତାର ପ୍ରାଣପ୍ରକାଶ । ଏ ଭାବରେ ପ୍ରାଣର ସ୍ପଂଦନ ଅନୁଭବ କରିବା ଓ କରାଇବା ଜୀବୀମାନବ ପକ୍ଷରେ ଏତେ କଷ୍ଟ ନୁହେଁ—ବରଂ ସହଜ । ଆଜି ଅନେକ କଳାକାର ଓ କବି କବିତା, ନାଟକ ଓ ଗଳ୍ପରେ ଏହାକୁଇ ସଂବଳ କରି ପାଠକର ମନ ଓ ଚିଂତା ଅଧିକାର କରଂତି । ଏହାରି କୃତିତ୍ୱର ଇତର ବିଶେଷରେ ସେ ସବୁ କଳାରେ ତାଂକର ସ୍ଥାନ ନିରୂପିତ ହୁଏ । ସାଧାରଣ ନୀରସ କବିତା ଭିତରେ ଏହାଇ ତାଂକର ସରସତା ବୋଲି ଧରାଯାଏ; କିଂତୁ ଗୋଦାବରୀଶ ସେ ଶ୍ରେଣୀର କବି ନଥିଲେ, ବରଂ ଏ ବିଭବ ତାଂକର କବିତାମାନଂକରେ ଫୁଟି ନଥିଲା । ଏ ସହଜ ଧନ ଧରି ପାଠକର ହୃଦୟକୁ ଆପଣାର କରିବାରେ ସେ ପ୍ରଯତ୍ନଶୀଳ ନଥିଲେ । ସତ୍ୟବାଦୀ ସ୍କୁଲରେ ଥରକାରେ ଗୋଟିଏ କଳାହାଂଡ଼ିର ବାଳକ ମରି ଯାଇଥିଲା । ତାକୁ ଆଂଭେମାନେ ଶ୍ମଶାନକୁ ନେଇ ତାର ଦାହକ୍ରିୟା କରିଥିଲୁ । ଗୋଦାବରୀଶ ସେ ଦଳରେ

ଥିଲେ । ସେଥିରୁ ଆସି ସେ ଯେଉଁ କବିତାଟି ଲେଖି ପକାଇଥିଲେ ତା' ପଢ଼ିଲାବେଳେ ମୋର ଏବେ ମଧ୍ୟ ହୃଦୟ ସ୍ପନ୍ଦିତ ହୁଏ ଓ ଆଖିରୁ ଲୁହ ଗଡ଼ିପଡ଼େ ।

ଫରମାସ ଅନୁସାରେ ବା ଏପରି ଦରକାର ବୋଲି କବିତାମାନ ସେ ବେଳେବେଳେ ଲେଖିଚନ୍ତି; କିନ୍ତୁ ସେ ସବୁ ଯଥାର୍ଥରେ କବିତା ହୋଇନାହିଁ । 'ପୁରୁଷୋତ୍ତମ ଦେବ ନାଟକରେ ତାଙ୍କର କବିତ୍ୱ ଖୁବ୍ ପ୍ରକାଶ ପାଇଚି । ଏହା ତାଙ୍କର ପ୍ରଥମ ନାଟକ ଲେଖା । ଏଠାରେ କହିଦିଏ ସତ୍ୟବାଦୀ ସ୍କୁଲର ମୁଁ ଆସିବାର ୩ୟ ବର୍ଷ ସ୍ୱର୍ଗତ ଗୋଦାବରୀଶ ଓ ୪ର୍ଥ ବର୍ଷ ଆସିଥିଲେ ସ୍ୱର୍ଗତ କୃପାସିନ୍ଧୁ । ତା'ପରେ ଆରମ୍ଭ ହୋଇଥିଲା 'ସତ୍ୟବାଦୀ' ମାସିକ ପତ୍ର । ଏ ସବୁର ମୂଳରେ ଗୋଟିଏ ସ୍ପଷ୍ଟ ଉଦ୍ଦେଶ୍ୟ ଓ ଆଦର୍ଶ ଥିଲା । ତା'ହେଉଚି, ଓଡ଼ିଆରେ ଯଥାର୍ଥ ସାହିତ୍ୟର ସ୍ତର ଫିଟାଇବା ।

ସେ କାଳର ମଧ୍ୟ ରାଧାନାଥୀ ସାହିତ୍ୟରେ ଆମ୍ଭେମାନେ ବଡ଼ ବିମନା ଥିଲୁ । ମୁଁ ଜାଣିଥିଲି, ରାଧାନାଥ ବଂଗଳାରେ ଲେଖି, ସେଠାରେ ପ୍ରତିପତ୍ତି ନପାଇ, ଓଡ଼ିଆ ସାହିତ୍ୟକୁ ନିଜ ଶିକ୍ଷା ବିଭାଗ କର୍ତ୍ତୃତ୍ୱର ଅନ୍ୟ ଉପଜୀବ୍ୟ କରିଥିଲେ । ଅବଶ୍ୟ କିଛିଦିନ ପରେ ଅନୁସଂଧାନ କରୁ କରୁ ଜାଣିଥିଲି, ସେ ରୋମାନ କବି ଓଭିଡ୍‌ଙ୍କ (Ovid)ଙ୍କର ଗ୍ରୀକ୍ ସାହିତ୍ୟ ପ୍ରଭାବିତ ପ୍ରକାଣ୍ଡ କାମକଳାର କାହାଣୀସବୁ ଓଡ଼ିଆରେ ଜାତୀୟ ତଥା ଐତିହାସିକ ସାହିତ୍ୟରୂପେ ପ୍ରଚାର କରିଥିଲେ ଓ ସେଥିରେ ବିଶେଷରେ ନିଜେ ଶିକ୍ଷା ବିଭାଗର କର୍ତ୍ତା ଥିବାରୁ ସମସ୍ତ ଦେଶଟାକୁ ମୁଗ୍ଧମାନ କରି ରଖିଥିଲେ । ସେଥିରୁ ଏବେ ମଧ୍ୟ ସଂପୂର୍ଣ୍ଣ ମୋହ ଭଂଗ ହୋଇନାହିଁ ।

ତା'ପରେ ମଧୁବାବୁଙ୍କ କଥା । ମଧୁବାବୁଙ୍କର କବିତାଗୁଡ଼ିକ କେତେ ନିଜର ତାହା କହିବା ଦୁଃସାଧ୍ୟ । ସେକାଳେ ବ୍ରାହ୍ମମାନଙ୍କର ବଂଗଳାରେ ବହୁତ ଏପରି କବିତା, କ୍ଷୁଦ୍ର ମାସିକ ତଥା ସାମୟିକ ପତ୍ର ପତ୍ରିକାଦିରେ ପ୍ରକାଶ ପାଉଥିଲା । 'ଆକାଶ ପ୍ରତି' ଓ 'ଜୀବନ ଚିନ୍ତା' ଭଳି କବିତାମାନ ସେକାଳେ ବଂଗଳାରେ ଦେଖିଥିବା ମୋ ମନେ ହେଉଚି । ସେସବୁରେ ବ୍ରାହ୍ମଭାବ ଓ ଭାଷା ଓଡ଼ିଶାରେ ପୂରାଇବାର ଖୁବ୍ ଉଦ୍ୟମ କରାଯାଉଥିଲା । ତାଙ୍କ ଗଦ୍ୟରେ ମଧ୍ୟ ବିଶୁଦ୍ଧତା ବୋଲି ଯାହା ପଶିଚି, ତାହା ମନୁଷ୍ୟର ଗଦ୍ୟ ଭାଷା ପକ୍ଷରେ ହୁଏତ ସହ୍ୟ ନୁହେଁ । ବ୍ରାହ୍ମଙ୍କ ତଥାକଥିତ ପବିତ୍ର ଭାଷା ଚଢ଼ା ବିଦ୍ୟାସାଗରଙ୍କ ଭଳି ଲୋକଙ୍କର ସଂସ୍କୃତାନୁବାଦିତ ଭାଷାରୁ ମଧ୍ୟ ବହୁ ଅନୁକୃତି ତାଙ୍କ ଗଦ୍ୟରେ ଦେଖାଯାଏ । ଓଡ଼ିଶାରେ ବିଶ୍ୱନାଥ କର ଥିଲେ ଏଇ ଦୁଇପ୍ରକାର ସାହିତ୍ୟର ପୂଜାରୀ ଓ ପ୍ରଚାରକ ମଧ୍ୟ ।

ଥରେ ମନେଅଛି, ଗୋଦାବରୀଶ ଗୋଟିଏ କବିତା ଲେଖିଥିଲେ । ସେଥିରେ ସେ ଲେଖିଥିଲେ 'ଯୁବାଯୌବନୀ' । ସେଉଟି ବିଶ୍ୱନାଥ କରଙ୍କ ଉତ୍କଳ ସାହିତ୍ୟରେ ଛପା ହୋଇଥିଲା; କିନ୍ତୁ ତଥାକଥିତ ଶୁଦ୍ଧ ଓଡ଼ିଆଭାଷୀ ବିଶ୍ୱନାଥ ସଂଶୋଧନ କରି ତାକୁ ଲେଖିଥିଲେ 'ଯୁବାଯୁବତୀଏ' । ମୁଁ ଦେଖି ଅତ୍ୟନ୍ତ ବିରକ୍ତ ହୋଇଥିଲି—ଗୋଦାବରୀଶଙ୍କ ପ୍ରତି । 'ତୁମେ କାହିଁକି ତମ କବିତ୍ୱର ଭାଷାରେ ବିଶ୍ୱନାଥ କରଙ୍କୁ ବିଚାରକ ହେବାର ଅଧିକାର ଦେଇ ?' ଏହାହିଁ ଥିଲା ମୋ ବିରକ୍ତିର ମୂଳଦୁଆ । ଗୋଦାବରୀଶ ତା'ପରେ ଆଉ 'ଉତ୍କଳ ସାହିତ୍ୟ'କୁ ପ୍ରକାଶ ପାଇଁ କବିତା ଦେଇଚନ୍ତି ବୋଲି ମୋ ମନେ ହେଉନାହିଁ । ତଥାପି ଗୋଦାବରୀଶ ଥିଲେ କବି ସୁଲଭ ଭାବପ୍ରବଣ; ତେଣୁ ସେ ପ୍ରଭାବରେ ଖୁବ୍ ପ୍ରଭାବିତ ହେଉଥିଲେ । ମାତ୍ର କ୍ରମେ କ୍ରମେ ତାଙ୍କର ମଧୁର ସୁନ୍ଦର ସାହିତ୍ୟରେ ପରେ ଯେଉଁ ସ୍ୱାଧୀନତା ଫିଟିଥିଲା ତାହା ଆଜିକାଲିର ଯୁବକମାନେ ଜାଣନ୍ତି । କହିବା ଦରକାର ନାହିଁ ।

ସୂଚନାରେ କହିଚି, ସେତେବେଳେ ସତ୍ୟବାଦୀର ଗୋଟିଏ ସ୍ୱତନ୍ତ୍ର ସାହିତ୍ୟ ଶୈଳୀ ବାହାର କରିବା ଆମ କଳ୍ପନାରେ ଖୁବ୍ ଥିଲା । ଗୋଦାବରୀଶ ଲେଖିଲେ, 'ପୁରୁଷୋତ୍ତମ ଦେବ' ନାଟକ ଓ କବିତା । କୃପାସିଂଧୁ ଆଗରୁ 'ବାରବାଟୀ ଦୁର୍ଗ' ପୁସ୍ତକଟି ଲେଖିଥିଲେ । ସତ୍ୟବାଦୀରେ ଲେଖିଲେ 'କୋଣାର୍କ' । ଏଇଟି କୋଣାର୍କର ଇତିହାସ । ମୁଁ ନିଜେ କିଛି ସେତେବେଳେ ଲେଖିଛି ବୋଲି ମନେ ହେଉନାହିଁ । କେବଳ 'ଗଣେଶ ଚତୁର୍ଥୀ', 'ଶ୍ରୀପଂଚମୀ' ପରି ଉତ୍ସବମାନଂକରେ ମୁଁ ସଂସ୍କୃତରେ ଓ ସଂସ୍କୃତ ଗୁରୁ ଲଘୁ ନିୟମରେ ଓଡ଼ିଆ ସଂଗୀତମାନ ଲେଖେ । କାରଣ ସେପରି ଛଂଦ ନିୟମରେ ଅନ୍ୟମାନେ ଲେଖିପାରଂତି ନାହିଁ । ସ୍କୁଲରେ ବ୍ୟବହାର ପାଇଁ ଅବଶ୍ୟ 'ଉପାସନା' ଲେଖିଥିଲି । ତାହା ସେଇ ସଂପର୍କୀୟ 'ଭକ୍ତିଗାଥା' ଭଳି ମୋର କେତେକ କବିତା ମଧ ସେକାଳ ଉତ୍କଳ ସାହିତ୍ୟରେ ବାହାରି ନଥିଲା ନୁହେଁ । ମାତ୍ର ସତ୍ୟବାଦୀ ସ୍କୁଲ ଜୀବନରେ 'ସତ୍ୟବାଦୀ' ମାସିକ ପତ୍ରଟି ବାହାରିବା ପରେ ମୁଁ ସେଥିରେ ପ୍ରବଂଧମାନ ଲେଖିଚି । ତହିଁ ଭିତରୁ ଖଂଡ଼ିଏ ସଂକଳିତ ପ୍ରବଂଧ ହେଉଚି 'ଆର୍ଯ୍ୟଜୀବନ' । ତା' ୧୯୨୧ରେ ସଂକଳିତ ହୋଇ ପ୍ରକାଶିତ ହୋଇଥିଲା ।

କିଂତୁ ସଂସ୍କୃତ ଗୁରୁ ଲଘୁ ନିୟମରେ ଲେଖିବାର ଓ ଅନ୍ୟମାନେ ଏପରିକି ଗୋଦାବରୀଶ ତାହା ଲେଖି ନ'ପାରିବାର ଗୋଟିଏ ଉଦାହରଣ ଆଜି ମନେପଡୁଚି । ସେଥିରୁ ଜଣାଯିବ ଗୋଦାବରୀଶ ସେ ଛଂଦରେ ଲେଖି ପାରୁ ନଥିଲେ ନୁହେଁ, ତାଂକର ଛଂଦର ଧାରଣା ଓଡ଼ିଆ ଭାଷାର ସ୍ୱାଧୀନ ପ୍ରକାଶ ସଂଗେ କିପରି ଜଡ଼ିତ ଥିଲା ଓ ତେଣୁ ସେ ଧାରଣା କିପରି ଅସାମାନ୍ୟ ଥିଲା, ତା' ନିମ୍ନଲିଖିତ କଥାଟିରୁ ଜଣାପଡ଼ିବ ।

ଗୋଦାବରୀଶ ଓ କୃପାସିଂଧୁ ଯାହା ଲେଖଂତି ସେ ଦୁହେଁ ମୋତେ ଦେଖାଇ ମୋ ସଂଗେ ଆଲୋଚନା କରି ତାକୁ ବେଳେବେଳେ ପୂର୍ଣ୍ଣାଂଗ କରଂତି । ଆଜି ମଧ ମନେ ଅଛି, କୃପାସିଂଧୁ 'କୋଣାର୍କ' ଲେଖୁ ଲେଖୁ ବିସନ୍ ସ୍ୱରୂପଂକ 'କୋଣାର୍କ' ପୁସ୍ତକରେ ଅର୍କକୋଣ ସଂପର୍କରେ ସୂର୍ଯ୍ୟର ଗତି ଓ ସ୍ଥିତି ବିଚାରର ସୂର୍ଯ୍ୟର ଯେଉଁ ପଶ୍ଚିମରୁ ପୂର୍ବକୁ ଗତି (Law of Precession) ବିଷୟ ହିସାବ କରାଯାଇଥିଲା, ତା' ବୁଝି ନ'ପାରି ମୋ ପାଖକୁ ଆସିଥିଲେ । ମୁଁ ବୁଝାଇ ଦେବାପରେ ସେ ସେ ଅଂଶଟି ଲେଖି ତାଂକ ନିଜ ପୁସ୍ତକରେ ସଂଶୋଧନ କରି ପୁଣି ଲେଖିଥିଲେ ।

ସ୍ୱର୍ଗତ ଗୋପବଂଧୁଂକର ବଡ଼ଝିଅ ବିଭାଘର ସରିଥାଏ । ବ୍ରହ୍ମପୁରର ସ୍ୱର୍ଗତଃ ଶଶିଭୂଷଣ ରଥଂକ ସଂଗେ ଗୋପବଂଧୁବାବୁ ଓ ମୁଁ ବୋଡ଼ିଂରେ (ସତ୍ୟବାଦୀ ସ୍କୁଲ ହଷ୍ଟେଲରେ) ମୋ ଘରେ ତିନୋଟି ଖଟରେ ଶୋଇଥିଲୁ । ଗୋପବଂଧୁ ବାବୁ ନିଜେ ବଡ଼ ଭକ୍ତି ଅଂଶର ଲୋକ ଥିଲେ । ଠିକ୍ ରାତି ପାହିଲା ବେଳକୁ ଉଠି ସେ ଖଟ ଉପରେ ବସି ଈଶ୍ୱରଂକୁ ପ୍ରାର୍ଥନା କରୁ କରୁ କାଂଦି କାଂଦି ନିଜର ତାତ୍କାଳିତ ରଚିତ ଗୋଟିଏ ଅତି ସୁଂଦର ଭାବୋଦ୍ରେକଗର୍ଭକ ଗୀତ ବୋଲିଗଲେ । ସେ ଗୀତଟି ଚାରିଧାଡ଼ି । ତା'ର ମୂଳ ହେଉଚି—

''ଯେତେବେଳେ ଯାହା କହୁଚ ବିଧାତା
ସେତେବେଳେ ତାହା କରୁଚି ।''

(ଚାରିଧାଡ଼ିଯାକ 'ପୁରୁଷୋତ୍ତମ ଦେବ' ନାଟକରେ ଅଛି ।) ହଠାତ୍ ସେ ସ୍ୱରୋଚ୍ଛ୍ୱାସ ସଂଗେ ସଂଗେ ଶଶୀ ବାବୁଂକର ଓ ମୋର ଦୁହିଂକ ନିଦ ଭାଂଗିଗଲା । ମୁଁ କହିଲି, ''ରଥେ !

ଶୀଘ୍ର ଶୀଘ୍ର ଏ ଗୀତଟା ଲେଖି ପକାଅ ।'' ସେ ଲେଖି ପକାଇଲେ । ସଂଗେ ସଂଗେ 'ପୁରୁଷୋତ୍ତମ ଦେବ'ର ପାଂଡୁଲିପି ଘେନି ସେଠାକୁ ଆସିବା ପାଇଁ ଗୋଦାବରୀଶଂକୁ ଡକାଇ ପଠାଇଲି । ସେଥିରେ ଥିବା ପୁରୁଷୋତ୍ତମ ଦେବଂକର ଗୋଟିଏ 'ସ୍ୱଗତ' Soliloquy କଥାଟି ମୋ ମନେ ପଡ଼ିଯାଇଥିଲା । ମୁଁ ଗୋଦାବରୀଶଂକୁ କହିଲି, ସେଇ 'ସ୍ୱଗତ' ଶେଷକୁ ଏ ଗୀତଟି ଯୋଡ଼ିଦିଅ । ସେ ତା' କଲେ ।

ସେଇ 'ପୁରୁଷୋତ୍ତମ ଦେବ' ସଂବଂଧରେ ଆଉ ଗୋଟିଏ କଥା କହେ । ପୁରୁଷୋତ୍ତମ ଦେବରୁ ବିଷୟାଂଶମାନ ବାଛି ଗଣେଶ ଓ ସରସ୍ୱତୀ ଉତ୍ସବରେ ପିଲାଂକୁ ଅଭିନୟ କରାହୁଏ । ଦରକାର ଅନୁସାରେ ସେଇ ଅଭିନୟ ଦେଖି ଭାଷା ଓ ପ୍ରକାଶଭଂଗୀରେ ସଂଶୋଧନ ମଧ କରାଯାଏ । ଥରେ ଏହିପରି ଗୋଟିଏ ଅଭିନୟର ଆବୃତ୍ତି (Rehearsal) ଦେଖୁ ଦେଖୁ ମୋତେ ଲାଗିଲା, ସେଠାରେ ଗୋଟିଏ ସୈନ୍ୟମାନଂକର ପଦନିକ୍ଷେପଗତ ଗୀତ (Marching song) ଯୋଡ଼ାହେବା ଦରକାର । ସେକଥା ମୁଁ କହିଲି । ଗୋଦାବରୀଶ ମୋତେ ଅନୁରୋଧ କଲେ । ଏଇପରି ଗଂଠିସଂଧି ବେଳମାନଂକରେ ଯେତେବେଳେ ମୋତେ ନୂଆକଥା କରିବାର ହୁଏ, ସେତେବେଳେ ମୁଁ ପାଇଖାନାକୁ ଚାଲିଯାଏ । ମୁଁ ଗଲି । ତା'ପରେ ମୋ ମନେଅଛି, ସେଥାରୁ ଆସି ହଠାତ୍ ଡାକିଦେଲି—

''ରଂଜିତ ଅସି ଧାରେ
ଶତ୍ରୁ ରକ୍ତଗାରେ
ଲେଖ ଆଜି ବିଜୟ ବିଭବ ଜନ୍ମଭୂମି ଭାଲେ ।
ନିର୍ମଳ ଦିଶୁ ଧ୍ୱାଂର୍ତ ଗଗନ
ବର୍ଷୁ ତପନ ପୁଣ୍ୟ କିରଣ ।''

ଏତିକି କହୁ କହୁ ସ୍ୱାଧୀନଚେତା—ବିଶେଷତଃ ଭାଷାରେ ସେଇ ସ୍ୱାଧୀନତାର ଅବତାର—ଗୋଦାବରୀଶ କହିଉଠିଲେ, ''ଭାଇନା ! (ମୋତେ ସେ ଭାଇନା ବୋଲି ଡାକୁଥିଲେ) ତମେ ସଂସ୍କୃତ ଗୁରୁ ଲଘୁରେ ଏତେ ଜୋର ଦିଅନାଇଁ । ଓଡ଼ିଆ ଲୋକେ କହିବେ, ଓଡ଼ିଆରେ କହିବେ ।'' ସେଠାରୁ ସେ ତୃତୀୟ ଧାଡ଼ିରେ ଗୋଟିଏ 'ହେ' ଲଗାଇ କହିଲେ—

''ଲେଖ ହେ ଆଜି ବିଜୟ ବିଭବ ଜନ୍ମଭୂମି ଭାଲେ ।''

ଏଥିରେ 'ହେ' ଓ 'ଆ' ଦୁଇଟିଯାକ ଉଚ୍ଚାରଣରେ ହ୍ରସ୍ୱ ହୋଇଗଲା । ଓଡ଼ିଆରେ ତାହାହିଁ ହେବାକଥା । ସେଠାରୁ ସେ ଓ ମୁଁ ଦୁହେଁ ମିଶି ଲେଖିଲୁ—

''ନିର୍ମଳ ଆଜି ଧ୍ୱାଂତ ଗଗନ
ବର୍ଷେ ତପନ ପୁଣ୍ୟ କିରଣ,
ଶତ୍ରୁ ଆଜି ଦଳିତ ଚରଣେ ଚିହ୍ନ ଏ କରବାଳେ ।''

ଏଠାରେ 'ଆ', 'ଣେ' ଓ 'ଏ' ପ୍ରଭୃତି ହ୍ରସ୍ୱ ହୋଇଚି । ତା'ପରେ ଏଇ ଗୋଦାବରୀଶ ରୀତିରେ ସମସ୍ତ ଗୀତଟି ଆଂଭେମାନେ ପୂର୍ଣ୍ଣ କରିଥିଲୁ । ତା' ପାଠକେ 'ପୁରୁଷୋତ୍ତମ ଦେବ' ନାଟକରେ ପଢ଼ିଚଂତି ଓ ପଢ଼ିବେ । ସାହିତ୍ୟ ଚର୍ଚ୍ଚା ଓ ସାହିତ୍ୟର ନବ ନବ ଉନ୍ମେଷରେ ଏ ଖାତିରି ସଂଗେ ଏ ପ୍ରତିଭା ଅସାମାନ୍ୟ ନୁହେଁ କି ?

ମନେ ହେଉଚି ୧୯୦୨ ବା ୧୯୦୩ ସାଲର ଗ୍ରୀଷ୍ମକାଳରେ ଗୋଟିଏ ଚାଂଦନୀ ରାତିରେ ଚାରିଆଡ଼େ ହଇଜା ଲାଗିଥିଲା ବେଳେ ପଂଡ଼ିତ ଗୋପବଂଧୁଂକ ଗ୍ରାମମୁଂଡ଼ ଝାଗେଶ୍ୱରୀଂକ ପାଖେ ନଣବଂଧ ଉପରେ ଗୋଟିଏ ବରଗଛ ତଳେ ଚାଂଚ ପକାଇ ପଂଡ଼ିତ ଗୋପବଂଧୁଂକ ସଂଗେ ପ୍ରଚାରକ ଅନଂତ ମିଶ୍ର, ଏବର ଆଚାର୍ଯ୍ୟ ହରିହର ଓ ମୁଁ ତିନିଜଣଯାକ କଥାବାର୍ତ୍ତାରେ ରାତି ପୁହାଇ ଦେଇଥିଲୁ । ସେ ଦିନ ଆମେ ସରକାରୀ ଚାକିରି କରିବା ନାଇଁ ଓ ଦେଶକୁ ଯାହା ଦେଖୁଥାଇ, ମରିବା ପୂର୍ବରୁ ତା'ଠାରୁ ଭଲ ଦେଖିବା ବୋଲି ସଂକଳ୍ପ କରିଥିଲୁ । ସେଇଦିନ ଠାରୁ ଗୋଟିଏ ସଂଘବଦ୍ଧ ଭାବରେ କୌଣସି ଦେଶ ଓ ଦେଶପାଇଁ କାର୍ଯ୍ୟର କଳ୍ପନା ଆମମାନଂକୁ ଖୁବ୍ ପ୍ରଭାବିତ କରିଥିଲା । ମୋ ନିଜ କଥା ମୁଁ କହୁଚି । ସେଇ ଅନୁଷ୍ଠାନ ନିମଂତେ ମୋ ସାଂଗକୁ ମୁଁ ଯୁବକମାନଂକୁ ସଂଗ୍ରହ କରିବାରେ ଲାଗିଯାଇଥିଲି । ଏଇ ସଂଗୃହୀତ ଯୁବକମାନଂକ ମଧ୍ୟରୁ ପ୍ରଥମଟି ହେଉଚଂତି ଗୋଦାବରୀଶ; କିଂତୁ ମୁଁ ବରାବର ଦେଖିଥିଲି, ସେ ବଡ଼ ଦରିଦ୍ର ହୋଇ ଜନ୍ମ ହୋଇଥିଲେ । ଅବଶ୍ୟ ଆମ ସମାଜରେ ଦରିଦ୍ର ବୋଇଲେ ଯାହା ବୁଝାଯାଏ ସେଇଆ । କାଇଁକିନା ଆମ ଭିତରେ ଯେ ବଡ଼ ଧନୀ, ସେ ବି ଏକ ଦରିଦ୍ର । କିଂତୁ ମୁଁ ଦେଖିଚି, ଦାରିଦ୍ର୍ୟର ଭାବଟି ଗୋଦାବରୀଶଂକୁ ସବୁବେଳେ ବଡ଼ ଘାରୁଥିଲା । ହେଲେ ହେଁ ଭାବରାଜ୍ୟରେ ପରପ୍ରାଣତା ତାଂକର ଅତ୍ୟଂତ ପ୍ରବଳ ଥିଲା । ସେ ତଥାପି ଏ ସମସ୍ତ ପରପ୍ରାଣତା ମଧ୍ୟରେ କୌଣସି ପ୍ରକାରେ ଟଂକା ରୋଜଗାର କରି ବଡ଼ ହେବା ଓ ସେଥିପାଇଁ ଚାକିରିମାନ କରିବା ଭାବଟି ତାଂକ ଭିତରେ ଏକପ୍ରକାର ବଦ୍ଧମୂଳ ଥିଲା । ମରିବାର ଶେଷ ବର୍ଷ ପର୍ଯ୍ୟଂତ ମୁଁ ଜାଣେ ସେ ପ୍ରତିମାସରେ 'ବଂବେ ଟାଇମ୍‌ସ'ର 'Illustrated weekly' ସାପ୍ତାହିକରେ ବାହାରୁଥିବା (Cross word puzzle) ଶବ୍ଦନିର୍ମାଣ ପ୍ରହେଳିକାଟି ତନ୍ନ ତନ୍ନ କରି ଦେଖୁଥିଲେ ଓ ପ୍ରତିଥର ଟଂକା ଖର୍ଚ୍ଚ କରି ସେ ଶବ୍ଦଧଂଦାର ଭିନ୍ନ ଭିନ୍ନ ସମାଧାନ ସବୁ ପୁରସ୍କାର ପାଇବା ଆଶାରେ ପଠାଉଥିଲେ । ଅବଶ୍ୟ ସମସ୍ତେ ଜାଣଂତି, ସେ ପୁରସ୍କାର ସବୁ ବଡ଼ ବିରାଟ । ସମାଧାନଟି ଠିକ୍ ହେଲେ ପ୍ରାୟ କୋଡ଼ିଏ ତିରିଶ ହଜାର ଟଂକା ବା ତହିଁରୁ ବେଶି ପୁରସ୍କାର ମିଳେ । ଏପରି ଶବ୍ଦ ସମାଧାନ ପଠାଇବାର ଦେଖି ଦିନେ ମୁଁ ପଚାରିଥିଲି, ''ଏସବୁ ପାଇବା ବହୁତ କମ୍ ଲୋକଂକ ଭାଗ୍ୟରେ ମାତ୍ର ଘଟେ । ତମ ଭଳି ଲୋକଂକର ଏ ଚେଷ୍ଟା କିଆଁ ?'' ସେ ଟିକେ ମୁରକି ହସି ମତେ ଉତ୍ତର ଦେଇଥିଲେ, ''ଅତି କମ୍ ଲୋକଂକୁ ହେଲେ ମଧ୍ୟ କାହାକୁ ତ ମିଳେ । କିଏ ଜାଣେ ସେଇ ଜଣକ ଦିନେ ମୁଁ କାହିଁକି ନ ହେବି ?'' ତା'ପରେ ମନୁଷ୍ୟର ଭାଗ୍ୟ ଓ ପୁରୁଷକାର ସଂବଂଧରେ ସେଦିନ ବହୁତ କଥାବାର୍ତ୍ତା ହୋଇଥିଲା । ମୁଁ ଦେଖି ବିସ୍ମିତ ମଧ୍ୟ ହୋଇଥିଲି । ଭାଗ୍ୟ ଉପରେ ବହୁତ ଲୋକ ଏ ବିଷୟରେ ଲେଖିଚଂତି । ଲୋକେ ସବୁକଥା ନିଜ ଭାବ ଅନୁସାରେ ବ୍ୟାଖ୍ୟା କରି ଲେଖିଯାଂତି । ସେଇ ଲେଖାମାନଂକରୁ ଲୋକେ ଜାଣି ଯାଇଚଂତି ସତ୍ୟବାଦୀ ସ୍କୁଲର ଶିକ୍ଷକମାନେ ଅଳ୍ପ ଟଂକା ପାଂଚ କାମ କରିବା ସତ୍ୟବାଦୀ ବିଦ୍ୟାଳୟର ଗୋଟିଏ ମୁଖ୍ୟ ଲକ୍ଷଣ ଥିଲା । କିଂତୁ ମୁଁ କହୁଚି ତା ନୁହେଁ । ଛାତ୍ରମାନଂକ କମ୍ ଖର୍ଚ୍ଚରେ କିପରି ସେମାନଂକ ଉଚ୍ଚ ଚିଂତା ଓ ଚରିତ୍ରପାଇଁ କ୍ଷେତ୍ର ପ୍ରସ୍ତୁତ କରିପାରିବ ସେ ବିଷୟ ପ୍ରତି ଦୃଷ୍ଟି ଥିଲା; କିଂତୁ ଶିକ୍ଷକମାନଂକ ସଂବଂଧରେ ଏଭଳି କଟକଣା ପ୍ରତି ଆଦୌ ନଜର ନଥିଲା । ମୁଁ ପ୍ରଥମେ ସତ୍ୟବାଦୀ ସ୍କୁଲ ଆରଂଭ କରିଥିଲି । ମୁଁ ନିଜେ ହାତଖର୍ଚ୍ଚ ପାଇଁ ମାସକୁ ୩୦ଟଂକା ମାତ୍ର ନେଉଥିଲି । ମୋ ଘରେ ବରଷକ ଖାଇବା ଭଳି ଥିଲା । ଆମ ନନା (ମୋ ପିତା) ମଧ୍ୟ

ମୋର ଦେଶ ସେବାରେ ଅତ୍ୟଂତ ଆନଂଦିତ ଥିଲେ ଓ ସେଥିପାଇଁ ଅତି ବୃଦ୍ଧ ବୟସରେ ତାଂକର କର୍ମଦକ୍ଷତା ଆହୁରି ବଢ଼ି ଯାଇଥିଲା । (ତାଂକ ଜନ୍ମ ହେଉଚି ଖ୍ରୀଷ୍ଟାବ୍ଦ ୧୮୩୯ରେ ।) ପଂଡ଼ିତ ଗୋପବଂଧୁ ମଧ ତାଂକର ଆଶୀର୍ବାଦ ପାଇ କୃତାର୍ଥ ହେଉଥିଲେ । ଏ ତିରିଶ ଟଂକା ମତେ କେହି ପଚାରି ବୁଝିଦେଇ ନଥିଲା । ମୁଁ କିରାଣୀକୁ କହିଦେଇଥିଲି ମୁଁ ଏତିକି ନେବି ।

ତା'ପରେ ଆଚାର୍ଯ୍ୟ ହରିହର ଦାସଂକ କଥା । ତାଂକର ଘରେ ସେପରି କିଛି ଅଭାବ ନଥିଲେ ମଧ କିଛି ଥିଲା । ସେକାଳର ଏଫ୍.ଏ. ପାସ୍ କରିଥିଲେ ମଧ ସେ ବଡ଼ ଭଲ ଶିକ୍ଷକ ଥିଲେ । ସେ କଟକର ପି.ଏମ୍. ଏକାଡ଼େମୀରେ ମାସକୁ ୪୫ଟଂକା ବେତନରେ ଶିକ୍ଷକ ଥାଇ ସେକାଳେ ପ୍ରାଇଭେଟ ଟିଉସନ୍‌ରୁ ଆହୁରି ମାସକୁ ୯୦ଟଂକା ଅଧିକ ରୋଜଗାର କରୁଥିଲେ । ତେଣୁ ପିତା କାଳେ ଅସଂତୁଷ୍ଟ ହେବେ ବୋଲି ସେ ସେ ଚାକିରୀ ଛାଡ଼ି ପାରି ନଥିଲେ । ୧୯୧୨ ଖ୍ରୀଷ୍ଟାବ୍ଦର ଜୁଲାଇ ମାସରେ ତାଂକ ପିତାଂକର ମୃତ୍ୟୁ ହୋଇଗଲା । ତା'ପରେ ଆଚାର୍ଯ୍ୟ ମହାଶୟ ପି.ଏମ୍. ଏକାଡ଼େମୀ ଛାଡ଼ି ଓ ତହିଁ ସଂଗେ ମାସକୁ ୯୦ଟଂକା ଟିଉସନ୍‌ର ଲୋଭ ଅକାତରରେ ଛାଡ଼ି, ସତ୍ୟବାଦୀରେ ଆସି ଶିକ୍ଷକ ହେଲେ । ସେ କଥା କରି ନେଲେ ମାସକୁ ୪୦ଟଂକା ।

ତା'ପରେ ଗୋଦାବରୀଶ ମିଶ୍ରେ । ୧୯୧୨ ଶେଷକୁ ଏମ୍.ଏରେ ପରୀକ୍ଷା ଦେଲେ । ତାଂକର ଏମ୍.ଏ.ରେ ବିଷୟ ଥିଲା ଇକୋନମିକ୍‌ସ ବା ଅର୍ଥଶାସ୍ତ୍ର । ସେ ସେଇ ଶାସ୍ତ୍ରର ପ୍ରଣାଳୀକୁ ଧରି ବହୁପ୍ରକାର ଅର୍ଥାଗମର ଉପାୟ ଭାବୁଥାଂତି । ତା' ମଧରୁ ଗୋଟିଏ ହେଉଚି—ସେ ବହୁଟଂକାରେ ଜୀବନ ବିମା କରି ସେଇ ବିମାଟି ବଂଧାପକାଇ ବିଲାତ ଯିବେ, ଇତ୍ୟାଦି । ଏମ୍.ଏ. ପଢ଼ିବା ଅବସ୍ଥାରେ ଏ ବିଷୟରେ ବହୁତ ମୋ ସଂଗେ ଯୁକ୍ତିତର୍କ ହୋଇଥିଲା ଓ ମୁଁ ସେଥିରେ ତାଂକୁ ନିବର୍ତ୍ତାଇ ଥିଲି । ତାଂକ ଏମ୍.ଏ. ଦୁଇବର୍ଷ ଭିତରୁ ମୁଁ ପ୍ରଥମ ବର୍ଷଟି ତାଂକ ସଂଗେ କଲିକତାରେ ଥିଲି । ତା'ପରେ କଲିକତାରୁ ଆସି ସତ୍ୟବାଦୀ ସ୍କୁଲରେ ସ୍ପଷ୍ଟ ଯୋଗଦେବା ପରେ ସେ ସ୍ଥିର କରିଥିଲେ କଲିକତାରେ Deaf & Dumb (ମୂକ ବଧିର) ସ୍କୁଲର ଅଧକ୍ଷ ହୋଇ ସେଇ ସୂତ୍ରରେ ସେଇ ଶିକ୍ଷାର ବିଶେଷ ଜ୍ଞାନ ପାଇଁ ବିଲାତ ଯିବେ । ସେ ଏମ୍.ଏ. ପରୀକ୍ଷା ଦେବାପରେ ଏ କଥା ମୋତେ ଜଣାପଡ଼ିଲା । ମୁଁ ମଧ ଗୋପବଂଧୁ ବାବୁଂକୁ କହିଲି । ଗୋଦାବରୀଶ ଇଂରେଜି ଭାଷାରେ (ବିଶେଷରେ ଉଚାରଣ ଓ ସ୍ୱରପ୍ରକାଶ ଭଂଗୀରେ) ବଡ଼ ଦକ୍ଷ ଥିଲେ । ସେଥିପାଇଁ ସେ ଥିଲେ ଆମର ଆଦରର ଧନ ।

ମୁଁ ପୁରୀଜିଲ୍ଲା ସ୍କୁଲରେ ପଢ଼ିଲାବେଳୁ କଲିକତାର ସ୍ୱର୍ଗତ ଶଶିଭୂଷଣ ରାୟ ଚୌଧୁରୀ ବୋଲି ଜଣେ ଆଦିମ ଯୁଗର ବିପ୍ଳବୀ ମୋ ସଂଗେ ବଡ଼ ଘନିଷ୍ଠ ସଂପର୍କରେ ଥିଲେ । ସେଇ ସୂତ୍ରରେ ଗୋଦାବରୀଶଂକ ସଂଗେ ତାଂକର ଭାରି ପରିଚୟ ହୋଇଥିଲା । ଗୋଦାବରୀଶ ମଧ ତାଂକ ପ୍ରଭାବରେ ପ୍ରଭାବିତ ହୋଇଥିଲେ । ମୁଁ କଲିକତାରେ ତାଂକ ପାଖକୁ ଲେଖି ତାଂକୁ ଧରି ଗୋଦାବରୀଶଂକୁ ସେଠାରେ ଭେଟିଲି । ମନେ ଅଛି, ବହୁ ଯୁକ୍ତିତର୍କ କଥାବାର୍ତ୍ତା ପରେ ଆମେ ଦୁହେଁ ସେ କାର୍ଯ୍ୟରୁ ତାଂକୁ ନିବର୍ତ୍ତାଇ ତାଂକୁ ଘେନି ଆସି ଗୋପବଂଧୁ ବାବୁଂକୁ ଚିଠି ଲେଖି ସତ୍ୟବାଦୀରେ ଆସି ପହଂଚିଲୁ । ଗୋପବଂଧୁ ବାବୁ ଆସି ପହଂଚିଗଲେ । ଗୋଦାବରୀଶଂକର ସତ୍ୟବାଦୀରେ ରହିବାର ସ୍ଥିର ହେଲା ।

ବାଣପୁର ଗୋଦାବରୀଶଙ୍କର ନିଜ ସ୍ଥାନ । ସେଠାରେ ତାଂକର ଅତି ଛୋଟ ଘର ବଖରାଏ ମାତ୍ର ଥିଲା । ଜମିବାଡ଼ି ବୋଲି କିଛି ନଥିଲା । ସହାୟ ବୋଲି କେହି ନଥିଲେ । ସଂପତ୍ତି ବୋଲି ଘରେ ଧର୍ମପତ୍ନୀ ଓ ଗୋଟିଏ ଶିଶୁକନ୍ୟାଂକ ଛଡ଼ା ଆଉ କେହି ନଥିଲେ । ତାଂକ ପାଇଁ ସତ୍ୟବାଦୀରେ ଭଡ଼ାଘର ଠିକ୍ କରାଗଲା ।

ଏଇପରି ଅନ୍ୟତ୍ର ବସାଘର କରି ସ୍କୁଲର ମାଷ୍ଟର ହେବା ଲୋକଂକ ଭିତରେ ଗୋଦାବରୀଶ ସେତେବେଳେ ଥିଲେ ଏକମାତ୍ର । ତା'ର ଦୁଇବର୍ଷ ପରେ ସ୍ୱର୍ଗତ କୃପାସିଂଧୁ ଇତିହାସ ଶାସ୍ତ୍ରରେ ଏମ୍.ଏ. ପରୀକ୍ଷା ଦେଇ ଉଚ୍ଚସ୍ଥାନ ଲାଭ କରି ସତ୍ୟବାଦୀକୁ ଆସି ଶିକ୍ଷକ ରୂପେ ଯୋଗ ଦେଇଥିଲେ । ସେ ମଧ୍ୟ ସତ୍ୟବାଦୀରେ ଅନ୍ୟତ୍ର ବସା ଭଡ଼ାନେଇ ନିଜ ଭାର୍ଯ୍ୟାଂକୁ ଘେନି ବାସ କରିଥିଲେ । ସେସବୁ ହିସାବ କରି ନିଜେ ମାସକୁ ୫୦ଟଂକା ନେବେ ବୋଲି କହିଥିଲେ ଓ ତାହାଇ ତାଂକୁ ଦିଆଯାଇଥିଲା । ଏହାଇ ମୋଟାମୋଟି ଥିଲା ସତ୍ୟବାଦୀ ସ୍କୁଲର ଶିକ୍ଷକମାନଂକ ଦରମାର ଆଦର୍ଶ ଓ ଇତିହାସ ।

ସତ୍ୟବାଦୀ ସ୍କୁଲର ମାଷ୍ଟରମାନଂକ ଉପରେ ସେକାଳ ସରକାରଂକର ବଡ଼ କଡ଼ା ନଜର ଥିଲା । ସେ ନାନା ପ୍ରତିବଂଧକ ଆଣି ଯୁଟାଉଥାଂତି । ଥରେ ଇନିସ୍‌ପେକ୍ଟର କହିଲେ, "ଶିକ୍ଷକମାନଂକ ଭିତରେ ଶିକ୍ଷା ବିଧାନରେ ତାଲିମ ହୋଇଥିବା (B.T. ପାସ୍ କରିଥିବା) ଶିକ୍ଷକ ଦରକାର ।" ୧୯୧୭ରେ ଗୋଦାବରୀଶଂକୁ B.T.ରେ ତାଲିମ ହେବାପାଇଁ କଲିକତାକୁ ପଠାଗଲା । ୧୯୧୮ରେ ସେ ଫେରିଲେ । ୧୯୧୮ର ଜୁନ୍‌ମାସ ପରେ ଖୋର୍ଦ୍ଧା ହାଇସ୍କୁଲରେ ହେଡ୍‌ମାଷ୍ଟର ହେବା ପାଇଁ ସେ କାହାକୁ କିଛି ନକହି ଦରଖାସ୍ତ କରିଦେଲେ । ଗୋପବଂଧୁ ବାବୁ ଜାଣିଲେ । ମୋ ମନେଅଛି, ସାକ୍ଷୀଗୋପାଳ ଡାକବଂଗଳାରେ ଗୋପବଂଧୁ ବାବୁ, ଗୋଦାବରୀଶ, କୃପାସିଂଧୁ, ହରିହର ଦାସ ଓ ମୁଁ ସମସ୍ତେ ବସି ସେଇ କଥା ପକାଇଲୁ । କଥା କହୁ କହୁ ଭାବପ୍ରବଣ ଗୋପବଂଧୁ ଦାସ ଭୋ' ଭୋ' ହୋଇ ଉଚ୍ଚସ୍ୱରରେ କାଂଦିଲେ । ଆଂଭେ ସମସ୍ତେ କାଂଦିଲୁ । ସେଦିନ ଗଲା । ମାତ୍ର ଫଳରେ ସ୍ଥିର ହେଲା ସତ୍ୟବାଦୀ ସ୍କୁଲରେ ଆମେ ତିନି ଏମ୍.ଏ.ଙ୍କ କୃପାସିଂଧୁ, ଗୋଦାବରୀଶ ଓ ମୁଁ ବର୍ଷକୁ ଜଣେ ଜଣେ ପର୍ଯ୍ୟାୟକ୍ରମେ ହେଡ୍‌ମାଷ୍ଟର ଓ ହଷ୍ଟେଲର ସୁପରିଂଟେଂଡେଂଟ ହେବେ । ମନେଅଛି, ସେଇ ବ୍ୟବସ୍ଥା ଅନୁସାରେ ମତେ ସେ ଦୁଇପଦ ଛାଡ଼ି ସେଇ ସମୟରେ ଶ୍ରୀରାମଚଂଦ୍ରପୁରରେ ମୋ ଘରେ ଆସି ରହିବାକୁ ହୋଇଥିଲା । ଏଇପରି ଭୋଗର ତୃଷ୍ଣା ଓ ତହିଁ ସଂଗେ ସଂଭୋଗର ସ୍ପୃହା ଗୋଦାବରୀଶଂକ ଭିତରେ ବରାବର ପ୍ରଚ୍ଛନ୍ନ ଭାବରେ ଜୀବଂତ ଥିବାର ମୁଁ ଦେଖିଚି । ସଂଗେ ସଂଗେ ସେଇ ଭୋଗର ତ୍ୟାଗ ବିଷୟରେ ମଧ୍ୟ ତାଂକ ପ୍ରକୃତି ବଡ଼ ନମନୀୟ ଥିଲା । ଶିଷ୍ଟାଚାରରେ ସେ ଅତ୍ୟଂତ ଉନ୍ନତ ଓ ମାର୍ଜିତ ଥିବାରୁ ଏ ତୃଷ୍ଣା ଘେନି ତାଂକର କୌଣସି କର୍ମପଟୁତା କେବେ ବ୍ୟାହତ ହୋଇଥିବାର ମୋ ମନେନାହିଁ । ଏ ସମସ୍ତ ଭିତରେ ପୁଣି ମୋ ମନେଅଛି, ଶିକ୍ଷକତାରେ ତାଂକର ଅନନ୍ୟ ସାଧାରଣ ପ୍ରତିଭା । ସେପରି ସୁଦକ୍ଷ, ରୁଚିମଂତ ଶିକ୍ଷକ ମୁଁ ଆଉ ଦେଖିଚି ବୋଲି ମନେ ହେଉନାହିଁ ।

ଆଜି ଆଉ ପୁଣ୍ୟଶ୍ଳୋକ ଗୋଦାବରୀଶଂକ ସଂବଂଧରେ ବିଶେଷ ବୟାନ କରିବାର ଦିନ ନୁହେଁ; କିଂତୁ ଗୋଟିଏ କଥାପ୍ରତି ମୁଁ ତାଂକର ପଦାନୁସାରୀ ସ୍ମୃତିପରାୟଣ ଦେଶବାସୀ-

ମାନଂକୁ ସାବଧାନ କରି ଦେଉଚି । ମାନବସମାଜରେ ଭକ୍ତି ଗୋଟିଏ ବିପଦଜନକ ବସ୍ତୁ । ଭକ୍ତ ବଡ଼ ଅସହିଷ୍ଣୁ । ସେ ନିରାଟ ମିଥ୍ୟାବାଦୀ । ସେ ବହୁତ ଅଦ୍ଭୁତ କୃତି କଳ୍ପନା କରେ ଓ ସତ ବୋଲି କହେ । ନିଜର ଆଦର୍ଶବାଦରେ ଉପାସ୍ୟକୁ ଜଡ଼ିତ କରି ସାଧାରଣଂକ ଆଗେ ଥୁଏ । ମାନବ ସମାଜର ଏ ଗୋଟିଏ ସାଧାରଣ ଦୁର୍ବଳତା ଓ ଦୁରାରୋଗ୍ୟ ବ୍ୟାଧି । ଏ ସଂବଂଧରେ ମୁଁ ଓଡ଼ିଆ ସାହିତ୍ୟର କ୍ରମ ପରିଣାମ ପୁସ୍ତକର ୨ୟ ଭାଗରେ ବହୁତ ଲେଖିଚି । ଏବେ ସୂଚାଇ ଦେଉଚି କେବଳ ସତ୍ୟବାଦୀଂକ ପାଖେ ଛିଡ଼ା ହୋଇଥିବା ରାଧାମୂର୍ତ୍ତି । ସମସ୍ତେ ତ ଜାଣଂତି ଭକ୍ତର କଳ୍ପନାରେ ସେ ଗୋଟିଏ ସତ୍ୟ ରୂପେ ଠିଆ ହୋଇଥିବା ମହା ଅପଚାରର ପ୍ରକାଶ । କୌଣସି ସେବକଂକର ଲକ୍ଷ୍ମୀନାମ୍ନୀ ଗୋଟିଏ ବାଳ-ବିଧବା କନ୍ୟାର ଗର୍ଭପାଇଁ ନିଜେ ୧୮୬୨ ଖ୍ରୀଷ୍ଟାବ୍ଦରେ ସତ୍ୟବାଦୀ ମଂଦିରରେ ପ୍ରତିଷ୍ଠିତ ହୋଉଥିବା ପ୍ରସ୍ତରମୟ ଗୋପୀନାଥ ଦାୟୀ ହୋଇଥିଲେ । ତା'ପରେ ସେଇ ଲକ୍ଷ୍ମୀରେ ଆବିର୍ଭୂତ ହୋଇଥିବା ରାଧା ଏବେ ମଂଦିରରେ ବସିଚଂତି । ସ୍ୱର୍ଗତ ରାଧାନାଥ ରାୟଂକଠାରୁ ଆରଂଭ କରି ଏବର କବି ମାୟାଧର ମାନସିଂହଂକ ପର୍ଯ୍ୟଂତ ସମସ୍ତେ ସେଇ ବ୍ୟଭିଚାରର କଳ୍ପନାରେ ମୁହ୍ୟମାନ ଓ ସେଥିପାଇଁ ସେମାନେ କବି । ସେକଥା ସତ୍ୟ ହୋଇ ନପାରେ ବୋଲି ଆଜି ଯୁକ୍ତି କରି ବସିଲେ ଗୌଡ଼ୀୟ ବୈଷ୍ଣବମାତ୍ରେ ମାରିବେ କି ମରିବେ । ସେଇପରି ମୁଁ ଏବେ ଅନୁସଂଧାନ କରି ଦେଖୁଚି, ୧୬ଶ ଶତାବ୍ଦୀ ପ୍ରାରଂଭରେ ଓଡ଼ିଶାକୁ ସଂକୀର୍ତ୍ତନ କରି କରି ଓ ସେଇ ସଂକୀର୍ତ୍ତନରେ ବାରଂବାର ଅଜ୍ଞାନ ହୋଇ ପଡ଼ି ପଡ଼ି ଆସିଥିବା ଚୈତନ୍ୟଂକ କଥା । ଚୈତନ୍ୟ ସଂସ୍କୃତ ଜାଣିଥିବାର ବା ଜାଣିଥିଲେ ଭଲକରି ଜାଣିଥିବାର କୌଣସି ପ୍ରମାଣ ମିଳୁନାଇଁ । ସେ ଗୌଡ଼ୀୟ ବୈଷ୍ଣବ ନଥିଲେ । ତଥାପି ଶିଷ୍ୟମାନେ ତାଂକ ସଂବଂଧରେ କଣ ନ କହିଚଂତି, କ'ଣ ନ କହୁଚଂତି ? ସେ ମରିବାର ପ୍ରାୟ ୭୦ବର୍ଷ ପରେ ତାଂକ ଜୀବନଚରିତ ଲେଖକ କୃଷ୍ଣଦାସ କବିରାଜ କାଶୀରେ ଥାଇ ଲେଖିଥିଲେ, 'ଚୈତନ୍ୟ ଚରିତାମୃତ' । ସେ ଚରିତକୁ ଅମୃତ କୁହାଯାଇ ପାରେ । କାଇକିନା ସେଉଟା ଭକ୍ତର ପରିପ୍ରଚାର; କିଂତୁ ସେଥିରେ ସତ୍ୟ ଅଛି ବୋଲି ପ୍ରମାଣ କ'ଣ ? ଏବେ କଟକର କାଳିଦାସ ରାୟ ବୋଲି ଜଣେ ଗୌଡ଼ୀୟ ବୈଷ୍ଣବ ସ୍ପଷ୍ଟ ଭାବରେ ମତେ ଗୌଡ଼ୀୟ ବୈଷ୍ଣବ କରିବା ପାଇଁ ମୋ ଘରକୁ ଆସିଥିଲେ । ତାଂକୁ ଏଇପରି ଚୈତନ୍ୟଂକ ଜୀବନୀ ସଂବଂଧରେ ଲିଖିତ କୌଣସି ତଥ୍ୟ ପ୍ରତି ଅଂଗୁଳି ନିର୍ଦ୍ଦେଶ କରି ଏହାର ଭିତ୍ତି କ'ଣ ବୋଲି ପଚାରିବାରେ, ଭକ୍ତିରେ ମୋହଗ୍ରସ୍ତ ରାୟ ମହାଶୟ ମୋତେ କହିଲେ, ''ସେସବୁ ଭକ୍ତମାନଂକ ମନରୁ ବାହାରେ । ସେଥିରେ ପ୍ରମାଣ, ପଚାରିବା ଉଚିତ ନୁହେଁ ।''

ଅନେକ ଦେଖିଥିବେ ସେଦିନ ସ୍ୱର୍ଗତ ଗୋପବଂଧୁଂକ ମର୍ତ୍ତି ଉଦ୍‌ଘାଟନବେଳେ କଟକରେ ପଢ଼ା ହୋଇଥିବା ଗୋଟିଏ ଗୋପବଂଧୁ ସଂବଂଧୀୟ ଇଂରେଜି ଲେଖାରେ ଦେଖିଥିଲି, ଗୋପବଂଧୁଂକର ଏକମାତ୍ର ପୁତ୍ର ୧୯୦୪ ମସିହାରେ ମୃତ୍ୟୁମୁଖରେ ପଡ଼ିଥିଲାବେଳେ ଦେଶରେ କୌଣସିଠାରେ ବନ୍ୟା ହେବାର ଖବର ଆସିଲା । ଗୋପବଂଧୁ ମୁମୂର୍ଷୁ ପୁତ୍ରକୁ ପରିତ୍ୟାଗ କରି ଦେଶରେ ଏତେ ପୁତ୍ର ଭାସି ଯାଉଚଂତି ବୋଲି କହି, କିଛି ଆଉ ନମାନି ବଢ଼ି ଅଂଚଳ ଚାଲିଗଲେ । ସ୍ୱର୍ଗତ ଲିଂଗରାଜ ମିଶ୍ରେ କୌଣସି ଗୋପବଂଧୁ ବାର୍ଷିକ ପତ୍ରରେ ପ୍ରବଂଧରେ ଏହା ଲେଖିଥିଲେ । ତା'ପରେ ରାଧାମୋହନ ଗଡ଼ନାୟକ ଏଇ ଗଳ୍ପ ଧରି କବିତା ଲେଖିଲେ । ଏହିପରି 'ଚୈତନ୍ୟ ଚରିତାମୃତ'ର କଥାପରି ଏହାର ପ୍ରଚାର ଚାଲିଛି । ଲିଂଗରାଜ ବାବୁ

ଗୋପବଂଧୁଂକୁ ସେ ସମୟକୁ ଦେଖି ନଥିଲେ—୧୯୨୧ ମସିହା ପୂର୍ବରୁ ସେ ଭଲକରି ଦେଖିଥିଲେ କି ନା ମୁଁ କହି ପାରୁନାହିଁ । କିଂତୁ ୧୯୦୮ରେ କେଂଦ୍ରାପଡ଼ା, ଯାଜପୁର ବଢ଼ି ପୂର୍ବରୁ ଗୋପବଂଧୁ କଟକରେ 'Young Utkal Association'ର ପ୍ରତିଷ୍ଠା କରିବା ପୂର୍ବରୁ ସେ କୌଣସି ବଢ଼ି, ମରୁଡ଼ିରେ ନିଜକୁ ନିୟୋଜିତ କରିନାହାଂତି । ପୁଣି ମଧ୍ୟ ଗୋପବଂଧୁ କେବେ ଏପରି ହୃଦୟହୀନ ଥିବାର ମୁଁ ଦେଖିନାହିଁ, କିଂବା ହୃଦୟର ଭାବାବେଗ ଲୁଚାଇ ନିଜକୁ ଅନ୍ୟ ପ୍ରକାର ଦେଖାଇହେବା ହୁଏତ ତାଂକର ପ୍ରକୃତି ନଥିଲା । ତାଂକର କବି ହୃଦୟ ଅତି କୋମଳ ଥିଲା । ମୁଁ ଦେଖିଚି—ସ୍ୱର୍ଗତ ରାମଚଂଦ୍ର ଦାସ ମୁକ୍ତାର, ସ୍ୱର୍ଗତ ପଂଡ଼ିତ ମହାମହୋପାଧ୍ୟାୟ ସଦାଶିବ ମିଶ୍ର ଓ ମୋ ଆଗରେ ମଧ୍ୟ ତାଂକ ସ୍ତ୍ରୀଂକ କୋଳରେ ପୁତ୍ରଟିର ଅତିସାରରେ ମୃତ୍ୟୁ ହେଲା । ସେଦିନ ସେ ଓ ତାଂକ ଧର୍ମପତ୍ନୀ ଯେ ବ୍ୟାକୁଳତା ପ୍ରକାଶ କରିଥିଲେ ତା' ଏଠାରେ କହିବା ଅନାବଶ୍ୟକ ।

ସେଇପରି ସେଇ ଇଂରେଜି ପୁସ୍ତକରେ ଲେଖାଥିବାର ଦେଖିଲି ଗୋପବଂଧୁ ପୁତ୍ରର ମୃତ୍ୟୁପରେ ଓ ୧୯୦୮ରେ ବଢ଼ି ପୂର୍ବରୁ କେବେ ଗେରୁଆ ପିଂଧି ସନ୍ୟାସୀ ବେଶରେ ଦେଶକଥା ପ୍ରଚାର କରି ବୁଲୁଥିଲେ । ଏହା ମଧ୍ୟ ସଂପୂର୍ଣ୍ଣ ମିଥ୍ୟା । କଥାଟି ହେଉଚି, ୧୯୦୭ ଆରଂଭରେ ଏଫ୍.ଏ. ପରୀକ୍ଷା ଦେବାପରେ, ବି.ଏ. ପଢ଼ିବାକୁ ଯିବା ପର୍ଯ୍ୟଂତ—ଏଇ ସମୟ ମଧ୍ୟରେ ମୁଁ କେବେ କେବେ ପ୍ରଚାରକ ଅନଂତ ମିଶ୍ରଂକୁ, କେତେବେଳେ ପୁଣି ସ୍ୱର୍ଗତ ପଂଡ଼ିତ ଫକୀର ମିଶ୍ରଂକୁ ସଂଗରେ ଧରି ସନ୍ୟାସୀ ବେଶରେ ବଂଗଦେଶର ସେକାଳ ବିପ୍ଳବୀମାନଂକ ପ୍ରେରଣା ଘେନି ସ୍ୱଦେଶୀ ପ୍ରଚାରକରି ଗେରୁଆ ପିଂଧି ବୁଲୁଥିଲି । ଗୋପବଂଧୁ ସେତେବେଳେ ପୁରୀରେ ଓକିଲ ଥିଲେ । ତାଂକର ପ୍ରେରଣା ମଧ୍ୟ ଏଥିରେ ନଥିଲା ନୁହେଁ ।

ତେଣୁ କହେ ଗୋଦାବରୀଶ ବହୁ ଭକ୍ତଂକର ଉପାସ୍ୟ ପୁରୁଷ । ଭକ୍ତମାନେ ତାଂକୁ ଏପରି ବିପଦରୁ ରକ୍ଷା କରଂତୁ ।

କ୍ୟାଂପ—ଶ୍ରୀରାମଚଂଦ୍ରପୁର, ପୁରୀ,
ତା, ୧୩/୭/୧୯୫୮

## (୧୦) ସ୍ୱର୍ଗତ ପଂଡ଼ିତ ଲିଂଗରାଜ ମିଶ୍ର

ମତେ ଛାଡ଼ି ପଂଡ଼ିତ ଲିଂଗରାଜ ବହୁ ଆଗରୁ ଚାଲିଗଲେ । ସେ ମୋଠାରୁ ୧୧ବର୍ଷ ସାନ । ସେ ମୋର ନିଜ ଗ୍ରାମବାସୀ । ତାଂକର ପିତା ଶ୍ରୀ ନୀଳକଂଠ ମିଶ୍ରେ ଜଣେ ସେ କାଳର ମଧ୍ୟଭର୍ଣ୍ଣାକ୍ୟୁଲର ସ୍କୁଲର ପଂଡ଼ିତ ଥିଲେ । ସଂସ୍କୃତ ସେ ଜାଣି ନଥିଲେ । ତଥାପି ଓଡ଼ିଆ ଭାଷାର ବ୍ୟାକରଣାଦିରେ ତଥା ସେକାଳ ମଧ୍ୟଭର୍ଣ୍ଣାକ୍ୟୁଲର ସ୍କୁଲର ଗଣିତରେ ତାଂକର ବିଶେଷ ଦକ୍ଷତା ଥିଲା ।

ଆମ ଗ୍ରାମରେ ସେ କାଳର ସ୍ୱର୍ଗତ ପଂଡ଼ିତ ହରିହର ଦାସ ଗୋଟିଏ ମଧ୍ୟ-ଭର୍ଣ୍ଣାକ୍ୟୁଲର ସ୍କୁଲ ବସାଇ ସେଇ ସୂତ୍ରରେ ବିଦ୍ୟା ଓ ବିଦ୍ୟାଳୟ ପ୍ରଚାରରେ ଖୁବ୍ ପ୍ରଯତ୍ନଶୀଳ ଥିଲେ । ମୋର ଯେତେଦୂର ମନେହୁଏ, ସେ ଏହାଂକୁଇ ସେ ସ୍କୁଲର ୨ୟ ଶିକ୍ଷକରୂପେ ବାଛିଥିଲେ । ବିବାହପରେ ସଂତାନହୀନ ଅବସ୍ଥାରେ ନୀଳକଂଠ ମିଶ୍ରଂକର ପ୍ରଥମ ପତ୍ନୀର ବିୟୋଗ

ହୋଇଥିଲା । ତା'ପରେ ନୀଳକଂଠ ମିଶ୍ରେ ସେ କାଳର ଭୁବନେଶ୍ୱରର ମଧ୍ୟଭର୍ଣ୍ଣାକ୍ୟୁଲର ସ୍କୁଲକୁ ହେଡ୍‌ପଂଡ଼ିତ ରୂପେ ବଦଳି ହୋଇଥିଲେ । ଲିଂଗରାଜ ପିଲାଦିନେ ସେଇଠାରେ ଶିକ୍ଷିତ ହୋଇ ସେଇଠାରୁ ବୃତ୍ତି ପାଇ ପୁରୀ ଜିଲ୍ଲା ସ୍କୁଲରେ ଭର୍ତ୍ତି ହୋଇଥିଲେ ।

ମୋ ମନେଅଛି, ମୁଁ ସତ୍ୟବାଦୀ ସ୍କୁଲରେ ପ୍ରଧାନ ଶିକ୍ଷକ (ସେକାଳେ ସୁପରିଣ୍ଟେଣ୍ଡେଂଟ) ହେବାର କିୟତ୍ ପୂର୍ବରୁ ସେ ଜିଲ୍ଲାସ୍କୁଲ ଉପର କ୍ଲାସ୍‌ରେ ଥାଇ ଇଂରେଜୀ ଭାଷାର ରଚନା ଓ ଅନୁବାଦ ପ୍ରଭୃତି ଶିଖିବାକୁ ମୋ ପାଖକୁ ବରାବର ଆସୁଥିଲେ । ମୁଁ ସେତେବେଳେ ସ୍ପଷ୍ଟ ଦେଖି ପାରିଥିଲି, ତାଂକର ବୁଦ୍ଧି ଥିଲା ବଡ଼ ବିଚକ୍ଷଣ ଓ ଗ୍ରହଣ କରିବାର ଶକ୍ତି ମଧ୍ୟ ଥିଲା ଟିକିଏ ଅନନ୍ୟସାଧାରଣ । ସେଇ ସମୟରେ ଗୋପବଂଧୁ ବାବୁଂକ ସଂଗେ ମୁଁ ତାଂକୁ ନେଇ ମେଳାପରେ ଦେଖାକରାଇ ଦେଇଥିଲି ଓ ଏସବୁ କଥା ପରୋକ୍ଷରେ ପଂଡ଼ିତ ଗୋପବଂଧୁ ଦାସଂକୁ କହିଥିଲି । ଏହାର କାରଣ ହେଉଚି, ଗୋପବଂଧୁ ବାବୁଂକ ସଂଗେ ମୁଁ, ଆଚାର୍ଯ୍ୟ ହରିହର ଦାସ ଓ ପ୍ରଚାରକ ଅନଂତ ମିଶ୍ର ଏଇ ତିନିଜଣ ଯାକ ସେତେବେଳକୁ ମୁଖ୍ୟଭାବରେ ଏଇପରି ବୁଦ୍ଧିମାନ୍ ବିଚକ୍ଷଣ ବାଳକମାନଂକୁ ଧରି ଦଳକରି ଦେଶରେ ସତ୍ୟବାଦୀ ସ୍କୁଲପରି ଗୋଟିଏ ଅନୁଷ୍ଠାନ ଗଢ଼ିବାକୁ ବଦ୍ଧପରିକର ଥିଲୁ ଓ ସେଥିପାଇଁ ବ୍ୟକ୍ତି ସଂଗ୍ରହ କରୁଥିଲୁ । ଅନେକ ବ୍ୟକ୍ତିଂକ କଥା ଆଜି ମନେପଡୁଚି । କିଂତୁ, ବିଶେଷ ଭାବରେ ମନେପଡୁଚି ଆଗ ପଂଡ଼ିତ ଗୋଦାବରୀଶ ଓ ସଂଗେ ସଂଗେ ପଂଡ଼ିତ ଲିଂଗରାଜଂକ କଥା ।

ପଂଡ଼ିତ ଲିଂଗରାଜ ଖୁବ୍ ଯୋଗ୍ୟତାରେ କଟକ କଲେଜରୁ ଉତ୍ତୀର୍ଣ୍ଣ ହୋଇ କଲିକତା ବିଶ୍ୱବିଦ୍ୟାଳୟରେ ସଂସ୍କୃତରେ ଏମ୍.ଏ. ପରୀକ୍ଷା ଦେଇ ଏପିଗ୍ରାଫି (ଶିଳାଲିପି ଓ ତାମ୍ରଲିପି ପ୍ରଭୃତି) ବିଭାଗରେ ବିଶ୍ୱବିଦ୍ୟାଳୟର ପ୍ରଥମସ୍ଥାନ ଅଧିକାର କରିଥିଲେ । ବିଶ୍ୱବିଦ୍ୟାଳୟରେ ଯେ ପ୍ରଥମେ ହୁଏ, ସେ ସେଥିପାଇଁ ଗୋଟିଏ ସ୍ୱର୍ଣ୍ଣପଦକ ପୁରସ୍କାର ପାଏ । ଯେ ଦ୍ୱିତୀୟ ହୁଏ, ସେ ପାଏ ଗୋଟିଏ ରୌପ୍ୟ ପଦକ । ଲିଂଗରାଜ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ ମଧ୍ୟ ସେ ପ୍ରଥମ ସ୍ଥାନରେ ଏକା ନଥିଲେ । ତାଂକ ସଂଗେ ଆଉ ଜଣେ ଥିଲେ । ସେ ହେଉଚଂତି ଏବର ସ୍ୱନାମଧନ୍ୟ ଡକ୍ଟର ବିନୟତୋଷ ଭଟ୍ଟାଚାର୍ଯ୍ୟ । ଅନେକେ ଚିହ୍ନିଥିବେ ଏଇ ବିନୟତୋଷ ହେଉଚଂତି, ସ୍ୱର୍ଗତ ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀଂକ ପୁତ୍ର ଓ ବରୋଦାରେ ଗାଇକୋଓ୍ୱାର୍ଡ଼ ଓରିଏଂଟାଲ ସିରିଜର ଏ ଥିଲେ ସଂପାଦକ । ସେଇ ସୂତ୍ରରେ ପୂର୍ବ ଭାରତୀୟ ବୌଦ୍ଧତନ୍ତ୍ର ଶାସ୍ତ୍ରର ବହୁଗ୍ରଂଥ ସେ ଆବିଷ୍କାର ଓ ପ୍ରକାଶ କରିଚଂତି ।

ସେ ବର୍ଷ ତେଣୁ ସ୍ୱର୍ଣ୍ଣପଦକ ତଥା ରୌପ୍ୟପଦକ ଯୋଡ଼ିକଯାକର ମୂଲ୍ୟ ମିଶାଇ ବିଶ୍ୱବିଦ୍ୟାଳୟ ଦୁଇଟି ସ୍ୱର୍ଣ୍ଣପଦକ ତିଆରି କରି ଲିଂଗରାଜ ମିଶ୍ର ଓ ବିନୟତୋଷ ଭଟ୍ଟାଚାର୍ଯ୍ୟ ଦୁହିଂକୁ ପ୍ରଦାନ କରିଥିଲେ ।

ଲିଂଗରାଜ ଏମ୍.ଏ. ପାସ୍ କରିସାରି ଆମମାନଂକ ପାଖେ ଆମବଣରେ ଆସି ପହଂଚିଲେ । ସେତେବେଳକୁ ଆମେମାନେ ସମସ୍ତେ ସତ୍ୟବାଦୀ ସ୍କୁଲରେ କେଂଦ୍ରୀକୃତ । ଲିଂଗରାଜଂକର ଯୋଡ଼ିଏ କର୍ତ୍ତବ୍ୟ ଥିଲା । ପିତାଂକ କରଜ ଶୁଝିବା ଓ ନିଜର ଭିଣୋଇ ଶ୍ରୀ ଗୋବିଂଦ ତ୍ରିପାଠୀଂକୁ ପଢ଼ାଇବା । ତାଂକର ପିତା ଜୀବିତ ଥିଲେ ମଧ୍ୟ ସେ ବଡ଼ ରୁଗ୍‌ଣ ଥାଂତି । ତେଣୁ ଆମେମାନେ ତାଂକର ଏ ଭିଣୋଇକୁ ବିଶ୍ୱବିଦ୍ୟାଳୟରେ ପଢ଼ାଇବାର ଭାର

ସତ୍ୟବାଦୀ ସ୍କୁଲରୁ ଗ୍ରହଣ କଲୁ । ବହୁ ବିଚାର ପରେ ପିତାଂକ ଋଣ ପରିଶୋଧ ପାଇଁ ତାଂକୁ କେତେଦିନ ଚାକିରି କରିବାକୁ ଛାଡ଼ି ଦିଆଗଲା ।

ଠିକ୍ ପିତାଂକ କରଜତକ ଶୁଝିସାରିବା ପର୍ଯ୍ୟଂତ ସେ ଏ ଚାକିରିରେ ଥିଲେ । ଏ ଚାକିରି ସେ ଛାଡ଼ିଥିଲେ ୧୯୨୧ ସେପ୍ଟେଂବର ମାସରେ ।

ଏଣେ ୧୯୨୧ ଜାନୁଯାରୀରୁ ଦେଶରେ ଅସହଯୋଗ ଆଂଦୋଳନ ଆରଂଭ ହୋଇ ଯାଇଥିଲା ଓ ସତ୍ୟବାଦୀ ସ୍କୁଲ ସେଇ ଜାନୁଯାରୀ ୧ମ ଭାଗରେ ଜାତୀଯ ବିଦ୍ୟାଳୟରେ ପରିଣତ ହୋଇ ସେତେବେଳେ ସମସ୍ତ ଓଡ଼ିଶା ପାଇଁ କଳ୍ପନା କରାଯାଇଥିବା ଏକ ଜାତୀଯ ବିଶ୍ୱବିଦ୍ୟା-ଳଯର କେଂଦ୍ରରୂପେ 'ସତ୍ୟବାଦୀ ବିହାର' ନାମରେ ପ୍ରତିଷ୍ଠିତ ହୋଇଯାଇଥିଲା । ଲିଂଗରାଜ ସରକାରୀ ଚାକିରିରୁ ଆସି ଏଇ 'ବିହାର' ତଥା ଏଇ ବିଶ୍ୱବିଦ୍ୟାଳୟରେ ଯୋଗ ଦେଇଥିଲେ ।

ତା'ପରେ ଦେଶରେ କଂଗ୍ରେସ କାର୍ଯ୍ୟର ପ୍ରସାର ଅନୁସାରେ ସେ ପୁରୀଜିଲ୍ଲା କଂଗ୍ରେସ କମିଟିରେ ସଂପାଦକ ରୂପେ କେତେଦିନ କାର୍ଯ୍ୟ କରିଥିଲେ । ସେ ବଡ଼ ପିତୃଭକ୍ତ ଥିଲେ । ତାଂକର ପିତା ଅତ୍ୟଂତ ରୁଗ୍ଣ ହୋଇ ବହୁକାଳ ଜୀବିତ ଥିଲେ । ସେଥିପାଇଁ ପିତା ବଂଚିଥିବା-ତକ ସେ କେବେ ଜେଲ ଯିବାକୁ ଇଚ୍ଛାପ୍ରକାଶ କରିନଥିଲେ । ମାତ୍ର ପିତାଂକ ମୃତ୍ୟୁ ପରେ ସେ ସରକାର ବିରୁଦ୍ଧରେ ଲଢ଼ିବାରେ ନାନାଭାବରେ ବାରଂବାର କାରାବରଣ କରିଥିଲେ ।

ଗୋପବଂଧୁ ଦାସ ଥିଲେ ୧୯୨୩ରୁ କଂଗ୍ରେସ ଭିତରେ ସି.ଆର୍. ଦାସଂକ ପ୍ରତିଷ୍ଠିତ ସ୍ୱରାଜ୍ୟ ପାର୍ଟି ମତାବଲଂବୀ ଲୋକ । ମୁଁ ସେତେବେଳେ ହଜାରିବାଗ୍ ଜେଲରେ ଥାଇ ବହୁଦିନ ତାଂକ ସଂଗେ ତଥା ସେଠାରେ ଥିବା ଅନ୍ୟାନ୍ୟ ବନ୍ଧୁମାନଂକ ସଂଗେ ବହୁ ଆଲୋଚନା କରି ଶେଷକୁ ସ୍ୱରାଜପାର୍ଟିରେ ଯୋଗଦେଇ ଆସେଂବ୍ଲିକୁ ଯିବାପାଇଁ ସ୍ପଷ୍ଟ ନିର୍ଦ୍ଦେଶ ପାଇଥିଲି ଓ ସେଇ ନିର୍ଦ୍ଦେଶମତେ ୧୯୨୪ରେ କେଂଦ୍ର ଆସେଂବ୍ଲିକୁ ଯାଇଥିଲି । ସେଇ ସ୍ୱରାଜପାର୍ଟି ୧୯୨୭ବେଳକୁ କଂଗ୍ରେସରେ ମିଶିଯାଇ ବ୍ୟବସ୍ଥାସଭାମାନଂକର କଂଗ୍ରେସପାର୍ଟି ରୂପେ ପରିଣତ ହୋଇଯାଇଥିଲା । ସେତିକିବେଳେ ପଂଡ଼ିତ ଗୋପବଂଧୁ ଦାସ ଲିଂଗରାଜ ମିଶ୍ରଂକୁ ପୁରୀରୁ ବିହାର-ଓଡ଼ିଶା ବ୍ୟବସ୍ଥାସଭା ପାଇଁ ଛିଡ଼ା କରାଇଥିଲେ ଓ ବଡ଼ କୃତିତ୍ୱର ସହିତ ନିର୍ବାଚିତ କରାଇଥିଲେ ।

ଗୋପବଂଧୁ ଦାସଂକ ମୃତ୍ୟୁ ଘଟିଲା ୧୯୨୮ ମସିହା ଜୁନ୍ ମାସରେ । ସେତେବେଳକୁ ସତ୍ୟବାଦୀ ସ୍କୁଲର ଆଉ ବିଶେଷ କିଛି ଦେଖିବା ଭଳି ଅବଶେଷ ନଥିଲା । କେବଳ ଥିଲା ସତ୍ୟବାଦୀ ଛାପାଖାନାଟି । ତା' ପୁଣି ସତ୍ୟବାଦୀରୁ ପୁରୀ ଓ ତା'ପରେ ପୁରୀରୁ କଟକ ଆସି ଯାଇଥିଲା । ମଲାବେଳେ ପଂଡ଼ିତ ଗୋପବଂଧୁ ଏଇ ଛାପାଖାନାଟିକୁ ସେ ଏହା ପୂର୍ବରୁ ନିଜେ ଉପସଭାପତି ରୂପେ ଯୋଗ ଦେଇଥିବା ପଂଜାବର ଲୋକସେବକ ସମାଜ ହାତେ ଛାଡ଼ି ଦେଇଥିଲେ । ସେଇ ସଂପର୍କରେ ସେ ନିଜ ଉଇଲରେ, ମୋର ଯେତେଦୂର ମନେହୁଏ, ଅନ୍ୟାନ୍ୟମାନଂକ ଭିତରେ ଲିଂଗରାଜ ମିଶ୍ରଂକ ନାମ ଉଲ୍ଲେଖ କରିଯାଇଥିଲେ ।

ଗୋପବଂଧୁ ବାବୁ ମଲାବେଳକୁ ସତ୍ୟବାଦୀରୁ ପ୍ରଥମ ପ୍ରକାଶିତ ହୋଇଥିବା ସାପ୍ତାହିକ ସମାଜର ଥିଲେ ସଂପାଦକ । ତାଂକ ମୃତ୍ୟୁପରେ ମୁଁ ଓ ସ୍ୱର୍ଗତ ପଂଡ଼ିତ ଗୋଦାବରୀଶ ମିଶ୍ର

ପରେ ପରେ ସଂପାଦକ ହୋଇଥିଲୁ । ଏଇ ସମୟରେ ପଂଜାବର ଲୋକସେବକ ସମାଜର ଶ୍ରୀ ମୋହନଲାଲ ଆସି ମତେ ଲୋକସମାଜର ସଭ୍ୟ ହୋଇ "ସମାଜ"ର ସମସ୍ତ ଭାର ଗ୍ରହଣ କରିବାକୁ ଅନୁରୋଧ କରିଥିଲେ; କିଂତୁ ନାନା କାରଣରୁ ମୁଁ ସେଥିରେ ରାଜି ହୋଇ ନଥିଲି । କିଛିଦିନ ପରେ ପଂଡ଼ିତ ଲିଂଗରାଜ ମିଶ୍ର ସେଇ ସେବକସମାଜ ମେଂବର ଓ ସେଇ ହିସାବରେ ସମାଜର ମୁଖ୍ୟ ବ୍ୟକ୍ତି ଓ ସଂପାଦକ ହେଲେ ।

୧୯୩୨ ପ୍ରାରଂଭରେ ଦେଶରେ ହେଲା ସତ୍ୟାଗ୍ରହ । ସେଇ ସତ୍ୟାଗ୍ରହ ପରିଚାଳନା ନିମଂତେ ମୁଁ ଜେଲ ଯିବାବେଳେ ତାଂକୁ ଓଡ଼ିଶାର ଡିରେକ୍ଟର ପଦରେ ରଖିଦେଇ ଜେଲ ଯାଇଥିଲି ।

ଏହାପରେ କାରାବରଣ ଓ ବ୍ୟବସ୍ଥାପକତା ଭିତରେ ବହୁଦିନ ରହି ଦେଶର ସ୍ୱାଧୀନତାର ଆଦ୍ୟପ୍ରଷ୍ଠରେ ୧୯୪୬ଠାରୁ ୧୯୫୨ ପର୍ଯ୍ୟଂତ ସେ ହୋଇଥିଲେ ଓଡ଼ିଶାର ଶିକ୍ଷା ଓ ସ୍ୱାସ୍ଥ୍ୟମଂତ୍ରୀ । ତା'ପରେ ସେ ନିର୍ବାଚିତ ହେଲେ ପାର୍ଲିଆମେଂଟର ଲୋକସଭାକୁ । ଏବେ ମୃତ୍ୟୁ ପର୍ଯ୍ୟଂତ ସେ ସେଇ ପାର୍ଲିଆମେଂଟର ରାଜ୍ୟସଭାରେ ମେଂବର ଥିଲେ ।

ସେ ବଡ଼ ସୁସ୍ଥ, ସବଳ ଓ ସୁପୁରୁଷ ଥିଲେ । ଜୀବନର ଶେଷଆଡ଼କୁ କେତେକ ବର୍ଷ ସେ ରୋଗ ଯଂତ୍ରଣାରେ ବହୁ ଦୁଃଖ ପାଇଥିଲେ; କିଂତୁ ତାଂକର ଉତ୍ସାହ ଭଂଗୀ ଓ ନିର୍ମଳ ଦୃଷ୍ଟି କେବେ ଆବିଳ ହୋଇ ନଥିଲା । ସେ ଥିଲେ ସର୍ବଦା କର୍ମକ୍ଷମ ଓ କର୍ମଠ ତଥା ଅତ୍ୟଂତ ସଦାଳାପୀ ଓ ସମଦର୍ଶୀ । ସବୁପ୍ରକାର ଲୋକଂକର ଉପକାର କରିବାରେ ସେ ସର୍ବଦା ତତ୍ପର ଥିଲେ । ସାମାଜିକ ଜୀବନରେ ତାଂକ ସାମ୍ୟଭାବ ଓ ସମବେଦନା ଗୋଟିଏ ସ୍ମରଣୀୟ ବସ୍ତୁ । ସେଥିପାଇଁ ଲୋକେ ତାଂକୁ ବହୁଦିନ ମନେ ରଖିବେ । (ଲେଖା—୨୧/୧୨/୫୭)

## ଉତ୍କଳମଣି ପଂଡ଼ିତ ଗୋପବଂଧୁ ଦାସ

ପଂଡ଼ିତ ଗୋପବଂଧୁଂକର ମରିବା ଦିନ ଆଜି ୩୨ବର୍ଷ ପୂରିଗଲା । ମୁଁ ତାଂକର ଶ୍ରେଷ୍ଠ ସହକର୍ମୀ । ମୁଁ ଆଜି ଲେଖୁଛି । ଗୋପବଂଧୁ ବଡ଼ ଦେଶସେବୀ ଓ ଦେଶପ୍ରାଣ ଥିଲେ । କେବଳ ଦେଶ ଓ ଲୋକଂକ ପାଇଁ ବଂଚିଥିଲେ, କହିଲେ ହୁଏ । ସେ ଓଡ଼ିଶାରେ ଗୋଟିଏ ନୂତନ ଯୁଗ ପ୍ରବର୍ତ୍ତକ ଥିଲେ । ସେତିକି ନୁହେଁ ସେ ଥିଲେ ଗୋଟିଏ ନିର୍ଦ୍ଦିଷ୍ଟ ପରଂପରାର ପ୍ରତୀକ ।

ପୁରୀର ଜଗନ୍ନାଥ ସେଇ ପରଂପରାଟିର ରୂପ କହିଲେ ଚଳେ । ଚାରି ପାଂଚ ହଜାର ବର୍ଷ ତଳରୁ ପୁରୀ ହେଉଛି, 'ପୁରୁଷୋତ୍ତମ କ୍ଷେତ୍ର' । କିଛି କାଳପରେ ସେଥିରେ ମିଶିଥିଲା ଜଗନ୍ନାଥଂକର ତାତ୍ତ୍ୱିକ ରୂପ । ଏ ଦୁଇଟି ମିଶି ପୁରୀ ଥିଲା କେବଳ ଭାରତରେ କାହିଁକି ପୃଥିବୀରେ ବୈଜ୍ଞାନିକ ଧର୍ମ କେଂଦ୍ର । ମାନବସମାଜ ତଥା ସଂସ୍କୃତିର ଏହାଥିଲା ଯଥାର୍ଥ ପୀଠଭୂମି ।

ସଭ୍ୟତା ଓ ସଂସ୍କୃତିର ଏଇ ମୁଖ୍ୟ ଓ ବଳିଷ୍ଠ କେଂଦ୍ର ମୋଗଲ ଶାସନ କାଳରେ (୧୫୯୦) ନାନା ଧର୍ମାଂଧ ବିପ୍ଳବର ସମ୍ମୁଖୀନ ହୋଇ କ୍ରମେ ଜାତୀୟତାର ଏକ ପୀଠରେ

ପରିଣତ ହେଲା । ୧୮୫୭ ବେଳେ ତଥାକଥିତ ସିପାହୀ ବିଦ୍ରୋହ ନାମରେ ଯେଉଁ ଜାତୀୟ ବିଦ୍ରୋହ ଉଠିଥିଲା ସେଥିରେ ଯଥାର୍ଥ ଧର୍ମଗୁରୁ—ଏପରିକି ହିଂଦୁ ମୁସଲମାନ ମିଳନର ପୂଣ୍ୟ ପ୍ରକାଶରୂପେ ଉଠିଥିଲେ, ପୁରୀର ଚଂଦନ ହଜୁରୀ । ସେତେବେଳେ ଓଡ଼ିଶାର ଅବସ୍ଥା ଯାହା ଥିଲା, ସେଥିରେ ଚଂଦନ ହଜୁରୀଂକୁ ହୁଏତ ସ୍ପଷ୍ଟ ଜାତୀୟତାର ପ୍ରତୀକରୂପେ କେହି ମନେରଖି ନଥାଇ ପାରଂତି । କିଂତୁ ଯଥାର୍ଥରେ ସେ ବିଦ୍ରୋହରେ ତାଂକ ବ୍ୟକ୍ତିତ୍ୱ ତଥା ଦୂରଦୃଷ୍ଟିର ପଟାଂତର ନାହିଁ ।

ଏହାପରେ ସାଂସ୍କୃତିକ ଭାବରେ ସେଇ ଜାତୀୟତାର ଯେପରିକି ବଂଶଧର ଥିଲେ, ସ୍ୱର୍ଗତ ସ୍ୱନାମଧନ୍ୟ ପଂଡ଼ିତ ହରିହର ଦାସ । ଅବଶ୍ୟ ୩୧ବର୍ଷ ବୟସରେ ତାଂକର ମୃତ୍ୟୁ ହୋଇଥିଲା; କିଂତୁ ତାଂକର ଭାରତବ୍ୟାପୀ ସଂସ୍କୃତ ଓ ହିଂଦୀରେ ବାଗ୍ମୀତା ତଥା ପୁରୀରେ ସଂସ୍କୃତ ବିଶ୍ୱବିଦ୍ୟାଳୟ ବସାଇବାର ଦୂରଦୃଷ୍ଟି ଏବେ ମଧ୍ୟ ଲୋକେ ମନେ ରଖିଚଂତି । ଏ କ୍ଷେତ୍ରରେ ତାଂକର ଉତ୍ତରାଧିକାରୀ ଥିଲେ ପୁରୀର ସୁପରିଚିତ ମୁକ୍ତାର ସ୍ୱର୍ଗତ ରାମଚଂଦ୍ର ଦାସ । ସେ ମଧ୍ୟ ହରିହରଂକ ପରି ୧୯୦୬ରେ ମାତ୍ର ୩୯ ବର୍ଷ ବୟସରେ ଇହଲୀଳା ସାଂଗ କରିଥିଲେ । ଗୋପବଂଧୁ ଏଇ ରାମଚଂଦ୍ରଂକ ସାକ୍ଷାତ ଓ ପଟ୍ଟଶିଷ୍ୟ । ହରିହରଂକୁ ଗୋପବଂଧୁ ଦେଖି ନଥିଲେ । କାରଣ ହରିହରଂକ ମୃତ୍ୟୁ ୧୮୭୪ରେ । ମାତ୍ର ଗୋପବଂଧୁଂକ ଜନ୍ମ ୧୮୭୭ ମସିହାରେ, କିଂତୁ ପିଲାଦିନୁ ସେ ହରିହରଂକର ଅତ୍ୟଂତ ଭକ୍ତ ଥିଲେ ଓ ବର୍ଷକୁ ବର୍ଷ କୁମାରପୂର୍ଣ୍ଣମୀ ଦିନ ହରିହରଂକ ମୃତ୍ୟୁଦିବସ ପାଳନ କରି ସୁଂଦର ବକ୍ତୃତାମାନ ଦେଇ ବୁଲୁଥିଲେ । ବିଶେଷରେ ସାକ୍ଷୀଗୋପାଳ ପାଖ ଶ୍ରୀରାମଚଂଦ୍ରପୁର ହରିହରଂକ ଜନ୍ମସ୍ଥାନ ଥିବାରୁ ସେଇ ଗ୍ରାମ ତାଂକର ଏଇ ବକ୍ତୃତାର କେଂଦ୍ର ଥିଲା । ନିଜେ ହରିହର ମୋର ପିତୃବ୍ୟ । ମୁଁ ତାଂକୁ ଦେଖିନାହିଁ; ମାତ୍ର କୈଶୋରରେ ସେଇ ହରିହରଂକ ଜନ୍ମ ଉପଲକ୍ଷରେ ଗୋପବଂଧୁଂକ ବକ୍ତୃତା ଶୁଣିଚି । ଆଜି ସେ ବକ୍ତୃତା ମନେପଡ଼ିଲେ ମୋର ଶରୀରରେ ରୋମାଂଚ ହୁଏ । ଶ୍ରୋତାମାନେ ସେଥିରେ ଯେପରି ପ୍ରଭାବିତ ହୋଇଯାଂତି, ତା'ର ସ୍ମୃତି ମଧ୍ୟ ଆଜି ମୋ ପକ୍ଷରେ ଅତି ମହନୀୟ । ପିଲାଦିନୁ ଗୋପବଂଧୁ ଅତ୍ୟଂତ ସୁବକ୍ତା ଥିଲେ ଓ ଶିକ୍ଷିତ କଥା ସାଧାରଣ ସମସ୍ତେ ତାଂକ ବକ୍ତୃତାରେ ମୁଗ୍ଧ ଓ ପ୍ରାଣିତ ହୋଇ ଯାଉଥିଲେ ।

ମୋ ମନେଅଛି, କଟକ କଲେଜରେ ପଢ଼ିବାଦିନୁ ନାନା ଲୋକସେବା ଅନୁଷ୍ଠାନମାନ ଗଢ଼ି ସେ ତହିଁରେ ଆତ୍ମନିୟୋଗ କରୁଥିଲେ । ସେ ସବୁ ଅନୁଷ୍ଠାନମାନ, ସେତେବେଳକୁ ଚାହିଁଲେ, ଅତି ସାଧାରଣ ଥିଲା । ଥରେ ସେ ଗୋଟିଏ ଦଳ ତିଆରି କରି ସହରରେ ହଇଜା ରୋଗୀମାନଂକୁ ଚିକିତ୍ସା କରୁଥିଲେ ଓ କେହି ମୋର ବୋଲି ନ କହୁଥିବା ଶବମାନଂକୁ ଖୋଜି ଖୋଜି ସତ୍କାର କରୁଥିଲେ ।

ସେ ଥିଲା, ଇଂରେଜ ଆଇ.ସି.ଏସ୍‌ଂକ ଦିନ । ଏଇ ଆଇ.ସି.ଏସ୍‌ମାନେ ସାଧାରଣତଃ ଜିଲ୍ଲାମାଜିଷ୍ଟ୍ରେଟ୍ ରୂପେ ସେକାଳର ଦୃଢ଼ ଇଂରେଜ ଶାସନ କାଳର ଗୋଟିଏ ଗୋଟିଏ ଅଂଶ ଥିଲେ । ତାଂକ ତଳେ ଯେଉଁ ଡେପୁଟି ମାଜିଷ୍ଟ୍ରେଟ୍‌ମାନେ ଥିଲେ, ସେମାନେ ଏଇ ଜିଲ୍ଲାମାଜିଷ୍ଟ୍ରେଟଂକ ଭୟରେ କୌଣସି ଦୁର୍ଭିକ୍ଷର ରିପୋର୍ଟ ଦେଉ ନଥିଲେ । ଅନାହାର ମୃତ୍ୟୁ କଥା ଲେଖି ରିପୋର୍ଟ ଦେବା ତ ଦୂରର କଥା ।

ଏ ଗ୍ୟାରେଟ୍ ବୋଲି କଟକରେ ଏଇପରି ଜଣେ ଜିଲ୍ଲା ମାଜିଷ୍ଟ୍ରେଟ ଥିଲେ । ସେ ଏ ଦେଶୀ ଲୋକଂକୁ ଘୃଣା କରୁଥିଲେ । ଏହା ୧୯୦୭ ଓ ୧୯୦୮ ସାଲର କଥା, ନଇବଢ଼ି ହେଲା । ଗୋପବଂଧୁ ଜ୍ୱରାକ୍ରାଂତ ଥାଇ ମଧ୍ୟ ଆମମାନଂକୁ ସଂଗରେ ଧରି କେଂଦ୍ରାପଡ଼ା ଓ ଯାଜପୁର ବଢ଼ିଅଂଚଳକୁ ନୌକାରେ ଚୂଡ଼ା, ଚାଉଳ ଧରି ଚାଲିଲେ । ଏଇ ଚୂଡ଼ା-ଚାଉଳ ଅବିଶ୍ରାଂତ ବୃଷ୍ଟି ଭିତରେ ମାଗି ବୁଲୁଥିଲେ, ଅନ୍ୟମାନଂକ ଭିତରେ ସ୍ୱର୍ଗତ ଅଭିରାମ ଭଂଜ, ଏମ୍.ଏ. ଓ ସ୍ୱର୍ଗତ ବ୍ରଜସୁଂଦର ଦାସ, ବି.ଏ. । ଏ ସମସ୍ତଂକୁ ମିଶାଇ ଏଥିପାଇଁ ପଂଡ଼ିତ ଗୋପବଂଧୁ ୟଂଗ ଉତ୍କଳ ଆସୋସିଏସନ୍ (Young Utkal Association) ବୋଲି ଗୋଟିଏ ଅନୁଷ୍ଠାନ ଗଢ଼ି ପକାଇଥିଲେ ।

ନୌକାରେ ଏଇ ଚୂଡ଼ା ଚାଉଳ ବଂଟାବେଳକୁ ବଢ଼ିପାଣି ପ୍ରାୟ ଚାରିଫୁଟ କମି ଯାଇଥିଲା । ହଇଜା ମଲ୍ଲମାନେ ସ୍ଥାନେ ସ୍ଥାନେ ଗଛ ଉପରୁ ପଡ଼ି ଏ ବଢ଼ିରେ ଭାସି ଯାଉଥିଲେ । ତଥାପି ସେଇ ବାଢ଼ିମଢ଼ାଂକ ଭିତରେ ଏଇ ସାହାଯ୍ୟର ନୌକା ଚାଲୁଥିବାର ଆଜି ମନେପଡୁଚି । ଗୋପବଂଧୁଂକ ପ୍ରେରଣାରେ ଏସବୁ କଷ୍ଟକାର୍ଯ୍ୟ ସେତେବେଳେ ଜଣାପଡୁ ନଥିଲା ।

ନଇବଢ଼ି ପରେ ହେଲା ମରୁଡ଼ି । ଏସବୁ ବିଷୟ ଗୋପବଂଧୁ ସେତେବେଳେ କଲିକତାର ଷ୍ଟେଟ୍ସ୍‌ମ୍ୟାନ୍ ଖବରକାଗଜରେ ଛପାଇ ଟହଲ ପକାଇଦେଲେ । ଷ୍ଟେଟ୍ସ୍‌ମ୍ୟାନ୍ ପ୍ରତିନିଧି ବଢ଼ି ମରୁଡ଼ି ଅଂଚଳରେ ଆସି ନିଜେ ବୁଲିଲେ । କଟକରେ ସଭା ହେଲା । ଜିଲ୍ଲା ମାଜିଷ୍ଟ୍ରେଟ ଗ୍ୟାରେଟ୍ ସାହେବ ରାଗରେ ଗରଗର ହେଉଥାଂତି । ଗୋପବଂଧୁ ଓ ତାଂକ ସଂଗୀମାନଂକୁ କିପରି ଦଂଡ଼ ଦେବେ, ସେଥିପାଇଁ ବ୍ୟାକୁଳ ହୋଇ ନାନା କାର୍ଯ୍ୟାନୁଷ୍ଠାନ ମଧ୍ୟ କରୁଥାଆଂତି; କିଂତୁ କିଛି ହୋଇ ନଥିଲା ।

ଗୋପବଂଧୁ ବଡ଼ ସାହସୀ ଓ ସ୍ୱାଧୀନଚେତା ଥିଲେ । ତାଂକର ଓଡ଼ିଶାର ଉପକୂଳ ଅଂଚଳରେ ଏଇପରି ବଢ଼ି ମରୁଡ଼ିର କ୍ରମାଗତ ସାହାଯ୍ୟକାର୍ଯ୍ୟ ଶେଷକୁ ୧୯୧୯, ୧୯୨୦ରେ ସାରା ଭାରତର ଦୃଷ୍ଟି ଆକର୍ଷଣ କରିଥିଲା । ଫଳରେ ମହାତ୍ମାଗାଂଧି କହିଥିଲେ, "ଓଡ଼ିଶା ହେଉଚି ଭାରତରେ ସବୁଠାରୁ ବଳି ଦରିଦ୍ର ଦେଶ ।"

କଲେଜ ଛାତ୍ର ଥିବା ଦିନରୁ ଗୋପବଂଧୁ ଦେଶରେ ନୂତନ ଜାତୀୟ ଆଦର୍ଶ ଓ ଦୃଷ୍ଟି ଘେନି ଶିକ୍ଷାନୁଷ୍ଠାନ ସ୍ଥାପନ କରିବାକୁ ବରାବର ବିଚାରୁଥିଲେ । ସେଥିପାଇଁ ଯୁବକମାନଂକୁ ପ୍ରଭାବିତ କରୁଥିଲେ । ପ୍ରଚାରକ ଅନଂତ ମିଶ୍ର, ଆଚାର୍ଯ୍ୟ ହରିହର ଦାସ ଓ ମୁଁ ଏ ତିନିହେଁ ପ୍ରଥମେ ତାଂକ ଦୀକ୍ଷାରେ ବ୍ରତୀ ହୋଇଥିଲୁ । ତା'ପରେ ପଂଡ଼ିତ କୃପାସିଂଧୁ ମିଶ୍ର ଓ ପଂଡ଼ିତ ଗୋଦାବରୀଶ ମିଶ୍ର ପ୍ରଭୃତି କୃତବିଦ୍ୟ ଲୋକମାନେ ସେଥିରେ ଯୋଗ ଦେଇଥିଲେ । ବହୁ ବିଚାର ପରେ ସତ୍ୟବାଦୀ ମଂଦିରର ଗୁପ୍ତ ବୃଂଦାବନ ନାମଧେୟ ବକୁଳ, ତମାଳ ଓ କ୍ଷୁରୀଅନା କୁଂଜ ଏଇ ବିଦ୍ୟାନୁଷ୍ଠାନର ସ୍ଥାନ ରୂପେ ନିର୍ବାଚିତ ହୋଇଥିଲା । ଏହାଇ ହେଉଚି କେବଳ ଓଡ଼ିଶାରେ ନୁହେଁ; ସମଗ୍ର ଭାରତରେ ପ୍ରଥମ ବନବିଦ୍ୟାଳୟ । ଏହା ଥିଲା ଗୋଟିଏ ଉଚ୍ଚ ଇଂରେଜୀ ବିଦ୍ୟାଳୟ । ସମସ୍ତ ବର୍ଷ ପାଇଁ ଏହା ବସୁଥିଲା ବକୁଳ, ତମାଳ ବଣ ଭିତରେ । କେବଳ ବର୍ଷାଦିନ ପାଇଁ ଗୋଟିଏ ଚାଳିଆ କରାଯାଇଥିଲା । ଏହାର ମଧ୍ୟ ଛାତ୍ରବାସ ଥିଲା । ତ ପୁଣି ଦେଶ ଗ୍ରାମ୍ୟଘର ରୀତିରେ, ଏ ଥିଲା ବଡ଼ ସୁଂଦର ଦୃଶ୍ୟ ଓ ଏହାର ବ୍ୟବସ୍ଥା ମଧ୍ୟ ଥିଲା ଅତି ଚମତ୍କାର । ସେକାଳ ପ୍ରାକୃତିକ ଓଡ଼ିଶାର ଚାରିଆଡୁ ତଥା ବଂଗ, ମାଂଦ୍ରାଜ ଓ

ସେକାଳ ମଧ୍ୟପ୍ରଦେଶରୁ ଛାତ୍ରମାନେ ଏଠାରେ ଆସି ଜମା ହୋଇଥିଲେ । ବଡ଼ ବଡ଼ ଲୋକେ ନିଜ ପିଲାଙ୍କୁ ଆଣି ଏଇଠାରେ ରଖି ଦେଇ ଯାଉଥିଲେ । ବିଶେଷରେ ସିଂହଭୂମିରୁ ମଧ୍ୟ ପିଲାମାନେ ଏଠାକୁ ଆସୁଥିଲେ । ୧୯୧୬ ବେଳକୁ ଏଇ ସତ୍ୟବାଦୀ ସ୍କୁଲର ଯୋଡ଼ିଏ ଶାଖା ସ୍କୁଲ ସ୍ଥାପିତ ହୋଇଥିଲା । ଗୋଟିଏ ସିଂହଭୂମିର ଚକ୍ରଧରପୁରରେ, ଆଉ ଗୋଟିଏ ମେଦିନୀପୁରର ବାହାଡ଼ାଗୋଡ଼ାରେ ।

ଏଇ ବିଦ୍ୟାଳୟ ସୂତ୍ରରେ ବହୁପ୍ରକାର ଉନ୍ନତି ସାମାଜିକ ସଂସ୍କାର ପ୍ରକାଶ ପାଉଥିଲା । ଏଇ ସଂସ୍କାର ଫଳରେ ସମସ୍ତ ଓଡ଼ିଶାରେ ନୂତନ ଜୀବନର ଏକ ତରଂଗ ଖେଳି ଯାଇଥିଲା । ସାକ୍ଷୀଗୋପାଳ ଓଡ଼ିଶାରେ ରକ୍ଷଣଶୀଳଙ୍କର ପ୍ରଧାନ କେନ୍ଦ୍ର । ମାତ୍ର ସ୍କୁଲରେ—ଏପରିକି ଛାତ୍ରାବାସର ଭୋଜନଶାଳାରେ—କୌଣସି ଜାତିଧର୍ମର ଭେଦାଭେଦ ନଥିଲା । ପୁରୀର ବ୍ରାହ୍ମଣମାନେ ହା'ହତାଶ ହେଲେ । ବିଶେଷରେ ମୁଁ ନିଜେ ସେଇ ରକ୍ଷଣଶୀଳଙ୍କ ଭିତରୁ ଥିଲି ଜଣେ ଶାସନୀ ବ୍ରାହ୍ମଣ, ତଥା ଏଇ ଆଂଦୋଳନର ଥିଲି ଜଣେ ଅଗ୍ରଣୀ । ପୁଣି ଏଣେ ଥିଲି ସ୍କୁଲ ଓ ଛାତ୍ରାବାସର ସର୍ବମୁଖ୍ୟ । ଫଳରେ ପ୍ରଥମ ସ୍କୁଲ ଘରକୁ ଅତି ମୂଲ୍ୟବାନ ଗ୍ରଂଥାଳୟ ସହିତ ଗୁପ୍ତରେ ନିଆଁ ଲଗାଇ ଦିଆଯାଇଥିଲା । ଗୋପବଂଧୁ ଏଥିରେ ଦବିଗଲେ ନାହିଁ । ତାଂକ ସହଯୋଗୀମାନେ ମଧ୍ୟ ପୁଣି ଉତ୍ସାହରେ କାମରେ ଲାଗିଗଲେ । ସମସ୍ତ ଓଡ଼ିଶା, ବିଶେଷତଃ ଗଂଜାମର ଲୋକେ, ନିବେଦନ ଫଳରେ ଖୁବ୍ ସାହାଯ୍ୟ କରିଥିଲେ ଓ ସ୍କୁଲଗୃହ ପୁଣି ତିଆରି ହୋଇଥିଲା ।

ସେକାଳର ଯେକୌଣସି ଆଦର୍ଶମୂଳକ ଅନୁଷ୍ଠାନରେ ହେଲାଭଳି ସତ୍ୟବାଦୀ ସ୍କୁଲର ଗୋପବଂଧୁ ଓ ତାଂକର ସହଯୋଗୀମାନଂକ ପଛେ ପଛେ ପୁଲିସ ଏବଂ ଗୋଇଂଦାମାନେ ଲାଗିଥିଲେ । ଏ ହେଉଚି ପୁଣି ବଂଗଳାର ବିପ୍ଳବୀମାନଂକ କାଳ । ଗୋପବଂଧୁ ଓ ତାଂକ ସହଯୋଗୀମାନେ ପୁଣି ସେତେବେଳେ ବଂଗଳାରେ ଥିଲେ ସୁପରିଚିତ । ଶିକ୍ଷାବିଭାଗ ସେକାଳ ରୀତି ଧରି ସତ୍ୟବାଦୀ ସ୍କୁଲ ଉପରେ ଆଖିଦୃଶିଆ ଆର୍ଥିକ ସାହାଯ୍ୟ ବା ଗ୍ରାଂଟ-ଇନ୍‌ଏଡ୍ (Grant-in-aid) ଲଦି ଦେବାକୁ ବସିଥିଲେ; କିଂତୁ ସ୍କୁଲ କମିଟି ତାହା ଅଗ୍ରାହ୍ୟ କରିଥିଲେ । ସେତିକି ନୁହେଁ, ସେତିକିବେଳର କଲିକତା ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍‌ସେଲର ସ୍ୱର୍ଗତ ଦେବପ୍ରସାଦ ସର୍ବାଧିକାରୀଂକୁ ଡାକିଆଣି ଶିକ୍ଷାବିଭାଗରେ ଅଜ୍ଞାତରେ ସ୍କୁଲଟି ମଂଜୁର କରାଇ ନିଆ ହୋଇଥିଲା । ସେଥିରେ ମଧ୍ୟ ସେକାଳ ଇଂରେଜ କର୍ତ୍ତାମାନଂକର ସଂଦେହ ବଢ଼ି ଯାଇଥିଲା । ଶେଷକୁ ବିହାର ଓଡ଼ିଶାର ସେକାଳ ଇଂରେଜ ଲେଫ୍‌ଟନାଂଟ ଗଭର୍ଣ୍ଣର ସାର୍ ଏଡ୍‌ୱାର୍ଡ଼ ଗେଟ୍ ସତ୍ୟବାଦୀ ସ୍କୁଲ ଦେଖିବାକୁ ଆସିଥିଲେ (ବୋଧହୁଏ ୧୯୧୮ରେ) ଓ କହିଥିଲେ, ''ଗୋପବଂଧୁ ବାବୁ, ଆପଣଂକ ସ୍କୁଲ ବିରୁଦ୍ଧରେ ଗୋଇଂଦା ଯେଉଁ ରିପୋର୍ଟ କରିଚଂତି, ତାହା ପ୍ରାୟ ଆଂଠୁଏ ଉଚ୍ଚ । ଏବେ ମୁଁ ବୁଝିଗଲି । ଯାଉଚି, ତାହା ସବୁ ନଷ୍ଟ କରିଦେବାକୁ ଆଦେଶ ଦେବି ।''

୧୯୨୧ ଆଦ୍ୟରେ ହେଲା କଂଗ୍ରେସର ଅସହଯୋଗ ଆଂଦୋଳନ । ସେତିକିବେଳେ ଏ ସ୍କୁଲକୁ ଜାତୀୟ ବିଦ୍ୟାଳୟ କରିଦେବାରେ କ୍ରମେ ଏହା ନଷ୍ଟ ହୋଇଗଲା । ଏବେ ସତ୍ୟବାଦୀ ସ୍କୁଲ ନାମରେ ଯେଉଁ ଉଚ୍ଚ ଇଂରେଜି ବିଦ୍ୟାଳୟଟି ଅଛି, ତାହା ସେଇ ପୂର୍ବ ସତ୍ୟବାଦୀ ସ୍କୁଲର ଶ୍ମଶାନ ଉପରେ ହୋଇଚି କହିଲେ ଚଳେ ।

ଏଇ ବିଦ୍ୟାଳୟକୁ ଧରି ଅତି ଉଚ୍ଚଦରର ଗୋଟିଏ ସାହିତ୍ୟିକ ପ୍ରଚେଷ୍ଟା ମଧ୍ୟ ଆରଂଭ ହୋଇଥିଲା । ୧୯୧୩ ବେଳକୁ 'ସତ୍ୟବାଦୀ' ବୋଲି ସାହିତ୍ୟପତ୍ର ପଂଡ଼ିତ ଗୋପବଂଧୁଙ୍କ ସଂପାଦକତ୍ୱରେ ବାହାରିଥିଲା । ଏଇ 'ସତ୍ୟବାଦୀ' ଓଡ଼ିଆ ସାହିତ୍ୟ ଓ ଭାଷାରେ ଗୋଟିଏ ନୂତନଯୁଗ ଆରଂଭ କରିଥିଲା । କେତେଦିନ ପରେ ସତ୍ୟବାଦୀ ସ୍କୁଲଟି ଜାତୀୟ ବିଦ୍ୟାଳୟ ହେବା ପୂର୍ବରୁ 'ସମାଜ' ବୋଲି ସାପ୍ତାହିକ ଏଇ ସ୍କୁଲର ଗୋଟିଏ ପ୍ରାଣପ୍ରକାଶ । ଏଇ ମାସିକ ଓ ସାପ୍ତାହିକ ସଂଗେ ସତ୍ୟବାଦୀର ନାନା ବିଷୟ ସାହିତ୍ୟ ଗ୍ରଂଥମାନ ପ୍ରକାଶିତ ହୋଇଥିଲା । ଏହାର ନାମ ସତ୍ୟବାଦୀ ଗ୍ରଂଥମାଳା । ଏଥିରେ କବିତା, ନାଟକ, ଇତିହାସ, ସମାଲୋଚନା ପ୍ରଭୃତି ସଂଗେ ପାଠ୍ୟପୁସ୍ତକ ଓ ସେଇଭଳି ଅନ୍ୟାନ୍ୟ ପୁସ୍ତକମାନ ମଧ୍ୟ ପ୍ରକାଶ ପାଇଥିଲା । ଏବେ ମଧ୍ୟ ଓଡ଼ିଶାର ସାହିତ୍ୟରେ 'ସତ୍ୟବାଦୀ ପ୍ରକାର' ବା ବିଭାଗ କଥାଟି ସର୍ବତ୍ର ସୁବିଦିତ । ଏଇପରି ନାନାଭାବରେ ଗୋପବଂଧୁ ଓଡ଼ିଆ ସାହିତ୍ୟ ଓ ଭାଷାର ପଥପ୍ରଦର୍ଶକ ରୂପେ ଏବେ ବି ପୁଣ୍ୟ ପ୍ରଭାବରେ ବଂଚି ରହିଚଂତି କହିଲେ ଚଳେ ।

ଓଡ଼ିଶାର ରାଜନୀତିରେ ଗୋପବନ୍ଧୁଂକ ବେଳକୁ କଂଗ୍ରେସ ନଥିଲା । ପ୍ରବୀଣ ମଧୁସୂଦନ ଦାସ ଉତ୍କଳ ସମ୍ମିଳନୀ ଆଂଦୋଳନ ଆରଂଭ କରିଥିଲେ । ଗୋପବଂଧୁ ୧୯୦୩ ଖ୍ରୀଷ୍ଟାବ୍ଦଠାରୁ ସେଥିରେ ପୂର୍ଣ୍ଣପ୍ରାଣରେ ଯୋଗ ଦେଇଥିଲେ । ମାତ୍ର ଏସବୁ ସତ୍ତ୍ୱେ ତାଂକର ମହାଭାରତୀୟ ଭାବ ବରାବର ଜାଗ୍ରତ ରହିଥିଲା । ଜାତୀୟ ମହାସଭା ବା କଂଗ୍ରେସ ପ୍ରତି ତାଂକର ଭକ୍ତି ଅକ୍ଷୁଣ୍ଣ ଥିଲା । ସମ୍ମିଳନୀ ପରି ଅନୁଷ୍ଠାନରେ ଭାଷା ସୂତ୍ରରେ ପ୍ରଦେଶଗଠନ ପାଇଁ ସେ ଅତ୍ୟଂତ ତତ୍ପର ଥିଲେ ମଧ୍ୟ ଏହାକୁଇ ଶେଷ ବୋଲି ସେ କେବେ ବୁଝି ନଥିଲେ । ଏହା ମହାଭାରତୀୟ ଜାଗରଣର ଅଂଗ ବୋଲି ସେ ବୁଝୁଥିଲେ ଓ ସେଇ ହିସାବରେ ୧୯୧୭ଠାରୁ ସେ ମହାଭାରତୀୟ ଜାତୀୟ ମହାସଭାରେ (କଂଗ୍ରେସରେ) ଯୋଗ ଦେଇଥିଲେ ।

୧୯୨୦ ମସିହାରେ ପ୍ରଥମେ ମହାତ୍ମା ଗାଂଧି ଯେଉଁ ଅସହଯୋଗ ଆଂଦୋଳନ ପ୍ରଚାର କଲେ, ଗୋପବଂଧୁ ସେଇ ଆଂଦୋଳନରେ ପୂର୍ଣ୍ଣପ୍ରାଣରେ ଯୋଗ ଦେଇଥିଲେ । ମହାତ୍ମା ଗାଂଧିଂକ ନେତୃତ୍ୱରେ କଂଗ୍ରେସ ନାଗପୁରଠାରେ ୧୯୨୦ ଶେଷକୁ ଭାଷା ସୂତ୍ରରେ ପ୍ରଦେଶ ଗଠନକୁ ନୀତି ବୋଲି ଗ୍ରହଣ କଲା । ଠିକ୍ ସେଇ କଂଗ୍ରେସ ପରେ, ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀରେ ଯେଉଁ ଅଧିବେଶନ ବସିଥିଲା, ସେଥିରେ ନିଜେ ଗୋପବଂଧୁ ନାଗପୁରରୁ ଆସି କଂଗ୍ରେସ ନୀତିକୁ ସମ୍ମିଳନୀର ନୀତି ବୋଲି ଗ୍ରହଣ କରାଇ ନେଇଥିଲେ । ଠିକ୍ ପରେ ପରେ ପ୍ରସିଦ୍ଧ ସତ୍ୟବାଦୀ ବିଦ୍ୟାଳୟଟି ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଥିଲା । ସେତିକି ନୁହେଁ, ଏଇ ସ୍କୁଲର ଶିକ୍ଷକ ଓ ଛାତ୍ରମାନେ ଏଇ ଅସହଯୋଗ ଆଂଦୋଳନରେ କର୍ମୀ ଓ ନେତାରୂପେ ଓଡ଼ିଶାର ଚାରିଆଡ଼େ ଖେଳି ଯାଇଥିଲେ ଏବଂ ସେଇ ବଳରେ ଓ ଫଳରେ ଅସହଯୋଗ ଆଂଦୋଳନ ଏପ୍ରାନ୍ତରେ କେବଳ ଦୃଢ଼ ହୋଇ, ହୋଇଥିଲା ନୁହେଁ, କୃତିତ୍ୱ ହାସଲ କରିଥିଲା ।

୧୯୨୨ରୁ ୧୯୨୪ ପର୍ଯ୍ୟଂତ ଗୋପବଂଧୁ ରାଜନୀତିକ ବଂଦୀରୂପେ ହଜାରିବାଗ୍ ଜେଲ୍‌ରେ ଥିଲେ । ୧୯୨୪ରେ ସେଇ ହଜାରିବାଗ୍‌ରୁ ସଂଗେ ସଂଗେ ଆସି ସେ କଟକ ପ୍ରାଦେଶିକ କଂଗ୍ରେସ ମେଳାରେ ଯୋଗ ଦେଇଥିଲେ । ସେଠାରେ ସଭାପତି ଥିଲେ,

କଲିକତାର ସାର ପ୍ରଫୁଲ୍ଲଚନ୍ଦ୍ର ରାୟ । ସେ ଗୋପବଂଧୁଂକୁ ଦେଖିବାମାତ୍ରେ ତାଂକୁ 'ଉତ୍କଳମଣି ଗୋପବଂଧୁ' ବୋଲି ସଂବୋଧନ କରି ପ୍ରକାଶ୍ୟ ଭାବରେ ସମସ୍ତଂକୁ ଜଣାଇ ଦେଇଥିଲେ । ସେଇଦିନଠାରୁ ସେ ହୋଇଚଂତି 'ଉତ୍କଳମଣି ଗୋପବଂଧୁ ଦାସ' ।

ତାଂକ ଜୀବନର ଶେଷ ଦୁଇବର୍ଷ ଭିତରେ ପଂଜାବକେଶରୀ ଲାଲ ଲଜପତ୍ ରାୟଂକ ସଂଗେ ତାଂକର ପରିଚୟ ହୋଇଥିଲା । ଫଳରେ ସେଇ ଲଜପତ୍ ରାୟଂକ ପ୍ରତିଷ୍ଠିତ ଲୋକସେବକ ସମାଜର ଲଜପତ୍ ରାୟ ଥିଲେ ସଭାପତି ଓ ଗୋପବଂଧୁ ଦାସ ଥିଲେ ଉପସଭାପତି । ଗୋପବଂଧୁ ମୃତ୍ୟୁ ପୂର୍ବରୁ ଏଇ ଉପସଭାପତି ପଦରେ ଥିଲେ ଓ ମୃତ୍ୟୁଶଯ୍ୟାରେ ସେ ଯେଉଁ 'ଉତ୍କଳ' ଡାକିଦେଇ ସତ୍ୟବାଦୀ ସ୍କୁଲ କାଳରୁ ହୋଇଥିବା ଓ ସେତେବେଳକୁ ଗୋପବନ୍ଧୁଂକ ହାତରେ ଥିବା ପ୍ରେସ୍‌ଟିକୁ ସେଇ ଲୋକସେବକ ସମାଜ ହାତେ ଦେଇ ଯାଇଥିଲେ (୧୯୨୮) । ଏବେ ସେଇ ସତ୍ୟବାଦୀ ପ୍ରେସ୍‌ଟି ସତ୍ୟବାଦୀରୁ ପୁରୀ ଓ ପୁରୀରୁ କଟକ ଆସି ସେଇ କଟକରେ ଅଛି । ସାପ୍ତାହିକ 'ସମାଜ କାଗଜଟି' ଏ ମଧ୍ୟରେ ଦୈନିକ ହୋଇଛି ଓ ଏବେ ମଧ୍ୟ ସେଇ ଦୈନିକ 'ସମାଜ'ଟି ସେଇ ସତ୍ୟବାଦୀ ପ୍ରେସ୍‌ରୁ ବାହାରୁଛି । (ଲେଖା—୧୪/୬/୬୦)

## ଟିକିଏ ବ୍ରଜସୁଂଦର ସ୍ମୃତି

ସ୍ୱର୍ଗତ ବ୍ରଜସୁଂଦର ଦାସଂକ ସଂଗେ ମୋର ତରୁଣ ବୟସଠାରୁ ଖୁବ୍ ସଂବଂଧ ଥିଲା । ସେ ସ୍ମୃତି ମୋ ପକ୍ଷରେ ଦୁର୍ମୂଲ୍ୟ । ସେ ଥିଲେ ପଂଡ଼ିତ ଗୋପବଂଧୁ ଦାସଂକ ସହାଧ୍ୟାୟୀ ଓ ସାଂଗ । ମୁଁ କଟକରୁ ଆସିଲାବେଳକୁ ତାଂକ 'କର୍ତ୍ତବ୍ୟ ବୋଧୀନୀ' ସମିତିର ଗୋଟିଏ ବଡ଼ କାର୍ଯ୍ୟ ହୋଇ ଯାଇଥାଏ । ତା'ହେଉଚି କଲିକତା ବିଶ୍ୱବିଦ୍ୟାଳୟରେ ସେତେବେଳେ ବି.ଏ. ଅତିରିକ୍ତ ପ୍ରଶ୍ନପାଇଁ ଓଡ଼ିଆ ଭାଷାକୁ ଗ୍ରହଣ କରାଯାଇଥାଏ । ଏଇ କର୍ତ୍ତବ୍ୟବୋଧିନୀ ସମିତି ପଂଡ଼ିତ ଗୋପବଂଧୁ ଦାସ ଓ ବ୍ରଜସୁଂଦର ଦାସ ପ୍ରଭୃତି ଆରଂଭ କରି ଖୁବ୍ ଜୋର୍‌ରେ କାର୍ଯ୍ୟ ଚଳାଇଥିଲେ । କହିପାରୁନାଇଁ ସେତେବେଳକୁ ବ୍ରଜସୁଂଦର ବାବୁ କଲିକତାରେ ଥାଆଂତି କିଂବା ବି.ଏ. ପରୀକ୍ଷା ଦେଇ କଟକକୁ ଠିକ୍ ଫେରି ଆସିଥାଆଂତି; କାରଣ ସେ ଓ ପଂଡ଼ିତ ଗୋପବଂଧୁ କଟକ ରେଭେନ୍‌ସା କଲେଜରୁ ଆଇ.ଏ. ବା ସେତେବେଳର ଏଫ୍.ଏ. ଏକାସଂଗେ ପାସ୍ କରିଥିଲେ । ତା'ପରେ ବ୍ରଜସୁଂଦର ବାବୁ କଲିକତା ପ୍ରେସିଡ଼େନ୍‌ସି କଲେଜରେ ଯାଇ ବି.ଏ. ପଢ଼ି ପାସ୍ କରିଥିଲେ; ମାତ୍ର କଟକ ଆସିଲା ପରେ ମଧ୍ୟ ପଂଡ଼ିତ ଗୋପବନ୍ଧୁଂକ ସଂଗେ ବ୍ରଜବାବୁଂକ ଘନିଷ୍ଠତା ଅକ୍ଷୁଣ୍ଣ ଥିଲା । ସେ ଦୁହେଁ ଅତି ଆତ୍ମୀୟ ପରି ସବୁକଥା କରୁଥିଲେ ।

କର୍ତ୍ତବ୍ୟବୋଧିନୀର ପ୍ରଥମ କାର୍ଯ୍ୟଟି ହେଉଚି—ସେତେବେଳକୁ କଲିକତା ବିଶ୍ୱବିଦ୍ୟାଳୟର ବି.ଏ. ପରୀକ୍ଷାରେ ଦେଶୀଭାଷା ସଂପର୍କରେ ଗୋଟିଏ ସ୍ୱତଂତ୍ର ପ୍ରଶ୍ନ ଦିଆଯିବାର ହୋଇଥିଲା; ମାତ୍ର ସେଥିରେ କଲିକତା ସିନେଟର ଲୋକେ ଓଡ଼ିଆକୁ ସ୍ୱତଂତ୍ର ଭାଷାରୂପେ ଗ୍ରହଣ କରିବାରେ ବଡ଼ ନାରାଜ ଥିଲେ । ଏଇ ଓଡ଼ିଆକୁ ସ୍ୱତଂତ୍ର ଭାଷାରୂପେ ଗ୍ରହଣ କରିବା ପାଇଁ କଟକର କର୍ତ୍ତବ୍ୟବୋଧିନୀ ସମିତି (କେତେକ ବି.ଏ. ପଢୁଥିବା ଓ ବି.ଏ. ପାସ୍ କରିଥିବା ବ୍ୟକ୍ତିଂକ ଗଠିତ ସମିତି) ଖୁବ୍ ଚେଷ୍ଟା କରିଥିଲେ । ଶେଷକୁ କଲିକତା

ବିଶ୍ୱବିଦ୍ୟାଳୟର ସିନେଟ ନବୁଝିବାରୁ ନିଜେ ବଂଗଳାର ସେତେବେଳର ଲାଟ (ଯେତେଦୂର ମନେହୁଏ ସାର୍‌ଜନ୍ ଉଡ୍‌ବର୍ଣ୍ଣ) ବିଶ୍ୱବିଦ୍ୟାଳୟର ରେକ୍ଟରରୂପେ ହସ୍ତକ୍ଷେପ କରି ଏହା ଗୃହୀତ ହେବ ବୋଲି ଧାର୍ଯ୍ୟ କରାଇ ନେଇଥିଲେ ।

ଆଉ ଗୋଟିଏ ମନେପଡ଼ୁଥିବା କଥା ଏ ସଂବନ୍ଧରେ କହିଦିଏ । ପ୍ରଥମ ବର୍ଷ ଏଥିରେ ଯେଉଁ ପ୍ରଶ୍ନ ପଡ଼ିଥିଲା, ତାହାର ପ୍ରାଶ୍ନିକ ଥିଲେ ସ୍ୱର୍ଗତ ମଦୁସୂଦନ ରାଓ । ତାଂକ ନାମ ତଥା ଶ୍ରୀଯୁକ୍ତ ରାଧାନାଥ ରାୟଂକ ନାମ ସେତେବେଳେ କଲିକତା ଗେଜେଟ ପ୍ରଭୃତିରେ ଏମ୍.ଏ ବୋଲି ଛପା ହେଉଥିଲା (କିଂତୁ ସେ ଦୁହେଁ ଥିଲେ ସେକାଳର ଏଫ୍.ଏ.)—ବସ୍ତୁତଃ ସେତେବେଳକୁ କଟକର ଓକିଲ ଶ୍ରୀଯୁକ୍ତ ମଧୁସୂଦନ ଦାସ ତଥା କଟକର ଅନ୍ୟତ୍ର ଡେପୁଟି ଭାବରେ ଥିବା ତାଂକ ଭାଇ ଶ୍ରୀଯୁକ୍ତ ଗୋପାଳଚଂଦ୍ର ଦାସ ଓ ଖୋର୍ଧାର ଅଭିରାମ ଭଂଜ, ଏଇ ତିନିଜଣଂକ ଛଡ଼ା ସେତେବେଳର ଓଡ଼ିଶାରେ ଅନ୍ୟ କେଉ ଏମ୍.ଏ. ନଥିଲେ । ବଡ଼ କୌତୁକର କଥା ମନେ ହେଉଚି । ପଂଡ଼ିତ ଗୋପବଂଧୁ ଦାସ ଓ ପୂର୍ବେ ଡେପୁଟି ଇନିସ୍‌ପେକ୍ଟର ଥିବା ଓ ଏବେ ବଂଚିଥିବା ବଡ଼ଂବାର ଶ୍ରୀଯୁକ୍ତ ଲୋକନାଥ ପଟ୍ଟନାୟକ ଏଇ ଦୁହେଁ ସେ ବର୍ଷ ବି.ଏ. ପରୀକ୍ଷାର୍ଥୀ ଥିଲେ ଓ ସେଇ ଅତିରିକ୍ତ ଓଡ଼ିଆ ପ୍ରଶ୍ନଟିର ଆନଂଦ ଓ ଉତ୍ସାହରେ ଉତ୍ତର ଦେଇଥିଲେ । କାରଣ ସେ ଦୁହେଁ ଥିଲେ କର୍ତବ୍ୟବୋଧିନୀ ସମିତିର ବଡ଼ ଦକ୍ଷ ସଦସ୍ୟ; ମାତ୍ର ଏ ଦୁହେଁଯାକ ପରୀକ୍ଷକ ମଧୁସୂଦନ ରାଓଂକ ହାତେ ଫେଲ ହୋଇଥିଲେ । ହେଲେହେଁ, ଏ ଦୁହେଁ ସେତେବେଳକୁ ଓଡ଼ିଆରେ ଖୁବ୍ କୁଶଳ ଥିଲେ । କେଉ (ବୋଧହୁଏ ବ୍ରଜସୁଂଦର ଦାସ) ବିସ୍ମିତ ହୋଇ ଏକଥା ମଧୁସୂଦନ ରାଓଂକୁ ଯାଇ ପଚାରିବାରେ ସେ ନିଜେ ବଡ଼ ବିସ୍ମିତ ଓ ଦୁଃଖିତ ହୋଇ ଉତ୍ତର ଦେଇଥିଲେ, 'ସେ ଦୁଇ ପରୀକ୍ଷାର୍ଥୀଂକ ଲେଖା ବଡ଼ ଉତ୍ତମ ହୋଇଥିଲା; କିଂତୁ ଶତକଡ଼ା ୫୦ପାଇଲେ ପାସ୍ ହେବ ବୋଲି ମଧୁବାବୁ ଜାଣିପାରି ନଥିଲେ । ସେ ୩୩ ନଂବର ମାତ୍ର ଦେଇଥିଲେ, ପାସ୍ ନଂବର ବୋଲି ବିଚାରି ।' କଟକରେ ଏଣେ କର୍ତବ୍ୟବୋଧିନୀର ତୀବ୍ର ଆଂଦୋଳନ, ତେଣେ ପ୍ରାଶ୍ନିକ ଓ ପରୀକ୍ଷକ ମଧୁ ରାଓଂକର ଏପରି ପ୍ରାଣରେ ସେ ବିଷୟରେ ଉଷ୍ମତାର ଅଭାବ, ଏ ଦୁଇଟି ବିଷୟ ଘେନି ସେ ସମୟରେ ଏକାଧିକ ସଂଧ୍ୟାରେ ମାଣିକଘୋଷ ବଜାରରେ ଥିବା ସେତେବେଳର ବ୍ରଜସୁଂଦର ଦାସଂକ ଘରେ (ଏବ କୋଣାର୍କ ହୋଟେଲ) ବଡ଼ କୌତୁକମୟ ଆଲୋଚନା ଚାଲିଥିଲା ।

ତା'ପରେ ଗୋଟିଏ ଘଟଣା ମନେ ହେଉଚି । ସେ ହେଉଚି, ୟଂଗ ଉତ୍କଳ ଆସୋସିଏସନ୍ (Young Utkal Association) ବା ଯୁବକ ଉତ୍କଳ ସମିତିର ପ୍ରତିଷ୍ଠା । ଏହାର କର୍ତ୍ତା ଥିଲେ ମୁଖ୍ୟତଃ ପଂଡ଼ିତ ଗୋପବଂଧୁ ଦାସ । ବ୍ରଜସୁଂଦର ଦାସଂକ ଘରେ ତଥା ବ୍ରଜସୁଂଦର ଦାସଂକ ଆଂତରିକ ସାହଚର୍ଯ୍ୟ ଓ ସହଯୋଗିତାରେ ଏହାର ପ୍ରତିଷ୍ଠା ହୋଇଥିଲା । ସେତିକିବେଳକୁ କେଂଦ୍ରାପଡ଼ା, ଯାଜପୁରରେ ପ୍ରବଳ ନଈବଢ଼ି । ଏହା ୧୯୦୭ କିଂବା ୧୯୦୮ରେ ହେବ । ବଢ଼ିରେ ଗାଁଗଂଡ଼ା ବୁଡ଼ି ସେସବୁ ଉପରେ ୨/୩ ହାତ ପାଣି ମାଡ଼ି ଯାଇଥିଲା । ସେକାଳେ ଇଂରେଜମାନେ ହେଉଥିଲେ ଜିଲାର କର୍ତ୍ତା । ସେମାନେ ପୋକ ମାଛି ପରି ଲୋକ ମଲେ ମଧ ତା' ଜାଣି ସୁଦ୍ଧା ପ୍ରକାଶ କରୁ ନଥିଲେ । ଯେଉଁ ଗୋପବଂଧୁ ଚୌଧୁରୀଂକର ଦୁଇବର୍ଷ ତଳେ କଟକରେ କାଳ ହୋଇଯାଇଚି, ସେ ଥିଲେ ପହିଲେ ଡେପୁଟି ଓ ଯାଜପୁରର ସେକାଳର Sub-Divisional Officer । ଏଇପରି ଥରେ ମହାଦୁର୍ଭିକ୍ଷରେ

ସେ ଗୋଟିଏ ରିପୋର୍ଟ ଦେଇଥିଲେ । ସେଥିରେ ଥିଲା ବହୁତଗୁଡ଼ିଏ ଲୋକ ବଢ଼ିରେ ଓ ଖାଦ୍ୟାଭାବରେ ମରି ଯାଇଚଂତି । କଥାରେ କି ଲେଖାରେ ମନେହେଉ ନାହିଁ । କଟକଜିଲା ମାଜିଷ୍ଟ୍ରେଟଂକଠାରୁ (ବୋଧହୁଏ ଏ ଗ୍ୟାରେଟ ସାହେବଂକଠାରୁ) ମନେହୁଏ ତାଂକୁ ନିର୍ଦ୍ଦେଶ ମିଳିଥିଲା ''Fool, reduce the number'' (ନିର୍ବୋଧ, ଏ ସଂଖ୍ୟା କମାଇକରି ରିପୋର୍ଟ ଦିଅ) । ବୋଧହୁଏ ଏଇ ବା ଏଇଭଳି କାର୍ଯ୍ୟମାନଂକ ଫଳରେ କ୍ରମପରିତାପରେ କ୍ଲାଂତ ହୋଇ ଶେଷକୁ ୧୯୨୧ ବେଳକୁ ଗୋପବଂଧୁ ଚୌଧୁରୀ ଚାକିରିରୁ ଇସ୍ତଫା ଦେଇଥିଲେ ।

ସେକଥା ଥାଉ । ଏଇ କେଂଦ୍ରାପଡ଼ା, ଯାଜପୁର ପ୍ରଥମ ବଢ଼ିବେଳେ ଆଂଭେମାନେ ହୋଇଥାଉ କଲେଜ ଛାତ୍ର । ଆମ ସଂଗେ ଗୋପବଂଧୁ ଦାସ, ବ୍ରଜସୁଂଦର ଦାସ ତଥା ଅଭିରାମ ଭଂଜ କଟକ ସହରରେ ଘୋର ବର୍ଷା ଭିତରେ ମଧ୍ୟ ଦ୍ୱାରେ ଦ୍ୱାରେ ବୁଲି ପଇସା, ଚାଉଳ, ପୁରୁଣା ଲୁଗା ପ୍ରଭୃତି ସଂଗ୍ରହ କରି ନିଜେ ଘେନି ବଢ଼ି ଅଂଚଳକୁ ଯିବାର ମୋ ମନେଅଛି । ସ୍ପଷ୍ଟ ମନେ ଅଛି, ଏଇଥିପାଇଁ ଥରେ ବାଲୁବଜାରରେ ଥିବା ସ୍ୱର୍ଗତ ଶ୍ରୀ ବିଶ୍ୱନାଥ କରଂକ ପ୍ରେସ୍‌କୁ ଆଂଭେମାନେ ଯାଇଥିଲୁ । ସ୍ୱର୍ଗତ ଅଭିରାମ ଭଂଜ ସଂଗରେ ଥିଲେ । ବର୍ଷା ହେଉଥିଲା । ଭିକ୍ଷା ପାଇଁ ବାହାରିବାକୁ ବିଶ୍ୱନାଥ କରଂକୁ ସଂଗରେ ଡାକିବାରୁ ସେ ଟିକିଏ ନିଜର ପରିଷ୍କାର ଯୋତାକୁ ଚାହିଁଲେ । ତା'ପରେ ନୂଆ ଧୋବାଘରୁ ଆସିଥିବା ଲୁଗା ଓ କାମିଜକୁ ଚାହିଁଲେ । କହିଲେ, ''ଏ ବର୍ଷାଟା ଛାଡ଼ିଯାଉ, ଏଥିରେ ଲୁଗା ଯୋତା ସବୁ ଖରାପ ହୋଇଯିବ ।'' ଏତିକିରେ ଆମେ ସମସ୍ତେ ନମସ୍କାର ହୋଇ ବିଶ୍ୱନାଥ କରଂକ ଘରୁ ଚାଲିଆସିଲୁ । ଅବଶ୍ୟ ଆମ ଗୋଡ଼ରେ ଯୋତା ନ'ଥିଲା । ଏମ୍.ଏ. ଅଭିରାମ ଭଂଜ ମଧ୍ୟ ସେଦିନ ବିନା ଯୋତାରେ ଆମ ସଂଗରେ ବୁଲୁଥିଲେ । ମାତ୍ର ତାଂକର ପରିଧେୟ ଥିଲା, ଯେପରି ସବୁବେଳେ ଥାଏ, ଗୋଟିଏ ଧୋବାଘରୁ ଆସିଥିବା ରଂଗଧଡ଼ି ପଖାଳକରା ଲୁଗା । ବିଶ୍ୱନାଥ କରଂକର ଲୁଗାପଟାର ଆକାର ବିଭିନ୍ନ ଥିଲା । ତାହା ସେତେବେଳର କଲିକତାର ଧନୀକ ଓ ପଦସ୍ଥ ବଂଗାଳୀଂକର ଅନୁକରଣରେ । ମନେହେଉଚି, ବଂଗଳାରୁ ସ୍ୱଦେଶୀ ହାଉଆ ଆମ ସମସ୍ତଂକୁ ଖୁବ୍ ଗ୍ରାସ କରିଥିଲା । ବିଶ୍ୱନାଥ ବାବୁ ସେଇ ସ୍ୱଦେଶୀରେ ଜଣେ ଅଗ୍ରଣୀ ଥିଲେ । ସେତେବେଳେ ଦେଶୀ କଳ ଲୁଗାକୁ ସ୍ୱଦେଶୀ ବୋଲି ଧରା ଯାଉଥିଲା । ତଥାପି ବିଶ୍ୱନାଥ ବାବୁ ଅତି ସୂକ୍ଷ୍ମ, ସୁଂଦର ଓ ରୁଚିକର ଲୁଗା ବ୍ୟବହାର କରୁଥିଲେ ।

ସେତେବେଳର ଏନ୍‌ଟ୍ରାନ୍‌ସ ବା ମାଟ୍ରିକୁଲେଶନ୍ ପରୀକ୍ଷା ଦେବାପାଇଁ କଟକ ଗୋଟିଏ ମାତ୍ର କେଂଦ୍ର ଥିଲା । ସେଇ କେଂଦ୍ରରେ ଆଂଭେମାନେ 'ୟଂଗ ଉତ୍କଳ ଆସୋସିଏସନ୍' ତରଫରୁ ଏନ୍‌ଟ୍ରାନ୍‌ସ ପରୀକ୍ଷା ଶେଷଦିନ ପ୍ରାର୍ଥୀମାନଂକ ପାଇଁ ଉତ୍ସବ ଓ ଜଳଯୋଗର ବ୍ୟବସ୍ଥା କରିଥିଲୁ । ପ୍ରଥମବର୍ଷ, ମନେଅଛି, ସେତେବେଳର କଲେଜର ନୂଆଛାତ୍ର ଗୋଦାବରୀଶ ମିଶ୍ରେ ମ୍ୟାକଲେଂକ ''ହୋରେସସ'' ଆବୃତ୍ତି କରିଥିଲେ ଓ ପୂର୍ବ ବଂଗର କେତେକ ବଂଗାଳୀ ଯୁବକ ସେ ସଭାରେ ଯୋଗ ଦେଇଥିଲେ ଓ ସେମାନଂକ ମଧ୍ୟରୁ ଜଣେ (ନାମଟି ମନେ ହେଉନାଇ) ଗୋଟିଏ ବଡ଼ ଜାତୀୟ ଭାବଉଦ୍ଦୀପକ ବଂଗଳାର ଲେଖା ଆବୃତ୍ତି କରିଥିଲେ । ତାହା ଅତି ସୁଂଦର ଓ ହୃଦୟଗ୍ରାହୀ ହୋଇଥିଲା । ତାହାର ମୂଳଧାଡ଼ି ଦିଓଟି ହେଉଚି—

''ବାସଂତୀ ଚଂଦ୍ରିକାଧୌତ ସାରା ଭୂମଂଡ଼ଳ
ଆମାଦେର ଜୀର୍ଣ ଗୃହେ ସୁଧୁ ଅଂଧକାର ।''

ଓଡ଼ିଆ ସାହିତ୍ୟରେ ଗୋପବଂଧୁ ତଥା ବ୍ରଜସୁଂଦର ଦୁହେଁ ଥିଲେ ସେତେବେଳକୁ ଆସଂତା ନବଯୁଗର ପ୍ରତୀକ । ପ୍ରାୟ ପ୍ରତିଦିନ ବ୍ରଜବାବୁଂକ ଘରେ ଆମର ଆଡ୍‌ଡ୍ଡା ଜମୁଥିଲା । ସେଇ ଆଡ଼ାରେ ଯେଉଁ ପ୍ରେରଣା ଫୁଟୁଥିଲା, ତାହାରି ଫଳ ହେଉଚି ସେ କାଳର 'ମୁକୁର' ମାସିକ ପତ୍ରିକା । ବିଶ୍ୱନାଥବାବୁଂକ ଉତ୍କଳସାହିତ୍ୟ ମାସିକ ପତ୍ରିକା ତଥା ତତ୍କାଳୀନ ମଧୁ ରାଧାନାଥ ଶୃଂଖଳରୁ ଓଡ଼ିଆଂକୁ ଫିଟାଇ ଛାଡ଼ିଦେବା ଏହା ପ୍ରଥମ ସ୍ପଷ୍ଟ ଉଦ୍ୟମ । ବିଶ୍ୱନାଥ ବାବୁ କଥାରେ ବରାବର କହଂତି, 'ଯକେବାରେ' (ଏକାବେଳକେ) । ପୁଣି ତାଂକର ବଡ଼ ବ୍ୟାକରଣଗତ ପ୍ରୟୋଗ ହେଉଚି କହାଯାଏ (କୁହାଯାଏ), ତଥା ଏଠାକାର (ଏଠା ବା ଏଠାର), କାଳିକାର ପ୍ରଭୃତି । ସେତେବେଳେ 'ମୁକୁର' ବାହାରିବା ପୂର୍ବରୁ ଓ 'ମୁକୁର' ବାହାରିବା କାଳରେ ମଧ ବାରଂବାର ଏଇ ବିଷୟମାନଂକର ଆଲୋଚନା ଓ ତହିଁ ସଂଗେ ହାସ୍ୟରୋଳର କଥା ମୋର ଏବେ ମନେପଡୁଚି ।

## ଆଉ ଗୋଟିଏ ଘଟଣା—

ତା' ବହୁଦିନ ପରେ ଏହା ବୋଧହୁଏ ୧୯୨୭ ମସିହା ଶେଷ ଭାଗର ଘଟଣା । ଅସହଯୋଗ ଆଂଦୋଳନ ହୋଇଯାଇଥାଏ । ସେଥିରେ ପଂଡ଼ିତ ଗୋପବଂଧୁ ଓଡ଼ିଶାର ଅଦ୍ୱିତୀୟ ନେତା । ବ୍ରଜସୁଂଦର ବାବୁ ସାକ୍ଷାତ ଭାବରେ ଅସହଯୋଗରେ ଯୋଗ ଦେଇଥିଲେ ବୋଲି ମନେହେଉ ନାହିଁ । ତଥାପି ସେ ଜୀବନରେ କେବେ ଚାକିରି କରି ନ'ଥିଲେ । ଚାକିରି ପାଇଁ ଉଦ୍ୟମ ମଧ କରି ନ'ଥିଲେ । ସେ ଥିଲେ ବଡ଼ ସ୍ୱାଧୀନଚେତା । ସେ ଯାହାହେଉ, ଅସହଯୋଗୀ ଗୋପବଂଧୁ ଦାସ ଓ ସ୍ୱାଧୀନଚେତା ବ୍ରଜସୁଂଦର ଦାସ ଏ ଦୁହିଁଂକ ଭିତରେ ହୃଦ୍ୟତା ଅକ୍ଷୁଣ ଥିଲା । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଭାବରେ ଶେଷକୁ କଟକରେ କେତେକ ଉପନେତା ଗୋପବଂଧୁ ଦାସଂକୁ ସହି ନଥିଲେ । ସେଥିପାଇଁ କୋମଳପ୍ରାଣ ଗୋପବଂଧୁ ସେ କମିଟିରୁ ବାରଂବାର କାଂଦି କାଂଦି ଫେରୁଥିଲେ । ତୃତୀୟଥର କାଂଦିକରି ଫେରିବା ପରେ ସେ ସଂକଳ୍ପ କଲେ, ଆଉ ସଭାପତି ଭାବରେ ପ୍ରାଦେଶିକ କଂଗ୍ରେସ କମିଟିକୁ ଯିବେନାହିଁ । ସେଇଦିନ କାଂଦି କାଂଦି ଆସି ବ୍ରଜସୁଂଦର ଦାସଂକ ଘରେ ବ୍ରଜସୁଂଦର ଦାସଂକୁ ଆବେଗପୂର୍ଣ୍ଣ ସ୍ୱରରେ କହିଥିଲେ, ''ଦାସେ, ସତ୍ୟବାଦୀ ଯାଉଚି, ଆଉ କଟକ ଫେରିବି ନାହିଁ ।'' ବସ୍ତୁତଃ ସେ ଆଉ କଟକକୁ ଫେରି ନାହାଂତି ବୋଲି ମନେ ହେଉଚି । ସେ ଯାହାହେଉ, ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଭାବରେ ଆଉ ଫେରି ନାହାଂତି । ଏକଥା ତାଂକ ମୃତ୍ୟୁପରେ ବୋଧହୁଏ—ଦଶାହଶ୍ରାଦ୍ଧ ସଭାରେ—ବ୍ରଜସୁଂଦରବାବୁ ନିଜେ ଅତି ଆବେଗରେ ରୁଦ୍ଧକଂଠରେ ଉଚ୍ଚସ୍ୱରରେ ପ୍ରକାଶ କରିଥିଲେ ।

(ଲେଖା—୨୯/୮/୧୯୫୯)



# ଉପସଂହାର

## (୧) ନୀଳକଂଠଂକ ବଂଶାବଳୀ

ସତ୍ୟବାଦୀ-ଶ୍ରୀରାମଚନ୍ଦ୍ରପୁର ଶାସନ ଗ୍ରାମର କୌସିକ ଦାସ ବଂଶ
ପ୍ରଥମ ପୁରୁଷ—୧—ପଣ୍ଡିତ ଜଗନ୍ନାଥ ଦାସ

| | | | |
|---|---|---|---|
| | ୨ | | |
| | ୩ | | |
| ବିଶ୍ୱନାଥ ............ | ୪ | ଧରାଧର | |
| ଦୟାନିଧି ............ | ୫ | | |
| | ୬ | | |
| | ୭ | | |
| | ୮ | | |
| | ୯......... | ବନମାଳୀ ଦାସ | ଜଗନ୍ନାଥ ଦାସ |
| ଆଦିଜ୍ୟୋତି ହରିହର ... (ଡେପୁଟି) | ୧୦ ...... | ଆନନ୍ଦ ଦାସ | ମହାଦେବ ବ୍ରହ୍ମା |
| ସାଧୁ ଗୋପୀନାଥ ଦାସ ......... | ୧୧ ....... | ପଣ୍ଡିତ ନୀଳକଣ୍ଠ (ଓ ଶ୍ରୀମତୀ ରାଧାମଣି) | ଆଚାର୍ଯ୍ୟ ହରିହର |
| | ୧୨ ....... | ଅଶୋକ | ବିକ୍ରମ |

**ପଣ୍ଡିତ ଜଗନନ୍ନାଥ ଦାସ**— ଭୋଇବଂଶ ଗଜପତି ଶ୍ରୀ ରାମଚନ୍ଦ୍ରଦେବଙ୍କର ମୁକ୍ତିମଣ୍ଡପ ପାଇଁ ୧୫୮୯-୯୨ ପ୍ରତିଷ୍ଠିତ ଦ୍ୱିତୀୟ ଶାସନ ଗ୍ରାମର କୌସିକ ବଂଶର ପ୍ରଥମ ଦାନାଧକ୍ଷ ପ୍ରତିଷ୍ଠାତା ଜାଗି ଦାସ (ପଣ୍ଡିତ ଜଗନ୍ନାଥ ଦାସ) ।

**ଆଦିଜ୍ୟୋତି ହରିହର (ପଣ୍ଡିତ ହରିହର ଦାସ)**— ମହାନ୍ ଦିଗ୍‌ବିଜୟୀ ସଂସ୍କୃତ ପଣ୍ଡିତ ଇଂରେଜୀ, ଗ୍ରୀକ, ହିଂଦୀ, ବଂଗଳା ପ୍ରଭୃତି ବହୁଭାଷା ପ୍ରବୀଣ ସଂସ୍କାରକ । ପୁରୀ ସଂସ୍କୃତ ଅନୁଷ୍ଠାନର ପ୍ରତିଷ୍ଠାତା ବଂଗ ପ୍ରେସିଡ଼େନ୍ସିର ଓଡ଼ିଆ ଏଜୁକେଶନ ଲିଗର ସଦସ୍ୟ ଭାବରେ ଓଡ଼ିଶାରେ ନବ ଶିକ୍ଷାର ପ୍ରସାର ପାଇଁ ଓଡ଼ିଶାରେ ଭର୍ଣ୍ଣାକ୍ୟୁଲର ସ୍କୁଲମାନଂକର ପ୍ରତିଷ୍ଠାତା । (ତାଂକ ତିରୋଧାନ ପରେ, ଜନ୍ମ ସତ୍ୟବାଦୀ ପଞ୍ଚସଖା । ହରିହରଙ୍କ ଦ୍ୱାରା ପ୍ରତିଷ୍ଠିତ ଭର୍ଣ୍ଣାକ୍ୟୁଲର ସ୍କୁଲକୁ ସତ୍ୟବାଦୀକୁ ଉଠାଇ ନେଇ ବନବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ ।)

**ସାଧୁ ଗୋପୀନାଥ ଦାସ**— ପଣ୍ଡିତ ଗୋପବଂଧୁଂକ ସହପାଠୀ, ସେ କାଳର ଡେପୁଟି ମାଜିଷ୍ଟ୍ରେଟ ଥାଇ ମଧ ସ୍ୱାଧୀନଚେତା ଭାବରେ ବନବିଦ୍ୟାଳୟର ପୃଷ୍ଠପୋଷକ ଥିଲେ ।

**ଋଷିପ୍ରତିମ ଆଚାର୍ଯ୍ୟ ହରିହର ଦାସ**— ହରିହରଂକ ପ୍ରପିତା ଜଗନ୍ନାଥଂକୁ ପୁରୀ

ଗଜପତି ପାଂଡିତ୍ୟ ପାଇଁ ପୁରସ୍କାର ରୂପେ ଜଗନ୍ନାଥଂକ ପୁତ୍ର ମହାଦେବଂକ ବଂଶକୁ ବ୍ରହ୍ମା ଉପାଧିରେ ମଂଡିତ କରିଥିଲେ । ମହାଦେବଂକ ଜ୍ୟେଷ୍ଠପୁତ୍ର ହରିହର ବ୍ରହ୍ମା ପଂଚସଖାଂକ ଅନ୍ୟତମ ଭାବରେ ଆଚାର୍ଯ୍ୟ ହରିହର ଭାବରେ ପରିଚିତ । ସେ ଋଷିପ୍ରତିମ ଗାନ୍ଧିବାଦୀ ଓ ବିଶିଷ୍ଟ ଉଦାର ନେତା ଥିଲେ ।

**ପଂଡିତ ନୀଳକଂଠ ଦାସ—** ପ୍ରପିତା—ସମାଜସେବୀ ବନମାଳୀ ଦାସ, ଇଂରେଜ ଶାସନ ପ୍ରାରମ୍ଭରେ ଖଜଣା ଦେବା ଅନଭ୍ୟସ୍ତ ଗ୍ରାମବାସୀଂକ ଜମିସବୁ ନିଲାମରୁ ରକ୍ଷା ପାଇଁ ନିଜ ସଂପତ୍ତି ବଂଧକ ଦେଇ ଠିକ୍ ସମୟରେ ଖଜଣା ଦେଉଥିଲେ । ଜମିରୁ ଫସଲ ଆଦାୟ ପରେ ନିଜ ଜମି ମୁକୁଳାଇ ଆଣୁଥିଲେ । ହଠାତ୍ ୨୮ ବର୍ଷ ବୟସରେ ହଇଜା ରୋଗରେ ବନମାଳୀ ଜମି ବଂଧକ ଥିବା ଅବସ୍ଥାରେ ନିଜ ପରିବାରକୁ ୨/୪ ବର୍ଷର ଦୁଇଟି ଶିଶୁପୁତ୍ର ଓ ୨୨ ବର୍ଷର ବିଧବା ପତ୍ନୀଂକୁ ଛାଡ଼ି ସ୍ୱର୍ଗାରୋହଣ କଲେ ।

**ପିତା—** ଆନଂଦ ଦାସ କିଶୋରୀ ମାତାଂକ କଠୋର ପରିଶ୍ରମ ଓ ନିଜର ଅଦମ୍ୟ ଚେଷ୍ଟା ଯୋଗୁ ନିଜ ଗୋଡ଼ରେ ଠିଆ ହୋଇ ମଣିଷ ହେଲେ । ପୁତ୍ର ନୀଳକଂଠକୁ ସ୍ୱାଧୀନଚେତା ସମାଜସେବୀ ଓ ଜ୍ଞାନୀ ପଂଡିତ କରି ଗଢ଼ିବା ପାଇଁ ପ୍ରାଣପଣେ ଚେଷ୍ଟା କରିଥିଲେ ।

**ମନୀଷୀ ନୀଳକଂଠ—** ନବ ଓଡ଼ିଶାର ଅନ୍ୟତମ ନିର୍ମାତା ପଂଚସଖାରୁ ଅନ୍ୟତମ ।

**ଶ୍ରୀମତୀ ରାଧାମଣି ଦେବୀ—** ନୀଳକଂଠଂକ ଧର୍ମପତ୍ନୀ ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ, ସତ୍ୟବାଦୀ ବାଳିକା ବିଦ୍ୟାଳୟର ପ୍ରତିଷ୍ଠାତା, ସର୍ବଦା ନୀଳକଂଠଂକ ଅନୁଗାମିନୀ ଥାଇ ସତ୍ୟବାଦୀର ମାତା ଭାବରେ ଅଭିହିତ ହୋଇଥିଲେ ।

**ଅଶୋକ ଦାସ—** ନୀଳକଂଠଂକ ଜ୍ୟେଷ୍ଠପୁତ୍ର ଆଡ଼ଭୋକେଟ ଅଶୋକ ଦାସ ବିପ୍ଲବୀ ଛାତ୍ରନେତା ସୁଭାଷପନ୍ଥୀ ରାଜନୀତିଜ୍ଞ ଓ ଓଡ଼ିଶା ସରକାରଂକ ଆଡ଼ଭୋକେଟ ଜେନେରାଲ ପଦରେ ଅଭିଷିକ୍ତ ହୋଇଥିଲେ ।

**ବିକ୍ରମ ଦାସ—** ନୀଳକଂଠଂକ କନିଷ୍ଠ ପୁତ୍ର ଡାକ୍ତର ବିକ୍ରମ ଦାସ, ସ୍ୱାଧୀନତା ସଂଗ୍ରାମୀ ନୀଳକଂଠଂକ କନିଷ୍ଠ ସହକର୍ମୀ ଓ ସାହିତ୍ୟ-ସାଧକ, ଚିକିତ୍ସା ବିଦ୍ୟାରେ ସ୍ନାତକ ଓ ଆମେରିକାରୁ ସ୍ନାତକୋତ୍ତର ଉପାଧିଧାରୀ ବିଶିଷ୍ଟ ଚିକିତ୍ସକ ଓ ଓଡ଼ିଶା ସରକାରଂକ ମେଡ଼ିକାଲ କଲେଜର ପ୍ରାଧ୍ୟାପକ ଓ ବିଭାଗୀୟ ମୁଖ୍ୟ ଥିଲେ । ସେ ସାହିତ୍ୟ ସାଧନା ଓ ବହୁ ପୁସ୍ତକ ପ୍ରଣୟନରେ ବ୍ରତୀ ରହିଛଂତି ।

## (୨) ନୀଳକଂଠଂକ ଜୀବନ ପଂଜି

ଜନ୍ମସ୍ଥାନ—୧୫୯୦ରେ ଭୋଇବଂଶ ଗଜପତି ପ୍ରଥମ ରାମଚଂଦ୍ର ଦେବଂକ ପ୍ରତିଷ୍ଠିତ ସାକ୍ଷୀଗୋପାଳର ଶ୍ରୀରାମଚଂଦ୍ରପୁର ବ୍ରାହ୍ମଣ ଶାସନ ।

ବଂଶ—ପୁଣ୍ୟଶ୍ଳୋକ ବାଗ୍ମୀ, ସଂସ୍କାର ପଂଡ଼ିତ ହରିହର ଦାସ (୧୮୪୨-୭୪)କଂ କୌଶିକ ଦାସ ବଂଶ ।

ପିତାମହ—ସମାଜସେବୀ ଶ୍ରୀ ବନମାଳୀ ଦାସ ।

ପିତାମାତା—ପିତା-ଶ୍ରୀ ଆନନ୍ଦ ଦାସ ମାତା-ଶ୍ରୀମତୀ ହୀରାଦେବୀ ।

ଜନ୍ମ—୧୮୮୪ ଅଗଷ୍ଟ ତା୫ରିଖ ସୋମବାର ଗହ୍ମାପୂର୍ଣ୍ଣମୀ ପୂର୍ବଦିନ ମାତାଂକ ଅଷ୍ଟମ ଗର୍ଭରେ ଆବିର୍ଭାବ ।

ନାମକରଣ—ପୁତ୍ରହେବା ଆଶାରେ ପୁରୀଜିଲ୍ଲାର ବାଲିଆନୀଳକଂଠଂକ ନିକଟରେ କଠିନ ସାଧନା ଓ ଦେବୋପାସନା କରି ୪୮ ବର୍ଷ ବୟସରେ ପୁତ୍ର ପାଇଥିବାରୁ ନୀଳକଂଠଂକ ନାମ ସେଇ ଦେବତାଂକ ନାମରେ ନାମିତ ହୋଇଥିଲା ।

୧୮୮୯-୯୯—ଗ୍ରାମ ଚାଟଶାଳୀ ଓ ଭର୍ଣ୍ଣାକୁଳର ସ୍କୁଲରେ ଶିକ୍ଷା ସମାପନ କରି ମେଧାବୀବୃତ୍ତି ପାଇଥିଲେ ।

୧୮୯୯—ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କଲେ । ଖ୍ରୀଷ୍ଟିଆନ ଓ ହିନ୍ଦୁ ପ୍ରାର୍ଥନାର ପାର୍ଥକ୍ୟ ଜାଣିବାକୁ ଗୀର୍ଜାରେ ପ୍ରବେଶ କରି ସଂସ୍କୃତ ପଂଡ଼ିତଂକ ଚକ୍ଷୁଶୂଳ ହେଲେ ।

୧୯୦୨—ଗ୍ରୀଷ୍ମବକାଶରେ ଗୋପବଂଧୁ, ହରିହର ଓ ଅନଂତଂକ ସହିତ ଭବିଷ୍ୟତ ଦେଶସେବା ପାଇଁ ଶପଥ ନେଲେ ।

୧୯୦୪—ସରକାରୀ ବୃତ୍ତି ପାଉଥିଲେ ମଧ ଉତ୍କଳ ଗୌରବ ମଧୁସୂଦନଂକ ସ୍ୱଦେଶୀ ଦ୍ରବ୍ୟ ବ୍ୟବହାର ପ୍ରତିଜ୍ଞା ଗ୍ରହଣ କଲେ ।

୧୯୦୫—(କ) ବଂଶରକ୍ଷା ପାଇଁ ନିଜର ପିତା ଓ ଗୁରୁ ଗୋପବଂଧୁଂକ ବାଧ୍ୟବାଧକତାରେ ଫେବୃୟାରୀ ତା୫ରିଖରେ ବୀରପୁରୁଷୋତ୍ତମପୁରର ଶ୍ରୀ ସୋମନାଥ ମିଶ୍ରଂକ କନ୍ୟା ଶ୍ରୀମତୀ ରାଧାମଣି ଦେବୀଂକ ପାଣି ଗ୍ରହଣ କଲେ । (ଖ) ଫେବୃୟାରୀ ୧୫ ତାରିଖରେ ମାଟ୍ରିକ ପରୀକ୍ଷାଦେଇ ସେଥିରେ ବୃତ୍ତି ପାଇ ରେଭେନ୍‌ସା କଲେଜରେ ଏଫ୍.ଏ. ପଢ଼ିଲେ ।

୧୯୦୫/୬—ବିପ୍ଳବୀ ଛାତ୍ରସଂଘ ଗଠି ପରେ ଫାସି ପାଇଥିବା ବିପ୍ଳବୀ ନେତା ଖୁଦିରାମ ବୋଷଂକୁ ସଂଗେ ଘେନି ଶୋଭାଯାତ୍ରାରେ କଟକ ସହର ପରିକ୍ରମା କରିଥିଲେ ।

୧୯୦୭—ମେଓ ବୃତ୍ତି ସହିତ ଏଫ୍.ଏ. ପାସ୍‌କରି, ଛାତ୍ରାଭାବରୁ କଟକ ଓଡ଼ିଶାରୁ ବିଜ୍ଞାନ ଉଠିଯିବାକୁ ଥିବାରୁ ସଂସ୍କୃତ ଛାଡ଼ି ଦର୍ଶନ ସହିତ ରାସାୟନିକ ବିଦ୍ୟାନେଇ ରେଭେନ୍‌ସା କଲେଜରେ ବି.ଏ. ପଢ଼ିଲେ ।

୧୯୦୮—ନାନା ଛାତ୍ର ସଂଗଠନ ଗଢ଼ି, ସାହିତ୍ୟ ଆଲୋଚନା, ରୋଗୀ ଓ ଦୁସ୍ଥଜନ ସେବାରେ ସକ୍ରୀୟ ଅଂଶ ଗ୍ରହଣ କରି ୟଂଗ ଉତ୍କଳ ଆସୋସିଏସନ୍ ମାଧମରେ ଗୋପବଂଧୁଂକ ସହିତ କଟକ ଜିଲ୍ଲା ବନ୍ୟାବିପନ୍ନ ଅଂଚଳରେ ସେବାକାର୍ଯ୍ୟ କଲେ ।

୧୯୦୯—ଓଡ଼ିଶାରେ ମଣିଷ ଗଢ଼ିବା ପାଇଁ ଏକ ଶିକ୍ଷା ଅନୁଷ୍ଠାନ ଗଢ଼ିବାକୁ ଗୋପବଂଧୁଂକ ସଂଗେ ନିଜଗ୍ରାମର ଭର୍ଣ୍ଣାକୁଳର ସ୍କୁଲକୁ ସତ୍ୟବାଦୀ ଉଠାଇ ଆଣି ସତ୍ୟବାଦୀ ବିହାରର ମୂଳଭିତ୍ତି ସ୍ଥାପନ କଲେ ।

୧୯୧୧—ଅକ୍ଟୋବର ତା୧୧ରିଖରେ ଦର୍ଶନରେ କଲିକତାରୁ ଏମ୍.ଏ. ପାସ୍ କରି ଆଉ ଏକ ବର୍ଷର ଓକିଲାତି ପଢ଼ା ଓ ବୃତ୍ତିକୁ ଛାଡ଼ି ସରକାରୀ ଚାକିରିର ପ୍ରଲୋଭନ ଏଡ଼ି ସତ୍ୟବାଦୀ ଅନୁଷ୍ଠାନର ଭାର ହାତକୁ ନେଲେ ।

୧୯୧୨—ଜାତି ଧର୍ମ ନିର୍ବିଶେଷରେ ଛାତ୍ରଙ୍କୁ ଏକାଠି ରହିବା ଓ ଖାଇବା ପିଇବାର ବ୍ୟବସ୍ଥା କରିବା ଦ୍ୱାରା ରକ୍ଷଣଶୀଳ ସମାଜପତିମାନେ ତାଂକ ସମାଜ ସଂସ୍କାରକୁ ବିରୋଧ କରି ତାଂକୁ ସମାଜରୁ ବାସଂଦ କରିବାକୁ ଚେଷ୍ଟାକରି ବିଫଳ ହେବାରୁ ତାଂକ ସ୍କୁଲ ଓ ଲାଇବ୍ରେରୀ ପୋଡ଼ିଦେଲେ । ସେ ସବୁରେ ସେ ଓ ତାଂକ ସାଥୀମାନେ ଅବିଚଳିତ ରହି ବନବିଦ୍ୟାଳୟରେ ଗଛମୂଳେ ଶିକ୍ଷାଦେବା ଆରଂଭ କଲେ ।

୧୯୧୮—(କ) ୧୯୧୮ ପର୍ଯ୍ୟଂତ କୁଳପତି ଭାବରେ ସ୍କୁଲ ପରିଚାଳନା ଭାର ନେଇ ଛାତ୍ରାବାସରେ ରହି ପିଲାଂକୁ ଗଢୁଥିଲେ । (ଖ) ଅକ୍ଟୋବର ତା୧୭ରିଖରେ ସାଥୀ ଗୋଦାବରୀଶଂକୁ ସ୍କୁଲ ଭାର ଦେଇ ଜନସେବା ଓ ସାହିତ୍ୟ ସାଧନାରେ ମନୋନିବେଶ କଲେ ।

୧୯୧୯—(କ) ପୁରୀଜିଲ୍ଲାର କରାଳ ଘୋର ଦୁର୍ଭିକ୍ଷରେ ଛାତ୍ର ଓ ସ୍ୱେଚ୍ଛାସେବକଂକୁ ଧରି ସେବାକାର୍ଯ୍ୟ ଚଳାଇ, ବିହାର ଓଡ଼ିଶା ଲାଟଂକୁ ନେଇ ନିଜ ହାତ ତିଆରି ମାନଚିତ୍ର ଅନୁସାରେ ସେ ଅଂଚଳ ଦେଖାଇ ଲୋକଂକ ଦୁରବସ୍ଥା ଜଣାଇଲେ । (ଖ) ତାଂକର ଦେଶର ବିଭିନ୍ନ ପତ୍ର ପତ୍ରିକାର ଦୁର୍ଭିକ୍ଷ ବିଷୟ ପ୍ରକାଶିତ ହେବାରୁ ସରକାର ତାଂକ ନାମରେ ନାନା ମୋକଦମା ରୁଜୁ କଲେ । (ଗ) ଦୁର୍ଭିକ୍ଷ ଅଂଚଳ ଦେଖିବାକୁ ସାବରମତି ଆଶ୍ରମରୁ ମହାତ୍ମାଗାଂଧି ଗୋବିଂଦ ମିଶ୍ର ଓ ତାଂକର ବାପାଂକୁ ପଠାଇ ନୀଳକଂଠ ଓ ଗୋପବଂଧୁଂକ ସଂଗେ ସଂପର୍କ ସ୍ଥାପନ କରି ଓଡ଼ିଶାରେ କଂଗ୍ରେସର ଦୃଢ଼ ମୂଳଦୁଆ ପକାଇଲେ ।

୧୯୨୦—କଲିକତା ବିଶ୍ୱବିଦ୍ୟାଳୟର କୁଳପତି ଆଶୁତୋଷ ମୁଖାର୍ଜୀଂକ ଆମଂତ୍ରଣ କ୍ରମେ ଦୁଇବର୍ଷ କଂଟକରି ପ୍ରାଚ୍ୟଶିକ୍ଷା ଓ ଭାଷାତତ୍ତ୍ୱ ବିଭାଗ ପ୍ରତିଷ୍ଠା କରିବାକୁ ସୋନପୁର ଚେୟାରର ସମ୍ମାନିତ ଅଧ୍ୟାପକ ଆସନ ଗ୍ରହଣ କଲେ ଓ ସେଠାରେ ଓଡ଼ିଆ ଭାଷାରେ ଏମ୍.ଏ. ଶ୍ରେଣୀ ଖୋଲିଲେ ।

୧୯୨୧—ଜାନୁଆରୀ ତା୬ରିଖରେ କଲିକତା ଛାଡ଼ି ସଂବଲପୁରରେ କଂଗ୍ରେସ ସଂଗଠନ ଗଢ଼ି ଅସହଯୋଗ ଆଂଦୋଳନର ଭାର ନେଲେ । ସେଠାରେ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା, କଂଗ୍ରେସ ମୁଖପତ୍ର, ସେବାକାଗଜ ସଂପାଦନା ଓ ବିପନ୍ନ ଲୋକଂକ ସେବାରେ ଲାଗିଲେ ।

୧୯୨୨—(କ) ପୁରୀ କଂଗ୍ରେସ କମିଟିର ସଂପାଦକ ଓ ପରେ (ଖ) ଉତ୍କଳ କଂଗ୍ରେସର ସଭାପତି ଦାୟିତ୍ୱ ଗ୍ରହଣ କଲେ । (ଗ) ରାଜଦ୍ରୋହୀ ଭାବରେ ଅଟକବଂଦୀ ହେଲେ ।

୧୯୨୩—ମହାତ୍ମା ଗାଂଧିଂକ ସହିତ ସତ୍ୟବାଦୀରୁ କଟକ ପଦଯାତ୍ରା ପରେ ରାଜବଂଦୀ ଭାବରେ ଜୋରୀମାନା ସହ ୪ମାସ କାରାଦଂଡ଼ ଭୋଗ କଲେ ।

୧୯୨୪—(କ) ସ୍ୱରାଜ ଦଳରୁ କେନ୍ଦ୍ର ଆସେମ୍ବ୍ଲିକୁ ନିର୍ବାଚିତ ହୋଇ ମୋତିଲାଲ ନେହେରୁଂକ ନେତୃତ୍ୱରେ ସେ ଦଳର ସାଧାରଣ ସଂପାଦକ ହେଲେ । (ଖ) ଦିଲ୍ଲୀ ବିଶ୍ୱବିଦ୍ୟାଳୟକୁ ସଦସ୍ୟ ଭାବରେ କେଂଦ୍ର ଆସେଂବ୍ଲିରୁ ନିର୍ବାଚିତ ହେଲେ । (ଗ) କିଛିକାଳ ପରେ କଂଗ୍ରେସ ଆହ୍ୱାନରେ କେଂଦ୍ର ବିଧାନସଭା ସଦସ୍ୟ ପଦରୁ ଇସ୍ତଫା ଦେଲେ ।

୧୯୨୭—(କ) କଂଗ୍ରେସର ଆହ୍ୱାନରେ ନିର୍ବାଚନ ଲଢ଼ି ପୁଣି କେଂଦ୍ର ଆସେଂବ୍ଲିରେ କଂଗ୍ରେସ ଦଳର ସଂପାଦକ ହେଲେ । (ଖ) ଫେବୃୟାରୀ ଆଠ ତାରିଖରେ ଓଡ଼ିଶା ପ୍ରଦେଶ ଗଠନ ପାଇଁ ପ୍ରସ୍ତାବ ପାଶ କରାଇ ଓଡ଼ିଶା ପ୍ରଦେଶ ଗଠନର ରାସ୍ତା ଉନ୍ମୁକ୍ତ କଲେ ।

୧୯୨୮—(କ) ପ୍ରଧାନ ସଖା ଓ ଗୁରୁ ଗୋପବଂଧୁଂକ ମହାପ୍ରୟାଣ ପରେ ତାଂକ ସଂଗ୍ରାମୀ ଦଳର ସମସ୍ତ ଭାର ଗ୍ରହଣ କଲେ । (ଖ) ଗୋପବଂଧୁଂକ ପ୍ରତିଷ୍ଠିତ ସମାଜ କାଗଜର ସଂପାଦକତ୍ୱ ମଧ୍ୟ କିଛିଦିନ ପାଇଁ ବହନ କଲେ । (ଗ) ଗୋପବଂଧୁ ମେମୋରିଆଲ ନାମକ ଏକ ମହାଭାରତୀୟ ଜାତୀୟ କର୍ମୀ ଅନୁଷ୍ଠାନ ଗଠନ ପାଇଁ ପଂଡ଼ିତ ମଦନ ମୋହନ ମାଲବ୍ୟ, ଠକ୍କର ବାପା, ସରୋଜିନୀ ନାଇଡୁ, ସେଠ ଗୋବିଂଦ ଦାସ କୋଷାଧକ୍ଷ, ସୁଭାଷଚଂଦ୍ର ବୋଷ ପ୍ରଭୃତିଂକୁ ଘେନି ଏକ କମିଟି ଗଢ଼ାଇଲେ । (ଘ) ସତ୍ୟବାଦୀରେ ଗୋପବଂଧୁ ସେବାସଦନ ଆଶ୍ରମ ଗଢ଼ାଯାଇ ଅନ୍ୟ କର୍ମୀମାନଂକ ସହିତ ସେଠାରେ ନୀଳକଂଠ ସପରିବାର ରହିବାର ବ୍ୟବସ୍ଥା କଲେ । (ଙ) ଗୋପବଂଧୁଂକ ଶ୍ମଶାନ ସ୍ଥଳୀରେ ସ୍ମୃତିମଂଦିର ପ୍ରତିଷ୍ଠା ହେଲା ।

୧୯୨୯—କଲିକତାରେ ଶ୍ରମିକ ସଂଗଠନ ଓ ଟାଟାରେ ଟିନ୍‌ପ୍ଲେଟ ଧର୍ମଘଟ ପରିଚାଳନା କଲେ ।

୧୯୩୦—(କ) ଓଡ଼ିଶା ସର୍ବଦଳୀୟ ସମ୍ମିଳନୀରେ ସଭାପତି ଭାବରେ କେଂଦ୍ର ସରକାରଂକଠାରେ ଓଡ଼ିଶା ସ୍ୱତଂତ୍ର ପ୍ରଦେଶ ପାଇଁ ଦୃଢ଼ ଦାବି ଜଣାଇଲେ । (ଖ) ଜାତୀୟ କଂଗ୍ରେସର ପ୍ରସ୍ତାବିତ ପୁରୀ ଅଧିବେଶନର ଅଭ୍ୟର୍ଥନା ସମିତି ସଭାପତି ରୂପେ ନିର୍ବାଚିତ ହେଲେ ।

୧୯୩୧—(କ) ବଡ଼ଲାଟ ସଭାରେ ତାଂକର ଅଖଂଡ଼ ପ୍ରତିପତ୍ତି ଯୋଗୁ ବଡ଼ଲାଟ ପରୋକ୍ଷରେ ଶ୍ରେଷ୍ଠ ରାଜସମ୍ମାନ ଯାଚିବାରୁ ସେ ତାହା ପ୍ରତ୍ୟାଖ୍ୟାନ କରି ବହୁ ନିର୍ଯ୍ୟାତନାର ସମ୍ମୁଖୀନ ହେଲେ । (ଖ) ପୁରୀଜିଲ୍ଲା କାକଟପୁର ଅଂଚଳର ଅସ୍ତରଂଗ ସମୁଦ୍ରକୂଳରେ ଲବଣ ସତ୍ୟାଗ୍ରହ ପରିଚାଳନା କରି ହଜାରୀବାଗ ଜେଲ୍‌ରେ ଦୀର୍ଘ ଦେଢ଼ବର୍ଷ କାରାଦଂଡ଼ ଭୋଗ କଲେ । (ଗ) ତାଂକ ଆଦର୍ଶରେ ଅନୁପ୍ରାଣିତ ହୋଇ ସତ୍ୟାଗ୍ରହ କରି ତାଂକ ସହଧର୍ମିଣୀ ଶ୍ରୀମତୀ ରାଧାମଣି ଦେବୀ ଓ ଜ୍ୟେଷ୍ଠପୁତ୍ର ଛାତ୍ରନେତା ଅଶୋକ କାରାବରଣ କଲେ ।

୧୯୩୩—ଦୀର୍ଘ କାରାଜୀବନ ହଜାରୀବାଗ ପାଟନା ଜେଲରେ ବିଦ୍ୟାଚର୍ଚ୍ଚାରେ କଟାଇ ବହୁ ଉପାଦେୟ ପୁସ୍ତକ ଓ ଗୀତାରଭାଷ୍ୟ ଲେଖିସାରି କାରାଗାରରୁ ମୁକ୍ତ ହେଲେ ।

୧୯୩୪—(କ) ଉତ୍କଳ କଂଗ୍ରେସର ସଭାପତି ଦାୟିତ୍ୱ ଗ୍ରହଣ କଲେ । (ଖ) "ନୀଳକଂଠ ତୁମକୁ ଓଡ଼ିଶା ଲାଗିଲା କହି" କୁଳବୃଦ୍ଧ ମଧୁସୂଦନ ଆଖି ମୁଦିଲେ । (ଗ) ନୀଳକଂଠ ନବଭାରତ ପ୍ରେସ ବସାଇ ନବଭାରତ ମାସିକ ପତ୍ରିକା ପ୍ରକାଶ କଲେ ।

(ଘ) ଡିସେମ୍ବରରେ ପୁଣି ନିର୍ବାଚନ ଲଢ଼ି କେଂନ୍ଦ୍ର ଆସେଂମ୍ବ୍ଲିରେ ଭୁଲାଭାଇ ଦେଶାଇଂକ ନେତୃତ୍ୱରେ କଂଗ୍ରେସ ଦଳର ସଂପାଦକ ଭାବରେ ନିର୍ବାଚିତ ହେଲେ ।

୧୯୩୫—(କ) ଜେଲରେ ଲେଖିଥିବା ତାଂକ ଆଦର୍ଶ ଶିକ୍ଷା ପ୍ରବଂଧ କାଶୀରେ ଅନୁଷ୍ଠିତ ପ୍ରାଚ୍ୟଶିକ୍ଷା ସମ୍ମିଳନୀରେ ପାଠ କଲେ । (ଖ) ଆଂଧ୍ର ବିଶ୍ୱବିଦ୍ୟାଳୟର ଅନୁରୋଧରେ ସମ୍ମାନିତ ବକ୍ତାଭାବରେ ତାଂକର ନିବଂଧ ପାଠ କଲେ ।

୧୯୩୬—(କ) ଏପ୍ରିଲ ପହିଲାରେ ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇ ସେହି ବର୍ଷ ଶେଷଭାଗରେ ପ୍ରାଦେଶିକ ବିଧାନ ସଭାର ନିର୍ବାଚନ ଘୋଷିତ ହେଲା । (ଖ) ନିଜ ଉତ୍କଳ କଂଗ୍ରେସର ସଭାପତି ଭାବରେ ନିର୍ବାଚନ ଦାୟିତ୍ୱରେ ରହି ଓଡ଼ିଶା ସାରା ବୁଲି ପ୍ରତିନିଧି ବାଛି ପ୍ରଭାବଶାଳୀ ଧନୀ ଜମିଦାରଂକ ବିରୁଦ୍ଧରେ ପ୍ରାର୍ଥୀ ଠିଆ କରାଇଲେ । ତାଂକର ବାଗ୍ମୀତା, ଦୃଢ଼ତା ଓ ସାଂଗଠନିକ ଶକ୍ତି ପ୍ରଭାବରେ ଦାଢ଼ିଆ ଗାଂଧି କହିଯାଇଚି କଂଗ୍ରେସକୁ ଭୋଟଦିଅ ଧ୍ୱନିରେ କଂଗ୍ରେସର ଶେଷପର୍ଯ୍ୟଂତ ସମର୍ଥନ ଥିବା ସମସ୍ତ ପ୍ରାର୍ଥୀ ଜୟଯୁକ୍ତ ହୋଇ କଂଗ୍ରେସଦଳ ସଂଖ୍ୟା ଗରିଷ୍ଠ ହେଲା । (ଗ) ଏହି ସମୟରେ ତାଂକର ମୁଖ୍ୟ ସଂପାଦକତ୍ୱରେ କଂଗ୍ରେସର ମୁଖପତ୍ର 'ଲୋକମତ' ପ୍ରକାଶିତ ହୋଇଥିଲା ।

୧୯୩୭—(କ) କେଂନ୍ଦ୍ର କଂଗ୍ରେସ ନେତୃବୃଂଦ ନିର୍ବାଚିତ ସଭ୍ୟମାନଂକ ଉପରୁ ପ୍ରାଦେଶିକ କର୍ତ୍ତୃତ୍ୱ କାଢ଼ିନେଇ କେଂନ୍ଦ୍ର ପାର୍ଲିଆମେଂଟାରୀ ବୋର୍ଡ଼ ହାତରେ ସମସ୍ତ କ୍ଷମତା ଠୁଳ କରିବାରୁ ନିର୍ବାଚିତ ସଭ୍ୟମାନେ ସେ ବୋର୍ଡ଼ର ହାତବାରେଶୀ ରୂପେ କାର୍ଯ୍ୟ କରିବା ଦ୍ୱାରା ସେଥିରେ ପ୍ରଦେଶର ସ୍ୱାର୍ଥରେ ବାଧା ପଡ଼ିବ ବୋଲି ନୀଳକଂଠ ଦୃଢ଼ ପ୍ରତିବାଦ କଲେ । (ଖ) ସେ ଯୋଗୁ କୌଶଳକ୍ରମେ ତାଂକୁ ପ୍ରାଦେଶିକ ସଭାପତି ପଦରେ ପୁନ ନିର୍ବାଚିତ କରାଇ ଦିଆଗଲା ନାହିଁ । (ଗ) ସେ ବିଧାନସଭାରେ ପ୍ରବେଶ କରିବା ବାରଣ କରାଯାଇ ପ୍ରସ୍ତାବ ପାଶ୍ କରାଗଲା ।

୧୯୩୮—(କ) ଓଡ଼ିଶାରେ ଶିକ୍ଷାର ଉନ୍ନତି ପାଇଁ ଗୋଟିଏ ବେସରକାରୀ କମିଟି ଗଢ଼ାଯାଇ ପୂର୍ବରୁ ନୀଳକଂଠ ତାର ସଭାପତି ଥିଲେ । କଂଗ୍ରେସ ସରକାରଂକ ସରକାରୀ ବିଶ୍ୱବିଦ୍ୟାଳୟ କମିଟିରେ ସେ ସଭାପତି ହୋଇ ତାଂକ ରିପୋର୍ଟ ପ୍ରଦାନ କଲେ । (ଖ) କଂଗ୍ରେସ ମଂତ୍ରୀମଂଡ଼ଳର ଇସ୍ତଫାଯୋଗୁ ବିଶ୍ୱବିଦ୍ୟାଳୟ ଗଠନ ହୋଇପାରି ନଥିଲା । (ଗ) ସେ ରେଭେନ୍ସା କଲେଜରେ ଭାରତୀୟ ସଂସ୍କୃତି ଓ ଜ୍ଞାନ ଉପରେ ଚାରିଗୋଟି ଗବେଷଣା-ମୂଳକ ଏକସଟେନସନ୍ ବା ସମ୍ମାନିତ ବକ୍ତୃତା ପ୍ରଦାନ କରିଥିଲେ ।

୧୯୩୯—(କ) ପୁଣି ଉତ୍କଳ କଂଗ୍ରେସ ସଭାପତି ଭାବରେ ନିର୍ବାଚିତ ହେବାପରେ ଜାତୀୟ କଂଗ୍ରେସର ସଭାପତି ନେତାଜୀ ସୁଭାଷଚଂନ୍ଦ୍ର ବୋଷଂକ ବୈପ୍ଳବିକ ନୀତିକୁ ସମର୍ଥନ ଜଣାଇଲେ । (ଖ) ସେପ୍ଟେମ୍ବର ମାସରେ ସଭାପତି ପଦରୁ ଓହରି ଆସିଥିବା ସୁଭାଷଚଂନ୍ଦ୍ର ବୋଷଂକ ମତ ପ୍ରଦେଶବାସୀଂକୁ ଶୁଣାଇବା ପାଇଁ ଓଡ଼ିଶାକୁ ନିମନ୍ତ୍ରଣ କରି ବିପୁଳ ସଂବଂର୍ଧନା ଦେଇ କଂଗ୍ରେସର ରକ୍ଷଣଶୀଳ ତୁଂଗନେତାମାନଂକର ଚକ୍ଷୁଶୀଳ ହେଲେ । (ଗ) ଉତ୍କଳ କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଇ ଓଡ଼ିଶାରେ ନେତାଜୀଂକ ଫରଓ୍ୱାଡ଼ ବ୍ଲକ ପରିଚାଳନାର ଭାର ନେଲେ ।

୧୯୪୦—(କ) ସୁଭାଷଂକ ମତ ବିରୋଧରେ କଂଗ୍ରେସ ପ୍ରାଦେଶିକ ସରକାରମାନଂକରୁ ଓହରିଯାଇ, କେଂଦ୍ର ଇଂରେଜ-ସରକାରଂକ ଯୁଦ୍ଧ ଉଦ୍ୟମକୁ ପରୋକ୍ଷରେ ସାହାଯ୍ୟ କରୁଥିବାରୁ ପୂର୍ବଦିଗରୁ ଆକ୍ରମଣର ଆଶଂକା ଥିବା ପ୍ରଦେଶମାନଂକରେ ସବୁଦଳକୁ ଘେନି ମିଳିତ ମଂତ୍ରୀ ଗଢ଼ି ଦେଶବାସୀଂକୁ ଆକ୍ରମଣ ସମୟରେ ରକ୍ଷା କରିବା ପାଇଁ ସୁଭାଷ ଗୁପ୍ତ ଯୋଜନା କରିଥିଲେ । (ଖ) ସେହି ଯୋଜନା ଅନୁସାରେ ସୁଭାଷ ଦେଶଛାଡ଼ି ଚାଲିଯିବା ସମୟରେ ନୀଳକଂଠ ମୁସଲିମ୍ ଲିଗ ହିନ୍ଦୁ ଗୋଷ୍ଠୀ ଓ କଂଗ୍ରେସର କେତେକ ବଳିଷ୍ଠ ଜନସେବୀଂକୁ ଏକତ୍ର କରାଇ ଏକ ମିଳିତ ମଂତ୍ରୀମଂଡ଼ଳ ଗଢ଼ାଇ ଓଡ଼ିଶାର ଜାତୀୟବାଦୀ ଯୁବକମାନଂକୁ ଇଂରେଜ ସେନାବାହୀନୀରେ ଭର୍ତ୍ତିକରିବା ପାଇଁ ଏକ ଜାତୀୟ ଯୁଦ୍ଧ ସାମୁଖ୍ୟ ଗଢ଼ାଇଲେ ।

୧୯୪୧—ତାଂକ ପ୍ରେସରେ ସୁଭାଷ ବୋଷଂକ ଜୀବନୀ ଛପାଇବା ଓ ଇଂରେଜ ସରକାରଂକ ବିରୁଦ୍ଧରେ ଅନ୍ୟାନ୍ୟ ଗୁପ୍ତ ଷଡ଼ଯଂତ୍ର ସବୁର ସୁରାକ ପାଇ ତତ୍କାଳୀନ ଗୋରାଲାଟ ଲୁଇସ୍, ମିଳିତ ମଂତ୍ରୀମଂଡ଼ଳ ଥିଲେ ମଧ ନାନା ବାହାନାରେ ତାଂକ ପ୍ରେସ ଖାନତଲାସ କରାଇ ଆପତ୍ତିଜନକ କାଗଜପତ୍ର ପାଇଁ ତାଂକ ପୁତ୍ର ଅଶୋକ ଦାସଂକୁ କାରାରୁଦ୍ଧ କରିଥିଲେ । ପରେ ଅନ୍ୟାନ୍ୟ ଫରଓ୍ବାଡ଼ବ୍ଲକର ପୂର୍ବତନ କର୍ମୀମାନଂକୁ ମଧ ଷଡ଼ଯଂତ୍ର ପାଇଁ ବଂଦୀ କରିଥିଲେ । ମିଳିତ ମଂତ୍ରୀମଂଡ଼ଳ ଥିବାରୁ ନୀଳକଂଠଂକୁ ବଂଦୀ କରିପାରି ନଥିଲେ, ତଥାପି ଜାତୀୟ ଯୁଦ୍ଧ ସାମୁଖ୍ୟକୁ ତାଂକ ହାତରୁ କାଢ଼ି ନେଇ ଜଣେ ପୂର୍ବତନ ପୋଲିସ ଅଫିସରଂକ ହାତରେ ଦେଇଥିଲେ ।

୧୯୪୩—(କ) ନୀଳକଂଠଂକ ରିପୋର୍ଟ ଭିତ୍ତିରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲା । (ଖ) ବିଶ୍ୱଯୁଦ୍ଧର ସମାପ୍ତି ହେବାରୁ ମିଳିତ ମଂତ୍ରୀମଂଡ଼ଳ ଭାଂଗି ଦେବାକୁ ସେ ପ୍ରସ୍ତାବ ଦେଲେ । (ଗ) ପୂର୍ଣ୍ଣପ୍ରାଣରେ ନବଭାରତ ସାହିତ୍ୟ ଅନୁଷ୍ଠାନରେ ଲାଗିରହି ନବଭାରତ ଦୈନିକ ସହିତ ପତ୍ରିକା ସଂପାଦନା ଓ ସାହିତ୍ୟ ଗବେଷଣାରେ ମନୋନିବେଶ କରି ବହୁ ସାରଗର୍ଭକ ପୁସ୍ତକ ପ୍ରଣୟନ କଲେ ।

୧୯୪୬—(କ) ୧୯୩୫-କେନ୍ଦ୍ର ବ୍ୟବସ୍ଥାପକ ସଭାର ସଦସ୍ୟ ରହି ସେ ସଭା ଭାଂଗିଯିବାରୁ ସେ ଦାୟିତ୍ୱରୁ ମୁକ୍ତ ହେଲେ । (ଖ) କଂଗ୍ରେସ ପ୍ରାର୍ଥୀ ଭାବରେ ନିର୍ବାଚନ ଲଢ଼ିବାକୁ ଇଚ୍ଛାକରି ସୁବିଧା ନପାଇବାରୁ ଆଗରୁ ଦରଖାସ୍ତ କରିଥିବା ଯୋଗୁ ନୀତିଦୃଷ୍ଟିରୁ ନିର୍ବାଚନ ନଲଢ଼ି ନୀରବ ରହିଲେ ।

୧୯୫୧—(କ) ପୁରୀ କର୍ମୀ ସମ୍ମିଳନୀରେ 'ଉତ୍କଳ ଗୁରୁ' ଉପାଧିରେ ଭୂଷିତ ହେଲେ । (ଖ) ସେଠାରେ ସ୍ୱାଧୀନ ଜନସଂଗ ଦଳ ଗଢ଼ାଯାଇ ସେ ସଭାପତି, ପଂଡ଼ିତ ଗୋଦାବରୀଶ ମିଶ୍ର ଉପସଭାପତି ଓ ଶ୍ରୀ ଯଦୁମଣି ମଂଗରାଜ କୋଷାଧକ୍ଷ ହୋଇ ସେ ଦଳ ପକ୍ଷରୁ ନିର୍ବାଚନ ଲଢ଼ିବାର ସ୍ଥିର ହେଲା ।

୧୯୫୨—ସେ ଦଳ ପକ୍ଷରୁ ଗୋଦାବରୀଶଂକ ସହିତ ବିପୁଳ ଭୋଟରେ ଜିଣି ବିଧାନ ସଭା ସଦସ୍ୟ ହେଲେ ।

୧୯୫୫—(କ) ଶ୍ରୀ ବନମାଳୀ ପଟ୍ଟନାୟକଙ୍କ ସଭାପତିତ୍ୱରେ ଉତ୍କଳ କଂଗ୍ରେସ କମିଟି ନୀଳକଂଠଙ୍କୁ ପୁଣି କଂଗ୍ରେସରେ ଯୋଗଦେବାକୁ ଅନୁରୋଧ କରି ପ୍ରସ୍ତାବ ପାଶ୍ କଲେ । (ଖ) କଂଗ୍ରେସ ସଭାପତି ଓ ପ୍ରଧାନମଂତ୍ରୀ ପଂଡ଼ିତ ଜବାହରଲାଲ ନେହେରୁଂକ ଅନୁରୋଧରେ ନିଜ ନିର୍ବାଚନ ମଂଡ଼ଳୀର ମତ ନେଇ ସେ କଂଗ୍ରେସରେ ଯୋଗ ଦେଲେ । (ଗ) ଉତ୍କଳ ବିଶ୍ୱବିଦ୍ୟାଳୟର ସମ୍ମାନିତ ପ୍ରୋଟାନସେଲର ସମ୍ମାନ ଲାଭ କଲେ । (ଘ) ୨୦/୧୨/୫୫ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସମ୍ମାନିତ ଡକ୍ଟରେଟ୍ ଉପାଧି ପାଇଲେ ।

୧୯୫୬—ଅଗଷ୍ଟ ଆଠ ତାରିଖରେ ତାଂକର ପ୍ରଧାନ ସାଥୀ ପଂଡ଼ିତ ଗୋଦାବରୀଶଂକ ତିରୋଧାନ ଘଟିଲା ।

୧୯୫୭—(କ) ନିଜର ପୂର୍ବତନ ସତ୍ୟବାଦୀ ନିର୍ବାଚନ ମଂଡ଼ଳୀରୁ ନିର୍ଦ୍ୱଂଦ୍ୱରେ ନିର୍ବାଚିତ ହୋଇ ଓଡ଼ିଶା ବିଧାନ ସଭାର ବାଚସ୍ପତି ହେଲେ । (ଖ) ତାଂକ ଉଦ୍ୟମରେ ବିଧାନ ସଭାର ମାନ ବୃଦ୍ଧି ହୋଇ ବିଧାନସଭା ଦପ୍ତର ସ୍ୱତଂତ୍ରତା ଲାଭ କଲା । (ଗ) ଓଡ଼ିଶା ସାହିତ୍ୟ ଏକାଡେ଼ମୀ ପ୍ରତିଷ୍ଠା ହୋଇ ସେ ତାର ପ୍ରଥମ ସଭାପତି ହେଲେ । (ଘ) ଭାରତ ସରକାର ତାଂକୁ ପଦ୍ମଭୂଷଣ ଉପାଧିରେ ସମ୍ମାନିତ କଲେ ।

୧୯୫୯—ଅଗଷ୍ଟ ପାଞ୍ଚ ତାରିଖରେ ନୀଳକଂଠ ଜୟନ୍ତୀ କମିଟି ଗଠନ ହୋଇ ଓ ଭାରତରେ ପ୍ରଧାନମଂତ୍ରୀ ଜବାହରଲାଲ, ସ୍ୱରାଷ୍ଟ୍ରମଂତ୍ରୀ ଗୋବିଂଦ ବଲ୍ଲଭ ପନ୍ଥ, ଓଡ଼ିଶାର ଲାଟ ଭୀମସେନ ସାଚାର, ମୁଖ୍ୟମଂତ୍ରୀ ମହତାବ ପ୍ରଭୃତି ସଂବର୍ଦ୍ଧନା ଜ୍ଞାପନ କଲେ ।

୧୯୬୩—(କ) ଶ୍ରୀରାମଚଂଦ୍ର ଭବନରେ ଅଧ୍ୟାପକ ବିପିନବିହାରି ରାଏଂକ ଦ୍ୱାରା ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ତାଂକର ପ୍ରତିକୃତି ଉନ୍ମୋଚିତ ହେଲା । (ଖ) ନୀଳକଂଠଂକ ଆତ୍ମଜୀବନୀ ପ୍ରକାଶିତ ହେଲା । (ଗ) ଗ୍ରଂଥାବଳୀ ସଂକଳନ ଆରଂଭ ହେଲା ।

୧୯୬୪—ଲୋକସେବକ ମଂଡ଼ଳକୁ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିର ସଂବୃଦ୍ଧିରେ ସାହାଯ୍ୟ କରିବା ପାଇଁ ତାଂକର ନବଭାରତ ପ୍ରେସକୁ ଦାନ କରାଗଲା ।

୧୯୬୫—ମାର୍ଚ୍ଚ ପଂଦର ତାରିଖ ଦିନ ତାଂକ ରଚିତ ଆତ୍ମଜୀବନୀ ପାଇଁ କେଂଦ୍ର ସାହିତ୍ୟ ଏକାଡେ଼ମୀ ଆନୁଷ୍ଠାନିକ ଭାବେ ସାହିତ୍ୟ ପୁରସ୍କାର ପ୍ରଦାନ କଲେ ।

୧୯୬୭—ନଭେଂବର ୬ତାରିଖ ସୋମବାର ପୁଣ୍ୟ କାର୍ତ୍ତିକ ଶୁକ୍ଳପଂଚମୀ ଅପରାହ୍ନ ୪ଘଂଟା ସମୟରେ ନୀଳକଂଠଂକ ମହାନ୍ ଆତ୍ମା ସ୍ୱର୍ଗଗାମୀ ହେଲା ।



# (ଘ) ଶ୍ରଦ୍ଧାଂଜଳି

ତାଂକର ତିରୋଧାନବାର୍ତ୍ତା ପବନ ବେଗରେ ଚାରିଆଡ଼େ ବ୍ୟାପୀ ଯାଇଥିଲା । ରେଡ଼ିଓ ଓ ଲୋକ ମୁଖରୁ ଶୁଣି ବହୁ ନରନାରୀ ବାଳକ ବାଳିକା ତାଂକର ଶେଷଦର୍ଶନ ପାଇଁ ତାଂକ ବାସଭବନକୁ ଆସି ମରଶରୀରରେ ପୁଷ୍ପାଂଜଳି ଅର୍ପଣ କରିଥିଲେ ।

ଓଡ଼ିଶା ସରକାରଂକ ମୁଖ୍ୟମଂତ୍ରୀ ଶ୍ରୀ ରାଜେଂଦ୍ର ନାରାୟଣ ସିଂହଦେଓ ସଂଗେ ସଂଗେ ଆସି ନିଜର ଶ୍ରଦ୍ଧାଂଜଳି ଜଣାଇବା ପରେ ଜାତୀୟ ଶୋକ ପାଳନ ପାଇଁ ପ୍ରଧାନ ସଚିବଂକୁ ନିର୍ଦ୍ଦେଶ ଦେଲେ । ବିଦେଶୀ-ସଚୀବ ଓ ଅନ୍ୟ ସରକାରୀ ଅଫିସରମାନେ ସେପରି ସମ୍ମାନ କେବଳ ସରକାରୀ ଅତ୍ୟୁଚ୍ଚ କର୍ମକର୍ତ୍ତାଂକୁ ଦିଆଯାଏ ଓ ନୀଳକଂଠ କେବେ ସେପରି କର୍ମକର୍ତ୍ତା ନଥିଲେ ତେଣୁ ଅସୁବିଧା ହେବ ବୋଲି ଜଣାଇଲେ । ଦେଶପ୍ରାଣ ସିଂହଦେଓ ଆଜି କାହା ଯୋଗରୁ ଏ ଓଡ଼ିଶା ଓ ତୁମେମାନେ ସଚିବ । ଜାତିର ଜନକ ମହାତ୍ମାଗାଂଧି ମଧ କୌଣସି କର୍ମକର୍ତ୍ତା ନଥିଲେ ତାଂକ ପାଇଁ ଜାତି କାଂଦିଥିଲା । ନୀଳକଂଠ ଓଡ଼ିଶାର ଜନକ ତାଂକୁ ଏ ସମ୍ମାନ ଦେଲେ ଓଡ଼ିଶା ଗୌରବାନ୍ବିତ ହେବ ।

ନୀଳକଂଠଂକ ମରଶରୀରକୁ ଜାତୀୟ ସମ୍ମାନ ଦିଆଯାଇ ମିଲିଟାରୀ ପୋଲିସଂକ ଗହଣରେ କଟକ ସହର ପରିକ୍ରମା କରାଯାଇଥିଲା । ପ୍ରତ୍ୟେକ ଛକମାନଂକରେ ଶତ ଶତ ଲୋକ ଓ ଅନୁଷ୍ଠାନ ପୁଷ୍ପାଂଜଳି ଅର୍ପଣ କରିବାର ସୁଯୋଗ ପାଇଥିଲେ । ପୋଲିସ ସୈନ୍ୟମାନେ ଦୁଃଖ ସଂଗୀତର ବାଜା ବଜାଇ ବନ୍ଧୁକମୁନ ତଳକୁ କରି ଆଗେ ଆଗେ ଚାଲିଥିଲେ । ଭୁବନେଶ୍ବରରେ ବିଶ୍ୱବିଦ୍ୟାଳୟ ବିଧାନସୌଧ ସଚିବାଳୟ ଜନାକୀର୍ଣ୍ଣ ହୋଇଥିଲା, ସେଠାରେ ସୈନ୍ୟମାନେ ସମ୍ମାନ ସୂଚକ ଅଭିବାଦନ ପରିଦର୍ଶନ କରିସାରି ଶବଧାରକୁ ଘେନି ସତ୍ୟବାଦୀ ପଂଚସଖା ଶ୍ମଶାନ ପୀଠକୁ ଚାଲିଥିଲେ । ଶୀତଦିନ ରାତିରେ ଶଡ଼କର ଦୁଇପଟେ ଗ୍ରାମବାସୀମାନେ ଖୋଳ କରତାଳ ଓ ପୁଷ୍ପମାଳା ଧରି ତାଂକର ପ୍ରିୟ ନେତାଂକର ଦର୍ଶନ ଲାଗି ବ୍ୟାକୁଳ ଚିତ୍ତରେ ଅପେକ୍ଷା କରୁଥିଲେ ।

ସାକ୍ଷୀଗୋପାଳରେ ପହଂଚିଲା ବେଳକୁ ପ୍ରାୟ ରାତ୍ରି ୨ଟା ହୋଇଥିଲା । କିଂତୁ ସେଠାରେ ଅପେକ୍ଷା କରିଥିବା ପୁରୀର ବହୁ ଅନୁଷ୍ଠାନର କର୍ମକର୍ତ୍ତା, ଭଦ୍ରବ୍ୟକ୍ତି ଓ ଆଖପାଖ ଗ୍ରାମର ହଜାର ହଜାର ଲୋକ ଶବ ଶୋଭାଯାତ୍ରାରେ ଯୋଗ ଦେଇଥିଲେ । ବକୁଳ ଶ୍ମଶାନରେ ହଜାର ହଜାର ଶୋକାକୁଳ ଜନତାଂକ ଗହଣରେ ତୋପଧ୍ୱନି ସହିତ ରାତି ୪ଟା ସମୟରେ ମୁଖାଗ୍ନି ଦିଆଯାଇଥିଲା । ମୁଖ୍ୟମଂତ୍ରୀଂକ ଚିତାଗ୍ନିରେ ଘୃତାହୁତି ଓ ଲୋକଂକ ବ୍ୟାକୁଳ କ୍ରଂଦନ ଓ ଶ୍ରଦ୍ଧାଂଜଳି ପରିସ୍ଥିତିକୁ ଅତି କରୁଣରୁ କରୁଣତର କରି ଦେଇଥିଲା ।

ସବୁ ସ୍କୁଲ, କଲେଜ, ସରକାରୀ ଓ ବେସରକାରୀ କାର୍ଯ୍ୟାଳୟ ପରଦିନ ଶୋକ ପାଳନ କରି ନିଜର କାର୍ଯ୍ୟ ବଂଦ କରିଥିଲେ । ଜାତୀୟ ପତାକା ଅର୍ଦ୍ଧନିମିଳିତ ହୋଇଥିଲା । ୧୨ଦିନ କାଳ ପ୍ରଦେଶ ଓ ପ୍ରଦେଶ ବାହାରେ ବହୁ ଶୋକସଭା ହୋଇ ଓଡ଼ିଶାର ସବୁ ଖବର-କାଗଜ ଶୋକବାର୍ତ୍ତା ଓ ପ୍ରବଂଧ ନିବଂଧରେ ପୂର୍ଣ୍ଣ ହୋଇଯାଇଥିଲା । ତାଂକ ସଂବଂଧରେ ବହୁ ପ୍ରବଂଧ ଓ କବିତା ପ୍ରକାଶିତ ହୋଇଥିଲା । ସେଥିରୁ ଗୋଟିଏ ମାତ୍ର କବିତା ଏଥିସଂଗେ ଦିଆଗଲା—

# (୪) ଲୋତକାଂଜଳି

ଏହିତ ଉତ୍କଳ ଧରଣୀ; ଏହି ସିକତାବେଳା
ନୀଳ ମହୋଦଧି ସଂଭାଷେ ତୁଂଗ ସେ ଗିରିମାଳା
ସହିତ ତଟିନୀ ଯାଉଛି ବହି ନୀଳ ସାଗରେ
ଏହିତ କୃଷକ ବସିଛି ବିଲ ପାଟ ପ୍ରାଂତରେ ।

ଏହି ସେ ଅମର ଲେଖନୀ କେତେ ଯାଇଛି ଲେଖି
ଭାଷା କୋଣାରକେ ରଖିଛି କେତେ ପାଷାଣ ସାକ୍ଷୀ
ମରଣ ସାଗରେ ମିଳିଛି, ତା'ର ଜୀବନ ସୁଅ,
ଦେଶବାସୀ ବସି ଝୁରଇ, ଛୁଟେ ନୟନୁ ଲୁହ ।

ସାହିତ୍ୟ ସରସ ଭଂଡ଼ାରେ କିଏ ମଂଥିବ ଆଉ ?
ବିପଥରେ ପଥ ସୃଜିବ ସହି ସମାଜ ଦାଉ !
ଭାରତ ଭୂଇଁରେ ପ୍ରଚାରି 'ନବଭାରତ' ବାଣୀ,
ସରଜିବ ନୂଆ ସରଣୀ ପଥ କଂଟକ ହାଣି,

'ବାପା' ବୋଲି କିଏ ଡାକିବ ପଥ ଶ୍ରାଂତ ବାଳକେ
ଜାତି ଗଉରବ ଗୀତିକା ଥାପି-ଚିତ୍ତ ଫଳକେ ?
ବକୁଳ ବନେ କେ ପୂଜକ ନେବ ଆଶ୍ରମ ଭାର
ଦେଶ ମାତୃକାର ପୂଜନେ ରଚି ପୂଜା ସଂଭାର ?

ଦିଗ ଦର୍ଶାଇବ କିଏ ସେ ସମାଲୋଚନା ପାଇଁ
ସତ୍ୟର ବିଜୟ ଭାଷଣେ ଭୟ ନାହିଁରେ ନାହିଁ ।
ସାହିତ୍ୟ ରତନ ଭଂଡ଼ାର କିଏ ତୁଳିବ ବସି,
ଭଲ ଭେଲ ସୂକ୍ଷ୍ମ ବିଚାରେ ହେଳେ କଳିବ କଷି,

ପଛ ପଥଚାରୀ ପାଇଁ ଯେ ଆଗେ ଦେଲା ଆଲୋକ
ସେ ମହାପୁରୁଷ ପ୍ରୟାଣେ ଜାତି କରଇ ଶୋକ ।
ନୀଳକଂଠ ସ୍ୱର କି ଆଉ ଶୁଭିବ ନାହିଁ
ପ୍ରାଣେ ପ୍ରାଣେ ଗୁରୁ ଗଂଭୀରେ ପ୍ରତିଧ୍ୱନି ଜଣାଇ ।

ଲକ୍ଷ ଲକ୍ଷ ଚକ୍ଷୁ ଫିଟାଇ ଶେଷେ ମୁଦିଲା ଡୋଳା,
କାଂଦେ ବନଭୂମି, କାଂତାର, କାଂଦେ ସାଗର ବେଳା ।
କାଂଦଇ ଉତ୍କଳ ଜନନୀ, ଶୋକ ବିହ୍ୱଳା ବାଣୀ
ବରପୁତ୍ର ପାଇଁ ବିଳପେ କଳା ପରଦା ଟାଣି-

ଯୁଗ-ଯବନିକା-ପାତନେ ତୋଳି କରୁଣ ତାନ
ଜନତାର ଲୁହେ ଗାଏ ସେ ଜବି-ଅଂତିମ ଗାନ ।
ଯାଅ ନାହିଁ ଗୁରୁ ଥାଅ ହେ ଆମ ହୃଦୟ ତୀରେ
ଆଲୋକର ସ୍ତଂଭ ପରାଏ ଜାତି-ମୋହ ତିମିରେ ।

(ଶ୍ରୀ ଭୁବନେଶ୍ୱର ମିଶ୍ର, ତା ୧୨-୧୧-୧୯୬୭)



## (୫) ସ୍ମୃତିରକ୍ଷା ଓ ଶତବାର୍ଷିକୀ

ସ୍କୁଲଛାତ୍ରଟିଏ ଥିଲାବେଳେ ମଧ୍ୟ ନୀଳକଂଠଂକ ମନରେ ଦେଶପ୍ରୀତି ଜାଗରିତ ହୋଇଥିଲା । ସେତେବେଳେ ଦେଶର ସର୍ବାଂଗୀନ ଉନ୍ନତି ପାଇଁ ଜୀବନୋତ୍ସର୍ଗ କରିବାକୁ ସେ ଶପଥ ନେଇଥିଲେ ଓ ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟଂତ ସେହି ଆଦର୍ଶ ପଥରେ ଆଗେଇ ଚାଲିଥିଲେ । ଓଡ଼ିଶା ପ୍ରଦେଶ ଗଠନ, ପ୍ରଥମ ଗଣତାଂତ୍ରିକ ନିର୍ବାଚନ ବିଶ୍ୱବିଦ୍ୟାଳୟ ସ୍ଥାପନ, ଓଡ଼ିଶା ସାହିତ୍ୟ ଏକାଡ଼େମୀ ପ୍ରତିଷ୍ଠା, ବିଧାନ ସଭାର ସ୍ୱତଂତ୍ରତା ଓ ମର୍ଯ୍ୟାଦା ବୃଦ୍ଧି ପ୍ରଭୃତି ଗତ ଅର୍ଦ୍ଧଶତାବ୍ଦୀର ଓଡ଼ିଶାର ସମସ୍ତ କ୍ରମୋନ୍ନତି ଓ ଅଭିବୃଦ୍ଧିରେ ନୀଳକଂଠଂକ ଅବଦାନ ଅବିସ୍ମରଣୀୟ ।

ସେ ଥିଲେ ଦୁସ୍ଥଜନ ସେବୀ, ସମାଜ ସଂସ୍କାରକ, ଆଦର୍ଶ ଶିକ୍ଷକ, ଶିକ୍ଷାବିତ୍ ବିପ୍ଳବୀ, ରାଜନୀତିଜ୍ଞ ବ୍ୟବସ୍ଥାପକ, ସାଂବାଦିକ ସଂଗଠନ ରଥୀ ବାଗ୍ମୀ, ଚିନ୍ତକ ଜଗନ୍ନାଥଧର୍ମୀକବି, ସାହିତ୍ୟିକ, ପ୍ରାବଂଧିକ, ଦାର୍ଶନିକ, ଐତିହାସିକ ଭାଷାତତ୍ତ୍ୱବିତ୍ତ ଓ ସର୍ବୋପରି ଏକ ଦୂରଦର୍ଶୀ ଗବେଷକ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟଂତ ଅଧ୍ୟୟନ ହିଁ ତାଂକର ଏକମାତ୍ର ବିକାଶ ଥିଲା । ତାଂକର ଅଦମ୍ୟ ସାହସ କର୍ମତତ୍ପରତା, କଠୋର ସାଧନା, ତୀକ୍ଷ୍ଣସ୍ମୃତି ଶକ୍ତି ବଳରେ ସେ ଅସାଧାରଣ ବ୍ୟକ୍ତିତ୍ୱ ଓ ପାଂଡ଼ିତ୍ୟର ଅଧିକାରୀ ହୋଇଥିଲେ ।

ଉଦ୍ଭିଦ ବିଜ୍ଞାନ କୃଷିବିଜ୍ଞାନ ରାସାୟନିକ ବିଜ୍ଞାନଠାରୁ ଆରଂଭ କରି ଗଣିତ ଜ୍ୟୋତିଷ ଇତିହାସ ଦର୍ଶନ ଓ ସଂସ୍କୃତ ପର୍ଯ୍ୟଂତ ସବୁ ଶାସ୍ତ୍ରର ଆଲୋଚନାରେ ସେ ସକ୍ରିୟ ଭାଗ ନେଇ ଦିଗ୍‌ଦର୍ଶନ ଦେଇପାରୁଥିଲେ । ତାଂକର ସେହି ଅଗାଧ ପାଂଡ଼ିତ୍ୟ ପାଇଁ ଓଡ଼ିଆ ଗର୍ବ ଅନୁଭବ କରୁଥିଲା । ଦେଶ ବିଦେଶରେ ସେଥିପାଇଁ ସେ ସମ୍ମାନ ଲାଭ କରିଥିଲେ । ଥରେ ଶ୍ରୀ ମୁରାରୀ ତ୍ରିପାଠୀ ଜଗନ୍ନାଥ ପାଂଡ଼େ ପ୍ରଭୃତି କଂଗ୍ରେସ କର୍ମୀମାନେ ଏକ ନିଖିଳ ଭାରତ କଂଗ୍ରେସ ଅଧିବେଶନକୁ ଯିବା ପାଇଁ ବାହାରିଥିବା ବେଳେ ନୀଳକଂଠଂକ ଗୁରୁ ପଂଡ଼ିତ ଗୋପବଂଧୁ ସେମାନଂକୁ କହିଥିଲେ, ''ତୁମେ ଜେଉଁଠାରୁ ଆସିଛ ବୋଲି ସେହି ଅଧିବେଶନରେ କେହି ପଚାରିଲେ ତୁମେ କହିବ, ଯେଉଁ ସ୍ଥାନରେ ନୀଳକଂଠ ଦାସଂକ ପରି ଜଣେ ବିରାଟ ବିଦ୍ୱାନ୍

ଅଛଂତି ଆମେ ସେହିଠାରୁ ଆସିଛୁ, ତାହାହେଲେ ତୁମକୁ ସମସ୍ତେ ଚିହ୍ନିବେ ।'' ସେତେବେଳକୁ ନୀଳକଂଠ କେଂଦ୍ର ବଡ଼ଲାଟ ସଭାର ସ୍ୱରାଜ ଦଳ (କଂଗ୍ରେସ)ର ଏକ ମହାରଥୀ ଭାବରେ, ତାଂକର ବାଗ୍ମୀତା ଓ ପାଂଡ଼ିତ୍ୟ ଦେଶସାରା ଚହଳ ପକାଇ ସାରିଥିଲା । କେଂଦ୍ର ସଭାରୁ ଜଣେ ବିଖ୍ୟାତ ବିଦ୍ୱାନ ଭାବରେ ନିର୍ବାଚିତ ହୋଇ ସେ ବଡ଼ଲାଟଂକ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ସଦସ୍ୟ ଆସନ ଲାଭ କରିଥିଲେ । ଗୋପବଂଧୁ ନୀଳକଂଠଂକ ଛଡ଼ା ଆଉ କାହାକୁ ପଂଡ଼ିତ ବୋଲି ଯେପରିକି ସ୍ୱୀକାର କରିବାକୁ ରାଜି ନଥିଲେ । ସେ ତାଂକର ଶେଷ Willରେ ତାଂକ Willକୁ କାର୍ଯ୍ୟକାରୀ କରାଇବାକୁ କେତେକ ନାମ ଉଲ୍ଲେଖ କଲାବେଳେ ମଧ୍ୟ କେବଳ ନୀଳକଂଠଂକ ନାମ ପଛରେ ପଂଡ଼ିତ ଶବ୍ଦ ଲେଖାଇ ଥିଲେ ।

ଭାଷାତତ୍ତ୍ୱ ବିଜ୍ଞାନ, ପାଠାଗାର ବିଜ୍ଞାନ, ନୂତନ ଶିକ୍ଷାପଦ୍ଧତି, ସମାଲୋଚନା, ସାହିତ୍ୟ ଗଣତାଂତ୍ରିକ ରାଜନୀତି ପ୍ରଭୃତିର, ସେ ଥିଲେ ଓଡ଼ିଶାରେ ଜଣେ ଆଦି ପ୍ରବର୍ତ୍ତକ । ସେ ଯେଉଁ କ୍ଷେତ୍ରରେ ହାତ ଦେଇଥିଲେ ସେଥିରେ ନୂତନତା ପ୍ରଦର୍ଶନ କରି ନୂଆପଥ ଦର୍ଶାଇବା ଥିଲା ତାଂକ ବିଶେଷତ୍ୱ । ସବୁ ବାଧାବିଘ୍ନ ଏଡ଼ି ଆଗେଇ ଚାଲିବାରେ ସେଥିରେ ଏକ ନିର୍ଭୀକ ଯାତ୍ରୀ । ନିଂଦଂତୁ ନୀତି ନିପୁଣା ଯଦିବା ସ୍ତୁବଂତୁ ଲକ୍ଷ୍ମୀ ସମାବିଶତୁ ଗଚ୍ଛତୁ ବା ଯଥେଷ୍ଟ ଅଦୈବ ବା ମରର ମସ୍ତୁଯୁଗାଂତ ଶେବା ନାୟାତପଥି ପ୍ରବିଂଚଳିତ ନଃ ଧୀରାଃ । ଏହି ବାକ୍ୟ ତାଂକ ଜୀବନରେ ସାର୍ଥକତା ଲାଭ କରିଥିଲା । ବଡ଼ଲାଟଂକ ପ୍ରସ୍ତାବିତ ସମ୍ରାଟଂକଠାରୁ ଉଚ୍ଚ ଉପାଧିପ୍ରାପ୍ତି ପ୍ରଲୋଭିତ କରି ନଥିଲା । ପରବର୍ତ୍ତୀ କାଳରେ ସ୍ୱାଧୀନ ଭାରତରେ ପଦ୍ମଭୂଷଣ, ଡକ୍ଟରେଟ, ଉତ୍କଳଗୁରୁ ପ୍ରଭୃତି ବହୁ ଉପାଧିରେ ତାଂକୁ ସମ୍ମାନିତ କରାଯାଇଥିଲା । କିଂତୁ ସେଥିପ୍ରତି ସେ କୌଣସି ଗୁରୁତ୍ୱ ଦେଉ ନଥିଲେ କିଂବା ତାଂକ ନାମ ସହିତ ସେ ସବୁ ଯୋଡ଼ାଯିବା ସେ ପସଂଦ କରୁ ନଥିଲେ । ଶିକ୍ଷକ ଅବସ୍ଥାରେ ଛାତ୍ରମାନଂକ ଦ୍ୱାରା ସଂବୋଧିତ ପଂଡ଼ିତ ଉପାଧି ହିଁ କେବଳ ତାଂକ ନାମ ସହିତ ସଂଯୋଗ ହୋଇଯାଇଥିଲା ।

ତାଂକ ଜୀବନସାରା ପ୍ରତ୍ୟେକ କ୍ଷେତ୍ରରେ ତାଂକୁ ପ୍ରତିଷ୍ଠିତ ରକ୍ଷଣଶୀଳ ମହାରଥୀମାନଂକ ସଂଗେ ସଂଗ୍ରାମ ଚଳାଇବାକୁ ପଡ଼ିଥିଲା । ସେ ବହୁଭାବରେ ସେମାନଂକ ଆକ୍ରମଣର ଶରବ୍ୟ ହୋଇଥିଲେ, କିଂତୁ ସେ ତାଂକ ସାଧନା ପଥରେ ଅଟଳ ରହି ଶେଷରେ ଯଶସ୍ୱୀ ହେଉଥିଲେ । ସେତେବେଳେ ଯେଉଁମାନେ ସେହି ପଥଦ୍ରଷ୍ଟାଂକର ଦୃଢ଼ ବିରୋଧ କରୁଥିଲେ ପରେ ନୀଳକଂଠଂକ ପଂଥା ଓ କାର୍ଯ୍ୟର ସୁଫଳ ଫଳିବା ପରେ ତାଂକର ଗୁଣ ଝୁରି ହେଉଛଂତି । ରାଜନୀତି ଓ ଅନ୍ୟ କ୍ଷେତ୍ରରେ ତାଂକୁ ତୀବ୍ର ବିରୋଧ କରିଥିବା ଓଡ଼ିଶାର ଜଣେ ପ୍ରତିଷ୍ଠିତ ବ୍ୟକ୍ତି ସେଦିନ ନୀଳକଂଠଂକ ଏକ ଶ୍ରାଦ୍ଧ ସଭାରେ କହିଥିଲେ ନୀଳକଂଠ ଥିଲେ ପଥଦ୍ରଷ୍ଟା ସେ ଅମଡ଼ା ବାଟରେ ବାଟ ଫିଟାଇବା ଲୋକ ଏବଂ ଅନ୍ୟର ଉଦ୍ଧାର ପାଇଁ ଆଖିମୁଦି ବଢ଼ିଲା ନଈକୁ ପ୍ରଥମେ ଡେଇଁ ପଡ଼ିବା ଭଳି ସାହାସୀ ପୁରୁଷ । ଆମେ ଶଗଡ଼ ଗୁଳାରେ ଚାଲିବା ଲୋକ, ତେଣୁ ତାଂକୁ ସେତେବେଳେ ବୁଝି ନପାରି ତାଂକର କାର୍ଯ୍ୟକୁ ବିରୋଧ କରିବା ଆମ ପକ୍ଷରେ ସ୍ୱାଭାବିକ ଥିଲା ।''

ନୀଳକଂଠଂକ ତିରୋଧାନ ପରେ ଛତ୍ରେ ଛତ୍ରେ ତାଂକ ଅଭାବ ଅନୁଭୂତ ହୋଇଥିଲା ଓ ତାଂକର ସ୍ମୃତିରକ୍ଷା ଓ ଆଦର୍ଶ ଅନୁଧ୍ୟାନ ପାଇଁ ଦେଶ ବ୍ୟଗ୍ର ହୋଇଉଠିଥିଲା ।

ଦେଶର ବହୁ ସ୍ଥାନରେ ତାଂକର ଜୟଂତୀ ଓ ଶ୍ରାଦ୍ଧସଭା ପାଳନ କରାଯାଇ ତାଂକର ଗୁଣ କୀର୍ତ୍ତନ କରାଯାଇଥିଲା । ସତ୍ୟବାଦୀ ସ୍କୁଲର ପୁରାତନ ଛାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍ଟର ସଦାଶିବ ମିଶ୍ରଂକ ସଭାପତିତ୍ୱରେ ଗଠିତ ଜୟଂତୀ କମିଟି ନୀଳକଂଠଂକ ଜୟଂତୀ ଓ ଶ୍ରାଦ୍ଧଦିବସ ଲୋକଂକୁ ଜଣାଇବା ସଂଗେ ସଂଗେ ୧୯୪୮ ଅଗଷ୍ଟ ତାରିଖଠାରୁ ଏକବର୍ଷ ତାଂକର ଶତବାର୍ଷିକୀ ପାଳନ କରିବା ପାଇଁ ଆହ୍ୱାନ ଦେଇଥିଲେ ।

ଜୟଂତୀ ଜ୍ୟୋତି ନୀଳକଂଠଂକ ଶ୍ରୀରାମଚଂଦ୍ରପୁର ବାସଭବନରୁ ଶୋଭାଯାତ୍ରାରେ ବାହାରି ସତ୍ୟବାଦୀ ପରିକ୍ରମା କରି ପଂଚସଖା ସମାଧି ପୀଠକୁ ଆସିଥିଲା । ସେଠାରେ ବିରାଟ ସାଧାରଣ ସଭାରେ ଶ୍ରଦ୍ଧାଂଜଳି ଅର୍ପଣ କରାଯିବା ପରେ ଦେଶସାରା ବିଭିନ୍ନ ସ୍କୁଲ କଲେଜ ପ୍ରଭୃତିକୁ ନିଆଯାଇ ସବୁଆଡ଼େ ଶତବାର୍ଷିକ ପାଳନ କରାଯାଇଥିଲା ।

ଶତବାର୍ଷିକୀ ପାଳନ କରି ଓଡ଼ିଶା ସରକାର ଭୁବନେଶ୍ୱରରେ ଏକ ସ୍ଥାନକୁ ନୀଳକଂଠ ନଗର ନାମରେ ନାମିତ କରିଥିଲେ । ଓଡ଼ିଶାରେ ବଂଗଳା ସରକାରଂକ ପୃଷ୍ଠପୋଷକତାରେ କଲିକତା ମହାନଗରୀରେ ବିଖ୍ୟାତ ପ୍ରବୋଧ ମଲ୍ଲିକ ପାର୍କରେ ନେତାଜୀ ଓ ଗୋପବଂଧୁଂକ ମୂର୍ତ୍ତି ନିକଟରେ ତାଂକ ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଥିଲା । କଲିକତା ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ପ୍ରତିଷ୍ଠାତା ଥିବାରୁ ସେହି ବିଭାଗର ଅଧ୍ୟାପକ ଆସନକୁ ସମ୍ମାନିତ ନିଳକଂଠ ଆସନ ରୂପରେ ନାମିତ କରାଯାଇଛି । ସେ ସିନେଟ ଭବନରେ ଓ କଲିକତାର ମହାଜାତି ସଦନରେ ନୀଳକଂଠଂକ ପ୍ରତିକୃତି ଉନ୍ମୋଚନ କରାଯାଇଛି । କଲିକତାରେ ତାଂକ ନାମରେ ଏକ ସରଣୀ ନାମିତ ହେବାର ପ୍ରସ୍ତାବ ମଧ୍ୟ କରାଯାଇଛି ।

ଓଡ଼ିଶାରେ ଓ ବାହାରେ ତାଂକ ନାମରେ ନାନା ଅନୁଷ୍ଠାନ ନାମିତ ହୋଇଛି ଓ ହେଉଛି ଓ ବହୁସ୍ଥାନରେ ପ୍ରତିକୃତି ଓ ପ୍ରତିମୂର୍ତ୍ତି ସ୍ଥାପନା କରାଯାଇଛି ଓ ଯାଉଛି । ପାଠାଗାର ବିଜ୍ଞାନର ପ୍ରତିଷ୍ଠାତା ଭାବରେ ସମ୍ମାନ ଦେଖାଇ ଭୁବନେଶ୍ୱରର ପାଠାଗାର ବିଜ୍ଞାନ କଲେଜ ତାଂକ ନାମରେ ନାମିତ ହୋଇଛି । ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନାର ଆଦି ଉଦ୍ୟୋକ୍ତା ଭାବରେ ତାଂକ ସଂବଂଧରେ ଗବେଷଣା ପାଇଁ ଏକ ବୃତ୍ତି ଖଂଜାଯାଇଥିଲା ଓ ସେହି ବିଶ୍ୱବିଦ୍ୟାଳୟ ପରିସର ଭିତରେ ତାଂକର ପ୍ରତିମୂର୍ତ୍ତି ସ୍ଥାପନାର ବ୍ୟବସ୍ଥା ହେଉଛି । ବିଭିନ୍ନ ବିଶ୍ୱବିଦ୍ୟାଳୟରେ ତାଂକ ସଂବଂଧରେ ଗବେଷଣା ଚଳାଇ ବହୁଛାତ୍ର Phd, Dilt ପ୍ରଭୃତି ଉଚ୍ଚ ଉପାଧି ପାଇଲେଣି । ତାଂକ କାର୍ଯ୍ୟାବଳୀର ବିଭିନ୍ନ ଦିଗ ଆଲୋଚନା ହୋଇ ବହୁ ପୁସ୍ତକ ପ୍ରକାଶିତ ହେଲାଣି । ତାଂକର ବହୁମୁଖୀ ପ୍ରତିଭା ଏ ଦେଶର ଭାବୀ ବଂଶଧରମାନଂକୁ କାଳେ କାଳେ ପଥ ପ୍ରଦର୍ଶନ କରୁଥିବ ଓ ତାଂକ ପବିତ୍ର ସ୍ମୃତି ଜାଗ୍ରତ ରହି ସବୁକାଳେ ଯୁବସଂପ୍ରଦାୟକୁ ପ୍ରେରଣା ଦେଉଥିବ ।

